# ମାନସିଂହ ଗ୍ରନ୍ଥାବଳୀ

[ଷଷ୍ଠ ଭାଗ : ନାଟକ ଖଣ୍ଡ]

ଡକ୍ଟର୍ ମାୟାଧର ମାନସିଂହ

ସଂପାଦନା :

ଡକ୍ଟର୍ ଶ୍ରୀଚରଣ ମହାନ୍ତି

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ - ୨**

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫସେଟ୍ ପ୍ରିଣ୍ଟସ୍**
ସୂତାହାଟ, କଟକ - ୧

ଡି.ଟି.ପି. : **ଜୟ ମାତାଦୀ ଡି.ଟି.ପି. ସେଣ୍ଟର**
ଭଗତପୁର, କଟକ - ୯

ପ୍ରଥମ ସଂସ୍କରଣ : ଜାନୁଆରୀ, ୨୦୦୧
(୭୦୦)

ମୂଲ୍ୟ : ଟ ୨୨୦/-
ସାଦା ବନ୍ଧେଇ : ଟ ୨୦୦/-

# ମୁଖବନ୍ଧ

ଡକ୍ଟର ମାୟାଧର ମାନସିଂହ (୧୯୦୫-୧୯୭୩) ସାହିତ୍ୟର ବିବିଧ ବିଭାଗରେ ଲେଖନୀ ଚାଳନା କରିଛନ୍ତି । କାବ୍ୟ, କବିତା, ପ୍ରବନ୍ଧ, ସମାଲୋଚନା, ଜୀବନୀ ତଥା ନାଟକ ରଚନାରେ ସେ ତାଙ୍କ ଲେଖନୀର ସାମର୍ଥ୍ୟ ଦେଖାଇଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଜଣେ କବି ଭାବରେ ସେ ମୁଖ୍ୟତଃ ପରିଚିତ । ତଥାପି ଅନ୍ୟାନ୍ୟ ରୂପାଙ୍ଗିକ (Genre)ରେ ମାନସିଂହଙ୍କ ସୃଷ୍ଟି-ସଂପଦ କମ୍ ସମୃଦ୍ଧ ନୁହେଁ । ମାନସିଂହଙ୍କ ରଚନାସମଗ୍ର ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ଯେ ଆରମ୍ଭରୁ ହିଁ ତାଙ୍କ ଭିତରେ ଥିବା ସ୍ରଷ୍ଟାମନ ଆତ୍ମପ୍ରକାଶ ପାଇଁ ବିଭିନ୍ନ ମାର୍ଗ ଖୋଜିଛି । ସେ ବିଭିନ୍ନ ଫର୍ମରେ ହାତଦେଇଛନ୍ତି, ବହୁଧାରାରେ ପରୀକ୍ଷା ନିରୀକ୍ଷା କରିଛନ୍ତି । ସେହି ବିବିଧ ଧାରା କେତେବେଳେ ଆଗେଇ ଆଗେଇ ଯାଇଛି ତ, କେତେବେଳେ ବାଟ ନପାଇ ଛୋଟ ଜଳାଶ୍ରୟଟିଏ ସୃଷ୍ଟିକରିଛି । କିନ୍ତୁ ନିର୍ଝରିଣୀ ସଦୃଶ ତାଙ୍କ ସୃଷ୍ଟି-ସ୍ରୋତ ଅବିରତ ପ୍ରବହମାନ । ମାୟାଧରଙ୍କ ନାଟକ-ନାଟିକା ତାଙ୍କ ସୃଷ୍ଟି-ସଂପଦର ଏକ ବିଶେଷ ଅଙ୍ଗ । ତାଙ୍କର ନାଟକ ରଚନା ଆକସ୍ମିକ ନୁହେଁ । କବିତା ରଚନା ସହିତ ତାଳଦେଇ ସେ ନାଟକ ରଚନା କରିଚାଲିଥିଲେ । ୧୯୨୫ ରୁ ୧୯୫୫ ପର୍ଯ୍ୟନ୍ତ ଦୀର୍ଘ ତିରିଶ ବର୍ଷର ସମୟ ସୀମା ମଧ୍ୟରେ ସେ ନାଟକ ରଚନା ପାଇଁ ଉଦ୍ୟମ ଚଳାଇରଖିଥିଲେ ।

ମାୟାଧର ମାନସିଂହଙ୍କ ଜନ୍ମ ଚିଲିକା ଅନ୍ତର୍ଗତ ମାଲୁଦ ଦ୍ୱୀପରେ; ଏକ ଶାନ୍ତ ସରଳ ପଲ୍ଲୀ ନନ୍ଦଳା ଗ୍ରାମରେ । ଏହି ଅଞ୍ଚଳ କାବ୍ୟ-କବିତାରେ ସମୃଦ୍ଧ, ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଲୀଳାଭୂମି ଗଞ୍ଜାମର ନିକଟବର୍ତ୍ତୀ । ତାଙ୍କ ଗ୍ରାମ ଅବିଭକ୍ତ ପୁରୀ ଜିଲ୍ଲା ଅନ୍ତର୍ଗତ ହେଲେ ବି ଚଳଣୀ, ସାମାଜିକ ବିଧି-ବିଧାନ, ଭୌଗୋଳିକ ଅବସ୍ଥିତି ତଥା ସାଂସ୍କୃତିକ ବ୍ୟବସ୍ଥା ଦୃଷ୍ଟିରୁ ଏହା ପୁରୀ ଅପେକ୍ଷା ଗଞ୍ଜାମର ଅଧିକ ଘନିଷ୍ଠ । ଯଦିଓ ମାନସିଂହଙ୍କ ପରିବାର ପରଂପରାକ୍ରମେ ପାରିକୁଦ ରାଜ୍ୟର ରାଜକର୍ମଚାରୀ ଭାବରେ ଅନ୍ୟ ସାଧାରଣଙ୍କଠାରୁ ଉପରେ ଥିଲେ; ମାୟାଧରଙ୍କ ସାଆନ୍ତବାପା ସେ ସମୟର ଜନ ଆନ୍ଦୋଳନ ସହିତ ସଂପୃକ୍ତ ରହି ଉତ୍କଳ ସମ୍ମିଳନୀ ପରି ଅନୁଷ୍ଠାନ ସହିତ ସଂପର୍କ ରଖୁଥିଲେ; 'ଉତ୍କଳ ସାହିତ୍ୟ', 'ମୁକୁର' ଭଳି ପତ୍ରିକା ମଗାଇ ପାଠକରୁଥିଲେ; ତଥାପି ମାୟାଧରଙ୍କୁ ଆଧୁନିକ ଓଡ଼ିଆ ନାଟକ ସହିତ ପରିଚିତ ହେବାକୁ ଯଥେଷ୍ଟ ସମୟ ଲାଗିଥିଲା । ୧୮୭୭ ମସିହାରେ ଜଗନ୍ମୋହନ ଲାଲଙ୍କ ଦ୍ୱାରା ପ୍ରଥମ ଓଡ଼ିଆ ନାଟକ 'ବାବାଜୀ' ଲିଖିତହୋଇଥିଲା । ଏହା ପରେ ପରେ ରାମଶଙ୍କର ରାୟ, କାମପାଳ ମିଶ୍ର, ଭିକାରୀଚରଣ

ପଟ୍ଟନାୟକ, ଗୋଦାବରୀଶ ମିଶ୍ର ଓ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ପ୍ରମୁଖଙ୍କ ନାଟକ ଲିଖିତ ଓ କେତେକ ସ୍ଥଳରେ ମଞ୍ଚସ୍ଥ ହୋଇଥିଲା; ମାତ୍ର ମାୟାଧର ପ୍ରଥମ ନାଟକ ରଚନା କରିବା ବେଳକୁ ଏସବୁ ସଂପର୍କରେ ନିର୍ଦ୍ଦିଷ୍ଟ ଭାବରେ ଅବଗତ ଥିଲେ ବୋଲି ଆଶା କରାଯାଇ ନ ପାରେ । ପଲ୍ଲୀଗ୍ରାମ ନନ୍ଦଳାର ଆବଦ୍ଧ ଗ୍ରାମୀଣ ଜୀବନ, ପାରିକୁଦର ପ୍ରାଥମିକ ଶିକ୍ଷା ତଥା ବାଣପୁର ମାଇନର ସ୍କୁଲର ପାଠ୍ୟ ସମାପ୍ତ ପର୍ଯ୍ୟନ୍ତ, ଅର୍ଥାତ ୧୯୨୧ ମସିହା ପର୍ଯ୍ୟନ୍ତ ତାଙ୍କୁ ଆଧୁନିକ ନାଟକ ଦେଖିବାର ସୁଯୋଗ ମିଳି ନ ଥାଇପାରେ । ୧୯୨୨ ରୁ ୧୯୨୬ ପର୍ଯ୍ୟନ୍ତ ଖୋର୍ଦ୍ଧା ହାଇସ୍କୁଲରେ ଅଧ୍ୟୟନ କାଳରେ ଓଡ଼ିଆ, ବଙ୍ଗଳା ନାଟକ ସହିତ ପାଠ୍ୟପୁସ୍ତକ ଭାବରେ ଇଂରାଜୀ ନାଟକ ଓ ସଂସ୍କୃତ ନାଟକ ପଢ଼ିବାର ସୁଯୋଗ ପାଇପାରିଥିବେ । ତା ପରେ କଟକ ସହରକୁ ଆସି ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ମାନସିଂହଙ୍କ ଦୃଷ୍ଟିଜଗତ ଆଧୁନିକ ନାଟକ ସହିତ ପରିଚିତ ହେବାର ସୁଯୋଗ ପାଇଥିବ ।

ମାନସିଂହ ୧୯୨୬ ମସିହା ପୂର୍ବରୁ ଗ୍ରାମାଞ୍ଚଳରେ ଅଭିନୀତ ହେଉଥିବା ପାଲା, ସୁଆଙ୍ଗ, ଲୀଳା, ଯାତ୍ରା ଆଦି ବିବିଧ ନାଟ୍ୟରୂପ ଦେଖିବାର ସୁଯୋଗ ପାଇଥିବେ । ପୁଣି ଏହି ସମୟକୁ ଓଡ଼ିଆ ନାଟକ ଖୁବ୍ ଏକ ବିକଶିତ ଅବସ୍ଥାକୁ ଆସିନଥିଲା । ହାତ ଗଣତିରେ ମାତ୍ର କେତୋଟି ନାଟକ ହିଁ ଥିଲା ଓଡ଼ିଆ ନାଟ୍ୟ-ଜଗତର ସଂପତ୍ତି । ହାଇସ୍କୁଲରେ ପାଠ ପଢୁଥିବା ଓ କେବଳ ବୃତ୍ତି ଉପରେ ସଂପୂର୍ଣ୍ଣ ନିର୍ଭର କରୁଥିବା ଜଣେ ସାଧାରଣ ପରିବାରର ଛାତ୍ର ପକ୍ଷରେ ସେ ସବୁ ନାଟକ କିଣି ପାଠକରିବା ସମ୍ଭବ ନ ଥିଲା । ବରଂ ସେ ସମୟରେ ଖୋର୍ଦ୍ଧା ସ୍କୁଲ ଓ ରେଭେନ୍ସା କଲେଜରେ ଶିକ୍ଷାଦାନ କରୁଥିବା ଶିକ୍ଷକ/ ଅଧ୍ୟାପକମାନଙ୍କ ସହାୟତାରେ ମାୟାଧର ରବୀନ୍ଦ୍ର ସାହିତ୍ୟ ସହିତ ପରିଚିତ ହୋଇଥିଲେ । 'କମଳାୟନ' କାବ୍ୟ ଓ ତାଙ୍କର ବିଭିନ୍ନ ଆଲୋଚନାରେ ଏ ବକ୍ତବ୍ୟ ସ୍ପଷ୍ଟ ହୋଇଯାଇଛି । ମାନସିଂହଙ୍କ ପ୍ରଥମାବସ୍ଥାରେ ଲିଖିତ ଗୀତିନାଟ୍ୟର ଧାରା ବହୁମାତ୍ରାରେ ରବୀନ୍ଦ୍ର ଭାବାଦର୍ଶରେ ଲିଖିତ । କବି ମାନସିଂହ ରବୀନ୍ଦ୍ରନାଥଙ୍କ 'ବାଲ୍ମିକୀ ପ୍ରତିଭା' ପଢ଼ି ସେହି ଅନୁରୂପ ଏକ ଚରିତ୍ର ଓଡ଼ିଆ ସାହିତ୍ୟରେ ଖୋଜିଛନ୍ତି । ଆଉ ତାଙ୍କ ସମ୍ମୁଖରେ ଉପଗତ ହୋଇଛନ୍ତି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ । ହାଇସ୍କୁଲର ଛାତ୍ର ମାୟାଧର ରଚନା କରିଛନ୍ତି 'ରାଜକବି' ଗୀତିନାଟ୍ୟ । ରଙ୍ଗମଞ୍ଚ ସହିତ ପ୍ରତ୍ୟକ୍ଷ ସଂପର୍କ ନଥିବାରୁ କବି ମାନସିଂହ ଆଦରିନେଇଛନ୍ତି ସାହିତ୍ୟିକ-ନାଟକ ରଚନା ପଦ୍ଧତିକୁ ।

ମାୟାଧର ଜଣେ ନାଟ୍ୟକାରର ସମ୍ମାନ ପାଇବାପାଇଁ ନୁହେଁ, ବରଂ କର୍ତ୍ତବ୍ୟର ଅନୁରୋଧରେ ବା ଜାତୀୟତାର ଉଦ୍‌ବୋଧନ ପାଇଁ ସେ ନାଟକ ଗୁଡ଼ିକ ରଚନା କରିଥିଲେ ବୋଲି ବିଭିନ୍ନ ସ୍ଥାନରେ ତାଙ୍କ ବକ୍ତବ୍ୟରେ ସ୍ପଷ୍ଟ କରିଛନ୍ତି । କୋଡ଼ିଏ ବର୍ଷ ବୟସରେ ଖ୍ରୀ: ୧୯୨୫ ମସିହାରେ ମାନସିଂହଙ୍କ ପ୍ରଥମ ନାଟିକା 'ରାଜକବି'ର ରଚନା । ପ୍ରଥମ ନାଟିକା 'ରାଜକବି ଉପେନ୍ଦ୍ର' ୧୯୨୮ ମସିହାରେ **ପ୍ରଗତି ସଂଘ** ଆନୁକୂଲ୍ୟରେ ପ୍ରକାଶିତ ହୁଏ । ଏହାପରେ ତାଙ୍କର ପରବର୍ତ୍ତୀ ନାଟିକା 'ପୁଷ୍ପିତା' ସହକାର ୧୧ଶ ବର୍ଷ ୪ର୍ଥ

ସଂଖ୍ୟାରେ ପ୍ରକାଶପାଏ (ଜୁଲାଇ ୧୯୩୦)। ଏହି ନାଟିକାଟି ପ୍ରକାଶ ଲାଭ କରିବାର ପର ମାସରେ ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ ଏହାର ସମାଲୋଚନା ପ୍ରକାଶ କରିଥିଲେ (ଅଗଷ୍ଟ, ୧୯୩୦)। ''ପୁଷ୍ପିତା ଲେଖକର କୈଫୟତ୍‌'' ନାମରେ ମାନସିଂହ ଏହାର ଉତ୍ତର ଦିଅନ୍ତି ସହକାରର ସେପ୍ଟେମ୍ବର ୧୯୩୦ ସଂଖ୍ୟାରେ। ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ମାନସିଂହଙ୍କ ବହୁଚର୍ଚ୍ଚିତ 'ଧୂପ' ଏହାର ପରବର୍ଷ ପ୍ରକାଶପାଇଲା। ମନେହୁଏ 'ପୁଷ୍ପିତା'ର ରଚନା ସମୟରେ ମାନସିଂହ ଯେପରି 'ଧୂପ' ସୃଷ୍ଟି ପାଇଁ ଭୂମି ପ୍ରସ୍ତୁତକରୁଥିଲେ। ତୃତୀୟ ନାଟିକା 'ପୂଜାରିଣୀ' ସବୁଜ ସାହିତ୍ୟ ସମିତି ଆନୁକୂଲ୍ୟରେ ପ୍ରକାଶ ପାଏ ୧୯୩୨ ମସିହାରେ। ପରେ ପୁରୀ ଓ ସମ୍ବଲପୁରର ବାଳିକା ହାଇସ୍କୁଲରେ ଏହା ଅଭିନୀତ ହୋଇଥିବା କଥା ଲେଖକ ଉଲ୍ଲେଖ କରିଛନ୍ତି। ଏହାକୁ ନୃତ୍ୟ-ନାଟିକା କରିବାପାଇଁ ଲେଖକ ପରବର୍ତ୍ତୀ କାଳରେ କେତେକ ପରିବର୍ତ୍ତନ ଓ ସଂଯୋଜନ କରିଥିଲେ। ଚତୁର୍ଥ ନାଟକ ହେଉଛି 'ନଷ୍ଟନୀଡ଼' (୧୯୩୯)। ଏହାର ୧୯୬୪ ମସିହା ସଂସ୍କରଣର ଭୂମିକାରେ ମାନସିଂହ ଲେଖିଛନ୍ତି: ''ଏହା ପ୍ରଥମେ ନିମାପଡ଼ାରେ ଲେଖାହୋଇ ଅଭିନୀତ ହୋଇଥିଲା, ପରେ ଆକାଶବାଣୀ କଟକରୁ ବହୁବାର ପ୍ରଚାରିତ ହୋଇଛି।'' ଏହାର ପରବର୍ତ୍ତୀ ନାଟକ 'ବାରବାଟୀ' ନାଟ୍ୟକାରଙ୍କର ଏକ ଦୀର୍ଘ ପରିକଳ୍ପନା। ଏହି ନାମକରଣରେ ତିନୋଟି ନାଟକ ସୃଷ୍ଟିହୋଇଥା'ନ୍ତା; ପ୍ରଥମ ଖଣ୍ଡଟି ମାତ୍ର ପ୍ରକାଶ ପାଇଛି। ଏହାର ଦ୍ୱିତୀୟ ସଂସ୍କରଣ ଖ୍ରୀ ୧୯୫୧ ମସିହାରେ ପ୍ରକାଶପାଇଲାବେଳେ ମୁଖବନ୍ଧରେ ଲେଖାଥିଲା...

> 'ବାରବାଟୀ' ତିନିଖଣ୍ଡରେ ଆତ୍ମପ୍ରକାଶ କରିବାର ପରିକଳ୍ପନା ଥିଲା; ପ୍ରଥମ ଖଣ୍ଡ ଦ୍ୱିତୀୟ ସଂସ୍କରଣ ହେଲା, କିନ୍ତୁ ଅନ୍ୟ ଦୁଇଖଣ୍ଡର ପରିକଳ୍ପନା ହୋଇନାହିଁ। ମୋର ଏବେ ବି ଆଶା ଅଛି ଯେ ଅନ୍ତତଃ ଶେଷ ଖଣ୍ଡିକ ଦିନେ ଶେଷ କରିବି। (ମା.ଗ୍ର. ୧୯୬୪ ପୃ. ୬୧୦)

ଏହାପରେ ଲେଖକ ପରବର୍ତ୍ତୀ ଅଂଶକୁ ଲେଖିଛନ୍ତି କି ନାହିଁ ସେ ସଂପର୍କରେ କିଛି ସୂଚନା ମିଳେନାହିଁ। ଏହି 'ବାରବାଟୀ' ନାଟକ ଛପା ହେବା ପୂର୍ବରୁ ଆଠଗଡ଼ ଓ ଆଠମଲ୍ଲିକରେ ଅଭିନୀତ ହୋଇଥିଲା। ସେ ଅଭିନୟ ଦେଖିଲାପରେ ଲେଖକ ନାଟକରେ କେତେକ ପରିବର୍ତ୍ତନ କରିଥିଲେ। 'ବୁଦ୍ଧ' ନାଟକ ପ୍ରଥମେ ଖ୍ରୀ: ୧୯୫୧ ମସିହା ଅକଟୋବର ୯ ତାରିଖରେ ଗଙ୍ଗାଧର ମେହେର କଲେଜର କର୍ମଚାରୀ ଓ ଛାତ୍ରବୃନ୍ଦ ଓ ଲେଡ଼ି ଲୁସ୍ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କଦ୍ୱାରା ଅଭିନୀତ ହୋଇଥିଲା। ଏହି ନାଟକ ପ୍ରଥମେ 'ଝଙ୍କାର' ୧ମ ବର୍ଷ ୧୨ଶ ସଂଖ୍ୟା ମାର୍ଚ୍ଚ ୧୯୫୦ରୁ ଆରମ୍ଭହୋଇ ଧାରାବାହିକ ଭାବରେ ପ୍ରକାଶପାଇଥିଲା। 'ଦୁର୍ଭିକ୍ଷ' ନାଟିକା ୧୯୫୫ରେ ପ୍ରକାଶିତ ହୋଇଛି। ମାନସିଂହଙ୍କ ନାଟ୍ୟକୃତି ମଧ୍ୟରେ 'ବୁଦ୍ଧଦୂତୀ' ଓ 'ପୁଷ୍ପାଭିନୟ' ଦୁଇଟି କ୍ଷୁଦ୍ର ଲେଖା।

**ପୃଷ୍ଠଭୂମି–** ଜନ୍ମମାଟିର ଅତୀତ ଗୌରବ ସହିତ ସମସାମୟିକ ରାଜନୈତିକ ପରିବେଶ ମାନସିଂହଙ୍କ ମନରେ ଜାତୀୟଚେତନା ଉଦ୍ରେକ କରିଥିଲା। ପରବର୍ତ୍ତୀ କାଳରେ

ସଂସ୍କୃତ ନାଟକ ଓ ଇଂରାଜୀ ନାଟକର ବ୍ୟାପକ ଅଧ୍ୟୟନ ତାଙ୍କୁ ନାଟକ ରଚନା ପାଇଁ ପ୍ରେରଣା ଯୋଗାଇଥିଲା । ସେକ୍‌ସପିୟର, ଜର୍ଜ ବର୍ଣ୍ଣାଡ଼ଶ', ଇବ୍‌ସେନ୍, ଇଟ୍‌ସ ପ୍ରଭୃତିଙ୍କ ନାଟକ ସେ ଅଧ୍ୟୟନ କରିଥିଲେ । ତାଙ୍କ ସମୟକୁ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ପ୍ରଭୃତି ସଂସ୍କୃତ ନାଟକ ମଧ୍ୟ ଓଡ଼ିଆରେ ଅନୁବାଦ କରିଥାନ୍ତି । ଓଡ଼ିଆ ସାହିତ୍ୟର ଏହି ପରିବେଶରେ ମାନସିଂହ ନାଟକ ଲେଖିବାକୁ ଆରମ୍ଭକଲେ ।

ନିଜ ନାଟକ ରଚନାର ପୃଷ୍ଠଭୂମି ସମ୍ବନ୍ଧରେ ମାନସିଂହଙ୍କ ମତାମତ ପ୍ରଣିଧାନଯୋଗ୍ୟ । 'ରାଜକବି' ନାଟିକାର ମୁଖବନ୍ଧରେ ସେ କହନ୍ତି– ''ଉପେନ୍ଦ୍ରଙ୍କ ସମସ୍ତ ଜୀବନଟା ରହସ୍ୟମୟ ହୋଇ ରହିଛି । ଏହି ରହସ୍ୟ ହିଁ ମୋତେ ନାଟିକା ଲେଖିବା ପାଇଁ ଉଦ୍‌ବୁଦ୍ଧ କରିଥିଲା ।'' (ମା.ଗ୍ର.୧୯୬୪, ପୃ. ୩୯୩) 'ପୂଜାରିଣୀ'ର ମୁଖବନ୍ଧରେ ସେ କହିଛନ୍ତି–

> ''ପିଲାବେଳୁ ଚିଲିକା ପାଠକଲାବେଳୁ ଏ ବିଚିତ୍ର ଓ ଏହି ମହୀୟସୀ ବାଳିକା ଲେଖକ ମନରେ ଗଭୀର ରେଖାପାତ କରିଥିଲା । ଏହି ନଗଣ୍ୟ ରଚନାରେ ମୁଁ ତାକୁହିଁ ଯଥାଶକ୍ତି ରୂପଦାନ କରିଛି । ...ସମ୍ଭବତଃ ଏମ୍. ଏ. ପଢୁଥିଲାବେଳେ ଏହି ନାଟିକାଟି ଲେଖିଥିଲି । ସେତେବେଳେ ଆଇରିଶ କବି ଇଏଟ୍‌ସଙ୍କର କୌଣସି ଏକ ଛୋଟ ନାଟକରେ ଏଇ ଭାବଟିର ଆଭାସ ପାଇ ମୋର ନିଜର ମାନସିକ କ୍ରିୟାପାଇଁ ମୁଁ ଯେପରି ସମର୍ଥନ ପାଇଲି । ତା ପରେ ସଂପୂର୍ଣ୍ଣ ଓଡ଼ିଆ ଭୂମିକାରେ ଏଇ ଭାବଟିକୁ କିପରି ରୂପଦିଆଯାଇପାରେ ଚିନ୍ତା କରୁ କରୁ ମୁଁ ଏହି ସାକ୍ଷୀଗୋପାଳର ଲକ୍ଷ୍ମୀ କିମ୍ବଦନ୍ତୀକୁ ପରୀକ୍ଷା ପାଇଁ ଗ୍ରହଣକରିନେଲି ।'' (ମା.ଗ୍ର.୧୯୬୪, ପୃ.୪୬୧)

'ନଷ୍ଟନୀଡ଼' ସାମାଜିକ ନାଟକ ଉପରେ ସେ କହିଛନ୍ତି–

> ''ଏବେ ଓଡ଼ିଶାରେ ନାଟକ କହିଲେ ସାମାଜିକ ନାଟକ ବୁଝାଉଅଛି । ମୁଖ୍ୟ କାରଣ ହେଉଛି ବଙ୍ଗଳାରେ ବି ଏବେ ଏଇ ଧୂମ୍ ଚାଲିଛି । ଆମେ ଛାତ୍ର ଥିଲାବେଳେ ଅବସ୍ଥା କିନ୍ତୁ ସଂପୂର୍ଣ୍ଣ ଓଲଟା ଥିଲା । ଆମେ ସେତେବେଳେ ଇଂରାଜୀରେ ବର୍ଣ୍ଣାଡ଼ଶ', ଇବ୍‌ସନଙ୍କ ନାଟକ ପଢ଼ିଲୁଣି । ତେଣୁ ଆମେ ଚାହୁଁଥିଲୁ ଯେ, ଓଡ଼ିଶାର ରଙ୍ଗମଞ୍ଚରେ ସେହିପରି ନାଟକ ସବୁର ଆବିର୍ଭାବ ହେଉ; କିନ୍ତୁ ଥିଏଟର ମ୍ୟାନେଜର ଓ ଅଭିନେତାଗଣ ସାମାଜିକ ନାଟକ କହିଲେ ସେତେବେଳକୁ ନାସିକା କୁଞ୍ଚନ କରୁଥିଲେ ।'' (ମା.ଗ୍ର. ୧୯୬୪ ପୃ. ୫୨୧)

'ବାରବାଟୀ' ନାଟକର ମୁଖବନ୍ଧରେ ମାନସିଂହ ଲେଖିଛନ୍ତି–

> ''ଉତ୍କଳର ଗୌରବମୟ ଅତୀତର କେତେକାଂଶକୁ ନାଟକାକାରରେ ସଜେଇ ଥୋଇବାର ବାସନା ଲେଖକର ମନରେ ବହୁବର୍ଷହେଲା ଜାଗ୍ରତ ରହିଛି । କ୍ରମେ କ୍ରମେ ଲେଖକର କଳ୍ପନା ବାରବାଟୀକୁ କେନ୍ଦ୍ରକରି ଗଢ଼ିଉଠିଛି । କାରଣ ଷୋଡ଼ଶ ଶତାବ୍ଦୀରେ ଉତ୍କଳର ଅଧଃପତନ ପର୍ଯ୍ୟନ୍ତ ଚାରିଶତ ବର୍ଷଧରି ବାରବାଟୀର ଇତିହାସହିଁ ଉତ୍କଳର ଇତିହାସ ।'' (ମା.ଗ୍ର. ୧୯୬୪, ପୃ.୬୦୯)

'କାହିଁକି ଏ ନାଟକ ଲେଖିଲି' କୈଫିୟତ୍ ଦେବାକୁ ଯାଇ 'ବୁଦ୍ଧ' ନାଟକରେ ମାନସିଂହ ଲେଖିଛନ୍ତି-

''ନିଜ ମନର କ୍ଷୁଧା ମେଣ୍ଟାଇବା ପାଇଁ ମୁଁ ମଝିରେ ମଝିରେ ବିଭିନ୍ନ ଧର୍ମଶାସ୍ତ୍ର ଆଲୋଚନା କରିଥାଏ । ଏ ସମସ୍ତଙ୍କ ଭିତରେ ବୁଦ୍ଧ ଓ ତାଙ୍କ ବାଣୀ ମୋ ଚିତ୍ତକୁ ଅଧିକ ଅଭିଭୂତ କରିବାରୁ ତାଙ୍କର ଜୀବନ ଓ ତତ୍ତ୍ୱ ଅଧିକ ଆଲୋଚନା କଲି ।''
(ମା.ଗ୍ର. ୧୯୬୪ ପୃ. ୬୮୯)

'ଦୁର୍ଭିକ୍ଷ' ନାଟିକା ଲେଖିବା ପାଇଁ ମାନସିଂହ ଏକ ବଙ୍ଗଳା ପାଠ୍ୟପୁସ୍ତକରୁ 'ସନାତନ କାହାଣୀ' ଏବଂ 'ପ୍ରଭାତୀ' ପତ୍ରିକାରୁ 'ଅନନ୍ତ ଦାସଙ୍କ ଆତ୍ମଜୀବନୀ'କୁ ପୃଷ୍ଠପଟରେ ରଖିଛନ୍ତି ।

**କଥାବସ୍ତୁ–** ଆଲୋଚକମାନଙ୍କ ମତରେ ମାନସିଂହଙ୍କ ନାଟ୍ୟସୃଷ୍ଟି ମଧ୍ୟରେ 'ନଷ୍ଟନୀଡ଼'ର ସ୍ଥାନ ସର୍ବୋଚ୍ଚ । ଓଡ଼ିଆ ସାମାଜିକ ନାଟକ କ୍ଷେତ୍ରରେ ଏହା ପ୍ରଥମ ଟ୍ରାଜେଡ଼ି । 'ନଷ୍ଟନୀଡ଼'ରେ ପୂର୍ଣ୍ଣ ଓ ମାଧବୀଙ୍କ ଅନାବିଳ ପ୍ରେମ ଓ ଆଦର୍ଶର ଚିତ୍ର ଅଙ୍କିତ । ଶିକ୍ଷକ ମଧୁବାବୁଙ୍କ ଝିଅ ମାଧବୀ, କଲେଜ ଛାତ୍ର ପୂର୍ଣ୍ଣର ଶାନ୍ତ ସରଳ ବ୍ୟବହାର ତଥା ଦେଶପ୍ରେମରେ ମୁଗ୍ଧ ହୋଇ ବିବାହ କରିବା ପାଇଁ ମନସ୍ଥ କରିଛି । ଏଥିରେ ମଧୁବାବୁଙ୍କ ସମ୍ମତି ଥିଲା; ମାତ୍ର ପୂର୍ଣ୍ଣର ପରିବାର ଏଥିରେ ସମ୍ମତ ନ ଥିଲେ । ଘଟଣାକ୍ରମେ ପୂର୍ଣ୍ଣ ପରୀକ୍ଷାରେ ଫେଲ୍ ହେବାରୁ ତାହାର ବାପା ଓ ଭାଇ ଅସନ୍ତୁଷ୍ଟ ହୋଇ ତାକୁ ତିରସ୍କାର କରିଛନ୍ତି । ସେ କଟକ ଫେରିଆସିଛି । କଟକରେ ପହଞ୍ଚି ଦେଖେ ସବୁ ଓଲଟପାଲଟ । ମଧୁବାବୁଙ୍କ ଶ୍ୱଶୁରଙ୍କର ଚକ୍ରାନ୍ତରେ ପୂର୍ଣ୍ଣର ବନ୍ଧୁ ତଥା ଚରିତ୍ରହୀନ ଜମିଦାରପୁତ୍ର କିଶୋର ସହିତ ମାଧବୀର ହୋଇଛି ବିବାହ । ପୂର୍ଣ୍ଣ ମାଧବୀକୁ ନ ପାଇ ହୋଇଛି ଅଧାପାଗଳ । କିଶୋରର ପରିବାରରେ ମାଧବୀ ମଧ ଶାନ୍ତିରେ ରହିପାରିନି । କିଶୋର ମାଧବୀର ଅନାସକ୍ତ ଭାବ ଲକ୍ଷ୍ୟକରି ସନ୍ଦେହକରିଛି । ତିନିଟି ପରିବାରରେ ଉଠିଛି ଝଡ଼ଝଞ୍ଜା । ଜଣେ ପାଇ ସନ୍ତୁଷ୍ଟ ନୁହେଁ; ଅନ୍ୟଜଣେ ନପାଇ ପାଗଳ । ଏହି ଅବସ୍ଥାରେ ମାଧବୀ ଓ କିଶୋର ଆସିଛନ୍ତି କଟକ । ପୂର୍ଣ୍ଣର ଭୁଲବୁଝାମଣା ଯୋଗୁ ସେ ମାଧବୀର ଭାଇ କୃଷ୍ଣ ହାତରେ ଫେରାଇଦେଇଛି ମାଧବୀ ପ୍ରଦତ୍ତ ସମସ୍ତ ଚିଠି । ସେ ଚିଠିଗୁଡିକ କିଶୋର ଦେଖିଛି । କଳହ ବହ୍ନି ତେଜିଉଠିଛି । ମାଧବୀ କରିଛି ଆତ୍ମହତ୍ୟା । ପୂର୍ଣ୍ଣ ପଳାଇଛି ଘରଛାଡ଼ି । ପୂର୍ଣ୍ଣ ହୋଇଛି 'ନଷ୍ଟନୀଡ଼'ର ପକ୍ଷୀ । ଏହାର କଥାବସ୍ତୁ ସରଳ । ଖ୍ରୀ: ୧୯୩୮ ମସିହାର ପରିବେଶ, ଗାନ୍ଧୀବାଦ ତଥା ଜାତୀୟ ଚେତନାର ପ୍ରକାଶ ପାଇଁ ନାଟ୍ୟକାର ଏଥିରେ ପ୍ରୟାସୀ । ନିଜର ପ୍ରତିପାଦିତ ମତ ଉପରେ ନାଟ୍ୟକାରଙ୍କର ବଳିଷ୍ଠ ଆସ୍ଥା ନ ଥିବାରୁ କୌଣସି ବୈପ୍ଲବିକ ପଦକ୍ଷେପ ବା ପରିବର୍ତ୍ତନ ଆଣିବା ପାଇଁ ସାହସକରିନାହାନ୍ତି । ତା ପରେ ନାଟକକୁ ଟ୍ରାଜେଡ଼ିରେ ଶେଷକରିବା ଲେଖକଙ୍କର ଥିଲା ମୂଳ ଲକ୍ଷ୍ୟ; ସେଥିପାଇଁ ନାୟକ ଶେଷରେ କରିଛି ପଳାୟନ, ନାୟିକା କରିଛି ଆତ୍ମହତ୍ୟା ।

'ବାରବାଟୀ'ର କଥାବସ୍ତୁ କୃପାସିନ୍ଧୁ ମିଶ୍ରଙ୍କ 'ଉତ୍କଳ ଇତିହାସ'ରୁ ଗୃହୀତ । ଐତିହାସିକ ନାଟକରେ ଐତିହାସିକ କାହାଣୀ ସହ କଳ୍ପନା ମିଶ୍ରିତ ହେଲାଭଳି 'ବାରବାଟୀ'ରେ ମଧ ଇତିହାସ ସହିତ କଳ୍ପନା ମିଶ୍ରିତ । ଲେଖକଙ୍କ ନିଜ ମତରେ–

''ଉତ୍କଳର ଇତିହାସ ଗୌରବମୟ ବୋଲି ଦେଉଳମାନଙ୍କର ପଥର ବା ତମ୍ବାପଟା କହିଛି, କିନ୍ତୁ ଏମାନଙ୍କ କହିବା ଏତେ ଲୁପ୍ତ, ଏତେ ରହସ୍ୟମୟ ଯେ, ତାକୁ ନେଇ ଐତିହାସିକ ନାଟକ ଲେଖିବା ବାରିବିନ୍ଦୁକୁ ମୁକ୍ତା କରିବା ପରି ଦୁଃସାହସିକତାର ହିଁ ପରିଚୟ ଦେବ ।... ବାଧ ହୋଇ ତେଣୁ ଅଧିକାଂଶ ଭାଗରେ ଏ ନାଟକର ଗଳ୍ପାଂଶ କାଳ୍ପନିକ କରିବାକୁ ହୋଇଅଛି, କିନ୍ତୁ ଗଳ୍ପର ମେରୁଦଣ୍ଡଟା ଅର୍ଥାତ ମୋଟ କଥାଟା ଆଦୌ ଅଳିକ ନୁହେଁ ।'' (ମା.ଗ୍ର. ୧୯୬୪, ପୃ.୬୦୯)

'ବାରବାଟୀ' ନାଟକର କଥାବସ୍ତୁ ସରଳ । ନରସିଂହ ଦେବଙ୍କର ଦାକ୍ଷିଣାତ୍ୟ ଦିଗ୍-ବିଜୟ, ମୁସଲମାନଙ୍କର ବଙ୍ଗଦେଶ ଆକ୍ରମଣ ଯୋଗୁ ଲକ୍ଷ୍ମଣ ସେନଙ୍କର ଉତ୍କଳରେ ଆଶ୍ରୟ ଗ୍ରହଣ, ପରେ ଅନଙ୍ଗଭୀମ ଦେବ ମୁସଲମାନଙ୍କୁ ପରାଜିତ ପରି ଲକ୍ଷ୍ମଣ ସେନଙ୍କୁ ବଙ୍ଗରେ ପୁନଃସ୍ଥାପନ କରାଇବା ନାଟକର ମୁଖ୍ୟ ବିଷୟବସ୍ତୁ । ଏଥିରେ ମାଳବ ରାଜକନ୍ୟା କାଞ୍ଚନମାଳାଙ୍କ ସହିତ ନରସିଂହଙ୍କର ବିବାହ ବର୍ଣ୍ଣିତ ।

'ବୁଦ୍ଧ' ମଧ୍ୟ ଏକ ଐତିହାସିକ ନାଟକ । ଏହାର କଥାବସ୍ତୁରେ ବିଶେଷ କିଛି ନୂତନତା ନାହିଁ । ପ୍ରସ୍ତାବନାରେ ହିମାଳୟର ଏକ ଦୃଶ୍ୟର ବର୍ଣ୍ଣନା ଦିଆଯାଇଛି । ପୃଥିବୀର ଅନୁରୋଧରେ ବ୍ରାହ୍ମଣ୍ୟଧର୍ମର ଅତ୍ୟାଚାରରୁ ମୁକ୍ତି ନିମନ୍ତେ ତଥା ଶାନ୍ତି ସ୍ଥାପନ ପାଇଁ ଶଙ୍କର ବୁଦ୍ଧଦେବଙ୍କୁ ପ୍ରେରଣକଲେ । ସିଦ୍ଧାର୍ଥଙ୍କର ସାଂସାରିକ କ୍ରିୟା, ବୈଦିକ କର୍ମରେ ଅନାସକ୍ତି, ଜୀବେଦୟା ଓ ମାନବ ସମାଜର ଉଦ୍ଧାର ପାଇଁ ଯେଉଁ କେତେକ ଉପଦେଶ ତାହାହିଁ ବର୍ଣ୍ଣନାକରାଯାଇଛି । ଘଟଣାର ଉପସ୍ଥାପନାରେ ଯାହାକିଛି ବିଶେଷତ୍ୱ ହିଁ ଦେଖାଯାଏ; କାହାଣୀ ଦୃଷ୍ଟିରୁ ବିଶେଷ ନୂତନତା ନାହିଁ ।

'ଦୁର୍ଭିକ୍ଷ'ର ଭୂମିକାରେ ମାନସିଂହ କହିଛନ୍ତି–

''ଓଡ଼ିଶାର ସୁବିଦିତ ନ'ଅଙ୍କ ଦୁର୍ଭିକ୍ଷର ପଶ୍ଚାତପଟ ଉପରେ ଗୋଟିଏ ମହାପ୍ରାଣର ମହନୀୟ ପବିତ୍ର ମଧୁର ବିକାଶ ହିଁ ଏହି ଛୋଟ କାବ୍ୟ-ନାଟିକାର ପ୍ରାଣକଥା । ବିଭୀଷିକାମୟ ନ'ଅଙ୍କ ଦୁର୍ଭିକ୍ଷର ବୀଭତ୍ସ ରଙ୍ଗଭୂମିରେ କେନ୍ଦ୍ରାପଡ଼ାର ବାଳକ ସନାତନର ଛୋଟ ଅଭିନୟଟି ମାନବିକତାରେ ଯେପରି କାରୁଣ୍ୟମୟ, ନରତ୍ୱର ମହିମାରେ ସେପରି ଅପୂର୍ବ ।'' (ମା.ଗ୍ର. ୧୯୬୪, ପୃ. ୭୭୧-୭୭୨)

ସନାତନର ମହିମାମୟ କାହାଣୀକୁ ଲେଖକ ଏକ ବଙ୍ଗଳା ପାଠ୍ୟପୁସ୍ତକରୁ ପଢ଼ିଥିଲେ । ତା ପରେ ଡକ୍ଟର ଆଇଜାକ ସାନ୍ତ୍ରାଙ୍କ ସଂପାଦିତ ଓଡ଼ିଆ ଖ୍ରୀଷ୍ଟିଆନ ସମାଚାର ପତ୍ରିକା 'ପ୍ରଭାତ'ର ୧୯୩୭ ସାଲ ଅଗଷ୍ଟ ସଂଖ୍ୟାରେ ପ୍ରକାଶିତ ''ଅନନ୍ତ ଦାସଙ୍କ ଆତ୍ମଜୀବନୀ''କୁ ଆଧାରକରି ମାନସିଂହ ନାଟିକାଟିକୁ ରଚନାକରିଥିଲେ । ଏହାର ନାୟକ ସନାତନ ଦୁର୍ଭିକ୍ଷ କବଳରେ ପୀଡ଼ିତ ହୋଇ ଭିକ୍ଷାମାଗି ନିଜର ବାପ ମା' ତଥା ଛୋଟ ଭଉଣୀ କମଳୀକୁ ଯୋଗାଇଛି ଆହାର । ନିଜେ ଭୋକିଲା କଙ୍କାଳ, ଅଥଚ ଭଉଣୀ କମଳୀର ସ୍ନେହ, ବାପ ମା'ଙ୍କ ଭୋକିଲା ଆଖିକୁ ମନେପକାଇ ତା'ପାଟିକୁ ଯାଇନି

ଖାଦ୍ୟ । ସେ ବହୁ କଷ୍ଟରେ ଫେରିଛି ଦୂର ଗାଁରୁ । ନିଜ ପାଖରେ ଭିକ୍ଷାକରି ଆଣିଥିବା ଖାଦ୍ୟ ଥାଇ ମଧ୍ୟ ଅନାହାରରେ କରିଛି ମୃତ୍ୟୁବରଣ । ତା ନିଜ ଜୀବନ ଅପେକ୍ଷା ରକ୍ତର ଡାକ ହୋଇଛି ବଳବତ୍ତର । ସନାତନର ସ୍ତ୍ରୀ ଆସି ଶବକୁ ତୋଳି ଧରିଛି ଓ ମୃତ୍ୟୁବରଣ କରିଛି । ସ୍ନେହ ଓ ପ୍ରେମ କିପରି କ୍ଷୁଧାର ତାଡ଼ନାକୁ ବଳିଯାଇଛି, ତାହା ହିଁ ନାଟିକାର ପ୍ରତିପାଦିତ ବିଷୟ । 'ଅନନ୍ତ ଦାସଙ୍କ ଆତ୍ମଜୀବନୀ' ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ ଉପରେ ଏକ ବଳିଷ୍ଠ ପ୍ରାମାଣିକ ଗ୍ରନ୍ଥ । ସନାତନ ଚରିତ୍ର ବ୍ୟତୀତ ଅନ୍ୟ ଗୁଡ଼ିକ କାଳ୍ପନିକ ଚରିତ୍ର । ସନାତନ ଐତିହାସିକ ଚରିତ୍ର ନ ହେଲେ ହେଁ ଲୋକମୁଖରେ ଏହି ନାମଟି ବହୁ ପ୍ରଚଳିତ । କାହାଣୀର ଉପସ୍ଥାପନା ଓ କାହାଣୀ ସହିତ ନାନା କାଳ୍ପନିକ ପରିବେଶ ନାଟିକାଟିକୁ ସୁଖପାଠ୍ୟ କରାଇପାରିଛି ।

'ରାଜକବି ଉପେନ୍ଦ୍ର'ର କାହାଣୀଭାଗ ସଂକ୍ଷିପ୍ତ ଓ ବଳିଷ୍ଠତାବିହୀନ । ଘୁମୁସରର ସିଂହାସନ ପାଇଁ ଗୃହବିବାଦ ମଧ୍ୟରେ ଉପେନ୍ଦ୍ର ରାଜ୍ୟ ବାହାରେ କରିଛନ୍ତି ଅବସ୍ଥାନ । ରାଜ୍ୟର ପୁରୋହିତ, ନାଗରିକ ଓ ରାଜଲକ୍ଷ୍ମୀଙ୍କର ଅନୁରୋଧ ପ୍ରତ୍ୟାଖ୍ୟାନ କରି ସେ ପ୍ରକୃତି କୋଳରେ କରିଛନ୍ତି ବାଣୀ ଆରାଧନା ।

'ପୂଜାରିଣୀ'ର ବିଷୟବସ୍ତୁରେ ଚମତ୍କାରିତା ଦେଖାଯାଏ । ଏହାର ଉତ୍ସ ଏକ କିମ୍ବଦନ୍ତୀରୁ । ସତ୍ୟବାଦୀର ସାକ୍ଷୀଗୋପାଳ ଜନୈକ ବ୍ରାହ୍ମଣର ସୁନ୍ଦରୀକନ୍ୟା ଲକ୍ଷ୍ମୀର ପ୍ରେମରେ ହୁଅନ୍ତି ଆକୃଷ୍ଟ । ଲକ୍ଷ୍ମୀର ଗୃହରୁ ସାକ୍ଷୀଗୋପାଳଙ୍କର ବେଣୁ, ମୁଦ୍ରିକା ଓ ବସ୍ତ୍ର ଆଦି ମିଳେ । ମନ୍ଦିର କର୍ତ୍ତୃପକ୍ଷ ଦେବତାଙ୍କୁ ରାଧାବିରହିତ ଭାବି ଗଢ଼ାଇଲେ ସୁବର୍ଣ୍ଣ ରାଧା ପ୍ରତିମା । ପ୍ରତିମା ଗଠନ ଆରମ୍ଭ ଦିନରୁ ଲକ୍ଷ୍ମୀକୁ ହେଲା ଜ୍ୱର ଏବଂ ପ୍ରତିମା ସଂପୂର୍ଣ୍ଣ ହେବା ମାତ୍ରେ ଲକ୍ଷ୍ମୀର ହେଲା ମୃତ୍ୟୁ । ଏହି କହାଣୀକୁ ଆଧାର କରି ଡାକ୍ତର ରାମକୃଷ୍ଣ ସାହୁ ୧୮୯୧ ମସିହାରେ ରଚନା କରିଥିଲେ 'ଲକ୍ଷ୍ମୀ' କାବ୍ୟ ଏବଂ ତାହା 'ଉତ୍କଳ ପ୍ରଭା'ରେ ପ୍ରକାଶିତ ହୋଇଥିଲା । ପରେ ଏହା ପୁସ୍ତକାକାରରେ ମଧ୍ୟ ପୁନର୍ମୁଦିତ ହୋଇଥିଲା । କବି ମାନସିଂହ ନାମୋଲ୍ଲେଖ ନକଲେବି ଏହି କାବ୍ୟ ପଢ଼ିଥିବା ସମ୍ଭାବନାକୁ ଅସ୍ୱୀକାର କରାଯାଇ ନପାରେ । ମାନସିଂହ କହନ୍ତି—

> ପାଠକେ, ସ୍ମରଣ ରଖିବେ ଯେ ସାକ୍ଷୀଗୋପାଳ ଓ ଲକ୍ଷ୍ମୀର ଉପାଖ୍ୟାନ ଏକ ଉପଲକ୍ଷ୍ୟ ମାତ୍ର । ହିନ୍ଦୁ ଦେବାଦେବୀଙ୍କର ମାହାତ୍ମ୍ୟ ବା ବୈଷ୍ଣବ ଭକ୍ତି ମାର୍ଗର ପ୍ରଚାର ପାଇଁ ମୁଁ ଏ ନାଟିକା ଲେଖି ନ ଥିଲି, ମୁଁ ପ୍ରକୃତରେ ଲେଖିଥିଲି ମାନବିକ ମନସ୍ତତ୍ତ୍ୱର ଏକ ରହସ୍ୟମୟ ବିଭାବକୁ ରୂପଦେବା ପାଇଁ । ସେହି ବିଭାବଟି ହେଉଛି, ମନୁଷ୍ୟ ଚିତ୍ତ ଯେତେବେଳେ ଉନ୍ମନା ହୋଇଉଠେ ଯାହା ବା ଦୃଶ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ, ସେଥିପ୍ରତି ଆକୃଷ୍ଟ ନ ରହି ଯାହା ଅଜ୍ଞାତ, ଯାହା ଅଦୃଷ୍ଟ, ଯାହା ଦୂର ଓ ଦୁରଧିଗମ୍ୟ ତାହାରି ପାଇଁ ଗୃହ ଓ ସମାଜର ସମସ୍ତ ନିର୍ଭରତା ଓ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ପଳାୟନ କରିବା'। ...ତରୁଣ ବୟସର ଏ ଭାବ ପ୍ରତ୍ୟେକଙ୍କ ଜୀବନରେ ପ୍ରାୟ ଉଣା ଅଧିକେ ଦେଖାଦିଏ । ମୋର

ମନେହୁଏ ମାନବ ପ୍ରାଣରେ ଏହା ଉଚ୍ଚତର ଆଧାତ୍ମିକ ଜୀବନର ଅଙ୍କୁରୋନ୍ମେଷ ।
(ମା.ଗ୍ର. ୧୯୬୪, ପୃ. ୪୬୦-୬୧)

'ଶାସନଚକ୍ର' ଏକାଙ୍କିକାରେ ଗଣତନ୍ତ୍ର ରାଷ୍ଟ୍ରରେ ପ୍ରତିଭାର ଅବହେଳା ପ୍ରତି କରେ ଦୃଷ୍ଟି ଆକର୍ଷଣ । ସାଧୁ ସଚ୍ଚୋଟ କର୍ମୀମାନେ ହୁଅନ୍ତି ଦୋଷୀ । କବି ଜୀବନବନ୍ଧୁ କ୍ଷେତ୍ରର ଶ୍ରେଷ୍ଠ କବି; ମାତ୍ର ସେ ସ୍ୱାଧୀନଚେତା; ସରକାରଙ୍କୁ ତୋଷାମଦ କରି ସାହିତ୍ୟ ରଚନାର ସେ ବିରୋଧୀ । କବିର ଚେତନା ସ୍ୱାଧୀନ, ତା'ର ମନର ସୃଷ୍ଟିକୁ ସେ ଦେବ ଶ୍ରେଷ୍ଠ ସମ୍ମାନ । ଶିକ୍ଷାମନ୍ତ୍ରୀ ପଣ୍ଡିତ ଶଙ୍କର ଶର୍ମା ସରକାରୀ ସାହାଯ୍ୟ ମିଳିବା ପାଇଁ କବିଙ୍କ ନାମ କରନ୍ତି ସୁପାରିସ, ମାତ୍ର ଘରୋଇମନ୍ତ୍ରୀ ମିଷ୍ଟର ମହାରଥୀ ଏହାର କରନ୍ତି ବିରୋଧ । କର୍ମୀ ତଥା ସନ୍ନ୍ୟାସୀ ବେଶଧାରୀ ଶିଷ୍ୟାନନ୍ଦ କବିଙ୍କ ବନ୍ଧୁ । ସେ ବିଭିନ୍ନ ଉପାୟରେ କବିଙ୍କୁ କରନ୍ତି ସାହାଯ୍ୟ । ସେ ସାହାଯ୍ୟ ବା କେତେଦିନ ଯିବ ? କବି ଜୀବନବନ୍ଧୁ ଦୁଃଖ ଦାରିଦ୍ର୍ୟରେ କରନ୍ତି ମୃତ୍ୟୁବରଣ । ସରକାର ପ୍ରକୃତ ଅବସ୍ଥା ବୁଝନ୍ତି ଓ ସାହାଯ୍ୟର ବ୍ୟବସ୍ଥା କଲାବେଳକୁ ନେଡ଼ିଗୁଡ଼ ବହିଯାଇଥାଏ କହୁଣିକୁ । କାହାଣୀରେ ସରକାରଙ୍କର ଅପାରଗତା ଓ ପ୍ରତିଭାପ୍ରତି ଅବହେଳା ପ୍ରଦର୍ଶିତ । ଏହି ଏକାଙ୍କିକାରେ କବି ମାନସିଂହଙ୍କ ଜୀବନର ବାସ୍ତବ ରୂପ ପ୍ରତିଫଳିତ ।

'ପୁଷ୍ପିତା'ର କଥାବସ୍ତୁ ମାନସିଂହ ସୃଷ୍ଟିରେ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଛି । କିଶୋରୀ ନାମକ ବାଳିକାର ଯୌବନପ୍ରାପ୍ତି ନାଟିକାର ପ୍ରାଣବିନ୍ଦୁ । ସେଥିପାଇଁ ନାଟକୀୟ ପରିବେଶ ସୃଷ୍ଟି କରାଯାଇଛି । ସାଙ୍ଗସାଥି ମେଳରେ କିଶୋରୀକୁ ନେଇ ଆରମ୍ଭ ହୋଇଛି ନାନା କଥାବର୍ତ୍ତା । ଅନୂଢ଼ା ବାଳିକା ସେ ପ୍ରସଙ୍ଗ କିଛି ବୁଝିପାରିନି; ମାତ୍ର ବୟସ ବଦଳିବା ବେଳେ ଏ ସଂପର୍କରେ ପ୍ରକୃତି ତାକୁ କରିଛି ସାହାଯ୍ୟ । ପୁଷ୍ପ, ବସନ୍ତ, ମଳୟ, ପରିମଳ, କାମଦେବ କିଶୋରୀକୁ ଯୁବତୀ କରିବା ପାଇଁ ଲାଗିପଡ଼ିଛନ୍ତି । ଏହାପରେ କିଶୋରୀ ମନରେ ଦେଖାଦେଇଛି ହାହାକାର । ସେ ନିଃସଙ୍ଗ ମନେକରିଛି । ସାଥିପାଇଁ ତା ମନ ବ୍ୟାକୁଳ ହେବାବେଳେ ମଦନ ଓ ରତି କିଶୋରୀ ପ୍ରାଣର ଭାବକୁ କରିଛନ୍ତି ପରିବର୍ତ୍ତନ ।

'ପୁଷ୍ପାଭିନୟ'ର କାହାଣୀ ପ୍ରକୃତି ଓ ପରିବେଶର ଏକ ନାଟକୀୟ ଉପସ୍ଥାପନା । 'ବୁଦ୍ଧଦୂତୀ'ରେ କଳିଙ୍ଗର ରାଜବାଳା 'ହେମମାଳା' ବୁଦ୍ଧଦନ୍ତକୁ ନେଇ ବହୁ ବିପଦ ଅତିକ୍ରମି ସିଂହଳରେ ପହଞ୍ଚିଲା ପରେ ମୃତ୍ୟୁବରଣ କରିଛି ।

ନାଟକଗୁଡ଼ିକ ବିଭିନ୍ନ ପରିବେଶ ଓ ବିଭିନ୍ନ ସମୟରେ ଲିଖିତ ହୋଇଥିବାରୁ ଏହାର ଗୋଟିଏ କଥାବସ୍ତୁ ସହିତ ଅନ୍ୟ କଥାବସ୍ତୁର ବିଶେଷ ସଂପର୍କ ଥିବାର ଦେଖାଯାଏ ନାହିଁ ।

**ଚରିତ୍ର—** ମାନସିଂହଙ୍କ ନାଟକଗୁଡ଼ିକ ବହୁ ଚରିତ୍ରର କୋଳାହଳରେ ମୁଖରିତ ନୁହେଁ, ବିକାଶ ଦୃଷ୍ଟିରୁ ଅଧିକାଂଶ ଚରିତ୍ର ସରଳ । ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ପ୍ରତିପାଦନ କରିବାପାଇଁ ସେମାନେ ଯେପରି ଉପସ୍ଥିତ ହୋଇଛନ୍ତି । 'ନଷ୍ଟନୀଡ଼' ନାଟକରେ ପୂର୍ଣ୍ଣ ନିଜର ଜାତୀୟତା, ସ୍ୱାବଲମ୍ବନଶୀଳତା, ତଥା ସମାଜସଂସ୍କାର ପ୍ରବୃତ୍ତି ଶେଷ ପର୍ଯ୍ୟନ୍ତ ରକ୍ଷାକରିଛି । ନାଟକକୁ

ଟ୍ରାଜେଡ଼ିରେ ଶେଷ କରିବା ନାଟ୍ୟକାରଙ୍କର ଉଦ୍ଦେଶ୍ୟ ଥିବାରୁ ଯବନିକାର ଅଳ୍ପ ସମୟ ପୂର୍ବରୁ ପଳାୟନ କରିବାପାଇଁ ଲେଖକ ନାୟକକୁ ବାଧକରିଛନ୍ତି । ସେହିପରି ନାୟିକା ମାଧବୀର ଏକନିଷ୍ଠ ପ୍ରେମ ପ୍ରଦର୍ଶନ କରାଇବା ହିଁ ଲେଖକଙ୍କର ଉଦ୍ଦେଶ୍ୟ । 'ବାରବାଟୀ'ରେ ନରସିଂହ ଦେବଙ୍କ ଜାତୀୟ ପ୍ରୀତି, ପରାକ୍ରମ ଓ କାଞ୍ଚନମାଳାର ସାହସିକତା ତଥା ଉତ୍କଳୀୟ ପ୍ରୀତି ଦେଖାଇ ଦିଆଯାଇଛି । 'ବୁଦ୍ଧ' ନାଟକରେ ବ୍ରାହ୍ମଣ୍ୟଧର୍ମର ଅତ୍ୟାଚାରକୁ ଧ୍ୱଂସ କରି ମାନବ ପ୍ରାଣରେ ଆତ୍ମବିଶ୍ୱାସ ଜାଗ୍ରତ କରିବା ପାଇଁ ଭଗବାନ ବୁଦ୍ଧଙ୍କର ଆବିର୍ଭାବ । 'ରାଜକବି ଉପେନ୍ଦ୍ର'ରେ ଚରିତ୍ର ଚିତ୍ରଣ ଅତି ଦୁର୍ବଳ । ଉପେନ୍ଦ୍ର ଗ୍ରାମ୍ୟ ବାଳିକାଙ୍କୁ ନେଇ ଉତ୍ସବ କରିବା, ଗୀତ ଶୁଣିବା, ପ୍ରକୃତିକୁ ଉପଭୋଗ କରିବା ବ୍ୟତୀତ ଅନ୍ୟ କିଛି ଜାଣନ୍ତି ନାହିଁ । 'ସନାତନ' ଚରିତ୍ର ସେହିପରି ସ୍ନେହ ଓ ପ୍ରେମର ମହତ୍ତ୍ୱ ପ୍ରକାଶ ପାଇଁ ଆବିର୍ଭୂତ ହୋଇଛି । 'ପୂଜାରିଣୀ'ରେ ସାକ୍ଷୀଗୋପାଳ ଜଣେ ପ୍ରେମିକ ପୁରୁଷ, ଲକ୍ଷ୍ମୀ ଜଣେ ପ୍ରେମିକା । ଯୁବକଯୁବତୀ ପ୍ରାଣର ଭାଷା ଏହି ଚରିତ୍ର ଦୁଇଟି ମୁଖରେ ପ୍ରକାଶ ପାଇଛି । 'ପୁଷ୍ପିତା'ର ନାୟିକା କିଶୋରୀ ନିଜେ କିଛି କରିନି, ପରିବେଶ ଯାହା କରିଛି ସେଥିରେ ସେ ବାଧ ହୋଇ ଗତିକରିଯାଇଛି । 'ପୁଷ୍ପାଭିନୟ'ର ଚରିତ୍ର ଗୁଡ଼ିକ ପ୍ରକୃତିର ବିଭବ । ଏମାନେ ନିଜେ କିଛି କରିନାହାନ୍ତି । 'ବୁଦ୍ଧଦୂତୀ'ରେ 'ହେମମାଳା' ଦୁଃସାହସିକ ପଦକ୍ଷେପ ନେଇ କଳିଙ୍ଗରୁ ସିଂହଳ ଯାତ୍ରା କରିଛି । 'ଶାସନଚକ୍ର'ରେ କବି ଜୀବନବନ୍ଧୁ କେବଳ ନିମିତ୍ତମାତ୍ର ।

ମାନସିଂହଙ୍କ ନାଟକରେ ନାୟକନାୟିକା ଅପେକ୍ଷା କେତେକ ପାର୍ଶ୍ୱ ଚରିତ୍ର ଓ ପ୍ରତି ନାୟକମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । 'ନଷ୍ଟନୀଡ଼', 'ବାରବାଟୀ' ଓ 'ବୁଦ୍ଧ' ନାଟକରେ ପ୍ରତିନାୟକମାନଙ୍କ ବ୍ୟତୀତ ଅହୁରି ବହୁତ ଚରିତ୍ର ରହିଛନ୍ତି । ନାଟକର ପ୍ରବାହ ମଧ୍ୟରେ ସେମାନେ କେବଳ ଆସି ଉପସ୍ଥିତ ହୋଇଛନ୍ତି । ଐତିହାସିକ ଚରିତ୍ର ଭାବରେ ଆନନ୍ଦ, ଦେବଦତ୍ତ, କିସା, ଶୁଦ୍ଧୋଦନ, ଉପାଳୀ, ଗୋପା, ଛନ୍ଦକ, ଆମ୍ରପାଲ୍ଲୀ ଆଦି ଓ କାଳ୍ପନିକ ଚରିତ୍ର ଭାବରେ ପୁରୋହିତ, ପ୍ରଜାବତୀ, ସୁମିତ୍ରା, ଆଚାର୍ଯ୍ୟ ବିପ୍ରଜିତ ଶ୍ରେଷ୍ଠୀ ଆଦି ନାଟକର ବିକାଶ ପାଇଁ ସଂଯୋଜିତ ହୋଇଛନ୍ତି । ଏଥିରେ ମଧ୍ୟ ସ୍ୱର୍ଗର ଦେବତାମାନଙ୍କୁ ନାଟକର ପ୍ରସ୍ତାବନାରେ ଚରିତ୍ର ଭାବରେ ନିଆଯାଇଛି– ଯଥା ବ୍ରହ୍ମା, ବିଷ୍ଣୁ, ଗୌରୀ, ଶିବ ଓ ପୃଥିବୀ । ମାନବର କେତେକ ଗୁଣ ବା ପ୍ରକୃତି, ଯଥା ବିବେକ ଓ ମାରଙ୍କ ଠାରେ ମଧ୍ୟ ବ୍ୟକ୍ତିତ୍ୱ ଆରୋପ କରାଯାଇଛି ।

'ଦୁର୍ଭିକ୍ଷ' ନାଟିକାରେ ସନାତନ ଚରିତ୍ରକୁ ଜୀବାନନ୍ଦ, ଶିବାନନ୍ଦ, କାଶୀ, କାଙ୍ଗାଳଦଳ ଓ ପାଦ୍ରୀଦ୍ୱୟ ସ୍ପଷ୍ଟ କରିଛନ୍ତି । ନାଟିକାକୁ ପ୍ରାଣପୂର୍ଣ୍ଣ କରିବା ପାଇଁ ସନାତନର ପିତା, ମାତା, କମଳୀ ଓ ପୀତେଇ ନାନୀର ଉପସ୍ଥିତି । 'ରାଜକବି ଉପେନ୍ଦ୍ର'ରେ ଉପେନ୍ଦ୍ର ଚରିତ୍ର ବ୍ୟତୀତ ପୁରୋହିତ, ବଣ୍ୟ ସର୍ଦ୍ଦାର, ନାଗରିକ, ବନବାଳକ-ବାଳିକା ଚରିତ୍ର ରହିଛି । ଏହା ବ୍ୟତୀତ ରାଜଲକ୍ଷ୍ମୀ ଓ ସରସ୍ୱତୀ ଚରିତ୍ର ନାଟକରେ ବିଦ୍ୟମାନ ।

'ପୂଜାରିଣୀ'ରେ ଦେବତା ଓ ଲକ୍ଷ୍ମୀ ବ୍ୟତୀତ ବେଲେଶ୍ୱର ମହାପାତ୍ର, ମହାପାତ୍ରୀ, ପୂଜାରୀ, ପୂଜକ ପତ୍ନୀ, ସୁନାରୀ, ସୁନାରିଣୀ, ଲକ୍ଷ୍ମୀର ସାଙ୍ଗ, ଦେବଦାସୀ ଚରିତ୍ର ରହିଛି । ଏମାନେ କେବଳ ନାୟକନାୟିକାଙ୍କୁ ବଳିଷ୍ଠ ରୂପ ପ୍ରଦାନ କରିବା ପାଇଁ ରହିଛନ୍ତି । 'ପୁଷ୍ପିତା'ରେ କିଶୋରୀର ବନ୍ଧୁ ହେମା, ସରଳା, ଚଣ୍ଡୀ ନାୟିକା ମନର ଭାବକୁ ପ୍ରକାଶ ପାଇଁ ଉଦ୍ଦିଷ୍ଟ । ନାଟକଗୁଡ଼ିକ ମଧ୍ୟରୁ ଅଧିକାଂଶ ଉଦ୍ଦେଶ୍ୟଧର୍ମୀ ହୋଇଥିବାରୁ ଚରିତ୍ରଗୁଡ଼ିକର ବ୍ୟକ୍ତିତ୍ୱ ଓ ବିକାଶ ଦୃଷ୍ଟିରୁ କୃତ୍ରିମ । 'ନଷ୍ଟନୀଡ଼' ଓ 'ଶାସନଚକ୍ର'ର ଚରିତ୍ର ସବୁ ଅନେକାଂଶରେ ବ୍ୟତିକ୍ରମ ।

**ସଂଳାପ—** ସଂଳାପ ସାହାଯ୍ୟରେ ନାଟ୍ୟକାର ନାଟ୍ୟକାହାଣୀ ବ୍ୟକ୍ତକରି ଚରିତ୍ରକୁ ପରିସ୍ଫୁଟ କରିଥାନ୍ତି । କାହାଣୀର ଉଦ୍ଦେଶ୍ୟକୁ ଚରିତ୍ରର ସଂଳାପ ସାହାଯ୍ୟରେ ପ୍ରକାଶ କରି ରସ ସୃଷ୍ଟି କରିଥା'ନ୍ତି । ନାଟକରେ ଚରିତ୍ରର ଭାଷା ପାତ୍ରମୁଖୀ ଓ ବାସ୍ତବ ହେବା ଦରକାର । ସଂଳାପକୁ ହୃଦୟସ୍ପର୍ଶୀ କରିବାକୁ ଯାଇ ମାନସିଂହ ସ୍ଥାନେ ସ୍ଥାନେ ତାହା କବିତ୍ୱମୟ କରିଛନ୍ତି ।

'ନଷ୍ଟନୀଡ଼'ର ପରିବେଶ କଟକ ସହର ଓ ଚରିତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଶିକ୍ଷିତ । ଏମାନଙ୍କର ଯେଉଁ ପ୍ରକାର ସଂଳାପ ଉଚ୍ଚାରଣ କରିବା କଥା ତାହା ସଫଳତା ଲାଭ କରିଛି । ରାଧୀ, କମଳୀ ଓ ମଧୁବାବୁଙ୍କ ସ୍ତ୍ରୀଙ୍କ ସଂଳାପ ମଧ୍ୟ ପାତ୍ରମୁଖୀ ହୋଇଛି । କେତେକ ସ୍ଥାନରେ ଦୀର୍ଘ ଓ ଅସଂଗତ ସଂଳାପ ରହିଛି କିନ୍ତୁ ଆବଶ୍ୟକ ସ୍ଥଳେ ବଳିଷ୍ଠ ସଂକ୍ଷିପ୍ତ ସଂଳାପର ପ୍ରୟୋଗ ହୋଇଛି । ଉଦାହରଣ ସ୍ୱରୂପ—

ମାଧବୀ— (ନୀରବ)

କିଶୋର— ଲାଜନାହିଁ ତୁମର ? ଭାଇକୁ ଦୂତ କରି ପ୍ରେମିକଠୁ ଚିଠି ଆସୁଛି ! କି ବ୍ୟଭିଚାର !

ମାଧବୀ— ମିଥ୍ୟା— ମିଥ୍ୟା କଥା ।

କିଶୋର— ସବୁ ମିଥ୍ୟା... କେବଳ ତୁମର ସତୀତ୍ୱହିଁ ସତ ! ନା ?

ମାଧବୀ— ସତୀତ୍ୱ ସତୀତ୍ୱ କହି ମୋତେ ଆଉ ପରିହାସ କରନି ।

କିଶୋର— ଓଃ ବାଧି ଯାଉଛି ଯେ, ସତକଥା କହିଲେ ସମସ୍ତଙ୍କୁ ବାଧେ ଯେ ।

(ମା.ଗ୍ର. ୧୯୬୪. ପୃ. ୫୯୨)

'ବାରବାଟୀ' ନାଟକ ଐତିହାସିକ ପୃଷ୍ଠଭୂମିରେ ଲେଖାହୋଇଥିବାରୁ ବିଭିନ୍ନ ସଂଳାପରେ ଐତିହାସିକ ଗାମ୍ଭୀର୍ଯ୍ୟ ରକ୍ଷାକରିବାକୁ ନାଟ୍ୟକାର ଚେଷ୍ଟା କରିଛନ୍ତି । ରାଜା ବା ସାମନ୍ତମାନେ ରାଜସଭାରେ ଅମିତ୍ରାକ୍ଷର ସଂଳାପ ବ୍ୟବହାର କରୁଥିବା ସ୍ଥଳେ ସାଧାରଣ ସମୟରେ ବା ରାଜଅନ୍ତଃପୁରରେ ସାଧାରଣ ଲୋକଭାଷା ବ୍ୟବହାର କରିଛନ୍ତି । ବ୍ୟକ୍ତିର ପାରିବାରିକ ଜୀବନ ଓ ସାମାଜିକ ଜୀବନ ଦେଖାଇବା ବୋଧହୁଏ ନାଟ୍ୟକାରଙ୍କର

ଲକ୍ଷ୍ୟ । ଏହା ବ୍ୟତୀତ ସାଧାରଣ ଦୂତ, ସଦସ୍ୟ ବଳରାମ, ପୁରୋହିତ, ମୁସଲମାନ ସୈନ୍ୟ ଓ ମୌଲବୀମାନଙ୍କ ମଧ୍ୟରେ ସେମାନଙ୍କ ଉପଯୋଗୀ ଭାଷା ପ୍ରୟୋଗ କରିଛନ୍ତି । ସୂକ୍ଷ୍ମ ଭାବରେ ପର୍ଯ୍ୟବେକ୍ଷଣ କଲେ, ନାଟକର ସମସ୍ତ ଚରିତ୍ର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ନିଜ ସଂଳାପ ମାଧ୍ୟମରେ ଉତ୍କଳର ଗୌରବ ଗାନ କରିଛନ୍ତି । ଏଥିରେ ନାଟ୍ୟକାରଙ୍କ ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଛି ।

'ବୁଦ୍ଧ' ନାଟକରେ ନାଟ୍ୟକାର ସମସ୍ତଙ୍କୁ ଓଡ଼ିଶାର ପରିବେଶରେ ରଖିବାକୁ ଚେଷ୍ଟା କରିଛନ୍ତି । ତେଣୁ ଚରିତ୍ରଗୁଡ଼ିକ ବାଧ୍ୟହୋଇ ଐତିହାସିକ ସ୍ତରରୁ ଆସି ସାମାଜିକ ସ୍ତରରେ ପହଞ୍ଚି ଯାଇଛନ୍ତି । 'ସିଦ୍ଧାର୍ଥ'ଙ୍କୁ 'ବୁଦ୍ଧ'ରେ ପରିଣତ କରିବା ପାଇଁ ଯେଉଁ ପରିବେଶ ଦରକାର ତାହା ସଂଳାପ ମାଧ୍ୟମରେ ସଫଳ ହୋଇଛି । ପାର୍ଶ୍ୱ ଚରିତ୍ରମାନଙ୍କର ସଂଳାପରେ କେତେକ ତ୍ରୁଟି ରହିଛି । ଦ୍ୱିତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ଛନ୍ଦକ ସ୍ତ୍ରୀ ଯେଉଁ ସଂଳାପ ବ୍ୟବହାର କରିଛି ବାସ୍ତବ ଜୀବନରେ ତାହା ସମ୍ଭବ ଓ ତାହା ବାସ୍ତବ । ମାତ୍ର ସେହି ଉକ୍ତିଗୁଡ଼ିକରେ ଐତିହାସିକ ନାଟକର ଗାମ୍ଭୀର୍ଯ୍ୟ ରକ୍ଷା କରାଯାଇପାରିନାହିଁ । ଏ ସଂଳାପର ଅବର୍ତ୍ତମାନରେ ମୂଳ ନାଟକର କିଛି କ୍ଷତି ହୋଇ ନ ଥାନ୍ତା ।

'ରାଜକବି ଉପେନ୍ଦ୍ର' ନାଟ୍ୟକାରଙ୍କର ପ୍ରଥମ ରଚନା ହୋଇଥିବାରୁ ଏଥିରେ ନାଟକର ଗାମ୍ଭୀର୍ଯ୍ୟ ପରିବର୍ତ୍ତେ ନାଟ୍ୟକାର ନିଜର କବିତ୍ୱ ହିଁ ଫୁଟାଇଛନ୍ତି । 'ପୁଷ୍ପିତା'ର ପରିବେଶ ସଂପୂର୍ଣ୍ଣ ଗ୍ରାମୀଣ । ଗାଁରେ ଅନୂଢ଼ା ବାଳିକାମାନଙ୍କର ନିରୋଳା ସ୍ଥାନର କଥୋପକଥନକୁ ମାନସିଂହ ଲକ୍ଷ୍ୟ କରିଥିବାରୁ ସଂଳାପଗୁଡ଼ିକ ସ୍ୱାଭାବିକ ହୋଇଛି । ତୃତୀୟ ଦୃଶ୍ୟରେ ଦୀର୍ଘ ସ୍ୱଗତୋକ୍ତି ପ୍ରତ୍ୟେକ କିଶୋର କିଶୋରୀଙ୍କର ଅନ୍ତରର ବାଣୀ । ସେହି ଦୃଶ୍ୟରେ ହେମାର ସଂଳାପରେ ପ୍ରେମର ମୂଳଉତ୍ସ ଖୋଜିବାକୁ ଯାଇଛନ୍ତି । 'ପୂଜାରିଣୀ' ଏକ କାବ୍ୟ-ନାଟିକା । ଏଠାରେ ସଂଳାପ ଦୀର୍ଘ ଓ କବିତ୍ୱମୟ । ବଳିଷ୍ଠ ଶବ୍ଦ ସଂଯୋଜନା ଯୋଗୁ ଏହା ହୃଦୟସ୍ପର୍ଶୀ । ସ୍ଥାନେ ସ୍ଥାନେ ଏତେ ଦୀର୍ଘ ସଂଳାପ ରହିଛି ଯାହା ନାଟକରେ ଦର୍ଶକର ଧୈର୍ଯ୍ୟଚ୍ୟୁତି ଘଟାଏ । ତେଣୁ କୁହାଯାଇପାରେ ରଙ୍ଗମଞ୍ଚପାଇଁ ଏହା ଅନୁପଯୁକ୍ତ ହେଲେ ମଧ୍ୟ କାବ୍ୟ-ନାଟିକା ଦୃଷ୍ଟିରୁ ଏହା ବେଶ୍ ସଫଳ । 'ଦୁର୍ଭିକ୍ଷ' ସେହିପରି ଏକ କାବ୍ୟ-ନାଟିକା । ଏହାର ସଂଳାପ ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ସଂଳାପଗୁଡ଼ିକ ପାତ୍ରମୁଖୀ ଓ ପରିବେଶକୁ ଗୁରୁଗମ୍ଭୀର କରିବାରେ ସମର୍ଥ । ବୁଭୁକ୍ଷୁ କଙ୍କାଳ ମୁଖରେ ସଂକ୍ଷିପ୍ତ ସଂଳାପ ଦେଲାବେଳେ ଜୀବାନନ୍ଦ ଓ ଶିବାନନ୍ଦଙ୍କ ପରି ବଳିଷ୍ଠ ସନ୍ନ୍ୟାସୀଙ୍କ ମୁଖରେ ଦୀର୍ଘ ସଂଳାପ ସଂଯୋଜନ କରାଯାଇଛି । ଏହାଦ୍ୱାରା ଦୁର୍ଭିକ୍ଷର ସ୍ପଷ୍ଟ ଚିତ୍ର ଦର୍ଶକ ବା ପାଠକ ମନରେ ପ୍ରତିଫଳିତ ହୋଇପାରୁଛି ।

'ବୁଦ୍ଧଦୂତୀ'ରେ ସଂଳାପ ନାହିଁ । ଏହା ଗୀତିନାଟ୍ୟ ହୋଇଥିବାରୁ ଏଥିରେ ଚରିତ୍ର କେବଳ ମୂକ ଅଭିନୟ କରିଛି । 'ପୁଷ୍ପାଭିନୟ' ମଧ୍ୟ ସେହି ଧରଣର । ମାନସିଂହଙ୍କ 'ସଂଳାପ' ରଚନାର ସାର୍ଥକତା ପ୍ରାପ୍ତ ବୟସରେ ଲିଖିତ 'ଶାସନଚକ୍ର' ଏକାଙ୍କିକାରେ ଦେଖିବାକୁ ମିଳେ । ଏହାର କାହାଣୀ ଯେପରି ବଳିଷ୍ଠ ସଂଳାପ ମଧ୍ୟ ସେହିପରି ଉନ୍ନତ ।

ଗଭର୍ଣ୍ଣର, ମିଷ୍ଟର ମହାରଥୀ, ଶର୍ମାଙ୍କ ମୁଖରେ ରାଜନୀତିଜ୍ଞ-ସୁଲଭ ସଂଳାପ ଦେଲାବେଳେ ଜୀବନବନ୍ଧୁ, ସୁକାନ୍ତି ଓ ଶିଷ୍ୟାନନ୍ଦଙ୍କ ମୁଖରେ ଉଚ୍ଚ ଆଦର୍ଶବାଦର ସଂଳାପ ସଂଯୋଜିତ ହୋଇଛି । ପ୍ରତ୍ୟେକ ସଂଳାପରେ ନାଟକୀୟ ଉତ୍କଣ୍ଠା ରକ୍ଷା କରାଯାଇ ପାରିଛି ।

ନାଟକ ଓ ନାଟିକାର ସଂଳାପ ଓ ସଂଯୋଜନାକୁ ସାମଗ୍ରିକ ଭାବରେ ବିଚାର କଲେ ନାଟ୍ୟକର ମାନସିଂହଙ୍କ ଭାବପ୍ରବଣତା ପାଠକଙ୍କୁ ଅଭିଭୂତ କରେ ।

**ଦ୍ୱନ୍ଦ୍ୱ—** ନାଟକୀୟ ଦ୍ୱନ୍ଦ୍ୱର ସୁଷମ ବିକାଶ ଉପରେ ନାଟକର ସଫଳତା ବହୁ ଭାବରେ ନିର୍ଭର କରେ । ଦ୍ୱନ୍ଦ୍ୱ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ— ଅନ୍ତର୍ଦ୍ୱନ୍ଦ୍ୱ ଓ ବହିର୍ଦ୍ୱନ୍ଦ୍ୱ । ନାଟକରେ ବହିର୍ଦ୍ୱନ୍ଦ୍ୱ ଅପେକ୍ଷା ଅନ୍ତର୍ଦ୍ୱନ୍ଦ୍ୱର ମହତ୍ତ୍ୱ ଅଧିକ । ନାଟ୍ୟକାରଙ୍କ ଦକ୍ଷତା ଅନୁସାରେ ଅନ୍ତର୍ଦ୍ୱନ୍ଦ୍ୱ ଚିତ୍ରିତ ହୋଇଥାଏ । ପ୍ରବୃତ୍ତି ସହିତ ନିବୃତ୍ତିର, ହୃଦୟବୃତ୍ତି ସହିତ କର୍ତ୍ତବ୍ୟବୋଧର, ସମାଜ ଚେତନା ସହିତ ବ୍ୟକ୍ତିଚେତନାର, ଆଦର୍ଶ ସହିତ ବାସ୍ତବର, ନାନା ବିଚିତ୍ର ଦ୍ୱନ୍ଦ୍ୱ ମାନବ ମନରେ ଦେଖା ଦେଇଥାଏ । ବହିର୍ଦ୍ୱନ୍ଦ୍ୱରେ ସାଧାରଣତଃ ଦୈବୀଶକ୍ତି ବିରୋଧରେ ମାନବ ଶକ୍ତି, ମନୁଷ୍ୟ ସହିତ ସମାଜ ଓ ବ୍ୟକ୍ତି ମଧ୍ୟରେ ସଂଘର୍ଷ ଦେଖାଯାଏ । ଆଧୁନିକ ନାଟକରେ ମାଲିକ ଶ୍ରମିକ ବିରୋଧରେ, ପୁଞ୍ଜିବାଦ ସମାଜବାଦ ବିରୋଧରେ ତଥା ଯନ୍ତ୍ର ଓ ଜୀବନର ପ୍ରତିଦ୍ୱନ୍ଦ୍ୱିତା ଆଦି ବିବିଧ ସଂଘର୍ଷ ଦେଖାଯାଏ ।

'ନଷ୍ଟନୀଡ଼'ର ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ସମାଜର ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ମଧ୍ୟରେ ଦ୍ୱନ୍ଦ୍ୱର ସୂଚନା ମିଳିଛି । ଏହା ବ୍ୟତୀତ ପୂର୍ଣ୍ଣର ଆଦର୍ଶ ତାଙ୍କ ପରିବାରର ଆଦର୍ଶଗତ ଦ୍ୱନ୍ଦ୍ୱ ନାଟକ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗତି କରିଛି । ମାଧବୀର ବିବାହ ପରେ କିଶୋର ମନରେ ଅନ୍ତର୍ଦ୍ୱନ୍ଦ୍ୱ ଆରମ୍ଭ ହୋଇ ଗତି କରିଛି । ଏ ନାଟକରେ ଆଦର୍ଶବାଦ ଓ ବାସ୍ତବବାଦର ସଂଘର୍ଷ ହିଁ ଲାଗିରହିଛି ।

'ବାରବାଟୀ' ନାଟକ ଐତିହାସିକ ପୃଷ୍ଠଭୂମିରେ ରଚିତ । ଏଥିରେ ନାଟ୍ୟକାର କୌଣସି ବିଶିଷ୍ଟ ଦ୍ୱନ୍ଦ୍ୱର ସୂତ୍ରପାତ କରି ନାହାନ୍ତି । ମୂଳରୁ ଶେଷ ପର୍ଯ୍ୟନ୍ତ ରାଜନୈତିକ ସଂଘର୍ଷ ରହିଥିଲେ ମଧ୍ୟ ତାହା ଏତେ ବଳିଷ୍ଠ ନୁହେଁ । ପ୍ରସ୍ତାବନାର ଧର୍ମଗତ ସଂଘର୍ଷର ପରିବେଶ 'ବୁଦ୍ଧ' ନାଟକଟିରେ ଶେଷ ପର୍ଯ୍ୟନ୍ତ ବିଦ୍ୟମାନ । ଏହା ବ୍ୟତୀତ ସିଦ୍ଧାର୍ଥଙ୍କ ମନରେ ଦେଖାଦେଇଥିବା ଭାବକୁ ନାଟ୍ୟକାର 'ମାର' ଓ 'ବିବେକ' ଚରିତ୍ର ସୃଷ୍ଟିକରି ଦେଖାଇଦେଇଛନ୍ତି । 'ଦୁର୍ଭିକ୍ଷ' ନାଟିକାରେ ସ୍ନେହ ଓ ସ୍ୱାର୍ଥ ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଯାଇଛି । ସାମୟିକ ଭାବରେ କେତେକ ଦୁର୍ଭିକ୍ଷ ପ୍ରପୀଡ଼ିତ ଚରିତ୍ରରେ ପଶୁ ପ୍ରବୃତ୍ତି ଓ ମାନବିକ ପ୍ରବୃତ୍ତି ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଯାଇଛି । 'ବୁଦ୍ଧଦୂତୀ'ରେ ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ସଂଘର୍ଷରୁ 'ରାଜବାଳା ହେମମାଳା'ର ଅନ୍ତର୍ଦ୍ୱନ୍ଦ୍ୱ ଦେଖାଯାଇଛି । 'ରାଜକବି ଉପେନ୍ଦ୍ର'ରେ ବ୍ୟକ୍ତି ମଧ୍ୟରେ ଦ୍ୱନ୍ଦ୍ୱ ଲାଗିରହିଚି । ଉପେନ୍ଦ୍ରଙ୍କ ମନରେ ରାଜଶକ୍ତି ଓ ବାଣୀ ଆରାଧନାର ଦ୍ୱନ୍ଦ୍ୱ ସୃଷ୍ଟିପାଇଁ ନାଟ୍ୟକାର ଯେଉଁ ଚେଷ୍ଟା କରିଛନ୍ତି ସେଥିରେ ବିଫଳ ହୋଇଛନ୍ତି । 'ପୁଷ୍ପିତା' ନାଟିକାରେ କୁମାରୀ କିଶୋରୀ ମନରେ ଅନ୍ତର୍ଦ୍ୱନ୍ଦ୍ୱ କେବଳ ଦେଖାଦେଇଛି । ଏହି ଚିତ୍ରଟି ଦେଖାଇବା ପାଇଁ ନାଟ୍ୟକାର ସମଗ୍ର ନାଟକକୁ ଗଢ଼ି ତୋଳିଲା ପରି ମନେହୁଏ ।

'ପୂଜାରିଣୀ' କାବ୍ୟ-ନାଟିକାରେ ହୃଦୟ ହୃଦୟ ମଧ୍ୟରେ ଦ୍ୱନ୍ଦ ସୃଷ୍ଟି ହୋଇଛି । ବ୍ୟକ୍ତିଗତ ପ୍ରେମ ମଧ୍ୟରେ ଦ୍ୱନ୍ଦ ସୃଷ୍ଟିହୋଇ ଲକ୍ଷ୍ମୀର ମୃତ୍ୟୁରେ ଏହି ସଂଘର୍ଷର ଅବସାନ ହୋଇଛି ।

'ଶାସନଚକ୍ର' ଏକାଙ୍କିକାର ପ୍ରଥମ ଦୃଶ୍ୟରେ ସରକାରୀ ଶାସନ କଳରେ ଦ୍ୱନ୍ଦ ଆରମ୍ଭ ହୋଇଛି । ଏ ଦ୍ୱନ୍ଦର କାରଣ ଉନ୍ମୋଚନ କରିବା ପାଇଁ ପୂର୍ବ ଘଟଣାଗୁଡ଼ିକ ଦେଖାଇ ଦିଆଯାଇଛି । କବି ଜୀବନବନ୍ଧୁ ପଟ୍ଟନାୟକଙ୍କ ବ୍ୟକ୍ତିଗତ ଜୀବନ ପାଇଁ ଶିକ୍ଷାମନ୍ତ୍ରୀ ଓ ଘରୋଇମନ୍ତ୍ରୀଙ୍କ ମଧ୍ୟରେ ସଂଘର୍ଷ ହୋଇଛି । ପର୍ଯ୍ୟାୟ କ୍ରମେ ଏଥିରେ ଦେଖାଦେଇଛନ୍ତି ସନ୍ନ୍ୟାସୀ ଶିକ୍ଷକ ଶିଷ୍ୟାନନ୍ଦ । ତାଙ୍କ ଆଦର୍ଶ ସହିତ ସରକାରୀ ଶାସନ କଳର ସାମାନ୍ୟ ଦ୍ୱନ୍ଦର ସୂଚନା ମିଳେ ।

**ଉତ୍କଣ୍ଠା—** ନାଟ୍ୟକାର କିଛି କହି କିଛି ଅକୁହା ଭାବରେ ଛାଡ଼ିଦେଇଥାନ୍ତି । ଦର୍ଶକ ଅଜ୍ଞାତ ଘଟଣା ଜାଣିବା ପାଇଁ ଉତ୍କଣ୍ଠିତ ହୋଇ ବସିରହେ । ନାଟକରେ ଯେତେ ଉତ୍କଣ୍ଠା ସୃଷ୍ଟି ହୋଇପାରିବ ଦର୍ଶକ ସେତେ କୌତୂହଳୀ ହୋଇ ପରିଣତି ପର୍ଯ୍ୟନ୍ତ ଅପେକ୍ଷା କରି ରହିବେ । 'ନଷ୍ଟନୀଡ଼'ର ପ୍ରଥମ ଅଙ୍କ ଶେଷରେ ଦର୍ଶକ ଦେଖେ, ମାଧବୀ ଓ ପୂର୍ଣ୍ଣ ମଧ୍ୟରେ ବିବାହର ସିଦ୍ଧାନ୍ତ ହୋଇଯାଇଛି; ମାତ୍ର ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟ ଶେଷରେ ପୂର୍ଣ୍ଣ ପରୀକ୍ଷାରେ ଫେଲ ହେବା, ନିଜର ବାପା ଓ ବଡ଼ଭାଇଙ୍କ ସାଙ୍ଗରେ ଦ୍ୱନ୍ଦ ଲାଗିବାରେ ଦର୍ଶକ ମନରେ ଆଶଙ୍କା ହୁଏ ଫଳ କ'ଣ ହେବ ? ତୃତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ମଧୁବାବୁଙ୍କ ଶ୍ୱଶୁର ଯେତେବେଳେ ମାଧବୀର ବିବାହ ପ୍ରସ୍ତାବ ଅନ୍ୟତ୍ର ଠିକ୍ କରନ୍ତି ଦର୍ଶକ ମନରେ ଉତ୍କଣ୍ଠା ସେତେବେଳେ ବଢ଼ିଯାଏ । ସେହି ଅଙ୍କର ତୃତୀୟ ଦୃଶ୍ୟରେ ମଧୁବାବୁ ପୂର୍ଣ୍ଣକୁ ଅପମାନିତ କରି ଫେରାଇଦେବାପରେ ପୂର୍ଣ୍ଣପ୍ରତି ଦର୍ଶକ ସହାନୁଭୂତିଶୀଳ ହୋଇଉଠେ । ପଞ୍ଚମ ଅଙ୍କର ତୃତୀୟ ଦୃଶ୍ୟରେ ପୂର୍ଣ୍ଣ ଫେରାଇଦେବା ଚିଠି ଯେତେବେଳେ କିଶୋର ନେଇ ପଢ଼ିଛି ଓ ମାଧବୀକୁ ଏ ବିଷୟରେ ନାନା ପ୍ରଶ୍ନ କରିଛି, ସେତେବେଳେ ପାଠକ ନାଟକର ପରିଣତି ପାଇଁ ଉତ୍କଣ୍ଠିତ ହୋଇ ଚାହିଁରହେ । ଉତ୍କଣ୍ଠାର ମୋଚନ ପରେ ନାଟକ ଶେଷହୋଇଯାଇଛି ।

'ବାରବାଟୀ' ନାଟକର ପ୍ରଥମ ଅଙ୍କରେ ମୁସଲମାନ ଆକ୍ରମଣର ସାମାନ୍ୟ ସୂଚନା ନେଇ ନାଟ୍ୟକାର ଯେଉଁ ଉତ୍କଣ୍ଠା ସୃଷ୍ଟି କଲେ ତାହା ନାଟକର ଶେଷ ପର୍ଯ୍ୟନ୍ତ ରହିଛି । ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ନରସିଂହ ଦେବଙ୍କର ହଠାତ୍ ଯୁଦ୍ଧ ଯାତ୍ରା କେତେକାଂଶରେ ଉତ୍କଣ୍ଠା ସୃଷ୍ଟି କରିଛି । ତାପରେ ହଠାତ୍ ଜଳେଶ୍ୱର ଦୁର୍ଗକୁ ମୁସଲମାନମାନଙ୍କର ଆକ୍ରମଣ ବେଳେ ନରସିଂହ ଦେବ ଅନୁପସ୍ଥିତ ରହିଛନ୍ତି । ତୃତୀୟ ଅଙ୍କର ପ୍ରଥମ ଦୃଶ୍ୟରେ ଜଳେଶ୍ୱର ଦୁର୍ଗର ଲୋକମାନେ ବନ୍ଦୀହୋଇ ରହିଛନ୍ତି । ବାହାରୁ ସାହାଯ୍ୟ କିମ୍ବା ଖାଦ୍ୟସାମଗ୍ରୀ ପହଞ୍ଚିନାହିଁ । ସେତେବେଳର ଅବସ୍ଥା ବିଷୟରେ ସାମାନ୍ୟ ଉତ୍କଣ୍ଠା ଆସେ । ପରେ ତୃତୀୟ ଅଙ୍କର ଶେଷ ଦୃଶ୍ୟରେ ନରସିଂହ ଦେବ ଓ ଓଡ଼ିଆ ସୈନ୍ୟଙ୍କର ପ୍ରବେଶ ସମୟର ଯେଉଁ ପ୍ରତିଜ୍ଞା, ତାହା ପାଠକକୁ ଉତ୍କଣ୍ଠିତ କରେ । ମାତ୍ର ଚତୁର୍ଥ ଅଙ୍କର ପ୍ରଥମ ଦୃଶ୍ୟରେ

ଅତି ସଂକ୍ଷିପ୍ତ ଭାବରେ ତାହାର ଅବସାନ ହୋଇଛି । 'ବୁଦ୍ଧ' ନାଟକର ପ୍ରସ୍ତାବନାରେ ନାଟ୍ୟକାର କିଛି ଉତ୍କଣ୍ଠା ସୃଷ୍ଟି ପାଇଁ ଚେଷ୍ଟା କରିଛନ୍ତି । ମାତ୍ର ଏହାର ଗଳ୍ପାଂଶ ବହୁପ୍ରଚଳିତ ହୋଇଥିବାରୁ ବିଶେଷ ଉତ୍କଣ୍ଠା ରକ୍ଷା କରିପାରି ନାହାନ୍ତି । 'ଦୁର୍ଭିକ୍ଷ' ନାଟିକାର ପ୍ରଥମ ଦୃଶ୍ୟରେ ନ'ଅଙ୍କ ଦୁର୍ଭିକ୍ଷର ସୂଚନା ଦେବା ପରେ ଦର୍ଶକ ମନରେ ତା'ର ପରିଣତି ପାଇଁ ଉତ୍କଣ୍ଠା ଦେଖାଦେଇଛି । 'ପୁଷ୍ପିତା' ନାଟିକା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଉତ୍କଣ୍ଠା ରକ୍ଷା କରିପାରିଛି । ଏହାର ପରିବେଶ ଖୁବ୍ ସୀମିତ ହୋଇଥିବାରୁ ଶୀଘ୍ର ଶୀଘ୍ର ପାଠକର ଆଶଙ୍କାର ଅବସାନ ଘଟେ ।

'ପୂଜାରିଣୀ' କାବ୍ୟ-ନାଟିକାର ତୃତୀୟ ଦୃଶ୍ୟରେ ଦେବଦତ୍ତ ଓ ଲକ୍ଷ୍ମୀଙ୍କର କଥୋପକଥନରେ ଯେଉଁ ଉତ୍କଣ୍ଠା ଆସିଛି, ତା'ର ଅବସାନ ସେହି ଦୃଶ୍ୟରେ ହୋଇଯାଇଛି । ପଞ୍ଚମ ଦୃଶ୍ୟରେ ଲକ୍ଷ୍ମୀଙ୍କୁ ଜ୍ୱର ହେବା ଓ ସୁନାର ରାଧା ପ୍ରତିମା ଗଢ଼ାହେବା ବିଷୟରେ ନାଟ୍ୟକାର ଉତ୍କଣ୍ଠା ରକ୍ଷା କରିବାକୁ ଚେଷ୍ଟା କରିଛନ୍ତି । 'ନଷ୍ଟନୀଡ଼'କୁ ଛାଡ଼ିଦେଲେ ଉତ୍କଣ୍ଠା ଦୃଷ୍ଟିରୁ କୌଣସି ନାଟକରେ ଆଶାଜନକ ସଫଳତା ମିଳିନାହିଁ ।

**ସଙ୍ଗୀତ—** ଆଧୁନିକ ନାଟକରେ ମଞ୍ଚସଙ୍ଗୀତ ପ୍ରତି ଗୁରୁତ୍ୱ ଆରୋପ କରାଯାଉନାହିଁ । ପ୍ରଚ୍ଛଦ ସଙ୍ଗୀତ ବା ଯନ୍ତ୍ର ସଙ୍ଗୀତରେ ନାଟକୀୟ ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ଚେଷ୍ଟା କରାଯାଏ । ଖ୍ରୀ: ୧୯୨୫ରୁ ୧୯୫୫ ମସିହା ମଧ୍ୟରେ ମାନସିଂହଙ୍କ ସମସ୍ତ ନାଟକ ଲେଖାହୋଇଛି । ଖ୍ରୀ: ୧୯୪୯ ମସିହା ବେଳକୁ ମନୋରଞ୍ଜନ ଦାସଙ୍କ 'ଆଗାମୀ' ଭଳି ନାଟକରେ ସଙ୍ଗୀତକୁ ଉଠାଇ ଦେବାକୁ ଚେଷ୍ଟା ହୋଇଥିଲେ ମଧ୍ୟ ସଙ୍ଗୀତର ପରମ୍ପରା ବହୁତ ଦିନ ଧରି ଚାଲିଆସିଛି । ନାଟକ ରଚନା କ୍ଷେତ୍ରରେ ମାନସିଂହ ପରମ୍ପରାବାଦୀ ଥିଲେ । ତେଣୁ ସେ ନାଟକର ବହୁଳାଂଶରେ ସଙ୍ଗୀତର ବ୍ୟବହାର କରିଛନ୍ତି । ଏ ଗୁଡ଼ିକ ମଧ୍ୟରୁ କେତେକର ଆବଶ୍ୟକତା ରହିଛି । କେତେକ ଗୀତ ସଂଯୋଜିତ ନହୋଇଥିଲେ ମଧ୍ୟ କିଛି ଅସୁବିଧା ହୋଇନଥାନ୍ତା । 'ରାଜକବି ଉପେନ୍ଦ୍ର'ରେ ଛ'ଟି ଗୀତ, 'ନଷ୍ଟନୀଡ଼'ରେ ଛଅଟି, 'ବାରବାଟୀ'ରେ ଛଅଟି, 'ବୁଦ୍ଧ' ନାଟକରେ ବାରଟି ଓ 'ଶାସନଚକ୍ର'ରେ ଗୋଟିଏ ଗୀତ ସଂଯୋଜିତ ହୋଇଛି । ଏହି ଗୀତଗୁଡ଼ିକର ଉପଯୋଗିତା ବର୍ତ୍ତମାନ ବିଚାର୍ଯ୍ୟ ।

'ରାଜକବି ଉପେନ୍ଦ୍ର'ରେ ପାଞ୍ଚୋଟି ଦୃଶ୍ୟ ଓ ଏକ ନାଟିକା ହୋଇଥିବାରୁ ଏଥିରେ ସଂଳାପ ସହିତ ଗୀତର ବାହୁଲ୍ୟ ଦେଖାଯାଏ । 'ନଷ୍ଟନୀଡ଼'ର ପ୍ରସ୍ତାବନାରେ, ନଟୀ ମାଙ୍ଗଳିକ ଗୀତ ଗାନ କରିଛି । ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟର ନେପଥ୍ୟରେ ମାଧବୀ ଏକ ଗୀତ ଗାନ କରିଛି । ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟ ଶେଷରେ ପୂର୍ଣ୍ଣ ସହିତ ଗ୍ରାମ ଯୁବକମାନେ ଶୋଭାଯାତ୍ରାକରି ଯିବା ସମୟରେ ଗୋଟିଏ ଦେଶାତ୍ମବୋଧ ସଙ୍ଗୀତ ସଂଯୋଜନ କରାଯାଇଛି । ଦ୍ୱିତୀୟ ଅଙ୍କ ଶେଷ, ତୃତୀୟ ଅଙ୍କ ଶେଷ ଓ ଚତୁର୍ଥ ଅଙ୍କ ଶେଷରେ ନଟୀର ଗୀତ ଦେଇ ଦର୍ଶକମାନଙ୍କୁ ବିଷୟବସ୍ତୁ ସଂପର୍କରେ ସୂଚନା ଦିଆଯାଇଛି । ନଟୀର ଅନୁପସ୍ଥିତିରେ ନାଟକର କିଛି କ୍ଷତି ହୋଇ ନ ଥା'ନ୍ତା; ବରଂ ନାଟକୀୟ ଉତ୍କଣ୍ଠା

କେତେକାଂଶରେ କ୍ଷୁଣ୍ଣ ହୋଇଛି । ଏ ବିଷୟରେ ନାଟ୍ୟକାରଙ୍କର ନିଜ ମତ ପ୍ରଣିଧାନ ଯୋଗ୍ୟ—

> ଚିତ୍ତବିନୋଦନ ଓ ନାଟକକୁ ବର୍ଣ୍ଣାଢ଼୍ୟ କରିବା ପାଇଁ ନୃତ୍ୟଗୀତ ଦର୍କାର, ତାହା ଅନସ୍ୱୀକାର୍ଯ୍ୟ । ସେଥିପାଇଁ ଆମର ଦୂରଦ୍ରଷ୍ଟା ପ୍ରାଚୀନ ଆଳଙ୍କାରିକମାନେ ସୁନ୍ଦର ବ୍ୟବସ୍ଥା କରିରଖିଥିଲେ । ନଟୀକୁ ନାଟକର ଏକ ଅପରିତ୍ୟାଜ୍ୟ ଅଙ୍ଗରୂପେ ରଖି ସେକ୍‌ସପିୟରଙ୍କ ନାଟକରେ ସଙ୍ଗୀତର ଏପରି ସ୍ୱତନ୍ତ୍ର ବ୍ୟବସ୍ଥା ଅଛି ।''
>
> (ମା.ଗ୍ର. ୧୯୬୪, ପୃ. ୫୨୩)

ସେଥିପାଇଁ ବୋଧହୁଏ ନାଟକରେ ମାନସିଂହ ନଟୀର ପ୍ରବେଶ କରାଇଛନ୍ତି । ତାହା ଆଦର୍ଶ ସଂସ୍କୃତ ନାଟକ ଓ ସେକ୍ସପିୟରୀୟ ହୋଇଥିବାରୁ ସଙ୍ଗୀତର ବ୍ୟବହାର ତାଙ୍କ ନାଟକର ଅପରିହାର୍ଯ୍ୟ ଅଙ୍ଗ ହୋଇଯାଇଛି ।

'ବାରବାଟୀ' ନାଟକର ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟ ଶେଷରେ ଗୀତଟି ଜାତୀୟତା-ମୂଳକ; ମାତ୍ର ଏହାର ଅବର୍ତ୍ତମାନରେ ନାଟକର କିଛି ତ୍ରୁଟି ହୋଇନଥାନ୍ତା । ଦ୍ୱିତୀୟ ଅଙ୍କର ଦ୍ୱିତୀୟ ଦୃଶ୍ୟଟି ଆଦୌ ନ ଦେଇଥିଲେ ନାଟକର କୌଣସି ଅଙ୍ଗହାନି ଘଟନ୍ତା ନାହିଁ, ବରଂ ଏହାଦ୍ୱାରା ନାଟକର ସଂହତି ନଷ୍ଟହୋଇଛି । ଏହି ଦୃଶ୍ୟରେ ଶବର ଶବରୁଣୀ, ନାଚଗୀତ, ଖଞ୍ଜଣୀ ଗୀତ ଓ କେନ୍ଦରା ଗୀତ ଦିଆଯାଇଛି । ଦ୍ୱିତୀୟ ଅଙ୍କର ଷଷ୍ଠ ଦୃଶ୍ୟରେ ସଂଯୋଜିତ ଗୀତ ନାଟକୀୟ ବିଷୟ ସହିତ ସଂପର୍କ ରକ୍ଷା କରିଛି । ତୃତୀୟ ଅଙ୍କର ତୃତୀୟ ଦୃଶ୍ୟରେ ଜଳେଶ୍ୱରରେ ମୁସଲମାନ ଶିବିରର କବାଲି ପରିବେଶକୁ ମାଦକତାପୂର୍ଣ୍ଣ କରିବାରେ ସାହାଯ୍ୟ କରିଛି । ନାଟକର ଶେଷରେ ବନ୍ଦୀମାନଙ୍କର ଗୀତ କେବଳ ଜାତୀୟତାର ଉଦ୍‌ବୋଧନ ପାଇଁ ।

'ବୁଦ୍ଧ' ନାଟକର ପ୍ରସ୍ତାବନାରେ ଶିବ-ଗୌରୀଙ୍କର ନୃତ୍ୟ ଓ ଗୀତ ଧାର୍ମିକ ପରିବେଶ ସୃଷ୍ଟି କରିବାରେ ସାହାଯ୍ୟ କରିଛି । ପ୍ରଥମ ଅଙ୍କର ଷଷ୍ଠ ଦୃଶ୍ୟରେ ଗୋପାଙ୍କଦ୍ୱାରା ଏକ ନେପଥ୍ୟ ଗୀତ ଦିଆଯାଇଛି । ଏହି ନାଟକରେ ଆବଶ୍ୟକତାଠାରୁ ଅଧିକ ଗୀତ ପ୍ରୟୋଗ କରାଯାଇଛି । ବୋଧହୁଏ ନାଟକୀୟ ଅବସ୍ଥାର ପରିବର୍ତ୍ତନ ପାଇଁ କବି ଏପରି କରିଥିବା ସମ୍ଭବ । 'ଶାସନଚକ୍ର' ଏକାଙ୍କିକାର ଚତୁର୍ଥ ଦୃଶ୍ୟରେ ଶିଷ୍ୟାନନ୍ଦଙ୍କ ସ୍କୁଲର ବାଳକ ବାଳିକାମାନେ ଶୋଭାଯାତ୍ରାରେ ଗୋଟିଏ ମିଳିତ ସଙ୍ଗୀତ ଗାଇ ଗାଇ ଚାଲିଛନ୍ତି । କବି ଜୀବନବନ୍ଧୁ ପଟ୍ଟନାୟକଙ୍କ କବିତ୍ୱ, ଶିଷ୍ୟାନନ୍ଦଙ୍କ ସଙ୍ଗଠନ ଓ ଶାସନଚକ୍ରର ଦୁର୍ବଳତା ଦେଖାଇବା ପାଇଁ ଏହା ଉପଯୋଗୀ ହୋଇଛି ।

ସମୁଦାୟ ସଙ୍ଗୀତ ସଂଯୋଜନା ଉପରେ ଆଲୋଚନା କଲେ ଜଣାଯାଏ, ମାନସିଂହ ନିଜର କବିତ୍ୱ ଓ ଦେଶାତ୍ମବୋଧର ପ୍ରକାଶ ପାଇଁ ବହୁତ ପରିମାଣରେ ସଙ୍ଗୀତ ସଂଯୋଜନ କରିଛନ୍ତି । ଏହା ଦ୍ୱାରା କେତେକାଂଶରେ ନାଟକର ନାଟକୀୟତା କ୍ଷୁଣ୍ଣ ହୋଇଛି; ମାତ୍ର ଏ ଦୃଷ୍ଟିରୁ ମାନସିଂହଙ୍କୁ ଦୋଷଦେଇହେବନାହିଁ । କାରଣ ସେ ନୂତନତା ଅପେକ୍ଷା ପରଂପରାକୁ ଅଗ୍ରାଧିକାର ଦେଇଛନ୍ତି ।

**ହାସ୍ୟରସ—** 'ନଷ୍ଟନୀଡ଼'ରେ ନାଟ୍ୟକାର ହାସ୍ୟରସ ସୃଷ୍ଟି କରିବାପାଇଁ ସୁଯୋଗ ପାଇନାହାନ୍ତି । କମଳୀ ଓ ରାଧୀ ଚରିତ୍ର ମଧ୍ୟରେ ହାସ୍ୟରସର ସାମାନ୍ୟ ସୂଚନା ମିଳେ । ଦୁର୍ଭିକ୍ଷ, ଶାସନଚକ୍ର, ପୂଜାରିଣୀ, ବୁଦ୍ଧଦୂତୀ, ରାଜକବି ଉପେନ୍ଦ୍ର, ଇତ୍ୟାଦିର ଘଟଣାବଳୀ ଦୁଃଖପୂର୍ଣ୍ଣ ହୋଇଥିବାରୁ ଏଥିରେ ହାସ୍ୟରସ ପ୍ରଦାନର ସୁଯୋଗ ଆସିନାହିଁ । 'ବୁଦ୍ଧ' ନାଟକର ଦ୍ୱିତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ଛନ୍ଦକ ଓ ଛନ୍ଦକର ସ୍ତ୍ରୀ ମଧ୍ୟରେ ପ୍ରଦତ୍ତ ସଂଳାପରେ ହାସ୍ୟରସ ସୃଷ୍ଟି କରାଯାଇଛି । ସେହିପରି ଚତୁର୍ଥ ଅଙ୍କ ତୃତୀୟ ଦୃଶ୍ୟରେ ବ୍ରାହ୍ମଣ-ବ୍ରାହ୍ମଣୀ ସଂଳାପରେ ହାସ୍ୟରସର ସାମାନ୍ୟ ଆଭାସ ଅଛି ।

କେବଳ 'ବାରବାଟୀ' ନାଟକରେ ମାନସିଂହ ହାସ୍ୟରସ ପରିବେଷଣ କରିଛନ୍ତି । ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟରେ ବଙ୍ଗୀୟ ଯାତ୍ରୀ ଓ ପ୍ରହରୀର କଥୋପକଥନରୁ ହାସ୍ୟରସର ଆରମ୍ଭ ହୋଇଛି । ଦ୍ୱିତୀୟ ଦୃଶ୍ୟରେ ଦ୍ୱାରୀ ଓ ସଦସ୍ୟଙ୍କ ସଂଳାପ ହାସ୍ୟରସ ସୃଷ୍ଟି କରିଛି । ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ମୁସଲମାନ ସୈନ୍ୟ ଓ ମୌଲବୀଙ୍କର କଥୋପକଥନରେ ଅସ୍ୱାଭାବିକତା, ଦ୍ୱିତୀୟ ଅଙ୍କ ତୃତୀୟ ଦୃଶ୍ୟରେ ବଳରାମ ସଦସ୍ୟଙ୍କ ବକ୍ତବ୍ୟ ହାସ୍ୟରସ ସୃଷ୍ଟି କରେ । ତୃତୀୟ ଅଙ୍କର ସପ୍ତମ ଦୃଶ୍ୟରେ ଓଡ଼ିଆ ସୈନ୍ୟଙ୍କର କଥାବାର୍ତ୍ତା, ଅଷ୍ଟମ ଦୃଶ୍ୟରେ ଗୌଡ଼ର ମୁସଲମାନଙ୍କ ଶିବିର, ସିରାଜ ଖାଁ ଓ ଅଧସ୍ତନ କର୍ମଚାରୀଙ୍କର ସଂଳାପରେ ହାସ୍ୟରସର ଆଭାସ ମିଳେ ।

ମୋଟ ଉପରେ କହିବାକୁ ଗଲେ ବଳରାମ ସଦସ୍ୟ ଚରିତ୍ରଟି ହାସ୍ୟରସ ପରିବେଷଣ ପାଇଁ ସୃଷ୍ଟି ହୋଇଛି । ମାନସିଂହଙ୍କ ଅଧିକାଂଶ ସୃଷ୍ଟି ଦୁଃଖମୂଳକ ହୋଇଥିବାରୁ ହାସ୍ୟରସ ଦିଗଟି ଦୁର୍ବଳ ।

**କାଳଗତ ଐକ୍ୟ ଓ ମଞ୍ଚୋପଯୋଗିତା—** ମାନସିଂହଙ୍କ ନାଟକରେ ଘଟଣାର କାଳଗତ ସ୍ଥାନ ସଂପର୍କୀୟ ଐକ୍ୟ ରକ୍ଷା କରାଯିବା ପାଇଁ ଚେଷ୍ଟା କରାଯାଇଛି । 'ବୁଦ୍ଧ' ନାଟକକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ନାଟକର ସମୟସୀମା ସୀମିତ । 'ବୁଦ୍ଧ' ନାଟକରେ—ଏଥିରେ ସାମାନ୍ୟ ବ୍ୟତିକ୍ରମ ଦେଖାଯାଏ । ଅଧିକାଂଶ ନାଟକର ପ୍ରାରମ୍ଭ ସମୟକୁ ପୂର୍ଣ୍ଣିମା ଉତ୍ସବର ନିର୍ଦ୍ଦେଶ ଦିଆଯାଇଛି । 'ରାଜକବି ଉପେନ୍ଦ୍ର', 'ପୁଷ୍ପିତା', 'ପୂଜାରିଣୀ', 'ବୁଦ୍ଧ', 'ବୁଦ୍ଧଦୂତୀ'ର କଥାବସ୍ତୁ ପୂର୍ଣ୍ଣିମାରେ ଆରମ୍ଭ ହୋଇଛି । ଫୁଲ ଫଗୁଣ ଓ ଜହ୍ନର କବି ମାନସିଂହଙ୍କ ରୋମାଣ୍ଟିକ ଭାବନା ଏଥିରେ ପ୍ରତିଫଳିତ ।

ଯଦିଚ ମଞ୍ଚୋପଯୋଗୀ ନାଟକ ଓ ସାହିତ୍ୟିକ ନାଟକ (Closet play) ଉଭୟ ନାଟକର ଅନ୍ତର୍ଗତ, ତଥାପି ନାଟକ କହିଲେ ସାଧାରଣତଃ ଅଭିନୟକୁଶଳ ମଞ୍ଚୋପଯୋଗୀ ନାଟକକୁ ବୁଝାଯାଇଥାଏ । ନାଟକର ମଞ୍ଚ ସଫଳତା ଉପରେ ଅଭିନୟ ନିର୍ଭର କରେ । ସେଥିପାଇଁ ନାଟକର ନିର୍ଦ୍ଦେଶନା, ଅଭିନୟ, ଦୃଶ୍ୟ ବିଧାନ, ନେପଥ୍ୟ ବିଧାନ, ରଙ୍ଗ ସଜ୍ଜା ଆଦି ଉପରେ ଦୃଷ୍ଟି ଦେବାକୁ ପଡ଼େ ।

ମାନସିଂହଙ୍କ ନାଟକଗୁଡ଼ିକୁ ଏହି ଦୃଷ୍ଟିରୁ ବିଚାରକରାଯାଇଛି । 'ନଷ୍ଟନୀଡ଼' ନାଟକରେ ପାଞ୍ଚଟି ଅଙ୍କ ଓ ଷୋହଳଟି ଦୃଶ୍ୟ ରହିଛି । ଏହାର ଦୃଶ୍ୟସଜ୍ଜା ଓ ନାଟକୀୟତା ବିପନ୍ନ

କଳାଭଳି କୌଣସି ଘଟଣା ବା ଚରିତ୍ରର ଅବତାରଣା କରାଯାଇନାହିଁ । ମଞ୍ଚ ସଫଳତା ନିମନ୍ତେ ପାତ୍ରୋପଯୋଗୀ ଭାଷା ରହିଛି; ଯାହାକି ଚରିତ୍ରଗୁଡ଼ିକର ଚାରିତ୍ରିକ ମର୍ଯ୍ୟାଦା ବିକାଶରେ ସହାୟକ ହୋଇଛି । ମଞ୍ଚମୂଲ୍ୟ ସଂରକ୍ଷିତ ହୋଇଅଛି ।

'ବାରବାଟୀ' ନାଟକରେ ଚାରିଟି ଅଙ୍କ ଓ ବାଇଶଟି ଦୃଶ୍ୟ ରହିଛି । ଏହାର ଦୃଶ୍ୟସଜ୍ଜା ଓ ସଂଳାପ ସଂଯୋଜନାରେ ବିଶେଷ କିଛି ଅସୁବିଧା ନାହିଁ । ଅଭିନୟ ପାଇଁ ମଞ୍ଚମୂଲ୍ୟ ରହିଛି । ଅବଶ୍ୟ ଏହାର କାହାଣୀ ପରିବେଷଣ ସଫଳ ନୁହେଁ । 'ବୁଦ୍ଧ' ନାଟକରେ ଚାରିଟି ଅଙ୍କ, ସତାଇଶଟି ଦୃଶ୍ୟ ରହିଛି ଓ ଏହା ମଧ୍ୟରେ ବହୁ ଅନାବଶ୍ୟକ ଓ ଅବାନ୍ତର ଦୃଶ୍ୟ ରହିଛି । କେତେକ ଦୃଶ୍ୟ ଖୁବ୍ ଦୀର୍ଘ ହୋଇଥିବାରୁ ମଞ୍ଚମୂଲ୍ୟ ରକ୍ଷାକରାଯାଇନାହିଁ, ସଂହତି ହରାଇଛି । କେତେକ ସ୍ଥାନରେ ସଂଳାପ ପାତ୍ରୋପଯୋଗୀ ନୁହେଁ । କେତେକ ସ୍ଥାନରେ ଅଶ୍ରାବ୍ୟ ଗ୍ରାମ୍ୟ ଶବ୍ଦ ପ୍ରୟୋଗକରି ନାଟକର ମୂଲ୍ୟ କ୍ଷୁଣ୍ଣ କରାଯାଇଛି । 'ଶାସନଚକ୍ର' ଏକାଙ୍କିକାର ମଞ୍ଚମୂଲ୍ୟ ରହିଛି ।

'ପୂଜାରିଣୀ', 'ଦୁର୍ଭିକ୍ଷ' ଓ 'ପୁଷ୍ପିତା' ଆଦି ଅଭିନୟ ହୋଇଥିବା ମାନସିଂହ ଉଲ୍ଲେଖ କରିଛନ୍ତି; ମାତ୍ର ଏହାର ମଞ୍ଚୋପଯୋଗିତା ଅପେକ୍ଷା ସାହିତ୍ୟିକ ମୂଲ୍ୟ ଅଧିକ । ଏଗୁଡ଼ିକରେ ମାନସିଂହଙ୍କ ନାଟ୍ୟମାନସ ଅପେକ୍ଷା କବିତ୍ୱ ସ୍ପଷ୍ଟ ପ୍ରତିଫଳିତ ।

ମାନସିଂହ ସମସ୍ତ ନାଟ୍ୟସୃଷ୍ଟି ସଂପର୍କରେ ନିଜେ ଏହାକୁ ନାଟକ, ନାଟିକା, କାବ୍ୟନାଟ୍ୟ ଓ ଏକାଙ୍କିକା ଆଦି ନାମକରଣ କରିଥିବାରୁ ଆଲୋଚନାରେ ସେହି ନାମରେ ହିଁ ଏହା ନାମିତ ହୋଇଛି ମାତ୍ର ।

ନାଟ୍ୟତତ୍ତ୍ୱ ଦୃଷ୍ଟିରୁ ବିଚାରକଲେ ମାନସିଂହଙ୍କ ନାଟକ ସଂଖ୍ୟା ତିନିଟି । ସେମାନଙ୍କ ମଧ୍ୟରୁ 'ନଷ୍ଟନୀଡ଼', 'ବାରବାଟୀ' ଓ 'ବୁଦ୍ଧ' ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିବେ । ଅନ୍ୟଗୁଡ଼ିକ ମଧ୍ୟରୁ 'ଶାସନଚକ୍ର' ତାଙ୍କର ଶ୍ରେଷ୍ଠ ଏକାଙ୍କିକା । ଏହା ବ୍ୟତୀତ 'ରାଜକବି ଉପେନ୍ଦ୍ର'ରୁ କେତେକ ଅନାବଶ୍ୟକ ଗୀତ ବାଦ୍‌ଦେଲେ ଏହା ଏକାଙ୍କିକା ଶ୍ରେଣୀର ହେବ । 'ଦୁର୍ଭିକ୍ଷ', 'ପୂଜାରିଣୀ'କୁ ନାଟ୍ୟକାବ୍ୟ ଭାବରେ ଗ୍ରହଣ କରାଯାଇପାର । 'ବୁଦ୍ଧଦୂତୀ'ରେ ଛଅଟି ଦୃଶ୍ୟ ରହିଛି । ନାଟ୍ୟତତ୍ତ୍ୱ ଅନୁସାରେ ଏହାକୁ ସଙ୍ଗୀତ ନାଟ୍ୟ (Opera) ଶ୍ରେଣୀର, 'ପୁଷ୍ପିତା'କୁ ନୃତ୍ୟନାଟ୍ୟ (Dance Drama) ଭାବରେ ଗ୍ରହଣ କରାଯାଇପାରେ । ସମସ୍ତ ନାଟକରେ ମାନସିଂହ ତିନିଟି ବିଷୟ ଉପସ୍ଥାପନ କରିବା ପାଇଁ ଚେଷ୍ଟା କରିଛନ୍ତି, ଯଥା- ଦେଶାତ୍ମବୋଧ ଓ ଜାତୀୟ ଚେତନା (ନଷ୍ଟନୀଡ଼, ବାରବାଟୀ, ଶାସନଚକ୍ର, ବୁଦ୍ଧଦୂତୀ ଓ ବୁଦ୍ଧ), ପ୍ରେମ ଓ ପ୍ରଣୟ ଚେତନା (ନଷ୍ଟନୀଡ଼, ରାଜକବି ଉପେନ୍ଦ୍ର, ପୂଜାରିଣୀ, ପୁଷ୍ପିତା, ଦୁର୍ଭିକ୍ଷ), ଧର୍ମୀୟ ଭାବଧାରାର ପ୍ରକାଶ (ବୁଦ୍ଧ) ।

ମାନସିଂହଙ୍କ ଲେଖନୀ ବ୍ୟାପକ । ଉପନ୍ୟାସ ଓ ଗଳ୍ପ ସୃଷ୍ଟିରେ ସେ ଅସଫଳ । ନାଟକ ଭାବରେ ସେ ଯାହା ଲେଖିଲେ ଏହା ଗୋଟିଏ ସାହିତ୍ୟର ନାଟ୍ୟଇତିହାସରେ ନୂତନତା ଆଣି ସଫଳ ନାଟ୍ୟକାରର ସମ୍ମାନ ପାଇବା ଭଳି ନୁହେଁ । ଗୋଟିଏ ଦୁଇଟି ନାଟକ ଜଣେ ଜଣେ ନାଟ୍ୟକାରଙ୍କୁ ପ୍ରତିଷ୍ଠିତ କରାଇଦେଇଥାଏ । 'ନଷ୍ଟନୀଡ଼'ରେ ସେ

ପ୍ରକାର ଗୁଣ ଅଛି; ମାତ୍ର ମାନସିଂହଙ୍କୁ କାବ୍ୟକବିତା, ସମାଲୋଚନା ଓ ପ୍ରବନ୍ଧ ସୃଷ୍ଟି ଯେଉଁ ସମ୍ମାନ ଦେଇଛି, ନାଟକ ରଚନାକରି ସେ ସେହି ସମ୍ମାନର ଅଧିକାରୀ ହୋଇପାରି ନାହାନ୍ତି । କହିବାକୁ ଗଲେ ତାଙ୍କର ଏକମାତ୍ର ସଫଳ ନାଟକ 'ନଷ୍ଟନୀଡ଼' ପ୍ରକୃତରେ ନୀଡ଼ ହରାଇବସିଛି । ନାଟକରଚନା ନାଟ୍ୟକାର, ରଙ୍ଗମଞ୍ଚ ଓ ଦର୍ଶକକୁ ନେଇ ତିନି ଆୟାମ ବିଶିଷ୍ଟ ସାଧନା । କବିତା ରଚନାଭଳି ଏହା ଏକଆୟାମ ବିଶିଷ୍ଟ ନୁହେଁ । ଏହି ତିନୋଟି ପରିସରକୁ ଆପଣାର କରି ଯେଉଁ ରୀତିରେ ଆଗେଇନେବା କଥା, ତାହା ମାନସିଂହ କରିନାହାନ୍ତି । ମଞ୍ଚ ଓ ଦର୍ଶକସହ ମାନସିକ-ଅସଂପୃକ୍ତି ହେତୁ ମାନସିଂହଙ୍କ ନାଟକଗୁଡ଼ିକ ପରିଣତ-ସୃଷ୍ଟିରେ ରୂପାନ୍ତରିତ ହୋଇନାହିଁ । ଫଳରେ ଓଡ଼ିଆ ନାଟକର ଇତିହାସରେ ମାନସିଂହ ଏକ ଅନାଲୋଚିତ ଅଧ୍ୟାୟ ହୋଇ ରହିଯାଇଛନ୍ତି । କିନ୍ତୁ ମଞ୍ଚମୂଲ୍ୟ ଦୃଷ୍ଟିରୁ ନହେଲେ ହେଁ ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ ତାଙ୍କ ନାଟକଗୁଡ଼ିକର ଚିରନ୍ତନ ମୂଲ୍ୟ ରହିଛି । ପାରିପାର୍ଶ୍ୱିକ ପରିବେଶ, ଦେଶର ଗୌରବମୟ ଇତିହାସ, ନାଟକୀୟ ଉପାଦାନ, ପ୍ରାଚ୍ୟ-ପାଶ୍ଚାତ୍ୟ ନାଟ୍ୟକାରଙ୍କ ପରୋକ୍ଷ ପ୍ରେରଣା ସବୁ ଥିବା ସତ୍ତ୍ୱେ ମାନସିଂହ ବିପୁଳ ସଂଖ୍ୟାରେ ନାଟକ ସୃଷ୍ଟି କରିନାହାନ୍ତି ।

ମାନସିଂହ ଗ୍ରନ୍ଥାବଳୀର ଷଷ୍ଠ ଖଣ୍ଡ ପ୍ରକାଶିତ ହେବାକୁ ଯାଉଛି । ବର୍ତ୍ତମାନ ଦେଖାଯାଉଛି ଯେ ଏହା ପ୍ରାୟ ୨୫ ଖଣ୍ଡରେ ଶେଷ ହେବ । ଆସନ୍ତା ୨୦୦୫ ମସିହାରେ ମାନସିଂହଙ୍କ ଜନ୍ମ ଶତବାର୍ଷିକୀ ପାଳିତହେବ । ଏଇ ସମୟ ମଧ୍ୟରେ ସମଗ୍ର ରଚନାବଳୀକୁ ଓଡ଼ିଆ ପାଠକ/ପାଠିକାଙ୍କ ହସ୍ତରେ ଅର୍ପଣ କରିପାରିଲେ ମାନସିଂହଙ୍କ ପ୍ରତି ଓଡ଼ିଆ ଜାତିର ଉପଯୁକ୍ତ ଶ୍ରଦ୍ଧା ନିବେଦନ ହୋଇପାରନ୍ତା ।

ମାନସିଂହଙ୍କ ଅନେକ ରଚନା ବିଭିନ୍ନ ପୁସ୍ତକ ଓ ପତ୍ରପତ୍ରିକାରେ ବିକ୍ଷିପ୍ତ ଭାବରେ ରହିଛି । ତାଙ୍କ ରଚନାର ନାନାବିଧ ସଂସ୍କରଣ ସହଜ-ଲବ୍ଧ ହୋଇପାରୁନାହିଁ । ମାନସିଂହ ଗ୍ରନ୍ଥାବଳୀ ସଂପାଦନା ଏକ ଜାତୀୟକାର୍ଯ୍ୟ । ମାନସିଂହ-ସାହିତ୍ୟ-ପ୍ରେମୀ ଶ୍ରୀ ଅଭିରାମ ମହାପାତ୍ରଙ୍କ ସଶ୍ରଦ୍ଧ ତାଗିଦା ବିନା ଏ କାର୍ଯ୍ୟରେ ଆଗେଇବା ମୋ ପକ୍ଷରେ ସମ୍ଭବ ହୋଇପାରିନଥାନ୍ତା । ଶ୍ରୀ ମନୋଜ କୁମାର ମହାପାତ୍ରଙ୍କ ସାହସିକ ପଦକ୍ଷେପ, ଅଭିରାମବାବୁଙ୍କ ଐକାନ୍ତିକ ଇଚ୍ଛା ଓ ମୋର ବନ୍ଧୁ ଶ୍ରୀ ଦେବେନ୍ଦ୍ର କୁମାର ଦାଶଙ୍କ ସମୟୋଚିତ ପରାମର୍ଶ ଯୋଗୁହିଁ ଏ କାର୍ଯ୍ୟ ସମ୍ଭବ ହୋଇପାରିଛି । ମୁଁ ସମସ୍ତଙ୍କୁ ଗଭୀର କୃତଜ୍ଞତା ଜଣାଉଛି । ଏ କାର୍ଯ୍ୟ ସଂପାଦନା ସମୟରେ କିଛି ଭୁଲ ରହିଯାଇଥାଇପାରେ; ସହୃଦୟ ପାଠକ/ପାଠିକା ସେ ସଂପର୍କରେ ଅବଗତ କରାଇଲେ ପରବର୍ତ୍ତୀ ଖଣ୍ଡରେ ତଥା ପରବର୍ତ୍ତୀ ସଂସ୍କରଣରେ ସଂଶୋଧନ କରାଯାଇପାରିବ ।

୦୩. ୦୭. ୨୦୦୦, ଶ୍ରୀଗୁଣ୍ଡିଚା — **ଡକ୍ଟର ଶ୍ରୀଚରଣ ମହାନ୍ତି**
ରାଉରକେଲା

# ସୂଚୀପତ୍ର


୧। ରାଜକବି ଉପେନ୍ଦ୍ର — ୧

୨। ପୁଷ୍ପିତା — ୩୧

୩। ପୂଜାରିଣୀ — ୫୫

୪। ନଷ୍ଟନୀଡ଼ — ୧୦୧

୫। ବାରବାଟୀ — ୧୭୭

୬। ବୁଦ୍ଧ — ୨୨୯

୭। ଦୁର୍ଭିକ୍ଷ — ୩୧୭

୮। ବୁଦ୍ଧ-ଦୂତୀ — ୩୫୯

୯। ଶାସନଚକ୍ର — ୩୬୯

୧୦। ପୁଷ୍ପାଭିନୟ — ୩୮୯

## [ଆଦ୍ୟ ସଂସ୍କରଣର ଭୂମିକା]

ଏ ଲେଖା ପ୍ରାୟ ତିନିବର୍ଷ ତଳର । ଏହି ଗୀତିନାଟ୍ୟଟିରେ ଯେଉଁ କବିଙ୍କୁ ନାୟକ କରାଯାଇଛି, ତାଙ୍କର କାବ୍ୟ-କବିତାପାଇଁ ମୋର ଯେତେ ଶ୍ରଦ୍ଧା ନାହିଁ, ତା'ଠୁଁ ବହୁତ ବେଶି ଶ୍ରଦ୍ଧା ତାଙ୍କ ଜୀବନପାଇଁ । ଉପେନ୍ଦ୍ରଙ୍କ ବିସ୍ତୃତ ଜୀବନୀ ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ବାହାରି ନାହିଁ । ସମସ୍ତ ଜୀବନଟା ରହସ୍ୟମୟ ହୋଇ ରହିଛି । ଏହି ରହସ୍ୟହିଁ ମତେ ଏ ନାଟିକା ଲେଖିବାକୁ ଉଦ୍‌ବୁଦ୍ଧ କରିଥିଲା ।

ଏପରି ଅପରିପକ୍ୱ ଲେଖା ଘେନି ମୁଁ କୌଣସି ସାହିତ୍ୟିକ ସମ୍ମାନ ପାଇଯିବାର ଆଶା ରଖିନି । କିନ୍ତୁ ଆଶାକରେ ଉପେନ୍ଦ୍ରଙ୍କ ରହସ୍ୟମୟ ଜୀବନ ମତେ ଯେପରି ଆନନ୍ଦ ଦେଇଛି, ଆହୁରି ଅନେକ ସ୍ୱପ୍ନବିଳାସୀ କବିତ୍ୱମୟ ପ୍ରାଣକୁ ମଧ୍ୟ ଦେଇଥିବ । ମୁଁ ଏ ବହିଟିରେ ସେ ପ୍ରହେଳିକାକୁ ଆଉ ଟିକିଏ ଜୀବନ୍ତ କରିବାକୁହିଁ ଚେଷ୍ଟାକରିଛି ।

ଆଦ୍ୟ ସଂସ୍କରଣ ଲେଖକ
୧୯୨୮

## ନାଟକୀୟ ବ୍ୟକ୍ତିଗଣ

ଉପେନ୍ଦ୍ର ଭଞ୍ଜ— ଘୁମୁସର ଯୁବରାଜ ଓ କବି
ଗଜେନ୍ଦ୍ର, ଭୂପେନ୍ଦ୍ର— କବିଙ୍କର ଦୁଇ ଭାଇ
ପୁରୋହିତ
ବନ୍ୟ-ସର୍ଦ୍ଦାର
ନାଗରିକ
ବନ୍ୟ ବାଳକ ବାଳିକା
ରାଜଲକ୍ଷ୍ମୀ
ସରସ୍ୱତୀ

# ରାଜକବି ଉପେନ୍ଦ୍ର

## [ପ୍ରଥମ ଦୃଶ୍ୟ]

[ନଦୀ ଧାରରେ ଗୋଟିଏ ଉପବନ । ନାନା ପ୍ରକାର ବୃକ୍ଷଲତାରେ ପୂର୍ଣ୍ଣ, ଫୁଲ ଫଳରେ ଭରା—ଶରତ୍ ପୂର୍ଣ୍ଣିମାର ଐନ୍ଦ୍ରଜାଲିକ ପ୍ରଭା ଚାରିଆଡ଼େ ପତ୍ରେ ପୁଷ୍ପେ ବିଚ୍ଛୁରିତ ହୋଇ ପଡ଼ିଛି— ଦୂରରେ ବନ୍ୟ ଗ୍ରାମଟିଏ— ଅସ୍ଫୁଟ କୋଳାହଳ ଶୁଣାଯାଉଛି—ଉପବନର ସ୍ଥାନେ ସ୍ଥାନେ ବଡ଼ ବଡ଼ ଗଛ— ଆମ୍ର, ଚମ୍ପା, ବକୁଳ ପ୍ରଭୃତି—ସେମାନଙ୍କର ଛାୟାରେ ଶାଦ୍ୱଳଚିହ୍ନିତ ଭୂମି ତିଳତଣ୍ଡୁଳିତ ଶୋଭାରେ ବିଚିତ୍ର ହୋଇଉଠିଛି । ସହସା ବନ୍ୟ ବାଳକ ବାଳିକାମାନଙ୍କର ପ୍ରବେଶ ଓ ଏ ଗଛ ସେ ଗଛ ଦେଖୁ ଦେଖୁ କଥୋପକଥନ—]

ପ୍ରଥମ ବାଳିକା— ସୁମନା, ଆଜି ସକାଳେ ଘର କାମରେ ଲାଗିରହି ମୋ' ମନ୍ଦାରଗଛଟିକି ଦେଖି ଆସି ପାରି ନ ଥିଲି ।

ଦ୍ୱିତୀୟ ବାଳିକା— ମୁଁ ଆସିଥିଲି । ମୋ ମାଧବୀ ମୂଳରେ ପାଣିଦେଲି, ଟିକିଏ ଆଉଁସି ଦେଇ ଗଲି ।

ପ୍ରଥମ— ଦେଖିଲୁ ଆଜି ଜହ୍ନପଡ଼ି ତୋଟାଟି କି ସୁନ୍ଦର ଦିଶୁଛି ! ମୋ ମନ୍ଦାରଫୁଲଗୁଡ଼ିକ ଆଜି କୋଟିନିଧି ପାଇଲା ପରି ହସିଉଠୁଛନ୍ତି । ପୂଜା ବୋଲି ନେବାକଥା, ନ ହେଲେ ତୋଳିବାକୁ ମନ ହେଉ ନାହିଁ ।

ଦ୍ୱିତୀୟ— ସତେମ ! ଦେଖିଲୁ, ଦେଖିଲୁ ମୋ' ଫୁଲଗୁଡ଼ିକୁ ! ଓଠପାତି ଜହ୍ନ ଆଲୁଅକୁ ଯେପରି ଅମୃତ ପରି ପିଇଯାଉଛନ୍ତି !

ପ୍ରଥମ— ଦେଖି, ଗଛଲତା ବନବିଲ ଚାରିଆଡ଼େ କିମିତି ଗୋଟାଏ ସୁଖର ବାସନା ଖେଳି ବୁଲୁଛି !

ଦ୍ୱିତୀୟ— ସତେନା ! କାହାର ଅମୃତ ହାତର ପରଶ ପାଇ ସବୁ ଯେପରି ଆଜି ମାତି ଉଠିଛନ୍ତି । ସବୁଆଡ଼େ ଆନନ୍ଦର ଚିହ୍ନ । ସବୁଆଡ଼େ ଆମୋଦର ଢେଉ ।

ପ୍ରଥମ— ଆଜି ପୂଜାଟା ଖୁବ୍ ମନପୂରା ହେବ ।

ତୃତୀୟ— (ଦୂରରୁ ଫେରିଆସି) ଆଚ୍ଛା ମାଳତୀ, ଆଜି ପୂଜାକୁ ଆମ ଯୁବରାଜଙ୍କୁ ଡାକ ।

ପ୍ରଥମ— ତା'ତ ନିଶ୍ଚୟ !

ଦ୍ୱିତୀୟ— ଆମେ ନ ଡାକିଲେ ମଧ୍ୟ ସେ ଆସିବେ, ତାଙ୍କ ପ୍ରକୃତି କହିଦଉଛି ।

ଚତୁର୍ଥ— ଆଚ୍ଛା, ସେ କାହିଁକି ଏଠାକୁ ଆସିଥିଲେ ?

ଦ୍ୱିତୀୟ— ତତେ ଯୁବରାଣୀ କରିବାକୁ । (ହାସ୍ୟ ଓ ତାଳି)

ପ୍ରଥମ— ନାଇଁଲୋ, କିଏ କହୁଥିଲା, ସେ ପୁଣି ରାଜ୍ୟ ବୁଝିବାକୁ ଏଠାକୁ ଆସିଥିଲେ । ବାପାଠୁଁ ଖଜଣା ନେବେ ବୋଲି ବୁଢାରାଜା ପଠାଇଥିଲେ ।

ପ୍ରଥମ— ହଁ ସେଇଟା ଠିକ୍ ।

ଚତୁର୍ଥ— କାହିଁ ସେ ତ ଖଜଣାଫଜଣା କିଛି ନେଉନାହାନ୍ତି, କି ରାଜ୍ୟ ବୁଝୁନାହାନ୍ତି, ଖାଲି ଆମରି ସାଥିରେ ବଣ ପର୍ବତରେ ବୁଲୁଛନ୍ତି ।

ଦ୍ୱିତୀୟ— ନାଇଁଲୋ, ଠିକ୍ ହେଇଛି ଯେ ତତେ ନେଲେ ସେ ଖଜଣାଫଜଣା କିଛି ନେବେ ନାହିଁ । (ହାସ୍ୟ ଓ ତାଳି)

ପ୍ରଥମ— ଆଲୋ ରାତି ହେଲା ମ ! ହସ ଖେଳ କରିବ ନା ଫୁଲ ସଜାଡ଼ିବ !

(ସମସ୍ତଙ୍କର ଫୁଲ ତୋଳିବା— ଏ ଗଛରୁ ସେ ଗଛକୁ ଯିବା ଓ ଫୁଲଗଣିବା ଇତ୍ୟାଦି । ଏହିପରି କରୁ କରୁ— )

ଦ୍ୱିତୀୟ— ମାଳତୀ, ମୋର କାହିଁକି ଗୀତଟିଏ ଗାଇବାକୁ ଭାରି ଇଚ୍ଛା ହେଉଛି ।

ଚତୁର୍ଥ— ଦେଖିଲୋ, ବେଙ୍ଗ ବୋବା ଶୁଣି ଯୁବରାଜ ରସିଯିବେଟି ! (ହାସ୍ୟ)

ପ୍ରଥମ— ନାହିଁ, ବୋଲ୍‌ମ ବୋଲ୍ ।

(ଅନ୍ୟାନ୍ୟ ବାଳିକା ଫୁଲତୋଳା ବନ୍ଦକରି ଚାରିପାଖେ ଘେରିଗଲେ ଓ କହିଲେ ବୋଲ୍‌ମ ବୋଲ୍)

ପ୍ରଥମ— ଆଜି ଯଦି ବୋଲା ନ ହୁଏ ବୋଲିବ ଆଉ କେବେ ? ବୋଲ୍ ।

ଦ୍ୱିତୀୟ— କି ଗୀତ ବୋଲିବି ? ସେ ଦିନ, ସେ ପୂର୍ଣ୍ଣିମା ଦିନ ଏଇ ନଈ ତଡ଼େ ବଉଳ ଗଛମୂଳେ ବସି ମାଳତୀ ଯେଉଁ ଗୀତଟା ଗାଇଥିଲା, ସେଇଟା ଆଜି ମନେ ପଡ଼ିଯାଉଛି । ସେଇଟା ବୋଲିବି ?

ସମସ୍ତେ— ହଉ ହଉ ବୋଲ୍ ।

ଦ୍ୱିତୀୟ— ତମର ତ ସବୁ ମନେଥିବ, ତେବେ ଆସ ଏକାଠି ବୋଲିବା ।

ସମସ୍ତେ— ଆଚ୍ଛା ହଉ ।

## ଗାନ

ତଟିନୀ, ବହ ବହ ଗୋ
ଚଳ-ଭଉଁରି ଖେଳି
ପବନ ସଙ୍ଗେ
ଆଜି ଏଥି ମୁରଲୀ ବାଣୀ
ଭାସିଆସେ ଦୂରୁ
ଜୋଛନା ଅଙ୍ଗେ ।

କାନେ ସେ ସୁଦୂର ଡାକ
ଶୁଭେ ନାହିଁ, ମରମ ଯାକ
ଥରିଯାଏ କେଉଁ ଅଜଣା ପରଶେ ପୀରତି ରଙ୍ଗେ ।
ସେହି ଡାକ ଆସୁଛି ଆଜି
ଶୁଣି, ଆମେ କୁସୁମ ସାଜି
ବାହାରିଛୁ ଦେବୁ ସଜାଇ ମୁରଲୀଧାରୀର ଅଙ୍ଗେ ।
ଖୋଜି ଖୋଜି ହେଲୁଣି ଥକା,
ଚାଲି ଚାଲି ଚରଣ ବଙ୍କା,
ଚାରିଆଡ଼େ ବାଜେ ଡାକ ଖାଲି ମେଘ ପବନ ସଂଗେ ।
ହେ ତଟିନୀ ଅଜଣା ଯାତ୍ରୀ
ଧାଇଁଅଛ ଦିବସ ରାତ୍ରୀ
ତୁମରି ସଙ୍ଗତେ ନିଅ ମିଶିବାକୁ ଅଜଣା-ଅଙ୍ଗେ ।

(ସଙ୍ଗୀତର ଶେଷଆଡ଼କୁ ଉପେନ୍ଦ୍ରଙ୍କର ପ୍ରବେଶ ଓ ଧୀରେ ଧୀରେ ଗୋଟିଏ ବୃକ୍ଷଛାୟା ତଳେ ଠିଆହେବା ।)

ଉପେନ୍ଦ୍ର— ଆହା କି ସମ୍ପଦ ଏ ! ନଗରରେ ଏହାର ବିନ୍ଦୁଏ ହେଲେ ଥା'ନ୍ତା ! କି ସରଳତା ! କି ମଧୁରତା ! ରାଜା ଭାବରେ ଏଠାକୁ ଆସିଥିଲି; କିନ୍ତୁ ଏମାନଙ୍କ ପରଶରେ ଏମାନଙ୍କ ମଧ୍ୟରେ ଜଣେ ନ ହୋଇ ରହିପାରିଲି ନାହିଁ । ରାଜପୁତ୍ର ନ ହୋଇ ଯଦି ଏମାନଙ୍କ ଭିତରୁ ଜଣେ ହୋଇଥା'ନ୍ତି ତେବେ ଜୀବନଟା କେଡ଼େ ସୁଖମୟ ହୋଇ ନ ଥା'ନ୍ତା ! ରାଜଭୋଗ ଏ ସବୁ ନିକଟରେ କେଡ଼େ ତୁଚ୍ଛ । ରାଜାହୋଇ ପ୍ରାସାଦର ପ୍ରାଚୀର ଆରପାଖରେ ବନ୍ଦୀହୋଇ ରହିଲେ, ବାହାରେ ଏ ଯେ ଅନନ୍ତ ଅମୃତ ବିଛାହୋଇ ପଡ଼ିଛି, ଯାକୁ ତ ମୁଁ ମନପୂରା ସମ୍ଭୋଗ କରିପାରିବି ନାହିଁ । ତେବେ ତ ମୋ ମନୁଷ୍ୟ ଜୀବନ ନଷ୍ଟ ହେଲା । ରାଜ-ଜୀବନରେ କି ଲାଭ ?

(ଗାନ ଶେଷରେ ବାଳିକାମାନେ ଡକାଡକି ହୋଇ ଫେରୁ ଫେରୁ ଉପେନ୍ଦ୍ରଙ୍କୁ ଦେଖିପକାଇଲେ ।)

ସମସ୍ତେ— ଆସନ୍ତୁ, ଆସନ୍ତୁ, ଏଠାରେ ଲୁଚିଛନ୍ତି କାହିଁକି ?

(ଉପେନ୍ଦ୍ରଙ୍କୁ ଆଲୁଅକୁ ଆଣିବା)

ଉପେନ୍ଦ୍ର— ନାଁ, ମୁଁ ଲୁଚିବି କାହିଁକି ? ତମର ଗୀତ ଶୁଣିବାକୁ ଇଚ୍ଛା ହେବାରୁ ସେଠାରେ ଠିଆହୋଇଥିଲି ।

୧ମ ବାଳିକା— ତମେ ଆମ ଗୀତ ଶୁଣିଛ ?

ଉପେନ୍ଦ୍ର— ହଁ ଖୁବ୍ ଭଲ ଲାଗିଲା । ତମେ କୁଠୁଁ ଶିଖିଲ ?

୧ମ ବାଳିକା— ଆଲୋ ମା, ଶିଖିବୁ କେଉଁଠୁ ? ପିଲାଦିନୁ ତ ଆମେ ଏଇପରି ଗାଇଆସୁଛୁ । ନଈ ତରତର ହୋଇ ବହିଯାଏ । ତା' କୂଳେ ବେତ, ଅଣଆଖୁ କୁଣ୍ଢାକୁଣ୍ଢି ହୋଇ

ନାଚନ୍ତି । ଜହ୍ନରାତି ହସିହସି କର୍ପୂର ବିଞ୍ଚେ– ମୟୂର ନାଚେ, ଆମେ ବି ଗାଉ । ନ ଗାଇ ତ ଆମେ ରହିପାରୁନା । ଏଇ ଯେ ଗଛଲତା, ବନ ବିଲ, ନଈ ପର୍ବତ, ଏମାନେ ସମସ୍ତେ ତୁନିଟି ହୋଇ ଆମର ଗୀତ ଶୁଣନ୍ତି । କିନ୍ତୁ ଦୁଃଖ ଏହି ଯେ କିଏହେଲେ ଦିନେ ଆମର ପ୍ରଶଂସା କଲେନି !

୨ୟ ବାଳିକା– କିନ୍ତୁ ଆମ୍ବତୋଟାର ଓଢଣାତଳୁ ସେହି କୋଇଲିଟା ସବୁବେଳେ ଉତ୍ତର ଦିଏ ।

୩ୟ ବାଳିକା– କାହିଁକି, ଏଇ ମୋର ନିଆଳୀ ଲତାଟି ମୋ ଗୀତର ସ୍ୱର ସଙ୍ଗେ ସଙ୍ଗେ ତା'ର କଅଁଳ ଦେହଟି ଟୁଙ୍ଗାରୁ ଥାଏ । ତାକୁ କେହି ଦୋଷ ଦେଇପାରିବନି ।

୪ର୍ଥ ବାଳିକା– କିନ୍ତୁ ଏହି ଯେ ଯାଦୁଆ ପାହାଡ଼– କେତେ ଯୁଗର ବ୍ୟାଧିରେ ନୋଚା ହୋଇ ମୁଣ୍ଡମାରି ବସିରହିଛି ! ଉଁ ନାହିଁ କିଚୁଁ ନାହିଁ ! ମୋର ଇଚ୍ଛା ଚଡ଼୍‌ଚଡ଼ି ପାହାରରେ ଚୂନଚୂନା ହୋଇ ସେଟା ଭୂଇଁ ସଙ୍ଗେ ମିଶିଯା'ନ୍ତା, ମୁଁ ଯାଇ ତା' ବୁକୁରେ କଚାଡ଼ି ହୁଅନ୍ତି ।

୫ମ ବାଳିକା– କୁନ୍ଦ, ଭୁଲ ବୁଝିଛୁ । ତୋ'ର ଏଡ଼େ ରାଗହେବା ଉଚିତ ନୁହେଁ । ସେହି ଟାଙ୍ଗରା ପଥର ଭିତରେ ଯେ ଅମୃତ ଅଛି ତା ତୁ ଜାଣୁନା । ତୋ' ଅଭିଶାପ ଯଦି ଫଳନ୍ତା ତେବେ ଆମ ଏ ନାଚୁଣୀ ନଈଟି ଯେ ଚିରକାଳପାଇଁ....

ଉପେନ୍ଦ୍ର– ଆଚ୍ଛା ସେ ଗୀତଟି ଗାଇଲ, ତଟିନୀର ସଙ୍ଗ ଧରି ସେଥିରେ କେଉଁଆଡ଼େ ଯିବାକୁ ତମେ କହୁଛ ?

୧ମ ବାଳିକା– ଆଲୋ ମା, ଯିବୁ ପୁଣି କୁଠାକୁ ?

ଉପେନ୍ଦ୍ର– ତେବେ ସେ ଅଜଣାର ଡାକ ଆଉ କ'ଣ ?

୨ୟ ବାଳିକା– ସେ ଯେ ଆମରି ନିଜ ବୁକୁର ବାସନା– ତମେ କ'ଣ ବୁଝିପାରୁନା ?

୩ୟ ବାଳିକା– ଆଲୋ ସୁରମା, ଦେଖ୍ ତ ନଈଟା ଦେଖୁ ଦେଖୁ କିମିତି ଭାରି ଉତଳା ହୋଇଉଠୁଛି । ଜହ୍ନ ଆଲୁଅଟା ପାଗଳପରି ତା' ପଛରେ ଗୋଡ଼େଇ ଗୋଡ଼େଇ ତା' ତରଳ ଗାଲଟିରେ ଶହ ଶହ ଚୋକ ଥୋଇଯାଉଛି । ଆଉରି ଦେଖ୍, ଆରପାଖ ମହୀଗଛ ପାଖରେ ବେତ ଲଟିଟା କିମିତି ଆକୁଳିଆ ହୋଇ ନଇଁପଡ଼ି ନଈ ପାଣିକି କୁଣ୍ଢାଇ ଧଇଲାଣି । ମୋ ପ୍ରାଣଟା ଥୟ ଧରୁନି, ମୁଁ ଯାଏ ।

୪ର୍ଥ ବାଳିକା– ରହଲୋ, ସମସ୍ତେ ତ ସାଙ୍ଗହୋଇ ଯିବା, ତୁ–

୧ମ ବାଳିକା– ଯବୁରାଜ, ସେ ଡାକ, ଏଇ ବନପର୍ବତର ଡାକ । ଆମେ ସବୁବେଳେ ତା' ଶୁଣୁଥାଉ । ଘରେ ଥିଲେ ସେ ଡାକ ଯେପରି କେତେ ଦେଶ ଦେଶାନ୍ତରରୁ ଭାସି ଆସିଲା ପରି ଲାଗେ । କେଉଁ ଅଗ୍ନାଗ୍ନି ବନସ୍ତର ଅମୁହାଁ ଦେଉଳରେ ଏକଲା ରାଜା ଝିଅର ସାଙ୍ଗ ଖୋଜିବା ଡାକପରି ବୁଝାପଡ଼େ; କିନ୍ତୁ ବାହାରେ ଆସି ଏଇ ମେଲା ମେଘ ତଳେ ଠିଆହୋଇପଡ଼ିଲେ ଆଉ ସେ ଡାକ ଶୁଭେନା ! ଚାରିଆଡ଼େ ଅନାଇ

ଦେଖିଲେ, ଏଇ ଚାରିପାଖର ଗଛ ଲତାଙ୍କ ଇଙ୍ଗିତରୁ ବୁଝାପଡ଼େ ସେମାନେ ଯେମିତି ଡାକୁଥିଲେ ! ଏଇପରି ଜହ୍ନରାତିରେ ଡାକ ଏଡ଼େ ଛାତିଚିରା ହୁଏ ଯେ, ଆମେ କେବେହେଲେ ଘରେ ରହିପାରୁନା । ବାହାରେ–

୪ର୍ଥ ବାଳିକା–ଆଲୋ ଆସମ ! ମୁଁ ଗଲି !

୧ମ ବାଳିକା–ରହ, କୁନ୍ଦ ! ଟିକିଏ ରହ ! (ଉପେନ୍ଦ୍ରଙ୍କ ପ୍ରତି) ରହନ୍ତୁ, ଆଜି ଆମର ପୂନିଅଁ ! ପୂଜାରେ ଆପଣ ମିଶିବେ, ଭାଗ ହେବେ ! ଯାଉଁ–

(ସମସ୍ତଙ୍କର ପ୍ରସ୍ଥାନ)

ଉପେନ୍ଦ୍ର–ଅଜଣାର ଡାକ ! କିଏ ସେ ଅଜଣା ! ଏ ବନପର୍ବତ ମଧ୍ୟରେ କ'ଣ ଏତେ ଜୀବନ ଅଛି; ଏ ବାଳକ ବାଳିକା, ଚାରିଆଡ଼ର ପ୍ରକୃତି ମଧ୍ୟରେ ଏତେ ଆତ୍ମୀୟତା ! ନଗରରେ ତ ଏତେକାଳ ରହିଆସିଲି, କାହିଁ ତା' ପ୍ରତି ମୋର ଏ ମମତା ନାହିଁ । ମୁଁ ଚାହେଁ ଏ ବନ-ପର୍ବତରେ ମିଶିଯିବାକୁ; କିନ୍ତୁ କାହିଁ, ମିଶି ତ ପାରେନା !– ଏଇ ସର୍ଦ୍ଦାର–

(ଦୂରରୁ ବୃଦ୍ଧକଣ୍ଠର ଗଦ୍‌ଗଦ୍ ସଂଗୀତ ଶୁଣାଗଲା)

ଗୀତ

ବହୁତ ଦିନର ସଖା ଯଉବନ,
ଆଜି ଆସି ଦେଲ ଦେଖା
ପରଶେ ତମର ଜୀଇଁଉଠେ ପୁଣି
କପାଳ ଲୋଳିତ ରେଖା ।
(ଆଜି) ମଧୁର ତରଳ ଏ ଜହ୍ନ ରାତି
ସ୍ନିଗ୍ଧ ସୁକୁମାର କୋମଳ ଭାତି
ବିଷୟ କଠିନ ବୃଦ୍ଧ ହୃଦୟରେ
ଲେଖଇ ଆନନ୍ଦ ଲେଖା ।
(ଆଜି) କାନନେ ପାହାଡ଼େ ଶୁଭଇ ବଂଶୀ,
କେତେ ହସ ନଭୁ ପଡ଼ଇ ଖସି,
ବିଲେ ବିଲେ ସୁନା ଧାନ ଶିଁଷା ଅଗ-
ଚୁମ୍ବିଯାଏ ଶଶିରେଖା ।
(ଆଜି) ତାରା ଡାକେ ହସି ଆରେକ ତାରା
ପ୍ରଣୟ ପାଗଳ ଆକାଶ ସାରା,
ସ୍ଥବିରା ଧରଣୀ କି ଚେତନା ପାଇ
କରଇ ପ୍ରଣୟ ଭିକ୍ଷା ।
(ଆଜି) ସେହିଦିନ ପରି ଏ ହିୟା ମୋର
ବିକିଦେବି କା'ରେ ପ୍ରଣୟଭୋର

ଆସ ଯଉବନ, ଆସ ବଂଧୁ ମୋର,
ଆସ ଅମୃତର ରେଖା ।

ଉପେନ୍ଦ୍ର– ବୃଦ୍ଧ ଆଜି ପାଗଳ ! ତା' ପ୍ରାଣରେ ପୁଣି ଯୌବନର ଉନ୍ମାଦନା ! ଏ ବୟସରେ ଲୋକେ କିଣା ବିକା ସାରି ଘରକୁ ଫେରନ୍ତି; କିନ୍ତୁ ସର୍ଦ୍ଦାରର ତ ହାଟ ଏ ପର୍ଯ୍ୟନ୍ତ ସରିନି ! ଏ ନଦୀପର୍ବତରେ ଶ୍ୟାମଳିମାରେ କ'ଣ ଏତେ ଅମୃତ ଅଛି ଯାହା ପିଇ ଏ ଲୋକେ ଫୁଟିଲା ଫୁଲ ପରି ଚିରକାଳ ସରସ, ଜୀବନ୍ତ, ଚଞ୍ଚଳ ରହନ୍ତି । ଆଶ୍ଚର୍ଯ୍ୟ ! ସର୍ଦ୍ଦାର ! ଆଜି ବେଶ୍ ଖୁସି ତ !

ସର୍ଦ୍ଦାର– ହସ ହସ ମେଘ ତଳେ ଠିଆହୋଇ କିଏ ଖୁସି ନ ହେବ ଯୁବରାଜ !

ଉପେନ୍ଦ୍ର– ଆକାଶର ହସ ସଙ୍ଗେ ମନୁଷ୍ୟ ପ୍ରାଣର ହସର ସମ୍ପର୍କ ଏତେ ଘନିଷ୍ଠ ବୋଲି ତ ମୋର ମନେହୁଏନା !

ସର୍ଦ୍ଦାର– ମନେହୁଏନା ! ନିଜକୁ ଜାଣିନା ଯୁବରାଜ, ନିଜକୁ ଜାଣିନା !

ଉପେନ୍ଦ୍ର– ତା'ର ମାନେ ?

ସର୍ଦ୍ଦାର– ମାନେ ଏଇ ଯେ, ତମେ ସୃଷ୍ଟିଛଡ଼ା ! ଚାରିଆଡ଼େ ଏ ଯେ ଗଛଲଟା, ବଣ-ଭୂଇଁ, ଫୁଲ-ଫଳ, ଜହ୍ନ-ତାରା ଦେଖିଲେ ସଭିଙ୍କ ମନ ପୂରିଉଠେ; ତମେ କିପରି ସୁଖ ପାଅନା ଯୁବରାଜ ? ଜନ୍ମରୁ ରଜାଘରର ପଥର ପାଚେରି ଆରପଟେ, ବଣ ଭୂଇଁ ଖରାତରାରୁ ଦୂରରେ ରହି ତମେ ସବୁରୁ ପରହୋଇଉଠିଛ । କିନ୍ତୁ ଏଇସବୁ ତ ଆମର ସବୁଠୁ ଆପଣାର । ଏଇଥିରୁ ଆମେ ଭୋକ ମାରୁ, ଶୋଷ ମାରୁ, ଏଇଥିରୁ ଯୁବତୀ ଭୂଷଣ ପାଏ, ଯୁବକ ବେଶ ପାଏ, ଚାଷୀ କାମ ପାଏ, ରାଜା କର ପାଏ– ଯେ ଯାହା ଚାହେ ସେ ତାହା ପାଏ । ବୁଝିଲ ସମ୍ବନ୍ଧ ?

ଉପେନ୍ଦ୍ର– (ସ୍ୱଗତ)– ସର୍ଦ୍ଦାର ଯା' କହୁଛି ତା' ଠିକ୍ ନିଶ୍ଚୟ । ପଥର ପାଚେରି ରାଜପୁରୁଷକୁ ସମସ୍ତ ବିଶ୍ୱରୁ ବିଚ୍ଛିନ୍ନ ରଖି ତା'କୁ ବାସ୍ତବିକ ସୃଷ୍ଟିଛଡ଼ା କରେ । ସେ ଭୁଲିଯାଏ ହସ୍ତପଦର ବ୍ୟବହାର । ଚକ୍ଷୁ କର୍ଣ୍ଣ ତା'ର ବନ୍ଦୀପରି ରହି ବାହାର ସୃଷ୍ଟିର ବିଚିତ୍ରତା ଭୁଲିଯା'ନ୍ତି; ତା'ର ରସଗ୍ରହଣ ବା ରସ ସୃଷ୍ଟିପାଇଁ ଶକ୍ତି ଏକାବେଳକେ ଲୁପ୍ତହୋଇଉଠେ । ପରାଙ୍ଗପୁଷ୍ଟ ଲତାପରି ସେ ଅନ୍ୟର ରସରେ କିମ୍ଭୂତକିମାକାର ହୋଇ ବଢ଼ିବାକୁ ଲାଗେ । ହାୟ, ମୁଁ ଯଦି ଏ ଜ୍ଞାନ ପୂର୍ବରୁ.....

ସର୍ଦ୍ଦାର– ଦୁଃଖ ହେଲା ଯୁବରାଜ ?

ଉପେନ୍ଦ୍ର– ନାଁ ସର୍ଦ୍ଦାର, ଦୁଃଖ କାହିଁକି ? ତମେ ଠିକ୍ କହିଛ । ଆନନ୍ଦ ଗ୍ରହଣ କରିବାର ଶକ୍ତି ଆମର ନାହିଁ । ମୁଁ ବେଶ୍ ବୁଝିଛି– ତମେମାନେ ଏ କୁଟୀରରେ ରହି ମଧ୍ୟ ନଗର ଲୋକଙ୍କଠାରୁ କି ସୁଖୀ !

(ବାଳକମାନଙ୍କର ନାଚି ନାଚି ପ୍ରବେଶ)

୧ମ ବାଳକ– କୁସୁମ ଫୁଟେ !

୨ୟ ବାଳକ– ଭ୍ରମର ଛୁଟେ !

ଉପେନ୍ଦ୍ର— ଆଶ୍ଚର୍ଯ୍ୟ ! ବାଳକ ମୁଖରେ କବିତାର ଆବେଗମୟ ପ୍ରକାଶ !

୩ୟ ବାଳକ— ଏଇ ଯେ ବାପା !

ସର୍ଦ୍ଦାର— ଥାଉ ବାପା, ଯାଅ ଗୀତ ଗାଇ, ନାଚି ବୁଲି ଏ ବନଭୂଇଁ ଏକାକାର କର ! ମୁଁ ଯାଏ— (ପ୍ରସ୍ଥାନ)

୧ମ ବାଳକ— କୁସୁମ ଫୁଟେ !

୨ୟ ବାଳକ— ଭ୍ରମର ଛୁଟେ !

୪ର୍ଥ ବାଳକ— ନୂଆବୋହୂଟିର କବରୀ ତୁଟେ

୧ମ ବାଳକ— ଆସରେ ଭାଇ

୨ୟ ବାଳକ— କାନନ ଛାଇ

୩ୟ ବାଳକ— ଲାଗିଛି ବାଇ

୪ର୍ଥ ବାଳକ— ବାଦଲ ନାଚଇ ମୁରଲୀ ବାଇ ।

୧ମ ବାଳକ— ତଟିନୀ ରାଜେ

୨ୟ ବାଳକ— କୌମୁଦୀ ସାଜେ

୩ୟ ବାଳକ— ଲହରୀ ନାଚେ

୪ର୍ଥ ବାଳକ— ଥରି ଥରି ଉଠେ ପରଶ ଲାଜେ ! (ସମସ୍ତେ ଏକତ୍ର)

ଆଜି ଏ କିଶୋର
ବକ୍ଷ ତଳେ
ପ୍ରାଣ ଉଚ୍ଛଳ !
ଯାଦୁମୟୀ ଜ୍ୟୋସ୍ନା ବଳେ ।
ଯିବୁ ଗୋ ଆମେ
ଜୋଛନା ଧାମେ
ଆକାଶ ବାରିଧି ମିଶେ ଯେ ଥାନେ ।

(ନାଚି ନାଚି ପ୍ରସ୍ଥାନ)

ଉପେନ୍ଦ୍ର— କିଶୋରର ବକ୍ଷତଳେ ପ୍ରାଣ ଉଚ୍ଛଳି ଉଠୁଛି । ଯୌବନର ଶୋଣିତ ଫୁଟି ଉଠୁଛି ! ବୃଦ୍ଧ ଦେହରେ ଯୌବନର କନକ ଶିରୀ ଚିରକ୍ଷଣ ତା'ର ତୂଳି କାଟି ପୋଛି ଲାଗିଛି ! ଏ କ'ଣ ସ୍ୱପ୍ନର ପୁରୀ ! ମାୟାର ବିଳାସ ! କାହାର ଅମୃତମୟ ପରଶରେ ଏମାନଙ୍କର ପ୍ରାଣ ଏଡ଼େ ଉଚ୍ଛଳ, ଏଡ଼େ ଅଦମ୍ୟ ହୋଇଉଠୁଛି ? ନଗର ପ୍ରାଣରେ ଚଞ୍ଚଳତା ଅଛି ସତ; କିନ୍ତୁ ସେଥିରେ ତ ଏତେ ଜୀବନ, ଏତେ ସରଳତା ନାହିଁ ! ଆନନ୍ଦ କାହିଁ ସେଠି ? କିନ୍ତୁ ଏ ଯେ ଏକାବେଳକେ ପ୍ରମତ୍ତର ଭାବ; ଏଠି କ୍ଷୁଦ୍ରତାର ସ୍ଥାନ ନାହିଁ, ନୀଚତାର ଆସନ ନାହିଁ, ଭେଦ ନାହିଁ, ହିଂସା ନାହିଁ ! ଚାରିଆଡ଼େ ପ୍ରୀତି ! ଧରଣୀବଧୂର ପ୍ରେମ ଓ ଆନନ୍ଦର ଫଗୁଆଗୀ ଏହିଠାରେ ଯେପରି ଫିଟିପଡ଼ିଛି । ରାଜବିଭବ ପ୍ରତି ମୋର ଯାହା କିଛି ବିରକ୍ତି ଥିଲା, ତା' ଏବେ ମୋ ହୃଦୟକୁ ସଂପୂର୍ଣ୍ଣ

ଅଧିକାର କରିବସିଲାଣି । ଏ ବନ ପର୍ବତକୁ ଛାଡ଼ିଯିବାକୁ ମୋର ତିଳେ ହେଲେ ବାସନା ନାହିଁ । (ଯବନିକା)

## [ ଦ୍ୱିତୀୟ ଦୃଶ୍ୟ ]

[ରାଜଧାନୀର ଶୃଙ୍ଗାଟକ-ସୌଧ ଓ କୁଟୀରମାଳାର ଅଗ୍ରଦେଶ ଜ୍ୟୋତ୍ସ୍ନାଧୌତ—ତଳେ କୌମୁଦୀ ଓ ଛାୟାର ମିଶ୍ରଣ—ଗତାଗତ ଲୋକମାନଙ୍କର ମୂର୍ତ୍ତି ସେତେ ସ୍ପଷ୍ଟ ନୁହେଁ—ଅପରିଚ୍ଛନ୍ନତା ଓ ଅମଧୁରତାର ଛାୟା ସବୁଆଡ଼େ ପଡ଼ିରହିଛି । (ଏହି ଶୃଙ୍ଗାଟକରେ ସବୁ ଘଟଣା ପରେ ପରେ ଘଟିଯିବ) ଦଳେ ବନ୍ଦୀଙ୍କର ପ୍ରବେଶ— ସେମାନଙ୍କର ବକ୍ଷ ଉନ୍ନତ, ନୟନ ଦୃପ୍ତ—ପଦକ୍ଷେପରେ ଦାମ୍ଭିକତାର ପରଶ ଅଛି । ସେମାନେ ଚାହାନ୍ତି ସବୁବେଳେ ରଣଚଣ୍ଡୀର ପୂଜା ଲାଗୁ, ସେହି କାହାଣୀ ଗାଇ ସେମାନେ ଜୟଶୀଳ ରାଜପୁରୁଷଠାରୁ ପୌରୁଷ ଲାଭକରିବେ ।]

ଗୀତ

ଚରଣ ଯାହାର ମରଣ ଦୁଆରେ
　　　　ଲେଖେ ଅମରଣ ରେଖା
ସେହି ବରଣୀୟ ଏ ଧରଣୀ ତଳେ
　　　　ଗରବ ତା' ଭାଲେ ଲେଖା ।
କୃପାଣ କୃପାଣେ ବାଧିଲେ ସମର
କାନେ ଯା'ର ଆସେ ଗାନ ସରଗର
ସେହି ସେ ମହତ ଏ ଭୀରୁ ମରତେ, ଶୂରତାର ହୋମଶିଖା ।
　　　　ଶୟନ ଶୋଣିତ-ଅରୁଣ ଯାହାର,
　　　　ଯାହା ଶଯ୍ୟା ରକ୍ତରେ ଲାଲ୍
　　　　କରବାଳ-ଧାର ଉରସର ହାର,
ସେହି ଯଶଭାଗୀ, କରୁଣା ଯାହାରେ କରଇ କରୁଣା ଭିକ୍ଷା ।
　　　　ଦଳିତ ଲୋତକ ପୀଡ଼ିତ ରୋଦନ,
　　　　ଯୋଗାଏ ଯାହାରେ ସୁଖ ଉପାଦାନ,
ସେହି ବରଣୀୟ ବୀର; ତା' କପାଳେ ମହା ଗଉରବ ଲେଖା । (ପ୍ରସ୍ଥାନ)

(ଦୁଇଜଣ ସୈନିକର ପ୍ରବେଶ— ସେମାନଙ୍କ ମୁଖରେ ବିକଳତାର ଛବି ଦେଖାଯାଏ । ଅନେକ ଦିନ ଧରି ଯୁଦ୍ଧ କରି ନ ଥିବାରୁ ସେମାନଙ୍କର ହୃଦୟରେ ଶାନ୍ତି ନାହିଁ ।)

୧ମ ସୈନ୍ୟ— ଏଥର ପୂର୍ଣ୍ଣିମାଟା ନିଷ୍ଫଳ ଗଲା !

୨ୟ ସୈନ୍ୟ— ରାଜା ତ ରୋଗରେ ପଡ଼ିଲେ, ନଚେତ୍ ଗୋଟେହେଲେ ଲଢ଼ାଇ ନିଶ୍ଚେ ହୋଇଥା'ନ୍ତା ।

୧ମ ସୈନ୍ୟ– ଆଃ ଯୁଦ୍ଧର କି ମଜା ! କବନ୍ଧର ମରଣ-ନୃତ୍ୟରେ ମୋର ଶରୀରର ପ୍ରତି ରକ୍ତବିନ୍ଦୁ ଆନନ୍ଦ ଶଙ୍ଖ ବଜାଇଉଠନ୍ତି !

୨ୟ ସୈନ୍ୟ– ଗାଁରେ ନିଆଁ ଲଗାଇଦେଇ ଦୂରରୁ ବ୍ୟତିବ୍ୟସ୍ତ ନରନାରୀର ବିକଳ ବିଳାପ ଶୁଣିବା ଓ ଅଗ୍ନିଦେବତାର ତାଣ୍ଡବଲୀଳା ଦେଖିବା ପୁଣି ଆଉ ଏକ ମଜା !

୧ମ ସୈନ୍ୟ– ନିକଟରେ ନିଶ୍ଚେ ଗୋଟେ ଯୁଦ୍ଧ ହେବ !

୨ୟ ସୈନ୍ୟ– କାହିଁକି ? ଶାମା ସର୍ଦ୍ଦାର ଯୁବରାଜଙ୍କୁ କର ଦେବାକୁ କ'ଣ ନାହିଁ କଲା ?

୧ମ ସୈନ୍ୟ– ନାହିଁ ହୋ, ପର ସଙ୍ଗେ ନୁହେଁ– ଏ ଯୁଦ୍ଧ ଘରେ ଘରେ ହେବ । ଉପେନ୍ଦ୍ର ଆଉ ଗଜେନ୍ଦ୍ର ସିଂହାସନ ପାଇଁ ଲଢାଇ କରିବେ !

୨ୟ ସୈନ୍ୟ– ତେବେ ଗୋଟାଏ ଆନନ୍ଦର ବିଷୟ ହେବ ! ମୁଁ ଗଜେନ୍ଦ୍ର ପଟ ନେବି ।

୧ମ ସୈନ୍ୟ– ତମେ କାହା ପକ୍ଷ ନେବା ନ ନେବା ସମାନ !

୨ୟ ସୈନ୍ୟ– କେମନ୍ତ ?

୧ମ ସୈନ୍ୟ– ତୁମର ବୀରତ୍ୱ ଜଣାଅଛି !

୨ୟ ସୈନ୍ୟ– କ'ଣ– କାଲିର ପିଲା ତୁ– ଆମ ଆଗରେ ଜନ୍ମ–ତୁ ଆମର ବଳ କଳିବୁ !

୧ମ ସୈନ୍ୟ– କଳିବାକୁ ତ ପଡ଼ିଛି । ମୁଁ ଜାଣେ, ତମେ ବୟସରେ ବଡ଼ ହେଲେହେଁ ବିଚାରବୁଦ୍ଧିରେ ଖୁବ୍ ସାନ । ରାଜାଙ୍କର ପ୍ରିୟ ହେବାକୁ ତମେ ସେଥର କି ଭୀଷଣ ବିଶ୍ୱାସଘାତକତା ନ କଲ ! ସେ ତ ବୀରତ୍ୱ ନୁହେଁ– ସେ ଭୀରୁତା ! କିନ୍ତୁ ମୁଁ ଯେତେ ଲୋକ ହତ୍ୟା କରିଛି, ସବୁ ହାତାହାତି, ଆଗାଆଗି ! ଏ ମୋର ଖଣ୍ଡା, ଆଉ ଏ ଦେଖ ଦେହର ଚାରିଆଡ଼େ କୁନ୍ତର ଘା' ସବୁ ! ଏ ମୋର ଗୌରବର ସାମଗ୍ରୀ !

୨ୟ ସୈନ୍ୟ– କଥା ବେଶ୍ କହିପାର । କିନ୍ତୁ ଭାବି ଦେଖ, ବିଶ୍ୱାସଘାତକତା କରିଛି ବୋଲି ଯେ ମୋର ବଳ ନାହିଁ ଏହା ନିତାନ୍ତ ଭୁଲ !

୧ମ ସୈନ୍ୟ– କଦାପି ଭୁଲ୍ ନୁହେଁ, ଯଥେଷ୍ଟ କଳିଛି !

୨ୟ ସୈନ୍ୟ– ତେବେ ପରୀକ୍ଷା !

୧ମ ସୈନ୍ୟ– ଆଚ୍ଛା ତେବେ, ଚିନ୍ତା ନାହିଁ !

୨ୟ ସୈନ୍ୟ– ଚିନ୍ତା ନାହିଁ !

୧ମ ସୈନ୍ୟ– ଚିନ୍ତା ନାହିଁ !

୨ୟ ସୈନ୍ୟ– ଆସ ତେବେ, ଏ ନିର୍ମଳ ଜ୍ୟୋସ୍ନାରେ ମୋର ତୃଷାତୁର ଫଳକ ପିପାସା ମେଣ୍ଟିବାର ସୁଯୋଗ ପାଉ !

୧ମ ସୈନ୍ୟ– ମୋର ଏ ବାହୁ ଆଜି ଏ ପବିତ୍ର ପୂର୍ଣ୍ଣିମାରେ ଯୁଦ୍ଧ ଗୌରବ ବହନକରୁ ।

୨ୟ ସୈନ୍ୟ– ଆସ !

୧ମ ସୈନ୍ୟ– ଆସ !

(ଦୁଇ ଦିଗରୁ ଅସ୍ତ୍ର ଉଠାଇ ଦୁହିଁଙ୍କର ଆକ୍ରମଣ । ଠିକ୍ ସଂଘର୍ଷଣ ସମୟରେ ପୁରୋହିତଙ୍କର ସହସା ପ୍ରବେଶ– ମୁଖରେ ତାଙ୍କର ଶାନ୍ତି । ଉଜ୍ଜ୍ୱଳ ଗାତ୍ର, ବ୍ରହ୍ମ ତେଜ ।)

ପୁରୋହିତ– ଶାନ୍ତିଃ ଶାନ୍ତିଃ ! ଓଃ, ଏ ପୁଣ୍ୟକାଳରେ ଏ କି ଜଘନ୍ୟ କାଣ୍ଡ ହୋ ! ଛାଡ଼ିଯାଅ ଛାଡ଼ିଯାଅ, ତୁମେ କ'ଣ ଶୁଣିନାହଁ ରାଜାଙ୍କର ମୃତ୍ୟୁ ହେଲା ।

(ସୈନିକ ଦୁଇଟି ସ୍ତମ୍ଭିତ ହୋଇଗଲେ)

୧ମ ସୈନ୍ୟ– ସତେ !

୨ୟ ସୈନ୍ୟ– ସତେ !

ପୁରୋହିତ– ସତ୍ୟ !

(ଦୁଇ ସୈନିକଙ୍କର ଓ ପୁରୋହିତଙ୍କର ମଧ୍ୟ ପ୍ରସ୍ଥାନ–କିଛିକ୍ଷଣ ନିସ୍ତବ୍ଧ ହେଲା ପରେ ଦଳେ ବାଳକର ପ୍ରବେଶ । ସେମାନଙ୍କର ମୁହଁରେ ଦୁଷ୍ଟାମିର ଚିହ୍ନ ଫୁଟିଉଠୁଛି । ନୟନରେ କୁଟିଳତାର ରେଖା ଅଙ୍କିତ ରହିଛି ।)

ନଟବର– ଆରେ ସମସ୍ତେ ଆସିଛନ୍ତି ତ ?

ସାଧୁ– ନା' ଭାଇ, ଗୋପାଳ ଆସିନି ।

ରାଧୁ– ତା ଦଦା ଡରରେ ସେ ଘରେ ଲୁଚିଲା ।

ଦାମ– ନା, ଅବଧାନର ଏ ସବୁ କାଣ୍ଡ !

ସାଧୁ– ନା' ଭାଇ, ତାଙ୍କର ଏଥିରେ ଯାଏ ଆସେ କେତେ ?

ନଟ– ହଁ ହଁ, ଥାଉ ସେ ସାଧୁମଣିଆ । ଆରେ ତୁ କ'ଣ ଜାଣୁ ସେଗୁଡ଼ାଙ୍କର କି ଖରାପ ମତଲପ ? ଆମକୁ ଟିକିଏ ହସିବାର ଦେଖିଲେ ରାଗ ଆସେ ତାଙ୍କ ମନରେ । ଆଉ ସବୁଠୁ ଖରାପ ଅବଧାନଟା । ସକାଳ ଖରା ତରତର ହୋଇ ନ ଚୁମିଲେ ଯେମିତି ପଦ୍ମଫୁଲ ଫୁଟେନା, ତା'ମତରେ ବେତଟା ଚାଉଁ ଚାଉଁ ଥରେ ଦି'ଥର ପିଠିରେ ନ ବସିଲେ ମୁଣ୍ଡରେ ଜ୍ଞାନଫୁଲ ଫୁଟେନା ।

ଦାମ– ଆପଣେ କହନ୍ତି ବେତ ନ ଧରିଲେ ତାଙ୍କୁ ମଧ୍ୟ ପାଠ ଆସେନା ।

ରାଧୁ– ଆଉ ମଧ୍ୟ କହନ୍ତି, ତାଙ୍କ ଆପଣଙ୍କ ବେତ-ଦେବତାଠାରୁ ସେ ବହୁତ ଋଣ କରିଥିଲେ । ଆଉ ଋଣ ନ କରି ଆପଣଙ୍କୁ ଶୁଝି ଦେବାର ଇଚ୍ଛାଟା ତାଙ୍କର ଥିଲା । କିନ୍ତୁ ଇତିମଧ୍ୟରେ ବୁଢ଼ା ଆପଣଙ୍କର କାଳ ହୋଇଗଲା । ସେ ଋଣ ପୁଣି ଶୁଝିବେ ତ ? ତେଣୁ ଗୁରୁ ଦେଇଥିବା ସମ୍ପତ୍ତିଟାକୁ ଆମରି ମଧ୍ୟରେ ବାଣ୍ଟିଦେଇ ସେ ଋଣରୁ ରକ୍ଷା ପାଇବେ ବୋଲି ତାଙ୍କର ବିଶ୍ୱାସ ।

ନଟ– ବେତ ଖଣ୍ଡକର ସତେ କେଡ଼େ ଭାଗ୍ୟ !

ଦାମ– ଆର ଜନ୍ମରେ ମୁଁ ହେବି ବେତ ଆଉ ଅବଧାନେ ହେବେ ଟାଟ ।

ରାଧୁ– ମୁଁ ହେବି ଅବଧାନ ।

ଦାମ– ନା ମୁଁ ହେବି ଅବଧାନ, ତୁ'ହ ବେତ, ସାଧୁ ହଉ ଖଡ଼ିମୁଣ୍ଡା ।

ରାଧୁ– ନାହିଁ ! ନାହିଁ !

ନଟ– ଆରେ ସେ କଥା ଥାଉ, ରାତି ହେଲା ଯେ, ଆଜି ଯେ ସପା ଆଲୁଅ ପଡ଼ିଛି; ଏଥିରେ କିଛି ଗୋଟେ ନ କଲେ କି ହୁଏ ?

ସାଧୁ— କୁଞ୍ଜବିହାରୀଙ୍କ ଦେଉଳରେ କୀର୍ତ୍ତନ ହେଉଛି, ଚାଲ ସେଠିକୁ ଯିବା, ପ୍ରସାଦ ପାଇବା, ଗୀତ ବି ଶୁଣିବା ।

ନଟ— ଦୂର୍ ବୋକା, ତତେ କିଏ ପଚାରୁଛି ?

ଦାମ— ରାମ ତ ନାହିଁ, ସେ ବାଟ ଚିହ୍ନିଛି କିଏ ?

(ସହସା ରାମର ପ୍ରବେଶ)

ରାମ— ଏଇରେ ଭାଇ ଅଇଲି ।

ସମସ୍ତେ— କିରେ, କିରେ, କିମିତି ଅଇଲୁ ?

ରାମ— ଚୁପ୍ ଚୁପ୍, ଦାଦା ଶୁଣିବ, ଚାଲ ତେଣେ କହିବି ।

ନଟ— ଯା' ହଉ, ତୁ ତ ଆସିଗଲୁ, ତତେ ଆମେ ଅନେଇ ବସିଥିଲୁ ପରା । ଏବେ ଚାଲ ସେହି ବୁଢୀ ବାଡ଼ିରୁ ପିଚୁଳି ବାଡ଼େଇ ଆଣିବା ।

ଦାମ— ଭୀମା ବାଡ଼ିରେ କଦଳୀ ଖାଲି ପାଚି ଫୁଟିପଡୁଛି । ସେ ଦିନ ଏତେ ନେସିଡି ହୋଇ ମାଗିଲି, ଗୋଟେ ହେଲେ ଦେଲାନି ।

ରାମ— ଏଇତ— ଚାଲ ତେବେ ।

ସାଧୁ— ଏ ଭାଇ, ମୋ କଥା ଶୁଣ । ଦୁଇଟିଯାକ ଦୁଃଖୀ ଲୋକ, ସେଇ ଫସଲଟିମାନ ତାଙ୍କର ଆଶ୍ରା । ଘରେ ଶୁଣିଲେ ବଡ଼ ଗାଳିଦେବେ ।

ନଟ— ଯାକୁ କିଏ ଆସିବାକୁ କହିଥିଲା ? ଏଇଟା ଖାଲି ଆମକୁ ଚିହ୍ନାପକାଇବ ।

ରାମ— ନାଇ ଭାଇ ସାଧୁ ତୁ ଥା, ଆମେ ଯାଉଛୁ ।

ସାଧୁ— ହଉ ଭାଇ, ସେଇୟା ହେଉ ।

(ସମସ୍ତଙ୍କର ପ୍ରସ୍ଥାନ—ଗଣିକା ମଦନିକାର ଅଭିସାର ଯାତ୍ରା । ଜୀବନର ଦୁଷ୍କୃତିପାଇଁ ଏ ଜହ୍ନରାତିରେ ଆଜି ତା'ର ଚେତନା ଆସିଛି । ତେଣୁ ତା' ମୁଖରେ ବିରକ୍ତିର ଆଭା ।)

ମଦନିକା— ଜୀବନର ଅଭିଜ୍ଞତା ଯଥେଷ୍ଟ ଅଛି ! କିନ୍ତୁ କି ତିକ୍ତ ! ସମସ୍ତେ କହନ୍ତି, କବି ଗାଆନ୍ତି— ଯୌବନ ବଡ଼ ମଧୁର, ବଡ଼ ଉପଭୋଗ୍ୟ ! କିନ୍ତୁ ହାୟ, ମୋର ଯୌବନ ! ଶତ ଅଚିହ୍ନା ପାଷଣ୍ଡର ପିପାସା ତୁଷ୍ଟ କରିବାପାଇଁହିଁ ମୋର ଯୌବନ ! ମତେ ନେଇ ସମସ୍ତେ ଉପଭୋଗ କରିଛନ୍ତି; କିନ୍ତୁ ହା କପାଳ, ମୁଁ ନିଜେ କ୍ଷଣେ ହେଲେ ଉପଭୋଗ କ'ଣ ଜାଣିନି ! ଫୁଲ ଫୁଟେ, ପକ୍ଷୀ ଗାଏ, ବସନ୍ତରାତିର ମାଦକତା ଧରଣୀର ବକ୍ଷେ ବକ୍ଷେ ଭରିଉଠେ— ସେତେବେଳେ ଯୁବତୀ ପାଗଳିନୀ ହୋଇ ଉଠେ; କିନ୍ତୁ ସେ ସବୁ ମୋ ପ୍ରତି ତୁଚ୍ଛ ! ବେଳ ଅବେଳରେ ସମସ୍ତଙ୍କୁ ପ୍ରୀତି ଦାନକରି ମୋର ପ୍ରେମର ଫରୁଆ ଏକାବେଳକେ ଖାଲିହୋଇଯାଇଛି ! ଆହା, ଜୀବନରେ କେତେ ଦେବତାଙ୍କୁ ପୂଜା କରିବାକୁ ବସିଛି; କିନ୍ତୁ କରିପାରିନି, ଅର୍ଘ୍ୟ ଅଭାବରୁ ! ସେମାନେ ଫେରିଯାଇଛନ୍ତି ଖାଲିହାତରେ । ଏ ହୃଦୟ ଖାଲି ଫୁଟିଉଠିଛି ଅଜଣା ବ୍ୟଥା ନେଇ ! ଯୌବନଶ୍ରୀକୁ ନୈବେଦ୍ୟ ନ କରି ପଣ୍ୟ କରିବାରୁ ସୌନ୍ଦର୍ଯ୍ୟ-

ଲକ୍ଷ୍ମୀ ମୋ କୁଟୀରରୁ ପଳାୟନ କରିଛନ୍ତି ! ଆଜି ମୁଁ ଅଲକ୍ଷ୍ମୀର ଦାସୀ— ଅନାଚାରର ବଧୂ ! ମୁଁ ସୌନ୍ଦର୍ଯ୍ୟର ନୁହେଁ, ମୁଁ ଧନର । ଧନ ଦେଇ ସମସ୍ତେ ମତେ ଉପଭୋଗ କରିପାରିବେ । ସେ ଦାନରେ ମୋର ଗୌରବ କିଛି ନାହିଁ— ତେଣୁ ଆନନ୍ଦ ନାହିଁ । ଆଜିର ଏ ମଧୁର ଯାମିନୀ— ଚନ୍ଦ୍ରିକାର ତରଳତାରେ କେତେ କିଶୋରୀର କୋମଳ ବକ୍ଷ ଥରିଉଠୁଥିବ ! କେତେ ପ୍ରାଣ ପ୍ରଣୟର ସୌରଭରେ ପୂରିଉଠୁଥିବ; କିନ୍ତୁ ଦୁର୍ଭାଗ୍ୟ ମୋର ! ଏ ସବୁର ମାୟା ତ ମତେ ଛୁଏଁନା ! ମୁଁ ଧନଦେବତାର ପୂଜାଲାଗି ସିନା କୁଟୀର ଛାଡ଼ି ଆସିଛି ! ଧନ୍ୟ ସେହି ପଲ୍ଲୀସୀମନ୍ତିନୀଗଣ ଯେଉଁମାନେ ଶୟନେ, ସ୍ୱପନେ ଆଉ ଏକ ହୃଦୟର ପ୍ରତିବିମ୍ବ ଧରି କାଳ ଯାପନ୍ତି ! ସେଠାରେ ମାଧବୀଲତା ଯେପରି ବକୁଳିତ ରସାଳକୁ ଭିଡ଼ିଧରିଥାଏ, ନାଗବଲ୍ଲୀ ଯେପରି ପୂଗାଙ୍ଗରେ ଭିଡ଼ିହୋଇ ରହିଥାଏ, ସେହିପରି ଏକ ନାରୀର ପ୍ରାଣ ଆଉ ଏକ ନରର ମହାନ୍ ହୃଦୟର ଚାରିପାଖେ ଅନନ୍ତ ପିପାସା ଧରି, ମଧୁର ଆବେଗରେ ମିଶି ରହିଥାଏ ! କି ସୁଖ ସେ ! କିନ୍ତୁ ଏ ନାଗର ! ଧିକ୍ ଏହାର ଆଡ଼ମ୍ବରକୁ ! ମୋ'ପରି କେତେ ଅଭାଗିନୀ ଯେ ଏହାର ପଙ୍କିଳ କ୍ରୋଡ଼ରେ ନିକ୍ଷିପ୍ତ ହୋଇ ଆର୍ତ୍ତନାଦ କରୁଥିବେ, ତା କିଏ କହିପାରେ ! ହାୟ ଈଶ୍ୱର ! ଯାଏ, ଏଇ କେ ଏଣେ ଆସୁଛନ୍ତି ।

(ପ୍ରସ୍ଥାନ—ପୁରୋହିତ ଓ ଦୁଇଜଣ ନାଗରିକଙ୍କର ପ୍ରବେଶ)

ପୁରୋହିତ— ତମର ଦୁଃଖ ଦେଖି ମୋର ବୁକୁରେ ବାଧା ଲାଗୁଛି; କିନ୍ତୁ କ'ଣ କରାଯିବ, ଏ ନଗରର ପ୍ରତି ବାୟୁକଣାରେ ନଷ୍ଟତାର ବୀଜ ଅଛି— ବାଳକ ବାଳିକା ଯେ ଦୁଷ୍ଟ ହେବେ ଏଥିରେ ବିଚିତ୍ର କ'ଣ ?

୧ମ ନାଗରିକ— ଦୁଷ୍ଟ ପରି ଦୁଷ୍ଟ ! ଆଜି ଏ ପୂର୍ଣ୍ଣିମାରେ କା'ର କେତେ ଆନନ୍ଦ ! ଆମକୁ ଆଖିରୁ ରକ୍ତ ଗଡ଼ାଇବାକୁ ହେଲା । ଗୋଟିଏ ବୋଇଲେ ଗୋଟିଏ ନାହିଁ, ସବୁ କଦଳୀତକ ନେଇଯାଇଛନ୍ତି । ସେତକ ମୋର ଆଶ୍ରା ।

୨ୟ ନାଗରିକ— ପିଚୁଳିତକ ଯାହା ନେଲେ ନେଲେ, ବାଡ଼ଟା ଯେ ଭାଙ୍ଗିଦେଲେ ! ଗୋଛାଏ ଗାଈ ଗଦାଟିଯାକ ଧାନ ଚୋବାଇଯାଇଛନ୍ତି ।

ପୁରୋହିତ— ହଁ, ଆଉ ଦୁଃଖ କରି କ'ଣ ହେବ ? ଭଗବାନଙ୍କର ଉଦ୍ଦେଶ୍ୟ— ଆଚ୍ଛା ତମେ କ'ଣ ଜାଣନା ଯେ ରାଜାଙ୍କର କାଳହେଲାଣି ?

୧ମ ନାଗରିକ— ସତେ !

୨ୟ ନାଗରିକ— ସତେ !

ପୁରୋହିତ— ସତ୍ୟ !

(ସମସ୍ତଙ୍କର ପ୍ରସ୍ଥାନ— ଯୁଦ୍ଧ ବେଶରେ ଗଜେନ୍ଦ୍ର, ସାମନ୍ତ ଓ ବିଶୋଇର ପ୍ରବେଶ ।)

ସାମନ୍ତ— କ'ଣ କହୁଛ ବିଶୋଇ ! ଦାବି ବର୍ତ୍ତମାନ ଆଗ ମୋର ।

ବିଶୋଇ— ନିଶ୍ଚୟ, ନିଶ୍ଚୟ । ଖଣ୍ଡାର ଦାବିହିଁ ପ୍ରକୃତ ଦାବି ।

ସାମନ୍ତ— କ୍ଷତ୍ରିୟ ନିକଟରେ ବୟସ ବା ରକ୍ତର ମୂଲ୍ୟ କିଛି ନାହିଁ ।

ବିଶୋଇ— ତା' ଠିକ୍ । ଉପେନ୍ଦ୍ର ବଡ଼ ସତ; କିନ୍ତୁ କ୍ଷତ୍ରିୟ ନୁହେଁ । ସେ ଯୁଦ୍ଧ ଜାଣେନା, —ସିଂହାସନ ତା'ର ପ୍ରାପ୍ୟ ନୁହେଁ ।

ସାମନ୍ତ— ପ୍ରାପ୍ୟ ତାହାରି, ଯା'ର କୁନ୍ତ ଅଗରୁ ରକ୍ତ ଶୁଖେନା !

ବିଶୋଇ— ପ୍ରାପ୍ୟ ତାହାରି, ଯା'ର ବୀର ହୃଦୟ ଉତ୍ପୀଡ଼ିତର ରୋଦନରେ ଅବିଚଳ ରହିପାରେ— ଅବଳାର କାରୁଣ୍ୟ ଲହରୀରେ ନଇଁପଡ଼େନା !

ସାମନ୍ତ— ବେଶ୍ ବୁଝିଛି ବିଶୋଇ ! ଉପେନ୍ଦ୍ର ଏକାବେଳକେ କାପୁରୁଷଟାଏ— ବଗିଚାର ଫୁଲଟାଏ ଛିଣ୍ଡିଗଲେ ତା' ଆଖିରୁ ଲୁହ ଗଡ଼େ, ସେ କି ରାଜା ହେବ ?

ବିଶୋଇ— ଛି, ଛି ! ଉଆସର କେଉଁ ବାଳିକାର ଆଖିରେ ଲୁହ ଦେଖିଲେ, ଯା'ର ବକ୍ଷ ଫାଟିଯାଏ, ସେ କି ରାଜା ହେବ ?

ସାମନ୍ତ— ମୁଁ ସେପରି ନୁହେଁ ନିଶ୍ଚୟ ବିଶୋଇ !

ବିଶୋଇ— ସେ କଥା ବିଶୋଇ ଛଡ଼ା ଅଧିକ କେ ଜାଣେ ?

ସାମନ୍ତ— ମୁଁ ରାଜାହେବାର ଯୋଗ୍ୟ ନୁହେଁ ?

ବିଶୋଇ— ଏ ପ୍ରଶ୍ନ ପଚାରିବାର ଅଛି ? ଉପେନ୍ଦ୍ରଙ୍କର ପୋଥିପତ୍ରରେ ଯୋଗ୍ୟତା ଅଛି; କିନ୍ତୁ ରାଜ୍ୟଶାସନରେ ସେ ସବୁ ଗଳଗ୍ରହ । ରାଜଲକ୍ଷ୍ମୀର ଆବାହନ ଖଡ୍‌ଗ ଲେଖନୀ ଆଉ ରକ୍ତ-ମସିରେ । ତା' ଛାମୁଁଇ ପାରିବେ ।

ସାମନ୍ତ— ମୁଁଇ ପାରିବି—ଆଉ କେହି ନୁହେଁ । କିନ୍ତୁ ଭୂପେନ୍ଦ୍ର— (ଡଗରର ପ୍ରବେଶ)

ଡଗର— ଆଜ୍ଞା, ଭୂପେନ୍ଦ୍ର ସା'ନ୍ତ ଧନାଗାରର କଞ୍ଚି ହସ୍ତଗତ କଲେଣି ।

ସାମନ୍ତ— କ'ଣ କହୁଛ ! ଯାଅ ବିଶୋଇ, ସୈନ୍ୟ ନେଇ ତାକୁ ପରାସ୍ତକର ।

(ବିଶୋଇର ପ୍ରସ୍ଥାନ)

ଡଗର— ଆଜ୍ଞା, ଏଣେ ରାଜଶବ ଯେ ପଡ଼ିରହିଲା ।

ସାମନ୍ତ— ସେ କଥା ପରେ । ପ୍ରଥମେ ବୁଝାଯାଉ ସିଂହାସନ କା'ର । ଯା'ର ସିଂହାସନ ସେହିଁ ସତ୍କାର କରିବ । ମରିବା ପୂର୍ବରୁ ପିତାଙ୍କର ଉଚିତ ଥିଲା, ସେ କହିଯାଇଥା'ନ୍ତେ ସିଂହାସନ କା'ର । ତାଙ୍କର ସେ ଅନ୍ୟାୟର ଶାସ୍ତି ତାଙ୍କ ଶବକୁ ମଧ ଭୋଗିବାକୁ ହେବ । (ପ୍ରସ୍ଥାନ)

ଡଗର— ହାୟ ସମ୍ପଦ ! କି ଶକ୍ତି ତୁମ ପ୍ରଭାବର ! ସେଥିରେ ମନୁଷ୍ୟ ରକ୍ତର ସମ୍ବନ୍ଧ ମଧ ଏପରି ପାସୋରିଯାଏ ! (ପୁରୋହିତର ପ୍ରବେଶ)

ପୁରୋହିତ— କ'ଣ ଡଗର ?

ଡଗର— ଆଜ୍ଞା, ସେ ସାନ ସା'ନ୍ତଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଗଲେଣି ।

ପୁରୋହିତ— ଯେ ଜୀବନରେ ରାଶି ରାଶି ରକ୍ତରେ କେତେ ପିତା-ମାତା-ବନ୍ଧୁର ତର୍ପଣ କରିଛି, ମରଣ ପରେ ତା'ର ପୁତ୍ରମାନେ ତାକୁ ତର୍ପଣ କରିବେ ଶୋଣିତରେ ! ତାହାହିଁ ଏ ସଂସାରର ନିୟମ !

ଡଗର— ଆଜ୍ଞା, ଉପେନ୍ଦ୍ର ସା'ନ୍ତ କ'ଣ ଆସିବେନି !

ପୁରୋହିତ— ସେ ଏକ ସନ୍ଦେହର ବିଷୟ । ତେବେ ଦେଖାଯାଉ । ଆସ ତାଙ୍କୁ ଡାକି ଯିବା, ଏଣେ ଏ ତାଣ୍ଡବ ଲାଗିଯାଉ । (ପ୍ରସ୍ଥାନ)

(କିଛିକ୍ଷଣ ପରେ ଶୃଙ୍ଗାଟକ ଜନହୀନ— ଦୂର ପ୍ରାସାଦରୁ କ୍ରନ୍ଦନର ରୋଳା ଉଠୁଛି । କ୍ରନ୍ଦନ ସ୍ଥଗିତ ହେଲେ ଖଣ୍ଡଯୁଦ୍ଧର ଗୋଳମାଳ ଶୁଣାଯାଉଛି—ଏପରି ସମୟରେ ରାଜଲକ୍ଷ୍ମୀ ପ୍ରବିଷ୍ଟ ହେଲେ । ଉଜ୍ଜ୍ୱଳପ୍ରଭ ଚନ୍ଦ୍ରକିରଣରେ ତାଙ୍କର ମସ୍ତକର ରତ୍ନକିରୀଟ ଝକ୍‌ଝକ୍ କରୁଥିଲା । କିନ୍ତୁ ସମସ୍ତ ଅଙ୍ଗଟି ଖାଲି ଛାୟାପରି ଦେଖାଯାଏ ।

ରାଜଲକ୍ଷ୍ମୀ— ଏ ପୂର୍ଣ୍ଣିମା ରଜନୀରେ ଆକାଶର ଏ ଶୁଭ୍ର ହାସ୍ୟ— ଧରଣୀରେ ଯଦି ନର ରକ୍ତର ଅରୁଣାଭା ଫୁଟେ ତେବେ କି ମଧୁର ମିଳନ ହୁଅନ୍ତା ! ଅରାଜକତା ! ପ୍ରାଣରେ ଆଜି କି ସୁଖ ! ବିପ୍ଳବ !— ଏଇଥିରେ ତ ମୋର ଆନନ୍ଦ ! ଆସ ବିପ୍ଳବ, ଆସ ଅରାଜକତା ! ନର ରକ୍ତରେ ତମର ଆଗମନୀ ତରଳ ହୋଇ ବହିଯାଉ, ମୁଁ ଏ ଉଚ୍ଛନ୍ନ ହୃଦୟରେ ଟିକିଏ ହେଲେ ଶାନ୍ତି ପାଏ । ଲୋକେ ଶାନ୍ତି ଖୋଜନ୍ତି । ଲୋକେ ଶୃଙ୍ଖଳା ଚାହାନ୍ତି ! କିନ୍ତୁ କି ମୂର୍ଖ ! ମନୁଷ୍ୟର ବିଦ୍ୟା ଓ ବୁଦ୍ଧିକୁ ଜଡ଼ କରି ରଖିବାର ଏହାହିଁ ଏକମାତ୍ରା ପନ୍ଥା । ସବୁ ମନୁଷ୍ୟ ଯଦି ବ୍ରାହ୍ମଣ ପରି ଶାନ୍ତିର ଆଶ୍ରୟ ନିଅନ୍ତି, ତେବେ ଦିନ ଆସିବ ଯେବେ ମନୁଷ୍ୟ ଜାତି ଧରାପୃଷ୍ଠରୁ ବିଲୁପ୍ତ ହେବ ଏବଂ ବ୍ୟାଘ୍ର, ଭଲ୍ଲୁକହିଁ ଏ ବିସ୍ତୀର୍ଣ୍ଣ ବସୁନ୍ଧରାକୁ ଶାସନ କରିବେ; କିନ୍ତୁ ତା' ହେବନି ! ମୁଁ ଯେ ଅଛି ! ଆଜି ମନେପଡୁଛି— ସୃଷ୍ଟିର ଆରମ୍ଭରେ ମତେ ଆତ୍ମହତ୍ୟା କରିବାକୁ ପଡୁଥିଲା— ଏଡ଼େ ଲାଞ୍ଛନା, ଏତେ ଅବମାନନା ମୋ ଭାଗ୍ୟରେ ପଡ଼ିଲା । ସମସ୍ତେ ତ ତଟିନୀ ତଟ ଉପବନରେ ବ୍ରହ୍ମବାଦ ବିଭୋରହୋଇ ଋକ୍,ସାମର ଅବବୋଧନ କଲେ, ମତେ ପଚାରେ କିଏ ? କିନ୍ତୁ ତା' କି ହୁଏ ? ଜୀବନ ଥିଲାପର୍ଯ୍ୟନ୍ତ ରକ୍ଷଣ ଅଛି । ରକ୍ଷଣର ଅଧିଷ୍ଠାତ୍ରୀ ମୁଁ, ତେଣୁ ଋକ୍ ରକ୍ଷାପାଇଁହିଁ ଦିନେ ସ୍ୱୟଂ ଋତ୍ୱିକ ମୋ ପାଖରେ ଶରଣଗଲେ । ସେହିଦିନୁ ମୋର ପ୍ରତିଷ୍ଠା । କେତେ ମଣିମୟ ମୁକୁଟ ମୋ ପଦତଳେ ଲୁଟିଛି । କେତେ ମନୀଷୀର ପ୍ରାଣ ମୁଁ ମୋ ହାତରେ ଖେଳେଇଛି । ପ୍ରତି ପ୍ରଭାତରେ କେତେ ଲକ୍ଷ ସମ୍ରାଟଙ୍କର କରୁଣ ନିବେଦନ ମୋ ଅନୁଗ୍ରହ ପାଖେ ପାଖେ ଘୂରି ବୁଲୁଛି । ପ୍ରତି ମୂହୂର୍ତ୍ତରେ କେତେ ଲୋକର ମୁଣ୍ଡ ମୋ'ରି ଲାଗି କରବାଳର ଧାର ପରୀକ୍ଷା କରୁଛି । ଜଗତରେ କେଉଁ ଦେବତା ଏତେ ପୂଜା ପାଏ ? ଆସ ବିପ୍ଳବ ! ଆସ ଅରାଜକତା ! ଆସ ମୋର ପ୍ରିୟ ସଖୀ ଦୁଇଟି । ଆଜି ରାକାଶଶୀର ସ୍ମିତ ତଳେ ଏହିଠାରେ ଆସନ ପାତିବା । ଉପେନ୍ଦ୍ର, ସରସ୍ୱତୀର ବରପୁତ୍ର; କିନ୍ତୁ ସେ ସିଂହାସନ ଚାହେନା । ସେ ଯଦି କୋଣସି ପ୍ରକାରେ ଦାବି ଆରମ୍ଭକରେ ତେବେ

ସିନା ଏ ଉସବ ଏକପ୍ରକାର ଉପଭୋଗ୍ୟ ହୋଇପାରେ ! ଆଚ୍ଛା ଦେଖାଯାଉ । ଯାଏ—

(ପ୍ରସ୍ଥାନ— ଦୂରରେ ସେହିପରି କ୍ରନ୍ଦନର ଓ ଖଣ୍ଡଯୁଦ୍ଧର ରୋଳ— ଯବନିକା)

## [ ତୃତୀୟ ଦୃଶ୍ୟ ]

[ଗୋଟିଏ କାନନପଥ—ନିଶୀଥର ଚନ୍ଦ୍ର ଆହୁରି ଉଜ୍ଜ୍ୱଳ ହୋଇଉଠୁଛି; କିନ୍ତୁ ବୃକ୍ଷଲତାର ଘନ ପତ୍ରଜାଲ ଭେଦକରି କୌମୁଦୀ ସ୍ୱଚ୍ଛନ୍ଦଭାବରେ କ୍ରୀଡ଼ା କରିପାରୁ ନାହିଁ । ସମସ୍ତ ପଥଟି କ୍ଷୀଣ ଆଲୋକ ଓ ଘନ ଛାୟାରେ ବିଚିତ୍ର । ସେହି ପଥରେ ଡଗର ଓ ପୁରୋହିତ ।)

ପୁରୋହିତ— ଯୁବରାଜ ଆସିବେ ନାହିଁ, ଡଗର ।

ଡଗର— ଅଭିଷେକ ବନ୍ଦ ହେବ ତେବେ ?

ପୁରୋହିତ— ନା ଅଭିଷେକ ହେବ; କିନ୍ତୁ ରାଜସିଂହାସନ ଉପରେ ନୁହେଁ ।

ଡଗର— ରାଜା ହେବେ— କିନ୍ତୁ ଘୁମୁସରରେ ନୁହେଁ ?

ପୁରୋହିତ— ବୋଧହୁଏ ତାହା— ଯୁବରାଜଙ୍କପାଇଁ ବିପୁଳ ପୃଥିବୀର ସିଂହାସନ ଖାଲି ପଡ଼ିଛି । ଗଜେନ୍ଦ୍ର ପରି ନୀଚମନାପାଇଁ ଛୋଟ ଘୁମୁସରର ସିଂହାସନ ଜୀବନର ଶ୍ରେଷ୍ଠତମ ଅଭିଳାଷ ।

ଡଗର— ଯେତେ ରାଜା ହେବେ ସିନା, ଯୁବରାଜଙ୍କ ମଥାକୁ ମୁକୁଟ ଯିମିତି ମାନନ୍ତା ଆଉ କାହା ମୁଣ୍ଡକୁ ମାନିବ ନାହିଁ ।

ପୁରୋହିତ— ସେ ମୁକୁଟକୁ ତ ସେ ସବୁବେଳେ ପଦାଘାତ କରନ୍ତି । ପ୍ରକୃତରେ, ଛୋଟ ଘୁମୁସର ରାଜମୁକୁଟ ତାଙ୍କର ସେ ମହାନ୍ ମଥାକୁ କିଛି ନୁହେଁ । ସେଥିକି ରାଜଚକ୍ରବର୍ତ୍ତୀର ମୁକୁଟ ଲୋଡ଼ା ।

ଡଗର— କିନ୍ତୁ ସେ ଭାଗ୍ୟ ତାଙ୍କୁ କିଏ ଦେବ ?

ପୁରୋହିତ— କେହି ଦେବେ ନାହିଁ ଡଗର, ତାଙ୍କ କପାଳର ସେ ବିରାଟ ବିଭା ଦେଖିଲେ କେତେ ଚକ୍ରବର୍ତ୍ତୀର ମୁକୁଟ ଆପେ ଆପେ ତାଙ୍କ ପାଦତଳକୁ ଖସିପଡ଼ିବ !

ଡଗର— ଦିଅଁ ତାଇ ହେଲେ କରନ୍ତୁ । ଆଃ, ଆଜି ରାତିଟା କି ସୁନ୍ଦର !

ପୁରୋହିତ— ଆଜି ଏ ରାତିଟି ମତେ ବଡ଼ ପବିତ୍ର ବୋଧହେଉଛି । ତୁମେ କ'ଣ ଶୁଣିପାରୁନା ଏ ବାୟୁ ଭେଦକରି କିପରି ଜାଡ୍ୟାପହା ଋଷିବାଣୀ ନିୟତ ଝଙ୍କୃତ ହୋଇ ଉଠୁଛି ! କାନନ, ପର୍ବତ, ବିଲ, ନଦୀ ସବୁଆଡୁ ତପୋବନର ଧ୍ରୁପଦ ଛନ୍ଦ ଗୁରୁ ଗମ୍ଭୀର ସ୍ୱରରେ ନିନାଦିଉଠୁଛି !

ଡଗର— ସେ ସବୁ ତ କିଛି ମୁଁ ଜାଣିପାରୁନି ! ମତେ ଖାଲି ବଡ଼ ସୁନ୍ଦର ଲାଗୁଛି ଆଜିର ଏ ରାତିଟି ।

ପୁରୋହିତ— ଆଚ୍ଛା, ଏବେ ଶୀଘ୍ର ଚାଲ । ରାତି ଯେ ହେଲା ।

ଡଗର— ଚାଲନ୍ତୁ, ଚାଲନ୍ତୁ ।

(ପ୍ରସ୍ଥାନ— ସେହି ପଥରେ କିଛିକ୍ଷଣ ପରେ ବେବର୍ତ୍ତା ଓ ବିଶୋଇର ପ୍ରବେଶ)

ବେବର୍ତ୍ତା— ପୁରୋହିତଟା ଆଗରେ ଗଲାଣି !

ବିଶୋଇ— ଯାଉ ନା ! ସେ ବେଦ ଜାଣେ ସିନା ଭେଦ ଜାଣିବ କାହୁଁ ?

ବେବର୍ତ୍ତା— ବୁଢ଼ା ରାଜାଙ୍କର ବଡ଼ ଇଚ୍ଛା ଥିଲା ଯେ ସେ ଗଜେନ୍ଦ୍ରଙ୍କୁ ସିଂହାସନ ଦେଇଥା'ନ୍ତେ ।

ବିଶୋଇ— କିନ୍ତୁ ଉପେନ୍ଦ୍ର ରାଜା ହେଲେଇ ଆମର ମଙ୍ଗଳ ।

ବେବର୍ତ୍ତା— ଗଜେନ୍ଦ୍ରଙ୍କର ରାଜ୍ୟ ବୁଝିବାର କ୍ଷମତା ଅଛି— ଯୁଦ୍ଧ କରିବାର ଶକ୍ତି ଅଛି । ପ୍ରଜା ଦମନ କରିବାରେ ତାକତ୍ ଅଛି ।

ବିଶୋଇ— ସେ ସବୁ ନାହିଁବୋଲି ତ ଉପେନ୍ଦ୍ର ରାଜା ହେଲେ ଭଲହେବ ବୋଲି ମୁଁ କହେ । ତମେ ରାଜନୀତି କ'ଣ ଜାଣନା ? ଇନ୍ଦ୍ର ଦେବରାଜ ହେଲେ କ'ଣ ହେବ, ସୃଷ୍ଟି ପାଳନରେ ଟିପ ଦିଏନା ! ସବୁ କରନ୍ତି ବରୁଣ, ଅଗ୍ନି ପ୍ରଭୃତି ତଳିଆ ଦେବତା ସବୁ ! ସେ କେବଳ ଶଚୀ ରାଣୀକି ନେଇ ପାରିଜାତ ବନରେ ପଶା ଖେଳୁଥାଏ । ଗଜେନ୍ଦ୍ର ଯଦି ସିଂହାସନ ପା'ନ୍ତି ପ୍ରଜା ତ ତା' ଆକ୍ରୋଶରେ ଅସ୍ଥିର ହୋଇ ଉଠିବେ । ରାଜକର୍ମଚାରୀ ମଧ ଅତ୍ୟାଚାରର କମ୍ ଭାଗ ବୋହିବେନି । ଉପେନ୍ଦ୍ର ଯଦି ରାଜ୍ୟ ପା'ନ୍ତି, ତେବେ ଆଉ ରାଜଭୃତ୍ୟମାନଙ୍କର ଭୟ କାହାକୁ ? ଏଇଟାଇ ହେଲା ଇନ୍ଦ୍ର ବୁଝାମଣା । ଏଥିରେ ତଳିଆ ଦେବତାଙ୍କର ଗରିମା ବଢେ ।

ବେବର୍ତ୍ତା— ତେବେ ଗଜେନ୍ଦ୍ରଙ୍କୁ ସାହାଯ୍ୟ ଦେଲ କାହିଁକି ?

ବିଶୋଇ— ଯଦି ଉପେନ୍ଦ୍ର ହାରିଯା'ନ୍ତି ତେବେ ରାଜଚକ୍ଷୁ ନିଶ୍ଚୟ ତ ମୋ ଉପରେ ଶୁଭଦୃଷ୍ଟି ରଖିଥିବ ।

ବେବର୍ତ୍ତା— ଯଦି ଉପେନ୍ଦ୍ର ଜିଣନ୍ତି ?

ବିଶୋଇ— ଚିନ୍ତା ନାହଁ; ଏତେ ପଥ ଆସିବାର ମୂଲ୍ୟ ନିଶ୍ଚୟ ଅଛି ।

ବେବର୍ତ୍ତା— ଆଜି ରାତିଟା କି ସଂକଟମୟ !

ବିଶୋଇ— ଚନ୍ଦ୍ରର ହାସ୍ୟଟା ମୁମୂର୍ଷୁର ସ୍ମିତପରି ବଡ଼ ରସହୀନ, ବିକଟ ଦିଶୁଛି ।

ବେବର୍ତ୍ତା— ଆଜି ରାତିଟା ବଡ଼ ଅଶୁଭ ।

ବିଶୋଇ— ଚାରିଆଡ଼େ ଏ ବନଭୂମିର ନିସ୍ତବ୍ଧତା ଦେଖିଲେ ମନରେ ଭୟଲାଗୁଛି ।

ବେବର୍ତ୍ତା— ନା, ଏ ଯେ କୋଳାହଳ ଶୁଭିଲାଣି ।

ବିଶୋଇ— ଚାଲ ତେବେ, ସର୍ଦ୍ଦାରର ଘର ପଡ଼ିଲା । (ପ୍ରସ୍ଥାନ ଓ ପଟ୍ଟ ପରିବର୍ତ୍ତନ)

[ସେହି ଉପବନ— ଉପେନ୍ଦ୍ର, ବାଳକ ବାଳିକା ପ୍ରଭୃତି । ମଧରାତ୍ରିର ଗମ୍ଭୀରତା ବନଭୂମିରେ ଏକ ଚମତ୍କାରିତା ସୃଷ୍ଟି କରିଛି । ଚନ୍ଦ୍ରକିରଣରେ ବନର ଅଣୁପରମାଣୁ ପର୍ଯ୍ୟନ୍ତ ଉତ୍‌ଫୁଲ୍ଲ ହୋଇଉଠିଛନ୍ତି । ଗୋଟିଏ କୁଞ୍ଜ । ଚାରିଆଡ଼େ ବନସ୍ପତିରାଜିର କାନ୍ତ ଶୋଭା ମଧରେ ଲତାଗୁଳ୍ମାଦିର ସମାବେଶ । ଉପେନ୍ଦ୍ରଙ୍କୁ ମଝିରେ ରଖି ବନ୍ୟ ବାଳକ ବାଳିକାଙ୍କର ଗାନ—)

**ଗୀତ**

ଜୋଛନାରେ ଭାସେ କିଆଫୁଲ ବାସ,
ଚିବୁକେ ବାଜେ
କେଉଁ ସେ ଦେବତା
ଏଡ଼େ ଆକୁଳତା
ପବନେ ପବନେ ଭରି ଦେଇଅଛି ମଧୁର ସାଜେ ।
ବ୍ୟାକୁଳତା ଆଜି ହୃଦୟେ ଜାଗିଛି
ଫିଟାଇ ପାଶ,
ଚରଣୁ ଅଳତା
ପୋଛି, ବନଲତା—
ଭେଦି ଧାଇଁଅଛୁ ହୃଦଦେବତାର ଚରଣ ପାଶ ।
ହେ ରାଜଅତିଥି ଆଜି ଏ ତିଥିରେ
ଧର ହେ ଥାଳି
ହୁଅ ହେ ପୂଜାରୀ
ଗାଅ ହେ ତାହାରି
ଆଗମନୀ, ଥରେ ନୃପତିର ମହା ପରାଣ ଢାଳି ।
ଆଜି ଏ ପୂଜାରେ ମହା ପୂଜାରୀର
ଘେନ ବରଣ
ହେ ଧରଣୀଶ୍ୱର
ପୁରୋହିତ-ବର
ଜୋଛନା-ତଟିନୀ-ଜୀବନେ ମିଶୁ ହେ ରାଜ-ଜୀବନ । (ଗାନ ଶେଷ)

ଉପେନ୍ଦ୍ର— ଆସ ପୂଜା କରିବା ।

୧ମ ବାଳିକା— ତମେ ହେବ ପୁରୋହିତ । ସେଥିପାଇଁ ବେଶ ହେବାକୁ ହେବ । ଫୁଲର ମୁକୁଟ ପିନ୍ଧି, ପଲ୍ଲବର କିରୀଟ ଘେନ ।

୨ୟ ବାଳିକା— ମଲ୍ଲୀ ମାଳତୀର ମାଳା ପକାଅ, ଚମ୍ପା କୁନ୍ଦର ଝୁମ୍ପା ପାର ।

୩ୟ ବାଳିକା— ବକୁଳର ମଧୁ ବୋଳିହୁଅ ।

୪ର୍ଥ ବାଳିକା— ପଦ୍ମଗନ୍ଧରେ ଅଙ୍ଗ ଧୁଅ ।

(ସମସ୍ତେ ମିଶି ବେଶକରିବା ଓ କରୁ କରୁ – )

୧ମ ବାଳିକା— ଭଉଣୀ ଦେଖ ଗୋ

୨ୟ ବାଳିକା— ନୟନେ ଲେଖ ଗୋ

୩ୟ ବାଳିକା— ରାଣୀର ବଗିଚାରୁ

୪ର୍ଥ ବାଳିକା— ଆଣି କେ ଯୁବା ତରୁ

୫ମ ବାଳିକା— କାନନ-ଲତା ପାଶେ
୧ମ ବାଳିକା— ଥୋଇଲା କେଉଁ ଆଶେ
୨ୟ ବାଳିକା— ପୀରତି-ପାଶେ ଆଜି
୩ୟ ବାଳିକା— ବାନ୍ଧନ୍ତି ଲତାରାଜି
୪ର୍ଥ ବାଳିକା— ତରୁଣ ତରୁ ସେ ଯେ
୫ମ ବାଳିକା— ପ୍ରଣୟେ ମନ ଗୁଞ୍ଜେ

(ବାଳକମାନେ ଧୀରେ ଧୀରେ ଚାରିପାଖେ ବୁଲୁବୁଲୁ—)

୧ମ ବାଳକ— ରାଜ ଅତିଥି
୨ୟ ବାଳକ— ଯୁବକ ମତି
୩ୟ ବାଳକ— ମାଧବୀ ଲତା
୪ର୍ଥ ବାଳକ— ଲଗାଅ ପ୍ରୀତି ।
୧ମ ବାଳକ— ବିଲ କାନନ
୨ୟ ବାଳକ— ବାନ୍ଧ ଗୋ ମନ
୩ୟ ବାଳକ— ଯେ ଯାହା ବଳେ
୪ର୍ଥ ବାଳକ— ଅତିଥି ଧନ ।
ସମସ୍ତେ— ପୂନିଅ ରାତି
ଜୋଛନା ଭାତି
ଯିବ କି ଛାଡ଼ି ରାଜ-ଅତିଥି ।

(ବେଶ ସରିଲା । ପୁଷ୍ପର ରାଜବେଶଧାରୀ ଉପେନ୍ଦ୍ର ଠିଆହୋଇ)

ଉପେନ୍ଦ୍ର— ଛାଡ଼ିବାର ଉପାୟ ନାହିଁ, ଇଚ୍ଛା ନାହିଁ ମଧ ।

(ଏକ ପ୍ରାନ୍ତରେ ପୁରୋହିତର ପ୍ରବେଶ)

ପୁରୋହିତ— ହାୟ ! କାହିଁ ଏ ଆନନ୍ଦବଜାର, ଆଉ କାହିଁ ସେ ବିକଟ-ପୁରୀ ! ଏଠାରେ ଗଛଲତାର ଅନ୍ତରେ ଅନ୍ତରେ ଅପୂର୍ବ ଅମୃତଧାରା ମହାପ୍ରବାହ ମେଲି ବହିଯାଉଛି— ତାକୁ ପାନକରି ଏ ବାଳକ ବାଳିକା ସବୁ ଦୁଃଖ ଶୋକ ଭୁଲି ସମଗ୍ର ହୃଦୟଟିମାନ ଆନନ୍ଦ ବ୍ୟାପାରରେ ଢାଳିଦେଇଛନ୍ତି । ଆଉ ସେଠାରେ ନରକର ଛାୟା ଚାରିଆଡ଼େ ବ୍ୟାପ୍ତରହିଛି— ତେଣୁ ବାଳକ-ବାଳିକା ମଧ ବୁଢା-ବୁଢୀ, ଦୀନ-ଦରିଦ୍ରର ଆଖିରୁ ଲୁହ ବୁହାଇ ଆନନ୍ଦ ଉପଭୋଗ କରନ୍ତି । ଏଠାରେ ସମସ୍ତେ ସମସ୍ତଙ୍କୁ ଆପଣାର କରି ଧରୁଛନ୍ତି । ଆଉ ସେଠାରେ ଯେ ଛାର ଧନ-ରାଜ୍ୟପାଇଁ ଭାଇ ଭାଇକୁ ଖଣ୍ଡାର ଦାଢ ଦେଖାଉଛି । ଏହାହିଁ ପ୍ରଭେଦ !

[ପୁରୋହିତକୁ ଦେଖି ବାଳକ-ବାଳିକାମାନଙ୍କର ସରଳ ଚଞ୍ଚଳତା ଟିକିଏ ଭାଙ୍ଗି ପଡ଼ିଲା । ସେମାନେ ଟିକିଏ ପଛକୁ ଘୁଞ୍ଚିଗଲେ ।)

ଉପେନ୍ଦ୍ର– ନମସ୍କାର ପୁରୋହିତେ... ରାଜ୍ୟର ସଂବାଦ ?

ପୁରୋହିତ– ରାଜା ମୃତ, ଗଜେନ୍ଦ୍ର ଓ ଭୂପେନ୍ଦ୍ରଙ୍କ ମଧ୍ୟରେ ସିଂହାସନ ଲାଗି ଯୁଦ୍ଧ ।

(ଉପେନ୍ଦ୍ର ଚିନ୍ତିତ)

୧ମ ବାଳକ– (ଚୁପିଚୁପି) ବୁଢା ତ ଭଲଲୋକ ପରି ଦିଶୁଛି ।

୨ୟ ବାଳକ– ହଁ' ତା' ମୁହଁରେ କ'ଣ ଅଛି ଯାହା ସମସ୍ତଙ୍କୁ ଟାଣିନେବ ।

୩ୟ ବାଳକ– ଦେଖ ତ ସେ ଆର ଲୋକଟିକୁ ।

୪ର୍ଥ ବାଳକ– ପବନପରି ଚଞ୍ଚଳ, ଜ୍ୟୋସ୍ନାପରି ସରଳ ସେ ।

ଉପେନ୍ଦ୍ର– (ପୁରୋହିତ ପ୍ରତି) ତେବେ ମୋ ପାଖକୁ ଆସିଲ କାହିଁକି ?

(ଏହି ସମୟରେ ବେବର୍ତ୍ତା ଓ ବିଶୋଇ ପ୍ରବେଶ୍‌କଲେ । ବାଳକ-ବାଳିକାଙ୍କ ମୁଖରେ ଭୀତିର ଚିହ୍ନ ଦେଖାଗଲା । ସେମାନେ ଆହୁରି ସଂକିତ ହେଲେ ।)

ବେବର୍ତ୍ତା ଓ ବିଶୋଇ– ପ୍ରଣାମ ଚରଣେ, ବିଜେହୁଅନ୍ତୁ ଛାମୁ ! ରାଜଛତ୍ର ତେଣେ ଖାଲିପଡ଼ିଲା ।

ଉପେନ୍ଦ୍ର– ତମେମାନେ ଫେରିଯାଅ ! କ୍ଷୁଦ୍ର ରାଜଛତ୍ର ତଳେ ମଥା ଗୁଞ୍ଜି ମୁଁ ବସିପାରିବି ନାହଁ । ଏକ ବିରାଟ ଛତ୍ର ତଳେ ମୁଁ ଆଜି ଆସନ ପାଇଛି । ସେହିଠାରେହିଁ ମୋର ସିଂହାସନ, ସେହିହିଁ ମୋର ରାଜ୍ୟ ।

ବେବର୍ତ୍ତା ଓ ବିଶୋଇ– ମହାରାଜ, ରାଜଧର୍ମରେ ହାନି ହେବ ।

ଉପେନ୍ଦ୍ର– ଭୁଲ୍ ବୁଝିଛ । ରାଜଧର୍ମର ଉଦ୍‌ଯାପନ ହେବ । ସବୁଠାରୁ ଯେ ବଡ଼ ରାଜା ତାଙ୍କୁ ମୁଁ ଆଜି ବଂଧୁ ବୋଲି ଡାକିବାର କ୍ଷମତା ପାଇଛି । ଏହାଠାରୁ ଆଉ ଗୌରବ କ'ଣ ଅଛି ?

ବେବର୍ତ୍ତା ଓ ବିଶୋଇ– ମହାରାଜ, ଆମ୍ଭେମାନେ ନଷ୍ଟହୋଇଯିବୁ ।

ଉପେନ୍ଦ୍ର– ତା' ତ ହେବ ନିଶ୍ଚୟ । ରାଜସିଂହାସନ ବା ରାଜଦରବାରର ଅର୍ଥ ତ ସେଇଯା । ରାଜବନ୍ଦୀ ଯେତେବେଳେ ଗୋଟିଏ ପ୍ରଶସ୍ତି ଗାଆନ୍ତି ସେତେବେଳେ ମୁଁ ଭାବେ ଯେ ଏହା ସହସ୍ର ବିଧବାର କରୁଣ ବେଦନା ବିରୁଦ୍ଧରେ ଉପହାସ ! ରକ୍ତପାତ କରି ରକ୍ତ ରକ୍ଷା କରିବା ତ ରାଜନୀତି ।

ବେବର୍ତ୍ତା ଓ ବିଶୋଇ– ତେବେ ଛାମୁ ବିଜେହେବେନି ?

ଉପେନ୍ଦ୍ର– ନା ! ତୁମେମାନେ ଫେରିଯାଅ ! ମୋର ରାଜ୍ୟ ଧନ କିଛିହିଁ ଆବଶ୍ୟକ ନାହିଁ ।

ବେବର୍ତ୍ତା ଓ ବିଶୋଇ– ତେବେ ଆମ୍ଭେମାନେ ବିଦାୟ ନେଉଛୁ ।

ଉପେନ୍ଦ୍ର– ଯାଅ !

(ସେମାନଙ୍କର ପ୍ରସ୍ଥାନ)

ପୁରୋହିତ– ମୁଁ କିନ୍ତୁ ରହିବି !

ଡଗର– ମୁଁ ମଧ୍ୟ ଫେରିବି ନାହିଁ ।

ବାଳକ-ବାଳିକା– ନାଁ ନାଁ, ତମମାନଙ୍କୁ ଯିବାକୁ ହେବନାହିଁ ।

ପ୍ରଥମ ବାଳକ– (ନିକଟକୁ ଆସି) ତମେ ରହ ।
ଦ୍ୱିତୀୟ ବାଳିକା– (ନିକଟକୁ ଆସି) ତମେ ଯାଅ ନା ।
ସମସ୍ତେ– ତମେ ଆଜି ଆମ ପୂଜାରେ ଭାଗ ହୁଅ ।
ଉପେନ୍ଦ୍ର– ରହିପାର, କ୍ଷତି କ'ଣ ? ଦେଖ, ବହୁତ ରାତି ହେଲାଣି, ତେଣେ ପୂଜାର ସଜ୍ଜା କର; ସଙ୍ଗରେ ପୁରୋହିତଙ୍କୁ ଘେନିଯାଅ । ମୁଁ ଏହାଠାରେ– ଏଇ ବକୁଳ ମୂଳରେ ବସି ଟିକିଏ କ୍ଳାନ୍ତି ଅପନୋଦନ କରେଁ ।

(ଯବନିକା)

## [ ଚତୁର୍ଥ ଦୃଶ୍ୟ ]

(ନଦୀ ତଟରେ ବକୁଳମୂଳରେ ଚିନ୍ତିତ ଉପେନ୍ଦ୍ର)

ଉପେନ୍ଦ୍ର– ମୋ'ର ପ୍ରାଣର ପ୍ରାଣ ମଧ ରାଜଭୋଗ ଇଚ୍ଛା କରେ ନାହିଁ । ତେବେ ପିତାଙ୍କର ମୃତ୍ୟୁ, ଶୂନ୍ୟ ସିଂହାସନଲାଗି ଗଜେନ୍ଦ୍ର ଭୂପେନ୍ଦ୍ରର ଯୁଦ୍ଧ; ମୁଁ ପୁଣି ପ୍ରକୃତ ଦାୟାଦ ! ଏ'ତ ବିଷମ ସମସ୍ୟା ! (ଟିକିଏ ପଦଚାରଣ କଲେ) ନାଁ, ସେ ସବୁ ଭାବି ଲାଭ କ'ଣ ? ମୁଁ ଉତ୍ତମରୂପେ ଜାଣେ ରାଜା ହେବାର ଅର୍ଥ କ'ଣ । ଦୁଶ୍ଚିନ୍ତା, ଅଶାନ୍ତି, ଦୁର୍ଭାବନାରାଜିର ଘନୀଭୂତ ବିଗ୍ରହ ଛଡ଼ା ରାଜମୁକୁଟ ଆଉ କିଛି ନୁହେଁ । ରାଜସିଂହାସନ ଯେ କେତେ ସହସ୍ର ମହାପ୍ରାଣୀର ଛିନ୍ନମୁଣ୍ଡ ଉପରେ, କେତେ ବିଧବାର ଆର୍ତ୍ତନାଦ ଉପରେ, କେତେ ପରିବାରର ଉଚ୍ଛନ୍ନ ହାହାକାର ଉପରେ ପ୍ରତିଷ୍ଠିତ ତା' ମୁଁ ଭଲରୂପେ ଜାଣେ । ରାଜନୀତି ଭୀଷଣ ବ୍ୟାପାର । କୃପଣର ଧନପରି ରାଜାର ସିଂହାସନ । ସେହି ପ୍ରସ୍ତର ଖଣ୍ଡର ସେବାହିଁ ରାଜଜୀବନର ଚରମ ଲକ୍ଷ୍ୟ । ଜୀବନର ସବୁ କ୍ରିୟା, ସବୁ ଶକ୍ତି, ପୁଣ୍ୟ, ପବିତ୍ରତା ସମସ୍ତ ତା'ରିପାଇଁ ଉତ୍ସର୍ଗ କରିବାକୁ ହେବ ! ସେ ସବୁ ତ ମୁଁ ପାରିବି ନାହିଁ । ପ୍ରେମମୟୀ[୧] 'ବ୍ରହ୍ମାଣ୍ଡ ସୁନ୍ଦରୀ'ର କୋଳରେ ମସ୍ତକରଖି ଏହି ଋଷିକୂଲ୍ୟାର ବେତସ କୁଞ୍ଜରେ ନିଦ୍ରାଗଲେ ମୁଁ ଶତ ଘୁମୁସରର ରାଜସିଂହାସନକୁ ଧିକ୍କାର କରିବି । ଘଣ୍ଟଶିଳାର[୨] ବଂଶବିତାନ ତଳେ ବସି ଚିଲିକାର ନୀଳକାନ୍ତ ବକ୍ଷଆଡ଼କୁ ଅନାଇଦେଲେ କେତେ ରାଜାର ପ୍ରାସାଦ-ବିଳାସ ମୁଁ ଭୁଲିଯାଏ । ରାଜ-ସଂପଦ ମତେ ଭୁଲାଇବ ? ସେମାନେ ମୂର୍ଖ, ଯେଉଁମାନେ ଜୀବନହୀନ ମୁଦ୍ରାରାଶିକୁ ଜୀବନର ଶ୍ରେଷ୍ଠ ସିଦ୍ଧି ବୋଲି ମଣନ୍ତି । ମୁଁ ମୂର୍ଖ ନୁହେଁ; ନା–

(ସହସା ଛାୟାମୟୀ ରାଜଲକ୍ଷ୍ମୀଙ୍କର ପ୍ରବେଶ)

ରାଜଲକ୍ଷ୍ମୀ– ନିଶ୍ଚୟ ମୂର୍ଖ ଯୁବକ !
ଉପେନ୍ଦ୍ର– (ଚକିତହୋଇ) କିଏ ତୁମ୍ଭେ ଦେବି !

---

୧। କବିଙ୍କର କଳ୍ପିତା ପତ୍ନୀ ।

୨। ବାଣପୁରର ବିଖ୍ୟାତ କ୍ଷୁଦ୍ର ପର୍ବତ । ବାଣପୁର ରାଜକନ୍ୟାଙ୍କୁ କବି ଉପେନ୍ଦ୍ର ବିବାହ କରିଥିଲେ ବୋଲି ଜନଶ୍ରୁତି ।

ରାଜଲକ୍ଷ୍ମୀ— ରାଜଲକ୍ଷ୍ମୀ !

ଉପେନ୍ଦ୍ର— ରାଜଲକ୍ଷ୍ମୀ ! ଘୁମୁସରର ଅଧିଷ୍ଠାତ୍ରୀ ଦେବୀ ? କି ନିମନ୍ତେ ଏ ହୀନ ପ୍ରତି ଏ ଅନୁଗ୍ରହ ?

ରାଜଲକ୍ଷ୍ମୀ— ଜାଣ ଯୁବରାଜ, ତୁମେ ପଥ ଭୁଲିଯାଇଛ, ମୁଁ ପଥ ଦେଖାଇବି ।

ଉପେନ୍ଦ୍ର— ଶୁଭପଥ ତେବେ କିଏ ଦେବୀ ?

ରାଜଲକ୍ଷ୍ମୀ— ଆସ ମୋର ଅନୁସରଣ କର ।

ଉପେନ୍ଦ୍ର— ତୁମର ! ତୁମରି ପଥରେ ତୁମରି ରାଜ୍ୟକୁ ଯିବାକୁ ଡାକି ଆସିଛ ? ତୁମର ପ୍ରାସାଦ ଖୁବ୍ ଉଜ୍ଜ୍ୱଳ, ଖୁବ୍ ବିରାଟ ! ନା— ତା'ର ଚାରିପାଖେ ନରରକ୍ତର ସୁଗଭୀର ପରୀଖା—ତା'ରି ପ୍ରାଚୀର, ଖଡ୍‌ଗ-ବର୍ଚ୍ଛାରେ ରଚିତ— ତା'ର ନିଶାଣରେ ଛିନ୍ନ ନରମୁଣ୍ଡର ଛବି ଅଙ୍କିତ ରହିଛି— ତା'ର ଅଙ୍ଗନରେ କବନ୍ଧର ମରଣ ନୃତ୍ୟ ଅନବରତ ଲାଗିରହିଛି । ସେଠାରେ ସଂଗୀତର ପ୍ରତିମୂର୍ଚ୍ଛନାରେ ବିନାଶର କଠୋର ରାଗିଣୀ ଫୁଟି ଉଠୁଥାଏ ! ତୁମର ସିଂହାସନ ତଳେ କେତେ ଅତ୍ୟାଚାରିତ ଜାତିର ଅପ୍ରତିକାରିତ ବେଦନା, କେତେ ଜ୍ଞାନୀ-ଭକ୍ତ-ମନୀଷୀର ଦାରୁଣ ହତ୍ୟା-କାହାଣୀ, କେତେ ନିର୍ଦ୍ଦୋଷ ନରନାରୀର ଅବ୍ୟକ୍ତ ହାହାକାର ଲୁଚିରହିଥିବ— ଆଉ ତୁମେ ତା'ରି ଉପରେ ବସି ମୁମୂର୍ଷୁର ଚିତ୍କାର, ବିଧବାର ରୋଦନ, ଆଉ କମାଣ ଖଣ୍ଡାର ସର୍ବନାଶୀ ଝନ୍‌ଝନ୍ ଶୁଣି ଶୁଣି ନିଜକୁ ଭାଗ୍ୟବତୀ ମନେକରୁଥିବ— ଏଇ ତ ତମର ରାଜ୍ୟ ? ଏଇଠାକୁ ତମେ ମତେ ନେବ, ନା ! ବେଶ୍, ଶୁଭଙ୍କର ମଙ୍ଗଳମୟ ପଥ ତ !

ରାଜଲକ୍ଷ୍ମୀ— ଥଟ୍ଟା ? ତୁମେ ଏହାର ପରିଣାମ ଭାବି ଦେଖ ! ତୁମକୁ ଶେଷଥର କହି ରଖୁଛି, ମୋର ଅନୁସରଣ କର; ନଚେତ୍ ମୁଁ ଚାଲିଲି— ତୁମେ ତୁମର ଦୁର୍ଭାଗ୍ୟକୁ ସଖା କରି ଜୀବନ ହାହାକାରମୟ କର !

ଉପେନ୍ଦ୍ର— ନା' ମୁଁ ଯାଇପାରିବିନାହିଁ !

(ରାଜଲକ୍ଷ୍ମୀଙ୍କର କୋପନ-ପଦକ୍ଷେପରେ ପ୍ରସ୍ଥାନ)

ଯାଅ ଦେବି ! ମୁଁ ରାଜା ନୁହେଁ ଯେ ତମର ଅଭିଶାପ ମତେ ଭୟ ଦେଖାଇବ ! ଏହି ବିଶାଳ ଜଗତରେ କୋଟି କୋଟି ଲୋକ କୁଟୀରରେ ବାସକରି ବଞ୍ଚିରହିଛନ୍ତି; ମୁଁ ମଧ ସେହିପରି ରହିବି ! ଚିନ୍ତା ନାହିଁ ! ମଙ୍ଗଳମୟଙ୍କ ଅଗଣିତ ପ୍ରଜା ମଧରୁ ଆଜି ମୁଁ ମଧ ଜଣେ । ସିଂହାସନରେ ବସିଥିଲେ, ତମର ବିଭବରେ ଭୁଲିଥିଲେ, ମୋର ଡାକ ତାଙ୍କ ନିକଟରେ ପହଞ୍ଚନ୍ତା ନାହିଁ ପରା ! କିନ୍ତୁ ଆହା, ପ୍ରାଣରେ ଆଜି କି ସୁଖ, ଯେତେବେଳେ ମୁଁ ଭାବେ ମୁଁ ଆଜି ତାଙ୍କର କେତେ ନିକଟରେ ! ଯାଅ ଦେବି, ତୁମକୁ ମୋର ଭୟ ନାହିଁ । ଆଜି ମୁଁ ନିର୍ଭୀକ !

(ନିକଟରେ ବୀଣାର ନିସ୍ୱନ ମନ୍ଦମନ୍ଦ ଶୁଣାଗଲା— କ୍ରମେ ନିକଟତର ହେଲା ଅନ୍ତରାଳରେ ଗାନ ।)

ଥାଏ ମୁଁ ଜୀବନେ ଜୀବନେ
ମୋ ଚରଣ-ରେଣୁ-ଶୋଣିମା ଭାସଇ
ଉଷାର ବିଶାଳ ଲପନେ ।
ସଙ୍ଗୀତ ମୁଁ ଗୋ କୋକିଳ କଣ୍ଠେ
ମଳୟର ଲଘୁ ସୁଆଗ
ଚନ୍ଦ୍ର-ଚକିତ ସନ୍ଧ୍ୟାରେ ଘନ-
ସୁରଭିତ-ଫୁଲ-ସରାଗ ।
ସୁନ୍ଦର ମୁଁ ଗୋ ଭୁବନେ
ଚୁମ୍ବନ ମୋ'ର ସୁଷମା ଫୁଟାଏ
ଅୟୁତ ରୁକ୍ଷ ଜୀବନେ ।୧।
ଥାଏ ମୁଁ ତରୁଣୀ-ବିଲୋଳ-ବକ୍ଷେ,
ବିରହୀର ଆଖି-ଲୋତକେ,
ମୋ' ପଦ ନୂପୁର ପ୍ରଣୟୀର ବୁକେ
ବାଜଇ ସଂଧ୍ୟା ଆଲୋକେ ।
ଥାଏ ମୁଁ ପୀରତି ସ୍ୱପନେ
ପ୍ରିୟ-ପ୍ରେୟସୀର ବୁକୁର ଅଶ୍ରୁ
ଲାଗଇ ଏ ମୋର ଚରଣେ ।୨।
ଭୁବନେ ଭୁବନେ ବୁଲେ ମୁଁ ନିରତ
ଅତି ଚଞ୍ଚଳ ଗତି ମୋ'
ସ୍ନିଗ୍ଧ-ସବୁଜ ସୁନ୍ଦର ଯେତେ
ତହିଁରେ ମୋ' ପ୍ରାଣ-ରତି ଗୋ ।
ବୀଣା ମୋ ସୃଜଇ ସପନେ
ଅଞ୍ଚଳ ମୋର ଗନ୍ଧ ବିଧୁର
କରଇ ଦକ୍ଷିଣା ପବନେ ।୩।
ଦେଶେ ଦେଶେ ମୋର ପୂଜାରୀ ବଜାନ୍ତି
ମୁରଲୀ ଦିବସ ରଜନୀ,
ସେ ଡାକେ ତରଳେ ତରୁଣ-ଶୋଣିତ,
ଉନ୍ମନା ହୁଏ ତରୁଣୀ
ଡାକ ସେ କଟାଇ ମରମେ
କେଉଁ ପରଦେଶୀ ରାଜାଝିଅ କଥା
ଢାଳଇ ଶ୍ରବଣେ ଶ୍ରବଣେ ।୪।

(ଗାନ ଶେଷ ଓ ସରସ୍ୱତୀଙ୍କର ପ୍ରବେଶ)

ଉପେନ୍ଦ୍ର— ନମସ୍ତେ ବରଦା ଅଭୟଦାୟିନୀ
କୋଟି ବ୍ରହ୍ମାଣ୍ଡର ଚେତ-ବିଧାୟିନୀ ।
ସରସ୍ୱତୀ— ଥାଉ ବାପ, ହୁଅ ଚିରଜୀବୀ ଭବେ
ପୂରୁ ଏ ଭୁବନ ତୋର ଗଉରବେ ।
ଉପେନ୍ଦ୍ର—କି ନିମନ୍ତେ ମା' ଗୋ ଏଥୁ ଆଗମନ,
କି ଆଦେଶ ଦାସ କରିବ ପାଳନ ?
ସରସ୍ୱତୀ— ଶୁଣ ବତ୍ସ, ଆଜି ପ୍ରୀତ ମୁଁ ତୋ'ଠାରେ,
ପ୍ରୀତି-ଭାଗୀ ମୋର ଅଳ୍ପହିଁ ସଂସାରେ ।
ରୋଗ-ଶୋକମୟ ଭୀଷଣ ଏ ଧରା
ସୁଖ, ଶାନ୍ତି,—ସ୍ୱପ୍ନ-ନିଧି ଏଥିପରା ।
ମୋ ଆଶିଷଭାଗୀ କେବଳ ଜଗତେ
ସୃଜିଥା'ନ୍ତି ମାୟା-ପୁରୀ ଏ ମରତେ,
ନାହିଁ ଯହିଁ ଶୋକ, ଶୋଚନା, ମରଣ,
ନିବିଡ଼ ଆନନ୍ଦେ ତରଳ ଜୀବନ;
ମଧୁର ସ୍ୱପନ ପରି ସବୁ ଲାଗେ
ହୃଦୟ ଉଚ୍ଛନ୍ନ ଘନ ଅନୁରାଗେ ।
ମରଣର ଛାୟା ନାହିଁ ତହିଁ ପଶେ
ଉଚ୍ଛଳିତ ମହା ଜୀବନର ରସେ ।
ସେ ସୃଜନ ଏଇ ବୀଣା ବାଇଧନ
ହୁଏ, ଦେଲି ତୋ'ରେ ମୋ'ର ସ୍ନେହଦାନ ।

(ବୀଣାର୍ପଣ ଓ ଗ୍ରହଣ)

ଏହି ବୀଣା ବାଇ ବିଜନେ ସୈକତେ
ନଦୀ ତଟେ, ବନେ, ପ୍ରାନ୍ତରେ, ପର୍ବତେ,
ନଗରେ ନଗରେ, ପ୍ରାସାଦେ, କୁଟୀରେ,
ଗିରି-ଦରୀ ଅବା ହ୍ରଦ-ସର-ତୀରେ;
ଚାରିଆଡ଼େ ମୋର ପ୍ରିୟ ଭକ୍ତଗଣ
ସୃଜିଥା'ନ୍ତି ସୁଧା-ସ୍ରୋତ ସନାତନ ।
ସେହି ସ୍ରୋତ ପାନ କରି ହୃଦ ଭରି
ଭାଗୀରଥି-ପୂତ-ଜଳଧାରା ପରି,
ନରନାରୀ ଭବେ ହୋଇଥା'ନ୍ତି ଧନ୍ୟ
ଜୀଇଁବାରେ ମଣିଥା'ନ୍ତି ଏକ ପୁଣ୍ୟ ।
ଦେଲି ଆଜି ତୋତେ ସେଇ ମୋର ବୀଣା
ଆଜୁଁ ହେଉ ବାପ ବୁଦ୍ଧି ତୋ ପ୍ରବୀଣା ।

ଛାଡ଼ିଅଛୁଁ ରାଜ୍ୟ, ରାଜସିଂହାସନ
ବରିଅଛୁଁ ସୁଖେ ଦରିଦ୍ର ଆସନ ।
କୂଟ ରାଜନୀତି ତେଜି, ଦିବା ରାତି
କାବ୍ୟ-ଶାସ୍ତ୍ର-ବିନୋଦନେ ଅଛୁ ମାତି ।
ତେଣୁ ବତ୍ସ ତୋହଠାରେ ମୁହିଁ ପ୍ରୀତ
ଦେଲି ତୋତେ ବୀଣା ଗାଇବୁ ସଙ୍ଗୀତ ।
ନିର୍ଜନେ ବିରଳେ ଅସହାୟ ହୋଇ
ଅଶ୍ରୁସିକ୍ତ ଗଣ୍ଡ ବାମ କରେ ଥୋଇ,
ରାଜସୁଖସ୍ମୃତି ଭାଳି ଯେବେ ମନେ
ବିଫଳ ମଣିବୁ ତୋର ଏ ଜୀବନେ
କି କରିବୁ, ବାବୁ, ଶୁଣ ମୋ ବଚନ
ବୀଣାତାରେ ଦେବୁ ଶିଞ୍ଜିନୀ ଘର୍ଷଣ;
ବାହାରିବ ତହୁଁ ମୋହିନୀ ଭାରତୀ
ବିକଶିବ ମହା-ମୂର୍ଚ୍ଛନା-ସଂହତି ।
ତା' ଶୁଣି କାନନେ ନାଚିବ ମୟୂର,
ନୀରବିବ କଣ୍ଠ କୋକିଳ ବଧୂର,
ଅକାଳେ ତାମ୍ରଳ ଦିଶିବ ରସାଳ,
ବୃନ୍ତେ ଫୁଟି ଝଡ଼ିଯିବେ ପୁଷ୍ପମାଳ,
କୋଟି ପୁଷ୍ପ ଅପହରି ପରିମଳ,
ବହିବ ମଳୟ ବନେ ଅଚଂଚଳ,
ଆକାଶେ ପତତ୍ରି ରହିବେ ନୀରବେ
ଶୁଣିବାକୁ, ମୁଗ୍‌ଧେ ତୋ'ର ବୀଣାରବେ ।
ବୀଣା-ଗୀତି-ମୁଗ୍‌ଧ ବନସ୍ପତିରାଜି
ଦେବେ ତୋର ପଦେ ଫୁଲହାର ସାଜି
ସେ ମହାଉତ୍ସବେ ହୋଇ ଅଭିଭୂତ
ସବୁ ଦୁଃଖ ଶୋକ ହୋଇବୁ ବିସ୍ମୃତ ।
କ୍ରମେ କ୍ରମେ ବନୁ ପଲ୍ଲୀ ପଲ୍ଲୀ ଡେଇଁ
କୋଟି ହୃଦୟର ମହାପୂଜା ନେଇ
ସେ ଗାନ ତୋହର, ନଗରେ ନଗରେ
ଶ୍ରୁତ ହେବ, ପୁଣି ଅଗଣ ଅଧରେ,—
ଗୀତ ହେବ; ଏହି ଉତ୍କଳ-ଅବନୀ
ମୋ-କରୁଣା-ହୀନା, ତୋହର ଜନନୀ,—

ଭାଗ୍ୟବତୀ ଭବେ ମଣିବ ନିଜରେ
ବକ୍ଷେ ଧରି ତୋତେ । ଅୟୁତ ମୁଖରେ,
ତୋର ଯଶଗାଥା ଉଠୁଥିବ ଫୁଟି
ଯାବତ ଏ ନଦୀ ଯାଉଥିବ ଲୁଟି,
ଯାବତ କୁସୁମ ଧରଣୀ ଉରସେ
ଫୁଟି ହସୁଥିବେ ପ୍ରଭାତେ ପ୍ରଦୋଷେ,
ଯାବତ ମଳୟ ବସନ୍ତର ସଖା
ଧରାପରେ ଦେଉଥିବ ମଧୁ-ଦେଖା ।
ଯାଉଅଛି ଏବେ ହେଲାଣି ପ୍ରଭାତ
ଚୁମ୍ବିଲାଣି ଲତାଶିର ଉଷାବାତ ।
ପାଖେ ପାଖେ ତୋର ଅଛି ଚିରକାଳ
ଜାଣ କିନ୍ତୁ ବାପ, ଚୁମ୍ବେ ତୋ' କପାଳ ।
(ଚୁମ୍ବନ ଦେଉଁ ଦେଉଁ ଯବନିକା)

## [ ପଞ୍ଚମ ଦୃଶ୍ୟ ]

[ସେହି ଉପବନ । ନିଶାନ୍ତ ଶିଶିର-ଜ୍ୟୋତ୍ସ୍ନା ମଳିନ ହୋଇ ଆସିଲାଣି । ଲତାପତ୍ର ସବୁ ଶିଶିରାର୍ଦ୍ର ହୋଇ ଚକ୍ ଚକ୍ ଦିଶୁଛନ୍ତି । ଗୋଟିଏ ବେଦୀ; ତା'ର ଚାରିପାଖେ ବାଳକ, ବାଳିକା ଓ ପୁରୋହିତ, ଡଗର ପ୍ରଭୃତି ଉପବିଷ୍ଟ; ବେଦୀ ଉପରେ ପୁଷ୍ପପତ୍ର ଇତ୍ୟାଦି ପୂଜାର ନୈବେଦ୍ୟ ଥୁଆହୋଇଅଛି ।]

୧ମ ବାଳକ— ରାତି ଯେ ପାହିଲା !

୨ୟ ବାଳକ— ସେ ତ ଆସିଲେ ନାହିଁ !

୩ୟ ବାଳକ— ପୂଜା ଯେ ନଷ୍ଟ ଗଲା !

୪ର୍ଥ ବାଳକ— ପୂର୍ଣ୍ଣିମା ତେବେ ନିଷ୍ଫଳ ଗଲା !

୧ମ ବାଳକ— (ପୁରୋହିତ ପ୍ରତି) କି ବିଚାର ?

ପୁରୋହିତ— ଆଉ ଟିକିଏ ଅପେକ୍ଷା କରାଯାଉ ।

୪ର୍ଥ ବାଳକ— (ଇତିମଧ୍ୟରେ ନିଦ୍ରିତା ପଞ୍ଚମ ବାଳିକାକୁ) ଦେଖିଲଣି, ଏ ଯେ ଶୋଇ ପଡ଼ିଲାଣି !

୧ମ ବାଳକ— ଉଠାଅ, ଉଠାଅ— (ଉଠାଇବା)

୫ମ ବାଳିକା— (ଚକିତ ଭାବରେ ଉଠି) ଓଃ ତମେ କ'ଣ କଲ ! ମୁଁ ଯେ କି ସୁନ୍ଦର ଗୀତ ଶୁଣୁଥିଲି ସେଥିରେ ତୁମେ ବାଧାଦେଲ କାହିଁକି ?

୧ମ ବାଳକ— ସତେ ଲୋ ! ସ୍ୱପ୍ନରାଜ୍ୟର ରାଜଝିଅ ତତେ ସଖୀ ବୋଲି ନିମନ୍ତ୍ରଣ କରି ଗୀତ ଶୁଣାଉଥିବ !

୫ମ ବାଳିକା— ନା ନା, ଥଟ୍ଟା ନୁହେଁ ! ଆମର ନୂଆ ପୁରୋହିତ ବୀଣାଧରି କି ସୁନ୍ଦର ଛନ୍ଦରେ ଗୀତଗାଇ ଯାଉଥିଲେ, ଆଉ ମୁଁ ତାଙ୍କ ପଦତଳେ ବସି ତୁନିଟି ହୋଇ ଶୁଣି ଯାଉଥିଲି !

୨ୟ ବାଳକ— ନୂଆ ପୁରୋହିତ ? ଆମର ଯୁବରାଜ ?

୫ମ ବାଳିକା— ହଁ ଆମରି ଯୁବରାଜ ! କେବଳ ମୁଁ ନୁହେଁ ଆଉ କେତେ ସୁନ୍ଦରୀ ତାଙ୍କର ମୁହଁକୁ ଚାହିଁ ଚିତ୍ରପରି ଠିଆହୋଇଛନ୍ତି—ତାଙ୍କ ଛାତିରେ ଗୋଟିଏ ମାଳା ପଡ଼ିଛି- ଶୁଣିଲି ସ୍ୱର୍ଗର ସବୁ ଅପ୍ସରା ମିଳି ତାକୁ ଗୁନ୍ଥି ତାଙ୍କ ପାଖକୁ ଉପହାର ପଠାଇଦେଇଛନ୍ତି । ତାଙ୍କର ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ିଯାଇ ତାଙ୍କର ଛାତି ଉପରର ବୀଣା ଉପରେ ଥପଥପ୍ ହୋଇ ପଡୁଛି । ସେ କାହାକୁ ଅନାଉ ନାହାନ୍ତି,— ଅନାଇଲେ ଥରେ ଥରେ କେବଳ ଜଣେ ଅପୂର୍ବ ସୁନ୍ଦରୀଆଡ଼କୁ ଚାହିଁଦେଇ ପୁଣି ଆଖି ଫେରାଇ ଦିଅନ୍ତି । ଶୁଣିଲି ସେ ସୁନ୍ଦରୀ ତାଙ୍କ ପ୍ରଣୟିନୀ । କେତେ ସୁନ୍ଦରୀ ତାଙ୍କଆଡ଼କୁ ବାଙ୍କେଇ ଚାହୁଁଥିବାର ଦେଖିଲି, ମୋର ମଧ ବଡ଼ ଈର୍ଷା ହେଲା ଯେ !

୩ୟ ବାଳକ— ଥାଉ, ଥାଉ, ସ୍ୱପ୍ନ ତ !

୪ର୍ଥ ବାଳକ— (ପୁରୋହିତ ପ୍ରତି) ଆଚ୍ଛା ସେ ଆସୁ ଆସୁ ତମେ କାର୍ଯ୍ୟଟା ଆରମ୍ଭ କରିଦିଅ ।

ବାଳକଗଣ— ମନ୍ଦ ହୁଅନ୍ତା ନାହିଁ ।

ପୁରୋହିତ— ହଁ ଭଲହୁଅନ୍ତା, ରାତି ଯେ ପାହିଆସିଲା !

(ପୁରୋହିତ ଉଠିଲେ ଓ କିଛିକ୍ଷଣ ମନ୍ତ୍ରପାଠ ପରେ ପୂଜାର ସାମଗ୍ରୀ ସବୁ ଦେଖିବାକୁ ଲାଗିଲେ ।)

ପୁରୋହିତ— ଏଇ ନୈବେଦ୍ୟ, ନାଁ ଆଉ କିଛି ଅଛି ?

(ସହସା ବୀଣାଧାରୀ ଉପେନ୍ଦ୍ରଙ୍କର ପ୍ରବେଶ)

ଉପେନ୍ଦ୍ର— ଆହୁରି ଏକ ନୈବେଦ୍ୟ ଅଛି— ଏ ନୈବେଦ୍ୟ ଶ୍ରେଷ୍ଠ ନୈବେଦ୍ୟ, କାରଣ ଯା ଭିତରଦେଇ ମନୁଷ୍ୟ ତା'ର ହିୟାର ଶ୍ରେଷ୍ଠ ଅନୁଭୂତିଟିକୁ ପଠାଇଦେଇଛି ।

ବାଳକ ବାଳିକା— କାହିଁ କାହିଁ ? ପୂଜା କର, ପୂଜା କର ।

ଉପେନ୍ଦ୍ର— ଆଚ୍ଛା, ସ୍ଥିର ହୁଅ, ସମସ୍ତେ ପୂଜାର ଆସନ ଗ୍ରହଣକର । ଦେଖ, ପ୍ରାଚୀ କପୋଳରେ ଉଷାର ପ୍ରଥମ ରେଖାର ଛାୟା ପଡ଼ିଆସିଲାଣି । ଏହି ମୁହୂର୍ତ୍ତରେ, ଅରୁଣର ପ୍ରଥମ ଆଲୋକରେ ମୋର ଜୀବନ ନୈବେଦ୍ୟର ପ୍ରଥମ ଉପଚାର ଆଜି ବିଶ୍ୱ ବତାସରେ ମିଶିଯାଉ !

### ଗାନ

ଉପେନ୍ଦ୍ର — କାନନେ ଆଜି ମୋର,
ଚିତ୍ତ ଚୋର,
ଜୋଛନାର ପୁଲକ,

ମଳୟ ଚୁମିଯାଏ
ଥାଏ ଥାଏ
ଅଶୋକର ଅଳକ ।
କାହାର ପରଶରେ
ଆଜି ଝରେ
ଫୁଲୁ ଫୁଲୁ ମଦିରା
କାହାର ପରଶନେ
କ୍ଷଣେ କ୍ଷଣେ
ହିୟା ମୋର ଅଧୀରା ।
ପରାଣ କହେ ଆଜି
ଯିବ ଭାଜି
ଅକୂଳର କୂଳକୁ
କାମନା କହେ ପୁଣି
ଯିବ ଚୁମି
ଅସୀମର ଫୁଲକୁ
ଭାସି ଗୋ ଯିବି ସତେ
ସେ ଜଗତେ
ଚିର ଯହିଁ ଜୋଛନା ।
ବହି ଗୋ ଯିବି ମୁହିଁ
ଲଭେ ଯହିଁ
ତାରା ତା'ର ଦ୍ୟୋତନା ।
ଯିବି ଗୋ ଯିବି ବହି
ଛାଡ଼ି ମହୀ,
ହେ ଅରୁଣ, ହେ ନଭ
ଧରହେ ଧର ମତେ
ଦିଅ ମତେ
ତବ କର-ପଲ୍ଲବ ।
କିଛି ହେ ମୋର ନାହିଁ,
ଖାଲି ଗାଇ
ଏ ଯେ ମୋର ଗାନଟି,
ତୁମରି କୋଳେ କୋଳେ
ମହାଭୋଳେ
ଢାଳି ଦେବି ପ୍ରାଣଟି ।

[ଯବନିକା]

## ପୁଷ୍ପିତା

### [ ପ୍ରଥମ ଦୃଶ୍ୟ ]

### କୋରକ

[ବାସନ୍ତୀ କୌମୁଦୀ । ଜଣେ ମଧ୍ୟବିତ୍ତ ଗୃହସ୍ଥର ଅଗଣାବାଲିରେ ବସି ଚାରୋଟି ବାଳିକାଙ୍କର ଗଳ୍ପାଳାପ । ଗ୍ରାମର ଅନ୍ୟ ଗୃହମାନଙ୍କରୁ ପୂର୍ଣ୍ଣିମା ଉତ୍ସବ ଯୋଗୁଁ ବାଳକ ବାଳିକାମାନଙ୍କର ଆନନ୍ଦଧ୍ୱନି ଶୁଣାଯାଉଛି ।]

ହେମା— କହିଲ, କହିଲ, ଏ ପୂନେଇଁ ଚାନ୍ଦ କା'ପରି ଦିଶୁଚି ?

କିଶୋରୀ— ଠିକ୍ ଗୋଟିଏ ରୁପାର ଥାଳି— ନା, ଚାନ୍ଦିରୁପାର ପେଣ୍ଟୁଟିଏ ପରି ।

ହେମା— ନାଇଁ ଲୋ ! ଧନୁ ସଂକ୍ରାନ୍ତି ମୁଆଁ ପରି । ଏଡ଼େ କଅଁଳ ପୂନେଇଁ ଚାନ୍ଦ; ରୁପା ପୁଣି କେଡ଼େ କଠିଣ— ସେ ଭଲହେଲାନି । ଆଉରି ଭଲ ହୋଇଥା'ନ୍ତା ଯଦି କହିଥା'ନ୍ତୁ ଲହୁଣି ପିଣ୍ଡୁଳାଟିଏ ।

କିଶୋରୀ—ସରଳା, ତୁ କହ ତ ।

ସରଳା— ପୂନେଇଁ ଚାନ୍ଦ ସେ ସରଗ-ଫୁଲ
କି ଅଛି ମରତେ ତାହାର ତୁଲ ।
ବସୁଧାର  ମାନ ରଖିବା ପାଇଁ
କିଶୋରୀ-ମୁଖକୁ ରଚିଲା ବିହି ।

ହେମା— ମା' ମୋର, ମୁହେଁ ମୁହେଁ ଗୀତ !

କିଶୋରୀ— ଭଲ୍, ଭଲ୍; ଆଉ ବୋଲ୍‌ମ ସରଳା ! ଆଉ—

ହେମା— ହଁ, ଭଲ ନ ହେବ କାହିଁକି ? ନିଜର ଗୁଣ ବାହୁନାହେଉଛି ନା !

କିଶୋରୀ— ନା ନା; ଏମିତି କାହିଁକି କହୁଚୁ ? କାହିଁ —ଚଣ୍ଡୀକି ପଚାର ତ ?

ହେମା— ଆଚ୍ଛା କହ ଚଣ୍ଡୀ, ସରଳାର ଗୀତ କେମିତି ହୋଇଚି ?

କିଶୋରୀ— କହ ଚଣ୍ଡୀ, କହ ।

ହେମା— କି ଲୋ, କହୁ ନାହୁଁ କିଆଁ ?

କିଶୋରୀ— କହୁନାହୁଁ, ଗୁମ୍‌ମାରି ରହିଚୁ କାହିଁକି ?

ହେମା— ଓହୋ ! ତା' ମନକଥା ମୁଁ ଏବେ ବୁଝିଲିଣି; ଗୀତଟା ଯା'ତା' ନାଁ ରେ ନହେଲା ।

କିଶୋରୀ— ତା'ର କ'ଣ ଗୀତ ଲାଖି ରୂପ ନାହିଁ ?

ହେମା— ନାହିଁ କ'ଣ ?

ତରାଟ ତୁଳନା ନୟନ, ମୁହଁ ଶ୍ରାବଣ ମେଘ,
ବେଳବୁଡ ପଦ୍ମ ଚହଟ, ଆସ ଦେଖିବ ବେଗ ।

କିଶୋରୀ— କି ଲୋ, ତୋର ବି ଯେ ମୁହେଁ ମୁହେଁ !

ସରଳା— ଦେଖ୍ ଦେଖ୍, ଚଣ୍ଡୀ କାନ୍ଦିବାକୁ ବସିଲାଣି । କାନ୍ଦିଲା ତ ଏଇ...

କିଶୋରୀ— ଚଣ୍ଡୀ, ଏଇଥିପାଇଁ କାନ୍ଦିବୁ ? ତୁନିହ !

ହେମା— କାନ୍ଦିବନି ଆଉ କ'ଣ ?

ଗଜମୁକୁତାର କଅଁଳ ଛାତି
ଟିକକ କଥାକୁ ବାଧେ ନିହାତି ।

ଗେଲବସର !

କିଶୋରୀ— ତୁନିହ ହେମା, ଦେଖୁଚୁ କାନ୍ଦୁଚି— କ'ଣଗୁଡ଼ାଏ ବକିଯାଉଚୁ ?

ସରଳା— ତୁନିହ, ଚଣ୍ଡୀ....ଦେଖ୍ ଦେଖ, ସେ ପଳେଇବାକୁ ସଜ...

କିଶୋରୀ— ଏଁ, ଚାଲିଯିବୁ ? ରହଲୋ...

ସରଳା— ଧର୍ ହେମା, ପାଖରେ ଅଛି, ଧରିପକା...

ହେମା— ମଲା ମୋର୍; ଯାଉ ସେ ।

ସକେଇ ନାନୀକି ଆଦର ଯେତେ
ଲୁହ ଛଳଛଳ ଆଖିରେ ସେତେ ।

ସରଳା— ଯା, ଚାଲିଗଲା ।

କିଶୋରୀ— ଚାଲିଗଲା !

ସରଳା— ସବୁ ଦୋଷ ହେମାର ।

କିଶୋରୀ— ଛି, ହେମା !

ହେମା— ତେବେ ମୁଁ ମଧ ଚାଲିଯାଉଚି—ତମେ ସ୍ୱର୍ଗର ଅପ୍‌ସରା ଯୋଡ଼ିକ ବସି ସାଙ୍ଗ ହୁଅ ।

କିଶୋରୀ— କେମିତି ସ୍ୱଭାବ ତୋ'ରଲୋ !

ସରଳା— ତା' ସାଙ୍ଗେ ତ କଳି ଲଗେଇଲୁ— ଆମ ସାଙ୍ଗେ ବି ?

କିଶୋରୀ— ଥାଉ ସେସବୁ ! ରହ ହେମା, ଆଉ କଥା ପକେଇବା । ଚଣ୍ଡୀକି ତା' ଘରେ ଯାଇ ବୋଧକରି ଆସିବା ।

(ସମସ୍ତେ କ୍ଷଣକାଳ ନୀରବ ରହିଲେ)

ସରଳା— ଆହା, କି ସୁନ୍ଦର ଆଲୁଅ ପଡ଼ିଚି ! ଆଈମା' କହୁଥିଲା, ଜହ୍ନ ଇନ୍ଦ୍ର ରାଜାଙ୍କର ଆଲୁଅ । ସ୍ୱର୍ଗର କନ୍ୟାମାନେ ସଞ୍ଜ ହେଲେ ତାକୁ ମେଘତଳେ ଝୁଲାଇ ଦେଇଯା'ନ୍ତି ।

ହେମା— କାହିଁକି ସେ ଆଲୁଅ ଜଳେ ଜାଣ ? ଆଈମା' କହୁଥିଲା, ଆକାଶର ଗୋଟେ ପାଖେ ଦେବତାମାନଙ୍କ ରଜାର ଘର; ଆରପାଖେ ରାଣୀଙ୍କ ନଅର । ମାସରେ ପନ୍ଦର ଦିନ ରାଜାରାଣୀର ଭେଟ ହୁଏ— ତେଣୁ ଜହ୍ନ ପକ୍ଷେ ଉଏଁ ପକ୍ଷେ ଲୁଚେ । ରଜା ଯେତେବେଳେ ରାଣୀଙ୍କ ପାଖକୁ ଯା'ନ୍ତି ସେତିକିବେଳେ ଏ ଦୀପ ଜଳିଉଠେ ।

କିଶୋରୀ— ଆଚ୍ଛା, ଆଈମା'ର କଥା ଭିତରୁ ଗୋଟେ କଥା କହ ହେମା ଅପା ! ଠାକୁରାଣୀ ନେବାକୁ ତ ଆଉରି ଅନେକ ବେଳ ଅଛି । ଆମର ସବୁ କାମ ସରିଚି !

ସରଳା— ହଁ, କହ ଗୋଟେ— କଥା ଶୁଣିବାକୁ ଆଚ୍ଛା ବେଳ ହେଇଚି । ରାଜଝିଅ କଥା, ମନ୍ତ୍ରୀ ପୁଅ-କଟୁଆଳ ପୁଅ କଥା, ସାଧବଘର ସାନବୋହୂ କଥା— ଯା' ତୋ ମନକୁ ଆସୁଚି ।

କିଶୋରୀ— ସେଦିନ ସେ ବୁଢୀ-ଝିଅ କଥା କହିବାକୁ ବସିଥିଲୁ— କହିଲୁ ନାହିଁ, ସେହି ଗୋଟାକ କହ ।

ସରଳା— ହଁ ହଁ, ମୋର ମନେଅଛି । ଏକ ରାଜ୍ୟରେ ଗୋଟେ ନଈ ଅଛି । ନଈକୂଳରେ ପାହାଡ଼; ତା' ତଳେ ଗୋଟେ ବୁଢୀ ଆଉ ତା' ଝିଅ ଘର କରିଥିଲେ— ଏଇ କଥାଟି ?

ହେମା— ହଁ, ସେଇ କଥା, ସେଇ....

କିଶୋରୀ— କହ ଅପା, ବେଗି କହ ।

ସରଳା— କହ ଭଉଣୀ ! କିଶୋରୀ, ତୁ ଏଣିକି ଆ; ମୁଁ ତୋ କୋଡ଼ରେ ଶୋଇ ଶୁଣିବି ।

କିଶୋରୀ— ଆ...

ହେମା— ଶୁଣ, ଏକ ରାଜ୍ୟରେ ଏକ ନଈ । ତା' କୂଳରେ ଏକ ପାହାଡ଼; ତା' ତଳେ ଗୋଟିଏ ବୁଢୀ...କିଲୋ, ହୁଁ କରୁ ନା ଯେ !

କିଶୋରୀ— ହଁ ହଁ— ହୁଁ !

ସରଳା— ହୁଁ, କହ !

ହେମା— ବୁଢୀଟି ଯେ, ପାକଲା ବୁଢୀ— ମୁଣ୍ଡବାଳ ଝୋଟ ହୋଇଯାଇଥିଲା; ଦାନ୍ତସବୁ ଝଡ଼ିପଡ଼ିଥିଲା; ନଇଁ ନଇଁ ବାଡ଼ିଧରି ଚାଲେ ।

ସରଳା— ହୁଁ, ସେ'ଠୁ ?

କିଶୋରୀ— ରହ, ହେମା ! କହ ଆଗେ, ଆମ ଆଈମା'କି ବୁଢୀ— କଞ୍ଚା ନା ପାକଲା ?

ହେମା— ପାକଲା ।

କିଶୋରୀ— କଞ୍ଚା ବୁଢୀ କେମିତି ? ତାଙ୍କର କ'ଣ ଆମରି ପରି ଦାନ୍ତ ଥାଏ, ବାଳସବୁ କଳା ହୋଇ ରହିଥାଏ ?

ହେମା— ମଲୁନୁ ହୁଣ୍ଡି ! ବାଳ ଯା'ର କଳା ଥିବ ସେ ବୁଢୀ ହେବ କିମିତି ? ବାଳ ପାଚି ଧଳା ହେଲେ ସିନା ବୁଢୀ ହୁଅନ୍ତି । ଆମ ଆଈମା'ର ଦିନେ ବାଳ କଳା ଥିଲା । ଦି'

ପାଟିଯାକରେ ଧାଡ଼ି ଧାଡ଼ି ଦାନ୍ତ ଥିଲା– ବୟସ ହେଲା ସବୁ ଗଲା । ବେଶି ବୁଢୀ ହୋଇଯିବାରୁ ପାକଲା ବୁଢୀ କହୁଚନ୍ତି ।

କିଶୋରୀ– ଆଇମା' କ'ଣ ଆମରି ପରି ଦିନେ ଏମିତି ପିଲା ଥିଲା ? ଏମିତି ଗପସପ, ଖେଳବୁଲ କରୁଥିଲା ? ଏଣେ ତେଣେ ତୋଟାମାଳରେ ବୁଲି ଆମ୍ବ ଜାମୁ ଖାଇବାକୁ ଗାଁ ପିଲାଙ୍କ ସାଙ୍ଗେ ଦଉଡୁଥିଲା ?

ହେମା– ସବୁ କରୁଥିଲା । ତୋ' ବିଚାରରେ ସେ କ'ଣ ମା' ପେଟରୁ ଏମିତି କାହାଣୀକୁହା ବୁଢୀ ହୋଇ ଜନ୍ମହୋଇଚି ?

କିଶୋରୀ– ଆଇମା' ନିଜେତ ଖେଳବୁଲ କରିଛି– ଆଉ ଆମକୁ କାହିଁକି ସବୁବେଳେ ବାଡ଼ି ଧରି ଗୋଡ଼ାଉଚି ?

ହେମା– ବୋଉ କହୁଥିଲା, ବୁଢୀ ହେଲେ ଲୋକେ ଟିକକ କଥାରେ ରାଗିଯା'ନ୍ତି ।

ସରଳା– ହଉ, ହଉ, ତୁ କଥା କହ ବା ।

କିଶୋରୀ– ବୁଢୀ ବାଟେ ବୁଢୀ ଯାଉ; ତୁ ଆମର କହିଯା'–ସରଳା ! ଟିକିଏ ଉଠିଲୁ, ସଜହୋଇ ବସେଁ, ମତେ କାଟୁଚି ।

ହେମା– ଶୁଣ, ସେ ଝୋଟମୁଣ୍ଡୀ ବୁଢୀର କିନ୍ତୁ ଗୋଟିଏ ଝିଅ ଥିଲା ଯେ ଠିକ୍ କିଶୋରୀ ପରି ।

ସରଳା– ଏଡ଼େ ସୁନ୍ଦର ?

କିଶୋରୀ– ହେମା, ତୁ ମୋ' ନାଁ କାହିଁକି ସବୁବେଳେ ପକଉଚୁ ଯେ ।

ହେମା– ଦୋଷ କ'ଣ ହେଲା ମୋର ଭଉଣୀ, କହ ତ ? ତୁ ତ ସରଗତରା ପରି ଖସିପଡ଼ିଚୁ ।

କିଶୋରୀ– ସେମିତି ହେଲେ ମୁଁ ଯାଏଁ ।

ହେମା– ନା ନା, ମୁଁ ଆଉ କହିବିନି ।

ସରଳା– ହୁଁ, ଏଥର କହିଯା' ।

ହେମା– ସେ ଦେଶର ରଜାପୁଅ ଦିନେ ପାରିଧିକି ବାହାରି ସେହି ପାହାଡ଼ ତଳେ ପହଞ୍ଚିଲେ ।

କିଶୋରୀ– ହୁଁ ।

ହେମା– ସେତେବେଳେ ବୁଢୀ ଘରେ ନଥିଲା । ଚେରମୂଳପାଇଁ ବଣଭିତରକୁ ଯାଇଥିଲା ।

ସରଳା– ହୁଁ ।

ହେମା– ବୁଢୀଝିଅ 'ସୁନା' ନଈତୋଠରେ ଗାଧୋଉ ଥିଲା । ରଜାପୁଅ ପାଣିପାଇଁ ନଈକି ଯାଉ ଯାଉ ଦୁହିଁଙ୍କର ଭେଟହେଲା ।

କିଶୋରୀ– ସେ'ଠୁ ସେ'ଠୁ–

ହେମା– ଓଦାଲୁଗାରେ ଦେହ ଘୋଡ଼େଇ ହୋଇ, ସୁନା ଲାଜକୁଳୀଲତା ପରି ସଢିଗଲା । ରଜାପୁଅର ତା'କୁ ଦେଖି ଆନନ୍ଦ କହିହେଉନି ।

କିଶୋରୀ– ରଜାପୁଅର ଆନନ୍ଦ ! କାହିଁକି ମ ?

ହେମା– ସୁନା ଭାରି ସୁନ୍ଦରୀ ଥିଲା ନା । ରଜାପୁଅ ଭାବିଲା ତା'କୁ ନେଇଯିବ ବୋଲି । ରଜାପୁଅ ତା' ପାଖକୁ ଯାଇ ଯିବାକୁ କହିଲା । ଇଛା ଥିଲେ ମିଶେ ଲାଜରେ ସେ ନାହିଁକଲା । ଶେଷକୁ ଅନ୍ୟ କିଛି ଉପାୟ ନ ଦେଖି ରଜାପୁଅ ଥିର୍ କରି ତାକୁ ଘୋଡ଼ାରେ ବସାଇ ନିଜରାଜ୍ୟକୁ ନେଇଗଲା । ସୁନାର ଲୁହରେ ଯିବା ବାଟ ଓଦା ହୋଇଗଲା ।

ସରଳା– ଆହା !

କିଶୋରୀ– ଆହା, ସୁନା ।

ସରଳା– ରଜାପୁଅଟା କେଡ଼େ ଖରାପ ମ !

କିଶୋରୀ– ଝିଅପିଲାଟାକୁ ନେଇ ରଜାପୁଅ କ'ଣ କରିବ ମ ?

ହେମା– ଆଉ ଅଳ୍ପ ଦିନ ଅଛି ଜାଣିବାକୁ କିଶୋରୀ, ଥିର୍ ହୁଅ ।

ସରଳା– ହୁଁ– କଥା ।...

ହେମା– ତା' ପରେ ବୁଢୀ ବଣରୁ ଫେରି...

କିଶୋରୀ– ଏ ହେମା'ପା, ଏ ସରଳା, ଦିଅଁ ନେବା ପରା ?

ସରଳା– ହଁ ହଁ, ତାଙ୍କ ସାଇରେ ହୁଳହୁଳି ଶୁଭିଲାଣି ।

କିଶୋରୀ– ଛି, କଥାରେ ମିଛେ ମିଛେ ଏତେ ସମୟ ଗଲା ।

ହେମା– ଉଁ, ତୋ'ରି ଯୋଗୁଁ କଥା ଆରମ୍ଭ, ତୁ ପୁଣି ସକଉଚୁ ।

କିଶୋରୀ– ଉଠ୍ ସରଳା । ଯା', ତୁ ଫୁଲ ଆଣିବୁ । ଚଣ୍ଡୀକି ବି ଡାକିଆଣିବୁ ।

(ସରଳାର ପ୍ରସ୍ଥାନ । ଅନ୍ୟ ଦୁହେଁ ଅଗଣାର ଗୋଟେ ପାଖରେ କିଶୋରୀ-ଗଠିତ ଲକ୍ଷ୍ମୀ ଦେବୀଙ୍କର ମୃଣ୍ମୟପ୍ରତିମା ପାଖରେ କିଛିକ୍ଷଣ ଠିଆହୋଇ ପରେ ବସିଲେ ।)

କିଶୋରୀ– ଏପରି ଦିଅଁ ଆଉ କା'ର ହୋଇନି ଅପା ।

ହେମା– ତୋ' ହାତ ବାଜିଚି ପରା । ତୋ' ହାତରେ ମାଟି ସୁନାହୋଇଯିବ ।

କିଶୋରୀ– ସବୁବେଳେ ଗୋଟେ ଥଟ୍ଟା କ'ଣ ଲୋ ?

ହେମା– ନାଇଁ ନାଇଁ, ଥଟ୍ଟା ନାଇଁଲୋ । ଏମିତି ମୂର୍ତ୍ତି ଆଉ କା'ର ହେଇ ନି । ଢେମାର ଦିଅଁଟା ଭଲହୋଇଥିଲା ଯେ, ରଙ୍ଗ ଦେଇପାରିଲା ନି ।

କିଶୋରୀ– ଏଥର ଦିଅଁଙ୍କୁ ମୁଁ କ'ଣ ମାଗିଚି ଜାଣୁ ?

ହେମା– ବରଟିଏ ।

କିଶୋରୀ– ଏଁ– ସେ ମୋ'ର କ'ଣ ହେବ ଲୋ । ତୋ'ର ହେଉ । ମୁଁ ଜଣେଇଚି ଯେ, ଆର ବର୍ଷ ଯେମିତି ସବୁଠୁଁ ଭଲ ଦିଅଁ ହେବ ମୋର । ଆଈମା', ବୋଉ, ସମସ୍ତେ ଦେଖି ଖୁସୀ ହେବେ । ତୁ କ'ଣ ମାଗିଚୁ ବର– ନା ?

ହେମା– ମୁଁ କିଛି ମାଗିନି ।

କିଶୋରୀ– ତୁ ମିଛ କହୁଚୁ । ତତେ କହିବାକୁ ହେବ ।

ହେମା– ନାଇଁ କିଶୋରୀ,.....ଏଁ, ଅନା, ସରଳା ଆସିଲାଣି । ଚଣ୍ଡୀ.... ହଁ, ଚଣ୍ଡୀ ବି ଆସୁଚି । କେଡ଼େ ମୁହଁ କରିଚି, ଅନା ।

କିଶୋରୀ– ଦେଖ୍ ଦେଖ୍ ସରଳା ମନ୍ଦାର ଫୁଲ ଆଣିଚି, ବାଃ.......

(ସରଳା, ତା' ପଛେ ପଛେ ଚଣ୍ଡୀର ପ୍ରବେଶ)

ସରଳା– ଏଇ ନିଅ ଫୁଲ । କେତେ କଷ୍ଟରେ ମୁଁ ଆଣିଚି । ବାଇ ନାନୀର ଯେଉଁ ବକା– ଏଣେ ଯାର ପୁଣି ଯେଉଁ ରୁଷା ।

ହେମା– ରୁଷା ! ଛାଡ଼ିଦେଇ ଆଇଲୁନି ।

ଗେଲେଇ ନାନୀର ଟିକକେ ରୁଷା

ଡାକ ପଡ଼ିଥାଇ ସାଇ ପଡ଼ିଶା– ମୋ' ମା' !

କିଶୋରୀ– ଦେଖ୍ ଦେଖ୍, ଆସୁ ଆସୁ ତା'କୁ କେମିତି କହିଲା ! ଆ ଚଣ୍ଡି, ତୁ ମୋ ପାଖକୁ ଆ । ସଢିଯାଉଚୁ କାହିଁକି ? କଥା ପଦେ କହିପାରୁନୁ ?

ସରଳା– ହଁ, ସଜ କର ମ ।

ହେମା– ହୁଁ, ଆଣ । ପୂଜା କର ଆଗେ । କିଶୋରୀ, ବସ୍ ଲୋ । ସରଳା, ଗୀତ ଗା' । ମୁଁ ତୁଣ ବଜାଏ ।

(କିଶୋରୀ ବସି ପୂଜାକଲା । ହେମା ସଜାଇବାକୁ ଲାଗିଲା । ସରଳା ଗୀତ ଗାଇବାକୁ ସଜ ହୋଇ ବସିଲା । ଚଣ୍ଡୀ ଅଭିମାନରେ ଗୁମ୍‌ମାରି ବସିରହିଲା ।)

ସରଳା– ନନା ଯିବେ ପରା ଖୁରୁଧା,
ବୋଉ କାନ୍ଦଇ ବସି,
ରଜାଗଡ଼ ପରି ଉଆସ
ମନ ତହିଁ କି ରସି ?

ହେମା– ପୋଖରୀ ଭିତରେ ତରାଟ
ତା'ର ପତର ଚକା,
ଯତନ କର ଗୋ ରୋହିଣି,
କୃଷ୍ଣ ଶୋଇଛି ଏକା ।

କିଶୋରୀ– ଏପାଖେ ପାହାଡ଼, ସେପାଖେ
କଳା ସମୁଦ୍ର ବାଲି,
କଳାମଚମଚ ଭେଣ୍ଡିଆ
ଖରେ ଆସୁଛି ଚାଲି ।

ସରଳା— କଳାମଚମଚ ଭେଣ୍ଡିଆ
ସେ ତ ଦୂର ବିଦେଶୀ,
ରଙ୍ଗାଝିଅ କିଆଁ ଡାକିଲା
ତାକୁ ଦୂତିକା ପେଷି ?

ହେମା— ରଙ୍ଗାଝିଅ ତାକୁ ଡାକିଲା,
ରଙ୍ଗା ବହିଲେ କୋପ,
ବଇଁଶୀ ଡାକରା ଆସିଲେ
କିଏ ରହୁଛି ଗୋପ ?

କିଶୋରୀ— ବାପ ଡରେ ଢେମା ଶୋଇଲେ
ରାଗେ ରତନ ଖଟେ,
ଗଡ଼ ଘେରି କଳା ଭେଣ୍ଡିଆ
କଳା ଘୋଡ଼ା ଧପଟେ ।
—ହୁଁ, ସରିଲା ।

ହେମା— ଉଠ ।

ସରଳା— ଉଠ ।

କିଶୋରୀ— କିଲୋ ଚଣ୍ଡୀ-ଖଣ୍ଡୀ, ମୃଦଣ୍ଡୀ, ତୁ ଯିବୁଟି ? ଆମେ ତ କେତେ ନାଟ କରିବୁଁ ବାଲି ପଠାରେ— କେତେ ରାତିକି ଆସିବୁ ।

ହେମା— ଆସବା ।

ସରଳା— ମୂର୍ତ୍ତି ?

କିଶୋରୀ— ମୁଁ ଧରିଚି ।

ସରଳା— ଚାଲ ।

(ସମସ୍ତେ ଚାଲିଲେ, ଚଣ୍ଡୀ ସେମାନଙ୍କ ପଛରେ)

## [ ଦ୍ୱିତୀୟ ଦୃଶ୍ୟ ]

### ପୁଷ୍ପ

[ ନିଶୀଥ । ମଧ୍ୟବିତ୍ତ ଗୃହସ୍ଥର ଅଗଣା— ଶାନ୍ତ, ସ୍ତବ୍ଧ । ଶ୍ରାନ୍ତା କିଶୋରୀ ଏକାକିନୀ ସୁପ୍ତା । ଶିଥିଳ ବେଶଭୂଷା, ଶିଥିଳ କୁନ୍ତଳ । ଅଙ୍ଗେ ଅଙ୍ଗେ ତା'ର ଚନ୍ଦ୍ରିକାର ଚୁମ୍ବନ । ]

[ବସନ୍ତର ପ୍ରବେଶ]

ବସନ୍ତ— ବନେ, ଜନେ,
ଦେହେ, ମନେ

ମୋ ତୂଳିକା ବୁଣି ଚାଲେ
ଲଳିତ ଲାବଣ୍ୟେ
ମଂଜୁଳ ବର୍ଣ୍ଣେ,
ସୁରଭିତ ସ୍ୱର୍ଣ୍ଣେ ।
ମୋ-ଚରଣ-ପାତେ ଜଡ଼-
ଧରଣୀ-ଦେହ,
ଉଲ୍ଲସି ଉଠେ ନବ ଜୀବନ ରାଗେ,
କୋଟି କୋଟି ଅନ୍ତରେ,
ପ୍ରଣୟ ତୃଷା
ପ୍ରିୟଜନ ମୁଖ ଚାହିଁ
ଅଳସେ ଜାଗେ ।
ମୋ-ପଥେ ଫୁଟଇ ଫୁଲ
ଅୟୁତ ଶାଖେ
ସଉରଭ ଉଡ଼ି ବୁଲେ
ଧୀର ଅନିଳେ,
ରସ-ଥର-ଥର ହୁଏ
ନୀଳ ଗଗନ,
ରବି ଖୋଜେ ପୁଷ୍ପରେ
ପ୍ରଣତ ଶିରେ ।
ସୃଷ୍ଟିର କୋଣେ କୋଣେ
ବିଳାସ, ଆଶା
ଆଣେ ମୁହିଁ କାଳେ କାଳେ,
ଜୀବର ପ୍ରାଣେ
ବିଧାତାର ଶିଳ୍ପୀ ମୁଁ,
ଏ ମାଟି ଧରା,
ଭୋଗ-ରମଣୀୟ କରେ,
ପରଶେ, ଘ୍ରାଣେ ।
ମଳୟ— ଅଙ୍ଗେ ମୋ ଚନ୍ଦନ ଗନ୍ଧ,
ନ ମାନେ ମୁଁ ଅର୍ଗଳ, ବନ୍ଧ,
ବନ, ଗିରି, ପ୍ରାନ୍ତର
ସାଗର, ଦେଶାନ୍ତର,
ଥରାଏ ମୋ ପକ୍ଷର ଛନ୍ଦ ।

ଶୀତ-ପାଣ୍ଡୁର କୋଟିଗଣ୍ଡେ,
ହିମ-ଶିଥିଳତା କୋଟି ଅଂଗେ,
ଆଣି ଦିଏ ମୋ ପରଶ,
ଜ୍ୟୋତି-ଯୌବନ-ରସ,
ଶୋଣିତ ବହଇ ଅ-ମନ୍ଦ ।

ମଳୟ ମୁଁ, ମଳିନତା ଘୁଁଚାଏ,
ଜଡ଼ରେ ଜୀବନ ଫୁଁକି ବଁଚାଏ,
ମୁହିଁ ଦକ୍ଷିଣ-ବଧୂ
ମୋ ପଥେ ଝରଇ ମଧୁ
ପଲ୍ଲବେ ଫୁଟେ ମକରନ୍ଦ ।

ମୁହିଁ ସଦା ଯଉବନ ସଜନୀ,
ବସନ୍ତ, ମୋର-ଦିବା-ରଜନୀ,
ପିକ ମୋର ପ୍ରିୟ ପ୍ରାଣୀ,
ଢାଳଇ ଶ୍ରବଣେ ଆଣି
ହୃଦୟ-ବିଜୟୀ ସର-ଛନ୍ଦ ।

କେ ଚାହ ଜୀବନ୍ତୁ ରସ ପିଇବ,
ଯଉବନ ଜୟ-ଗୀତ ଗାଇବ,
ବାତାୟନ ଖୋଲି ପଥେ
ଆତିଥ୍ୟ ଦିଅ ମତେ,
ଶୁଣ, ଫୁଲେ ରବି ଅନୁବନ୍ଧ ।

ପରିମଳ— କୁସୁମ-କୋମଳ-ଦଳେ ଶୁଏ ମୁଁ,
ମଳୟର ପକ୍ଷ ମୋ ବାହନ,
ପରିମଳ ନାମ ମୋର, ଧରାରେ,
କର୍ମ ମୋ ସଉରଭ-ଚୟନ ।
ଗନ୍ଧେ ଜନମ ମୋର, ସଉରଭ ଜୀବନ,
ଦିଶେ ଦିଶେ ସୁବାସ ମୁଁ ବିତରେ,
କେତକୀର କଣ୍ଟକେ ଥାଏ ମୁଁ ଅବା,
ଚନ୍ଦନ-ବଂଧନ ଭିତରେ ।
ମୋ ଯୋଗୁଁ କୁସୁମ-ଦଳ ଉଠଇ
ପ୍ରିୟଜନ, ଦେବଜନ ଉରସି

ମୋ ଦେଇ ପ୍ରଣୟ-ଭରା ହୃଦୟ,
ଆନ ହାତେ ଦିଏ ନିଜେ ପରଷି ।
ଆସ ଆସ,
ନିଅ ମତେ,
ଅଂଜଳି ଭରି ହେ,
ଅନୁରାଗେ,
ମଧୁ ଭୋଗେ,
ପ୍ରାଣ ଯାଉ ଭରି ହେ ।
କାମଦେବ— କାମନାର ଦେବତା,
କଲ୍ୟାଣ, ମମତା,
ହୃଦୟର ବ୍ୟଥା ନେଇ କ୍ରୀଡ଼ଇ,
ଭଗ୍ନ, ଯା ଛିନ୍ନ,
ଅଯୋଡ଼ା ବା ଭିନ୍ନ,
ମୋ ଶର ନିବିଡ଼ ସ୍ନେହେ ଭିଡ଼ଇ ।
ଅନ୍ତର ଗହନେ,
ସୁଗଭୀର ସ୍ୱପନେ,
ଅକୁହା ଯା' ରହିଯାଏ ସରମେ,
ମୋ କାଉଁରି-କାଠିରେ,
ମୋ ଗାରୁଡ଼ି-ରାଶିରେ,
ପୁଷ୍ପିତ ହୋଇଉଠେ ମରମେ ।
ବୃକ୍ଷକୁ ଲତାରେ,
ଚରଣକୁ ମଥାରେ,
ଭଅଁରକୁ କୁସୁମର ପତାରେ
ମିଳାଇ ମୁଁ ଧରାରେ
ଆଶ୍ଳେଷ-କାରାରେ,
ବଁଚାଇଛି ସୃଷ୍ଟିର ଗାଥାରେ ।
ପୁଷ୍ପିତ ଧନୁ ମୋର
ସ୍ପନ୍ଦିତ ନିରତ,
ନିଖିଳ-କୋମଳ-ହୃଦ-ବ୍ୟଥାରେ ।
ବସନ୍ତ— ଏ କିଶୋରୀ ହେଉ ରାଜକୁମାରୀ,
କିଶୋର ସେ ହେଉ ରାଜକୁମାର ।

କାମ— ଯୌବନ-ମୁକୁଟରେ ମଣ୍ଡିତ ସକଳେ
ରଜା ହେବେ କିଛିକାଳ ଧରାର ।
ବସନ୍ତ— ସକଳେ ଭୋଗିବେ ଏହି ଜୀବନ,
ମାଟି-ଧରା ହେବ ମଧୁ ସରଗ ।

କାମ— କର ତା'କୁ ଉଜ୍ଜ୍ୱଳ,
ନିର୍ଭୟ, ଆଶାୟୀ,
ନିରଳସ-ସୁନ୍ଦର-ସୁଭଗ ।
ବସନ୍ତ— କିଶୋରକୁ ଦେବା ତେଜ,
ଦୁର୍ମଦ ଜିଗୀଷା,
କିଶୋରୀ ତନୁରେ ଦେବା ମାଧୁରୀ ।
କାମ— ତରୁଣ ଚାହିବ, ଯିବ
ଆକାଶେ ଉଡ଼ି,
ତରୁଣୀ ସେ ହେବ,
ନୀଡ଼-ଆତୁରୀ ।
ବସନ୍ତ— କ୍ଳାନ୍ତ ସେ ପଉରୁଷ,
ଖୋଜିବ ଶେଷେ,
ରୂପର ସେ କଲ୍ୟାଣ-
କୋମଳ ଛାତି ।
କାମ— ଜୀବନର ବୀଜ ତହୁଁ ଜାଗିବ,
ପାଇ ଦୁଇ ଜୀବନର ପ୍ରଣୟ-ତାତି ।
ବସନ୍ତ— ଆସ ପରିମଳ,
ଆସ ମଳୟ-ସଖୀ,
ଯଉବନ ଥୋଇଯିବା ଏଠାରେ ।
କାମ— ଜୀବନର ମଧୁକାଳ
ସ୍ୱପନ ଭରା
ଗୁଁଥା ହେବ ଏବେ ନବ
ସ୍ୱର୍ଣ୍ଣ-ତାରେ ।
ମଳୟ— ଆସ ସଖି ଗୋ,
କିଶୋରୀ ଅଧରେ ଯିବା
ମଧୁ ରଖି ଗୋ ।

ପରିମଳ— ଚାଲ ସଖା ହେ,
ନୟନେ ତାରାର ଜ୍ୟୋତି
ରହୁ ମଖା ହେ ।
ମଳୟ— ଆକାଶ-ଭାଷା ସଖି,
କିଶୋରୀ କେଶ-ପାଶେ
ଆଲୋକ-ଭାଷା ସଖି,
କିଶୋରୀ ମଧୁ-ହାସେ ।
ପରିମଳ— ଶ୍ରାବଣ-ମେଘ-ଶିରୀ
କିଶୋରୀ-ବେଣୀ-ପରେ,
କପାଳେ ଟକ ଟକ
ଉଷାର ଭାଷା-ଝରେ ।
ମଳୟ— ଶରତ-ଶିରୀ ଦେଖ
କପୋଳେ ଝଲମଲ,
କିଶୋରୀ ଆଖେ ଆଖେ
ବିଜୁଳି ଟଳମଳ ।
ପରିମଳ— କିଶୋରୀ ବଚନରେ ତୁମରି ବୀଣା ବାଜୁ,
ମଳୟ— କିଶୋରୀ ସାରା ଦେହେ ତୁମ ସୁରଭି ରାଜୁ ।
ପରିମଳ— କିଶୋରୀ ଅବୟବେ ଏ ମୋ' ସୁରଭି ଲାଗି,
ମଳୟ— ଶିରାରେ ଶିରାରେ ତା' ଚେତନା ଉଠୁ ଜାଗି ।
ପରିମଳ— ତରୁଣ ଏକ ବସି ବାହାରେ ଗାଏ ଗୀତି,
ମଳୟ— କିଶୋରୀ ମନ ତଳେ ତହିଁକି ଉଠୁ ପ୍ରୀତି ।
ପରିମଳ— ଏ ମୋର ଶିରୀ ଲାଗି କିଶୋରୀ ଅଧରରେ,
ମଳୟ— ଗୁଲ୍ କୋମଳ ଦଳ ଝଡୁ ଗୋ ଲାଜଭରେ ।

(କିଶୋରୀକି ସମସ୍ତେ ମିଶି ସଜ୍ଜିତ କରିସାରିଲା ପରେ)

ମଳୟ— ବସନ୍ତ ଗୋଲାପ ଗୋ,
ପରିମଳ— ଭ୍ରମରର ପ୍ରଳାପ ।
ମଳୟ— ଯୌବନ ପୀରତି,
ପରିମଳ— ବୁକୁଫଟା ଆରତି ।
ମଳୟ— ଆଖେ ଆଖେ ନୀର ଯେ,
ପରିମଳ— ବୁକେ ବୁକେ ତୀର ଯେ ।

ମଳୟ— ଜୀବନର ମଧୁକାଳ
ଦେଇ ଯେ ଗଲେ,
କଇଶୋରେ ଥୋଇ ଧ୍ୟାନ-
ଗହନ ତଳେ !

ବସନ୍ତ— ସ୍ୱପନର ଶେଷ କିପାଁ
କର ଦେବତା ?
ଧ୍ୟାନରେ କରହେ ଏତେ
ମରମଫଟା ?

କାମ— ହାତରୁ ଖସିଲେ ସିନା
ଖୋଜିବେ ଧନ ?
ଜୀବନ ନୁହେଁ ଯେ ସୁଖ,
ସୁଖ ସ୍ୱପନ !
ସେହି ସେ ସ୍ୱପନ-କଣା
ଯାଏଁ ବିତରି
ନାମ ତାର ଯଉବନ,
ସ୍ୱପନ-ଝରୀ ।

ବସନ୍ତ— ଏ କିଶୋରୀ
ପ୍ରାଣଭରି
ଭୋଗୁ ସ୍ୱପନ,
ପରିମଳ,
ମଳୟରେ
ଭରୁ ଜୀବନ ।
ଆସ ରାଜା କାମନାର,
ବର୍ଣ୍ଣିଳ ବାସନାର,
ଉଡ଼ିଯିବା ଚାନ୍ଦ୍ର ଏ ଗଗନେ,
କୋଟି କୋଟି ଜୀବନରେ
ଛୁଇଁ କଲ୍ୟାଣ-ଭରେ,
ଦେଇଯିବା ଅମୃତ-ସ୍ମରଣେ ।

(ସମସ୍ତଙ୍କର ପ୍ରସ୍ଥାନ)

## [ ତୃତୀୟ ଦୃଶ୍ୟ ]

## ସୌରଭ

(ଘର ପଛପଟ ବାରି)

କିଶୋରୀ— ଓହୋ, ଏ ରୋଗ ତ ମତେ ଉଠେଇ ବସେଇ ଦେଲାନି ! ଆଚ୍ଛା ତାଙ୍କୁ ଦେଖିଲି, ଯେଉଁଆଡ଼େ ଯାଉଚି ମନେହେଉଚି ସେ ମୋ' ସାଥେ ସାଥେ ଘୁରୁଛନ୍ତି । ଏତେ ଲୋକଙ୍କୁ ତ ଦେଖୁଚି, ସେଇ ଲୋକଟିର ମୁହଁରେ କ'ଣ ଅଛି କେଜାଣି ତାକୁ ତ ଭୁଲିହେଉନି ! ରାତିଦିନ ମୋର ସେଇ ଚିନ୍ତା ! ବସିଥିଲେ ମନେହେଉଚି ଆଉ ଜଣେ କିଏ ଆସି ଆଖି ଚିପିଧରନ୍ତା, ସେ ଆସୁନି ! ଶୋଇଥିଲେ ମନେହେଉଚି, ଆଉ ଜଣେ କିଏ ଶୋଇଥିଲେ ଶେଯଟିର ଜୀବନ ସାର୍ଥକ ହୁଅନ୍ତା ପରା ! ମୁଁ କିନ୍ତୁ ତାଙ୍କୁ ପାଉନି ! ଅହରହ ମନେହେଉଚି ମୁଁ ତାଙ୍କରି ପାଖେ ଥା'ନ୍ତି କି ! ମନ ଚାହୁଁଚି, ତାଙ୍କର ଚାକରାଣୀ ହୋଇ ରହିବାକୁ, ଦେହ ଚାହୁଁଚି ସେ ଦେହରେ ମିଶିଯିବାକୁ । ଆଖି ଦି'ଟା ଚାହୁଁଚି, ସେ ସୁନ୍ଦର ମୁଖଟିକୁ ଯୁଗ ଯୁଗ ଧରି ଅନାଇଁ ରହିବାକୁ । ଓହୋ, କି କଥାସବୁ ମୁଁ ଭାବୁଚି ! କିଛି ନଥିଲା, ସେ ଯେଉଁଦିନ ଆଖିରେ ପଡ଼ିଲେ, ସେଇଦିନଠୁଁ ଜୀବନଟା ଯେପରି ଓଲଟପୋଲଟ ହୋଇଯାଇଚି । ଯେମିତି ଦେଖୁଚି, ଏ ବୁକୁରେ ଯେପରି କିଏ ଚନ୍ଦନ ବୋଳିଦେଇଗଲା । ସେତିକିବେଳୁ ସେ ଛବି ବୁକୁରେ ଲାଖିରହିଚି ଯେ ଆଉ ଛାଡ଼ିହେଉନି । କଥା ନ ହେଉଣୁ ସେ ଥର ସେ ଚାଲିଗଲେ । ତା' ପରେ କି ବେଦନା ସେ କେତୋଟି ଦିନ ! ଆଷାଢ଼ ମେଘପରି ତାଙ୍କ ସ୍ମୃତି ମତେ ଘେରିରହିଥାଏ । ଭାବିଲାକ୍ଷଣି ଆଖିରେ ଲୁହ ଆସେ । ସକାଳ ପରେ ସକାଳ ଆସେ, ମତେ ଜଣାପଡ଼େ ଯେପରି ସେ ପ୍ରତିଦିନ ଫେରି ଆସୁଚନ୍ତି । ଘର ବିଷହୋଇ ଉଠିଲା ! କେତେ ଦିନ ସେ ମୁହଁ ପାସୋରି ଦେଇଥିଲି । ଏବେ ମୋ ଭାଗ୍ୟକୁ ଦେବତା ମୋ ପାଖରେ ପୁଣି ଆସି ଠିଆ । କ'ଣ କରିବି ? ଆଜି ଦେଖିବାର ଯୋଗ ମିଳିଚି । ଆଜି ଯିବି ? ରାତି, ପୁଣି ଅଂଧାର । ବର୍ଷା ତ ଅଛି । କିପରି ଯିବି ? ଯିବିନି ? ସେ ଯେ ଅପେକ୍ଷା କରି ରାତି କାଟିବେ । ଯିବି ନିଶ୍ଚୟ । ଏଣେ ପୁଣି ମତେ ଯେପରି ଜଣାପଡୁଚି, ହେମା, ସରଳା ସମସ୍ତେ କଥାଟା ଜାଣି ସାରିଲେଣି । ମତେ କହୁନାହାନ୍ତି ସିନା, ତାଙ୍କ ଭିତରେ ଯେପରି ଦିନରାତି ଚୁପ୍‌ଚାପ୍ ହେଉଚନ୍ତି । ହେଲେ, ଯେ ଯାହା କହୁ ପଛେ, ନିଶ୍ଚୟ ଯିବି । ହେ ଦେବତା, ହେ ଈଶ୍ୱର, ମତେ ବାଟ ଦେଖାଅ— ଏ ତ ପାପ ନୁହେଁ, ମତେ ବିପଦରେ ପକାଇବ କାହିଁକି ? ହେ ପ୍ରଭୁ—

ନେପଥ୍ୟେ— କିଶୋରୀ.... ଏ କିଶୋ...ରୀ ।

କିଶୋରୀ— ଏଁ ହେମା ଅପା ! ଆ,—ହେମା ଅପା, ମୁଁ ଏଇଠି ବାରିରେ । ଆସ୍ । ବାପାଲୋ—

(ହେମା ଓ ସରଳାର ପ୍ରବେଶ)

ସରଳା— କିଲୋ, ତୁ ତ ଏବେ ରଜାଝିଅପରି ସାତଚଉଁରୀ ଭିତରେ ପଶି ରହିଚୁ— ସପନରେ ବି ତୋ ଦେଖା ମିଳୁନି ।

ହେମା— କାହିଁକି, ସେ କ'ଣ ରଜା ଝିଅ ନୁହେଁ କି ?

କିଶୋରୀ— ନାଇଁ ଅପା, ଏବେ ମୋ'ର ଦେହ ତ କେତେଦିନ ହେଲା ଭଲଲାଗୁନି । ସବୁବେଳେ ମୁଣ୍ଡଟା କାହିଁକି ଭାରୀ ଭାରୀ ଲାଗୁଚି ।

ହେମା— ହଁ, ଆଖିଟା କାହିଁକି ଲୁହଉଚି, ବୁକୁଟା କାହିଁକି ଦମ୍‌ଦମ୍ ହେଉଚି; ମନଟା କାହିଁକି ଛନଛନ ହେଉଚି; ନିଦ ଆସୁନି, ଭାତ ରୁଚୁନି— କହିଯା— ଏ ତ ପ୍ରେମର ଚିହ୍ନ !

କିଶୋରୀ— (ଆତ୍ମଗତ) ଏ ବୋଉ !

ସରଳା— ଏ ହେମା ଅପାଟା ବଡ଼ କାଳତୁଣ୍ଡୀ । ତୁ କ'ଣ ତୋ'ରି ପରି ସଂସାରଟାକୁ ଦେଖୁ କିଲୋ ?

ହେମା— କାହିଁକି ? ତୁ କ'ଣ ଭାବୁଚୁ ସଂସାରଯାକରେ ଏଇ ଏକା ତୁଳସୀ ହୋଇ ରହିବ ?

ସରଳା— ଚୁପ୍— କେଡ଼େ ହୀନିମାନୀଟା ମ ! କଥା କହୁଚି ବୋଇଲେ କହୁଚି । —ଆ କିଶୋରୀ । ଆ, ଏଇ କୂଅମୂଳେ ବସି କଥାବାର୍ତ୍ତା ହେବା ।

(ସମସ୍ତେ ଯାଇ ବାରି କୂଅ ଉପରେ ବସିଲେ । ସମସ୍ତେ କିଛିକ୍ଷଣ ନୀରବ ।)

ହେମା— ସରଳା, ମନେଅଛି ତୋର ସେ ଢଗ-ଗୀତସବୁ, ଯା' ତମ ସାନ ନୂଆବୋହୂ ଶିଖାଇ ଦେଇ ଯାଇଥିଲା ?

ସରଳା— ଆହା—କା' ନାଁ ଧଇଲୁ । ମରି ସ୍ୱର୍ଗରେ ବସିଥିବ, କେତେ କଥା ନ କହିଲା— କେତେ ଗୀତ ନ ଶିଖେଇଲା । ମୋ'ର ତ ଆଉ ସବୁ ମନେ ନାହିଁ ?

ହେମା— ଆଚ୍ଛା ଦେଖୁ, ଗା' ଗୀତ ଦି ଚାରିଟା । ମୋର ତ କିଛି କିଛି ମନେଅଛି, ଯା' ମୁଁ ତମଠୁ ଶୁଣିଥିଲି ।

ସରଳା— କାହିଁ ବୋଇଲୁ ।

ହେମା— ବଂଧୁ ହେ ବଂଧୁ,

ପୀରତି ତମର ଜଣାପଡ଼ିଯାଏ
ଦକ୍ଷିଣୀ ଖୋଷାର କୁସୁମଗନ୍ଧୁ ।

— ତୁ ବୋଲ୍ ।

ସରଳା— ବାଗଲ ଫୁଲ ଫୁଟିଲା

ଭୁଆସୁଣୀ ମନ ଲୁଟିଲା ।
ଅଧା-ବୁଢ଼ୀଙ୍କର ଶୁଖିଯାଏ ମନ
ବିରହିଣୀ-ବୁକୁ କୁଟିଲା ।

— ଆଉ ବୋଲ୍ ।

ହେମା— ନୂଆବୋହୂ ଯାଏ ପାଣିକି,
ବାଟର ବାଟୋଇ ଚାହିଁ ରହିଥାଏ
କଳସ-ନୂଆଁଣ ଠାଣିକି ।

—ହୁଁ ବୋଲ୍ ।

ସରଳା— ଦୂରୁ ଦୂରୁ ପଡ଼େ ଶିରାବଣ ଧାରା
ଗୁରୁ ଗୁରୁ କରେ ମେଘ,
ଝରକାରେ ଚାହିଁ କହ ନୂଆବୋହୂ,
କାହାପାଇଁ ଉଦବେଗ ?

—ଦେଖ୍, ଆଉ ।

ହେମା— ବଳିତା ଜଳିଗଲା,
ହେଲା ଆସି ପାହାନ୍ତି,
ତୁଣ୍ଡେ ପାନ ହେଲା ପିତା
କାହାନ୍ତି ସେ, କାହାନ୍ତି ?

ସରଳା— ବସିଛି କର୍ପୂର-ଚନ୍ଦନ ଗୋଳି
ରସିକ ନାଗର ଆସିବେ ବୋଲି,
ଚାନ୍ଦିନୀ ରଜନୀ ଗଲାଟି ପାହି
ହଟିଆ ନାଗର ଆସିଲା ନାହିଁ ।

—ହଉ, ଲାଗୁ ।

ହେମା— କୁସୁମ-କୋମଳ କାମିନୀ-ଛାତି
କହ ନାଗର,
ସହିବ କେସନେ ବିରହ-ରାତି ।

ସରଳା— ସହି ଗୋ,
ମଳୟଟା ସତେ ନିଠୁର ଏଡ଼େ
ଦିଏ ଦହି ଗୋ ।

ହେମା— କି ଗୋ, ଆମ କିଶୋରୀ ଯେ ପ୍ରତିମାଟି ପରି ଚୁପ୍ ରହିଲେ ।

ସରଳା— କିଶୋରୀ, ଗାଆନା-ଯଦି ମନେଅଛି । ତୁନିହୋଇ ବସିଚୁ କାହିଁକି ?

କିଶୋରୀ— ତମେ ବୋଲନା—ସମସ୍ତେ ବୋଲିଲେ ଶୁଣିବ କିଏ ? ମୁଁ ସେ ଭାରଟା ନେଉଚି ।

ହେମା— (ସରଳାକୁ ଆଖିଠାରି) ଆଚ୍ଛା, ବେଶ୍— ତୁନିହୋଇ ଶୁଣିପାରିବୁ ତ? ଶୁଣ, ଗାଉଚି—

ଚଇତ ଆସିଲେ କାନନେ ଫୁଟଇ କୁସୁମରାଜି,
ବୟସ ଆସିଲେ କିଶୋରୀ-ପରାଣ ପଡ଼ଇ ଭାଜି ।

ବୋଲ୍ ତ ସରଳା —କେମିତି ବସିରହି ଶୁଣିବ !

ସରଳା— ଚଇତ ଆସିଲେ କାନନ ହସଇ କନକ-ରାଗେ,
ବୟସ ଆସିଲେ କିଶୋରୀ-ପରାଣେ ପୀରତି ଜାଗେ ।
—ହୁଁ—ଆଉ ।

ହେମା— ଚଇତ ଆସିଲେ ମଳୟ-ପରଶେ କାନନ ଥରେ,
ବୟସ ଆସିଲେ ପ୍ରଣୟ-ପରଶେ, କିଶୋରୀ ମରେ ।

ସରଳା— ଚଇତ ଆସିଲେ କୋକିଳ-କୋକିଳା ଗାଆନ୍ତି ମାତି,
ବୟସ ଆସିଲେ କିଶୋରୀ ଖୋଜଇ ପରାଣ-ସାଥୀ ।

କିଶୋରୀ— (ବିରକ୍ତହୋଇ) କହ ତ ହେମା ଅପା, ଏ ପରିହାସ କାହିଁକି ? ତମପରି ସାପମୁହାଁଙ୍କ ସାଙ୍ଗେ ମୁଁ ସାଥୀହୋଇ ପାରିବିନି କି ଅକାରଣ ଏତେ ପରିହାସ ସହିପାରିବିନି—ମୁଁ ଯାଉଚି ।

(ଯିବାର ଉଦ୍ୟମ)

ସରଳା— ହଉ ବସ୍ ବସ୍ । ଏବେ ଗୀତବୋଲା ବନ୍ଦ ହେଲା ଜାଣି । ଏତେ ରାଗ କାହିଁକି ? ତୋ'ର ତ ବୟସ ହେଲା— ସେଇ କଥାଟା କହିବା ଅପରାଧ କ'ଣ ?

କିଶୋରୀ— ମୋର ବୋଧହୁଏ ଏକାକୀ ହେଲା—ନା ? ସେଇଯୋଗୁଁ ଏ ଲାଞ୍ଛନା ମତେ ଏକୁଟିଆ ବୋହିବାକୁ ପଡୁଚି ।

ହେମା— ନା, ନା, ତୁ ରାଗ ଛାଡ୍ । ଏଥର ଶାସ୍ତ୍ର ପଢ଼ିବ ପରା । ରାଗ ଛାଡ଼ିଲୁ ? କ'ଣ କହିବି ? ସରଳା, କ'ଣ କହିବି ? ....ତୁ ପଚାରୁନୁ, କ'ଣ ତୋ'ର ଜାଣିବାର ଇଚ୍ଛା ?

କିଶୋରୀ— ମୁଁ କିଛି ଜାଣେନା । ସରଳା, ତୋ'ର ପଚାରିବାର ଥିଲେ ପଚାର, ନଇଲେ ଯିବା ।

ସରଳା— ଇସ୍, ଶୁଣିବାକୁ ଯେମିତି ଆଦୌ ମନ ନ ଥିବ । ଅପା, କିଶୋରୀକି ବୁଝେଇ ଦେବଟି, କିମିତି "ବୟସ ଆସିଲେ କିଶୋରୀ ଖୋଜଇ ପରାଣ-ସାଥୀ ।"

ହେମା— ଆଚ୍ଛା, ଶୁଣ । ବର୍ଷରେ ଯେପରି ବସନ୍ତ, ଜୀବନରେ ସେହିପରି ଯୌବନ । ଏ କାଳ ପହଞ୍ଚିଲେ ମନୁଷ୍ୟର ଦେହ ଓ ମନ ବଢ଼େ । ରକ୍ତ ନାଡ଼ୀ ଭିତରେ ଗରମ ହୋଇଉଠେ ଆଉ ମନ ନୂଆ ଡେଣା ପକ୍ଷୀପରି କାହିଁ କାହିଁ ଉଡ଼ିଯିବାକୁ ଚାହେଁ । ଯୌବନରେ ମନର ଏଇ ଲକ୍ଷ ଲକ୍ଷ ବାସନା କାମନା ମଧ୍ୟରେ ଗୋଟିଏ ପ୍ରଧାନ ବାସନା ଥାଏ—ତା'ର ପ୍ରିୟର ଅନ୍ବେଷଣ ।

ସରଳା— ସେ ଇଚ୍ଛା କାହିଁକି ହୁଏ ଅପା ?

ହେମା— ତା'ର କାରଣ ନାହିଁ । ମଣିଷର ଭୋକଶୋଷପରି ସେ ଏକ କାର୍ଯ୍ୟ । ମଣିଷ ଜନ୍ମ ସଙ୍ଗେ ତା'କୁ ଧରି ଆସିଥାଏ । ଶୁଣିଚି, ଜଗତରେ ପ୍ରଥମ ସ୍ତ୍ରୀ-ପୁରୁଷ ଦୁହିଁଙ୍କଠାରୁ ଏହାର ଆରମ୍ଭ । ଆଉ ଏହାର ଶେଷ ସ୍ତ୍ରୀ-ପୁରୁଷ ଦୁଇଟି ସହିତ ।

ସରଳା— ପ୍ରଥମ ସ୍ତ୍ରୀ-ପୁରୁଷ କିମିତି ଯା ଜାଣିପାରିଲେ ?

ହେମା— ମୁଁ ଭାବୁଚି ଏଇପରି—ଦୁଇଜଣଯାକ ଲଙ୍ଗଳା ହୋଇ ଫଳମୂଳ ଖାଇ ବୁଲୁଥିଲେ । ରାତି ହେଲେ କିଏ କେଉଁଠି ଶୋଇପଡୁଥିଲା । ସକାଳୁ ପୁଣି ଏଣେ ତେଣେ ବୁଲିବାକୁ ବାହାରିପଡୁଥିବେ । ଏମାନଙ୍କ ସମ୍ବନ୍ଧଟା ସେତେ ଘନିଷ୍ଠ ନ ଥିଲା— ଏକର ବିରହ ଅନ୍ୟ ଗଭୀର ଭାବରେ ଅନୁଭବ କରୁ ନ ଥିଲା । ଦିନେ ବୋଧହୁଏ ଏହିପରି ହୋଇଥିବ । ସ୍ତ୍ରୀଟି ଦିନେ ସଂଧ୍ୟା ସମୟରେ ସଂଧ୍ୟା-ପବନର ମନ-ଉଲସିଆ ସୁଆଗରେ ଅଧୀର ହୋଇଉଠିଥିବ । ତା'ର ମନେହୋଇଥିବ, ତା'ର ନିଜ ଦେହଟା ତା ପାଇଁ ଯଥେଷ୍ଟ ନୁହେଁ । ତା'ର ସେହି କ୍ଷୁଦ୍ର ପ୍ରାଣଟା ମଧ୍ଯ ଦେହର ସେ ବନ୍ଧନ କାଟି ପଦାକୁ ବାହାରି ଉଛୁଳି ପଡିବାକୁ ବସିଥିବ । ଠିକ୍ ସେଇ ସମୟରେ ପୁରୁଷଟିର ଦେହର ଓ ମନର ଅବସ୍ଥା ଠିକ୍ ସେହିପରି ହୋଇଯାଇଥିବ । ଦୁହିଁଙ୍କର ମନ ଓ ପ୍ରାଣର ଅପୂର୍ଣ୍ଣତା ଦୁହେଁ ଏକାବେଳକେ ଅନୁଭବ କରିଉଠିଥିବେ । କେଉଁ ଅଜଣା ହାତର ଇଙ୍ଗିତରେ, କେଉଁ ଅଶୁଣା ବଂଶୀର ବାଜଣାରେ ସେ ଦୁହିଁଙ୍କ ପ୍ରାଣ ଉଚ୍ଚାଟ ହୋଇଥିବ—ହଠାତ୍ ଦୁହିଁଙ୍କର ବିନା ଉଦ୍ୟମରେ ଦୁଇଟି ପ୍ରାଣର ସେ ଯେ ଅପୂର୍ବ ମିଳନ— ସେଇ ମୁହୂର୍ତ୍ତରେ ହେଲା ପ୍ରେମର ଆରମ୍ଭ ! ସେହି ପ୍ରଥମ ପୁରୁଷ-ସ୍ତ୍ରୀ ସଙ୍ଗେ ଯା'ର ଜନ୍ମ ହୋଇଚି, ରକ୍ତ ମାଂସର ସେହି କ୍ରିୟା ଯୁଗ ଯୁଗ ଧରି ମନୁଷ୍ୟ ଦେହରେ ରହିଆସିଛି । ତେଣୁ ତରୁଣ ତରୁଣୀକି ଖୋଜେ—ତରୁଣୀ ତରୁଣକୁ ଭଲ ପାଏ ।

ସରଳା— ତେବେ ଏ ପ୍ରେମଟା କ'ଣ କେବଳ ଦେହର କଥା ?

ହେମା— ଅଧେ ଦେହ, ଅଧେ ମନ, ତେବେ ମୂଳରେ ଦେହ । ମନ ଆଉ ଜଣକୁ ଧ୍ୟାନ କରି କରି ମରେ । କେବଳ ମନର କଥା ହୋଇଥିଲେ ତ ଧ୍ୟାନରେ ସରନ୍ତା; କିନ୍ତୁ କେବଳ ଭାବନାରେ ତ ପ୍ରେମର କଥା ଶେଷହୁଏନା, ଶେଷ ହୁଏ ମିଳନହେଲେ ।

କିଶୋରୀ— ଆଚ୍ଛା, ଦେହର ମିଳନ ନ ହୋଇ କ'ଣ ପ୍ରେମ ହୋଇପାରେନା ?

ହେମା— ମୁଁ ଭାବୁଚି ନୁହେଁ— ଅନ୍ତତଃ ଏଇ ମାଟିର ମର୍ତ୍ତ୍ୟରେ । କାରଣ ଦେହଟାକୁ ଛାଡ଼ିଦେଲେ, ପ୍ରିୟର ଉପସ୍ଥିତି ଅନୁଭବ ହେବ କିପରି ? ପ୍ରିୟ ଓ ପ୍ରିୟା—

ସରଳା— ଏ, ଏ ବର୍ଷା ଯେ ହେଲା ! ଓ, ଦେଖଲୋ କିମିତି ବର୍ଷା ମାଡ଼ିଆସିଲାଣି । ଜଣାପଡୁଚି ଆଜି ଯେପରି ବର୍ଷା କାହାକୁ ଘରୁ ବାହାର କରେଇ ଦେବନି । ଆ, କିଶୋରୀ ଆ, ଘରକୁ ଯିବା ।

କିଶୋରୀ— (ଆତ୍ମଗତ) ବର୍ଷା ସିନା ପୃଥିବୀଯାକକୁ ଘରେ ରଖିବ, ମତେ ତ ରଖେଇ ପାରିବନି ।

ହେମା— ଆସ ଆସ ଶୀଘ୍ର ।

(ସମସ୍ତଙ୍କ ପ୍ରସ୍ଥାନ—ପଟ ପତନ)

ଦୃଶ୍ୟାନ୍ତରେ

[ ଗ୍ରାମାନ୍ତ ବକୁଳ ତଳ— ଶ୍ରାବଣସଂଧ୍ୟା— ମଦନ ଓ ରତିର ଅବତରଣ ]

ମଦନ— ସହଚରିରେ,
ବକୁଳ କୁସୁମେ ବୁକୁ
ଉଠେ ଥରି ରେ !

ରତି— ମନମଥ ହେ,
ପ୍ରଣୟେ ପାଗଳ ମନ
ପାଉ ପଥ ହେ !

ମଦନ— ଆସ ଗୋ,
ସଂଧ୍ୟା ପବନେ ଉଡୁ
ବାସ ଗୋ !

ରତି— ଧର ହେ,
ଆଶ୍ଳେଷେ ଭିଡୁ ଦେହେ
କର ହେ !

ମଦନ— କଙ୍କଣ ମମ ସଖି,
ପୀଡୁ ତବ ଅଙ୍ଗେ,

ରତି— ଏକ ହେଉ ଦୁଇ ମୁଖ
ଚୁମ୍ବନ-ରଙ୍ଗେ ।

ମଦନ— ଚୁମ୍ବନ-ସଉରଭେ
ବକୁଳର ତଳ ଗୋ,

ରତି— ନୂତନ ପ୍ରଣୟ ପାଇଁ
ହେଉ ଅନୁକୂଳ ଗୋ !

ମଦନ— ଆଶ୍ଳେଷ-ଗଉରବେ
ବକୁଳର ତଳ ଗୋ,

ରତି— ନୂତନ ପ୍ରଣୟ ପାଇଁ
ହେଉ ଅନୁକୂଳ ଗୋ !

ମଦନ— ତବ ମମ ପରଶନେ
ବକୁଳର ତଳ ଗୋ !
ରତି— କିଶୋରୀ-ପୀରତି ପାଇଁ
ହେଉ ଅନୁକୂଳ ଗୋ !
ମଦନ— ଗନ୍ଧ ଆକୁଳ ଏଇ ପବନେ
କି ସୁଖ ତାହାର ? ନାହିଁ ଜୀବନେ—
ପରାଣ ପ୍ରିୟ ଗୋ ଯା'ର ସଜନୀ,
କିପରି କଟିବ ତା'ର ରଜନୀ ?
ରତି— ସଂଧ୍ୟାରେ ଯେବେ ନବ ତରୁଣୀ
ନ ଖୋଜେ ଅ-ପଥେ ପ୍ରିୟ ସରଣୀ,
ଯଉବନ ତେବେ କିସପାଇଁ ହେ,
ଉପଭୋଗ ପାଇଁ ବେଳ କାହିଁ ହେ ?
ମଦନ— ଆଷାଢ-ନିଶାରେ ଯଉବନ ଗୋ
ଏକାକୀ କଟଇ ଯଦି ରଜନୀ,
ଥିଲେହେଁ ଅଗଣ ମଣିରତନ
କି ସୁଖ ତହିଁରେ କହ ସଜନୀ ?
ରତି— ଜାଣ ତ ଖୋଜିବ ଆଜି
ସାଥୀ ତା'ର ଆକୁଳେ,
ମଦନ— ତରୁଣୀ ଉଡ଼ାଇ ତା'ର
ଶିଥିଳିତ ଦୁକୂଳେ ।
ରତି— ସୁକୁମାରୀ ଘର ଛାଡ଼ି
ଜନପଥେ ଘୂରିବ;
ଗୁରୁ କ୍ଷତେ ଫୁଲ-ଲଘୁ
ପଦଦୁଇ ପୂରିବ ।
ମଦନ— ଗରଜିବ ପ୍ରାବୃଟ ଜଳଦ
ଗଗନେ ରହି,
ରତି— ସ୍ରୋତସମ ଦେହେ ତା'ର ଆସାର
ଯିବ ଯେ ବହି !
ମଦନ— ଚମକି ଥମକି ଯିବ ଭୀରୁ ଗୋ
ଦେଖି ବିଜୁଳି,

ପଛେ ଚାହିଁ ସଜନୀରେ ଡାକିବ,
ପଥ ଆକୁଳି !
ରତି— ଅଭିସାରେ ଏତେ ଯଦି ପ୍ରମାଦ
କି କରେ ଭୀରୁ !
ମଦନ— ପୀରତି କଷଟ ହୁଏ ସଜନି,
ନୟନ-ନୀରୁ ।
ରତି— ଏଇ ଆସେ, ଏଇ ଆସେ ନବୀନ,
ପ୍ରଥମେ ସେ ପାଦ ଦେଲା ପଥରେ,
ମଦନ— ଏଇ ଆସେ, ଏଇ ଆସେ ନବୀନ ।
ଜୀବନ-କେତନ ତା'ର ହାତରେ ।
ରତି— କିପାଇଁ ସେମାନେ ଆଣି ମିଳାଅ ?
କଣ୍ଟକମୟ ପଥ ଆଗେ ଯେ,
ସମ୍ବର ସମ୍ବର ବିଶିଖ,
ବକ୍ଷରୁ ପୋଛ ଅନୁରାଗେ ଯେ ।
ମଦନ— ବିଧାତାର ନିର୍ଦ୍ଦେଶ, ବିରାଟର ଆଜ୍ଞା,—
ବିପରୀତ ଶକ୍ତି ସେ ମିଳିବେ;
ମିଳନରୁ ହେବ ନବ ସୃଷ୍ଟିର ଜନ୍ମ,
ସୃଜନ-ପ୍ରଦୀପ ରଖି ଚଳିବେ ।
ରତି— ଏଇ ସେ ଯେ ମିଳିଲେ,
କମ୍ପିତ ବକ୍ଷ,
ବିଦ୍ୟୁତ କଣା ଛୁଟେ
କକ୍ଷରୁ କକ୍ଷ ।
ମଦନ— ଏଇ ସେ ଯେ ମିଳିଲେ,—
ଅଶ୍ରୁତ ବଚନେ
ଦୁଇ ଛାତି କଥା କହେ
ଚୁମ୍ବନ ରଚନେ ।
ନର ସାଥେ ନାରୀ ରଚେ ଜୀବନର ପନ୍ଥା,
ମିଳନର ଉତ୍ସବ ମନ୍ତ୍ରେ,
ଜଗତର କୋଣେ କୋଣେ ସେଇ ଆମ କର୍ମ
ଆସ ଯିବା, ରଖ କର କଣ୍ଠେ ।

ରତି— ଏବେ ଗାଢ ତିମିରିତ ଗଗନ,
ଅପସରି ଯିବା ଶୀତ ପବନେ,
ଧର ମତେ ଆଶ୍ଲେଷେ ଭିଡ଼ି ହେ
ଉଡୁ ଉଡୁ ଲଭେଁ ଲଘୁ-ଶୟନେ ।
ମଦନ— ବକ୍ଷେ ମୋ ଦେହ ଢାଳ ପ୍ରେୟସି,
ଲଗାଅ ମୋ' ମୁଖେ ତବ ଅଧର,
ବିଜୁଳି-ନୟନ ଖୋଲି ବାରିଦ,
ଦେଖୁ ଏ ପୀୟୂଷ-ମଧୁ ଆଦର !

(ପଟ ପତନ)

———

# ପୂଜାରିଣୀ

ମୋର ବିଜ୍ଞ ଓ ବୈଷ୍ଣବ ବନ୍ଧୁ
**ଶ୍ରୀଯୁକ୍ତ ରତ୍ନାକର ଷଡ଼ଙ୍ଗୀ** କରକମଳେଷୁ–

—*ଲେଖକ*

## ଆଦ୍ୟ-ଭାଷ

ଅବାଙ୍‌ମାନସଗୋଚର ଭଗବାନଙ୍କୁ ହିନ୍ଦୁ ସାଧକ ଓ ଭକ୍ତ ଯୁଗେ ଯୁଗେ ମୃତ୍-କାଷ୍ଠ-ପାଷାଣର ପ୍ରତିମା ମଧ୍ୟରେ ଲାଭ କରିଆସିଅଛି । ଏ ଯୁଗର ବିଜ୍ଞାନ-ପ୍ରଭାବିତ ଲୋକେ ଭଗବାନ୍ ବା ତାଙ୍କର ବ୍ୟକ୍ତିତ୍ୱକୁ ସନ୍ଦେହ କରିପାରନ୍ତି; କିନ୍ତୁ ଏଇ ଯୁଗରେ ମଧ ଦକ୍ଷିଣେଶ୍ୱରର ଋଷି ରାମକୃଷ୍ଣ ପରମହଂସଙ୍କ ଜୀବନରେ ଯାହା ଘଟିଯାଇଛି, ସେଥିରେ ଅବିଶ୍ୱାସୀମାନଙ୍କର ଚକ୍ଷୁ ଫିଟିବାର କଥା । ମାନବାତ୍ମାର ପ୍ରଣୟ-କ୍ଷୁଧା ନିବୃତ୍ତ କରିବା ପାଇଁ ଭଗବାନ୍ ଯେ ଇନ୍ଦ୍ରିୟଗ୍ରାହ୍ୟ-ରୂପ ପରିଗ୍ରହ କରିଥା'ନ୍ତି, ଏ ବିଚିତ୍ର ସତ୍ୟ ତାଙ୍କ ଜୀବନରେ ପ୍ରମାଣିତ ଭାବରେ ଉପଲବ୍ଧ ହୋଇଅଛି ।

ଏ ପୁସ୍ତକରେ ମୁଁ ଏଇପରି ଏକ ଘଟଣା ବର୍ଣ୍ଣନା କରିଅଛି । କିମ୍ବଦନ୍ତୀ ଅଛି ଯେ ସତ୍ୟବାଦୀର ସାକ୍ଷିଗୋପାଳ ସେଇ ଗ୍ରାମର ଜନୈକ ବ୍ରାହ୍ମଣର ସୁନ୍ଦରୀ କନ୍ୟା ଲକ୍ଷ୍ମୀର ପ୍ରେମରେ ଆକୃଷ୍ଟ ହୁଅନ୍ତି । ପଣ୍ଡାମାନେ ଅନେକ ସମୟରେ ଦେବତାଙ୍କର ବେଣୁ ଲକ୍ଷ୍ମୀର ଗୃହରେ ପାଇଲେ । ଏହିଭଳି ଆହୁରି କେତେକ ସଙ୍କେତରୁ ଦେଉଳର କର୍ତ୍ତୃପକ୍ଷ ଦେବତାଙ୍କୁ ରାଧାବିରହିତ ଭାବି ରାଧାଙ୍କର ସ୍ୱର୍ଣ୍ଣ-ପ୍ରତିମା ଗଢ଼ାଇବାକୁ ଲାଗିଲେ । ପ୍ରତିମା ଆରମ୍ଭ ଦିନରୁ ଲକ୍ଷ୍ମୀର ଜ୍ୱରହେଲା ଏବଂ ପ୍ରତିମା ସମ୍ପୂର୍ଣ୍ଣ ହେବା ମାତ୍ରକେ ଲକ୍ଷ୍ମୀର ମୃତ୍ୟୁ ହେଲା । ଉକ୍ତ ପ୍ରତିମା ବର୍ତ୍ତମାନ ସାକ୍ଷିଗୋପାଳଙ୍କର ସଖୀରୂପେ ପାର୍ଶ୍ୱ ମଣ୍ଡନ କରୁଅଛନ୍ତି । ରାଧାନାଥ ଏହି ''ସାକ୍ଷିଗୋପୀନାଥ-ହୃଦୟ-ହାରିଣୀ, ଦ୍ୱିଜକନ୍ୟା ଲକ୍ଷ୍ମୀ''ର କଥା ଚିଲିକାରେ ଉଲ୍ଲେଖ କରି ତାକୁ ଅମର କରିଯାଇଅଛନ୍ତି । ପିଲାବେଳେ 'ଚିଲିକା' ପାଠ୍‌କଲାବେଳୁଁ ଏ ବିଚିତ୍ର ଘଟଣା ଓ ଏଇ ମହୀୟସୀ ବାଳିକା ଲେଖକର କଳ୍ପନାରେ ଗଭୀର ରେଖାପାତ କରିଥିଲେ । ଏହି ନଗଣ୍ୟ ରଚନାରେ ମୁଁ ତାହାକୁହିଁ ଯଥାଶକ୍ତି ରୂପ ଦାନ କରିବାକୁ ଚେଷ୍ଟାକରିଅଛି ।

ଲକ୍ଷ୍ମୀର ପିତାମାତାଙ୍କ ନାମ ଜାଣିବାକୁ ମୁଁ ସେଇ ବଂଶର ବର୍ତ୍ତମାନ ବଂଶଧରଙ୍କ ନିକଟକୁ ପତ୍ର ଲେଖିଥିଲି, କିନ୍ତୁ ଉତ୍ତର ପାଇଲି ନାହିଁ । ଶେଷରେ ମୋର ଜଣେ ବଂଧୁ*

* ମନେପଡୁଛି, ଏ ବଂଧୁ ବର୍ତ୍ତମାନ ଓଡ଼ିଶାର ଡି.ପି.ଆଇ. ଡକ୍ଟର ସଦାଶିବ ମିଶ୍ର ।

ତା'ର ପିତାଙ୍କ ନାମ ବେଲେଶ୍ୱର ମହାପାତ୍ର ବୋଲି କହିଲେ, —ମୁଁ ତାହା ହିଁ ରଖିଛି। ଅନ୍ୟସବୁ ଚରିତ୍ର କାଳ୍ପନିକ।

ମାୟାଧର ମାନସିଂହ

## ନବ ସଂସ୍କରଣର ଭୂମିକା

ଏହା ବୋଧହୁଏ 'ପୂଜାରିଣୀ'ର ଚତୁର୍ଥ ସଂସ୍କରଣ। ପ୍ରାୟ ୨୩/୨୪ ବର୍ଷ ତଳେ, ସମ୍ଭବତଃ ଏମ୍.ଏ. ପଢୁଥିଲାବେଳେ ଏ ନାଟକଟି ଲେଖିଥିଲି। ସବୁଜ-ସାହିତ୍ୟ-ସମିତିର ପ୍ରତିଷ୍ଠାତା ଗୁଣଗ୍ରାହୀ ଶରତ୍‌ଚନ୍ଦ୍ର ମୁଖର୍ଜୀଙ୍କ ହାତରେ ଭାଗ୍ୟକୁ ପଡ଼ିବାରୁ ଏହା ଲେଖା ହେବାର ଅନତିବିଳମ୍ବରେ ମୁଦ୍ରିତ ଓ ପ୍ରକାଶିତ ହୋଇପାରିଥିଲା। ନଚେତ୍ ଏହା ଯେ କେବେ ଛାପା ହେବ, ତା' ମୁଁ କଳ୍ପନା କରିପାରୁ ନ ଥିଲି। ସେତେବେଳେ ମୁଁ ପାଟନାରେ ଛାତ୍ର ଥାଏଁ। ଖରାଛୁଟି ହେବା ଉପରେ। ଓଡ଼ିଶାକୁ ଫେରି ଆସିବାକୁ ବ୍ୟାକୁଳ। ସେହି ଛୁଟିରେ ମୋର ମଧ ପରିଣୀତ ହେବାର କଥା। ଏଇ ସମୟରେ ଶରତ୍‌ବାବୁଙ୍କଠାରୁ ଖଣ୍ଡିଏ ପୋଷ୍ଟକାର୍ଡ଼ ଓ ଦଶଟି ଟଙ୍କା ମନିଅର୍ଡ଼ରରେ ପାଇଲି। ଶରତ୍‌ବାବୁ ଚିଠିରେ ଲେଖିଥିଲେ ଯେ, ଦଶ ଟଙ୍କା ଅବଶ୍ୟ ଏ ନାଟିକାର ମୂଲ୍ୟ ନୁହେଁ; କିନ୍ତୁ ତାଙ୍କ ପକ୍ଷରେ ଆଉ ଦେବା ସେକାଳରେ ସମ୍ଭବ ହେବ ନାହିଁ। ଏ ବହି ବା ମୋର ଅନ୍ୟାନ୍ୟ ବହିରୁ ମୋର କି ଆର୍ଥିକ ଲାଭ ହୋଇଛି, ମୁଁ କହିପାରିବି ନାହିଁ। କିନ୍ତୁ ଶରତ୍‌ବାବୁଙ୍କ ସେହି ଦଶ ଟଙ୍କାର ମୂଲ୍ୟ ମୁଁ ଭୁଲିପାରିବିନାହିଁ। ଏଯାବତ୍ ତାହାହିଁ ଏ ଜୀବନର ଶ୍ରେଷ୍ଠ ସାହିତ୍ୟିକ ପୁରସ୍କାର। ଶରତ୍‌ବାବୁ ବହିଟିକି ପରିପାଟିତ କରି ଛପାଇଥିଲେ ଏବଂ ଠିକ୍ ମୋର ବିବାହଯାତ୍ରାବେଳକୁହିଁ ଛାପାବହିଟି ମୋର ହସ୍ତଗତ ହୋଇଥିଲା। ମୋର ଏ ସବୁ ସୁଖମୟ ସ୍ମୃତି ଯେ ଏ ବହିଟି ସଙ୍ଗେ ଜଡ଼ିତ, ସେଥିପାଇଁ ମୁଁ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ମୁଖର୍ଜୀଙ୍କ ନିକଟରେ କୃତଜ୍ଞ। ସେହି କୃତଜ୍ଞତା ସ୍ୱୀକାର କରି ତାଙ୍କୁ ଆନନ୍ଦ ଦେବାପାଇଁହିଁ ଏଠି ଏହି ଘଟଣାଗୁଡ଼ିକ ଲେଖିରଖିଲି।

ନାଟିକାଟିର ବିଷୟବସ୍ତୁ ଉପରେ ମଧ କିଛି କହିରଖେ। ପ୍ରଥମ ସଂସ୍କରଣର ଭୂମିକାରେ ଏହି ଅତିଭୌତିକ ଘଟଣାର ସମ୍ଭାବ୍ୟତା ନେଇ ମୁଁ କିଛି କହିଛି। କିନ୍ତୁ ପାଠକେ ସ୍ମରଣ ରଖିବେ ଯେ, ସାକ୍ଷିଗୋପାଳ ଓ ଲକ୍ଷ୍ମୀର ଉପାଖ୍ୟାନ ଏକ ଉପଲକ୍ଷ୍ୟ ମାତ୍ର। ହିନ୍ଦୁ ଦେବଦେବୀର ମାହାତ୍ମ୍ୟ ବା ବୈଷ୍ଣବ ଭକ୍ତିମାର୍ଗର ପ୍ରଚାରପାଇଁ ମୁଁ ଏ ନାଟିକା ଲେଖି ନ ଥିଲି। ମୁଁ ପ୍ରକୃତରେ ଲେଖିଥିଲି ମାନବିକ ମନସ୍ତତ୍ତ୍ୱର ଏକ ରହସ୍ୟମୟ ବିଭାବକୁ ରୂପଦେବା ପାଇଁ। ସେହି ବିଭାବଟି ହେଉଛି— ମନୁଷ୍ୟ ଚିତ୍ତ ଯେ ବେଳେ ବେଳେ ଉନ୍ମନା ହୋଇଉଠେ; ଯାହା ପ୍ରତ୍ୟକ୍ଷ ବା ଯାହା ଦୃଶ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ, ସେଥିପ୍ରତି ଆକୃଷ୍ଟ ନ ରହି, ଯାହା ଅଜ୍ଞାତ, ଯାହା ଅଦୃଷ୍ଟ, ଯାହା ଦୂର ଓ ଦୁରଧିଗମ୍ୟ, ତାହାରିପାଇଁ ଗୃହ ଓ ସମାଜର

ସମସ୍ତ ନିର୍ଭରତା ଓ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ପଳାୟନକରିବା । ତରୁଣ ବୟସରେ ଏ ଭାବ ପ୍ରତ୍ୟେକଙ୍କ ଜୀବନରେ ପ୍ରାୟ କ୍ଷଣାଅଧିକ ଦେଖାଦିଏ । ମୋର ମନେହୁଏ ମାନବପ୍ରାଣରେ ଏହା ଉଚ୍ଚତର ଆଧ୍ୟାତ୍ମିକ ଜୀବନର ଅଙ୍କୁରୋନ୍ମେଷ । ସ୍ଥୂଳ ପ୍ରତି, ନିକଟ ପ୍ରତି, ପରିଚିତ ପ୍ରତି ବୀତସ୍ପୃହ ହୋଇ ସୂକ୍ଷ୍ମ ପ୍ରତି, ଦୂର ପ୍ରତି, ଅପରିଚିତ ପ୍ରତି ଗଭୀର ଆକର୍ଷଣ ମାନବ-ଚିତ୍ତରେ ଦେବତ୍ୱର, ଆବିର୍ଭାବର କ୍ରିୟା । ସାଧାରଣତଃ ଏହି ଦେବାଗ୍ନି ବିନ୍ଦୁ ଥରେ ଜଳିଉଠି ସମାଜ, କୁଟୁମ୍ବ ଓ ସଂସାରର ନାନା ଜଞ୍ଜାଳ, ନାନା ବାଧା, ନାନା ପ୍ରଲୋଭନ ଓ ବନ୍ଧନର ପାଉଁଶଗଦା ତଳେ ପୁଣି ପୋତିହୋଇ ଶୀତଳହୋଇଯାଏ । କିନ୍ତୁ ଭାଗ୍ୟବାନ୍ କେତେକ, ତାକୁ କୌଣସିମତେ ଲିଭିଯିବାକୁ ଦିଅନ୍ତି ନାହିଁ । ସେହି କେତେକ ହେଉଛନ୍ତି ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧି, ଅରବିନ୍ଦ; ପୁଣି ଦାନ୍ତେ, ଶେଲୀ, କାଳିଦାସ, ରବୀନ୍ଦ୍ର । ସେହିମାନେ ଅଜନ୍ତା ଓ କୋଣାର୍କର ସ୍ରଷ୍ଟା,— ବାହାର ଜୀବନର ଦୈନ୍ୟ, ନିର୍ଯାତନାର ଆବରଣ ତଳେ ଯେଉଁମାନେ ନିଜର କଳ୍ପଲୋକକୁ ପ୍ରାଣପଣେ ବଞ୍ଚାଇରଖିଯାଇଛନ୍ତି ଏବଂ ସେହି ସୂତ୍ରରେ ମାନବୀୟ ଐତିହ୍ୟକୁ କରିଯାଇଛନ୍ତି ଶ୍ରୀମନ୍ତ ଓ ମହିମାମୟ ।

ଲେଖକର ବୟସ ଯେତେବେଳେ ୨୩/୨୪ ବର୍ଷ ମାତ୍ର, ସେତେବେଳେ ତା'ର ମନୋଲୋକରେ ଏଇପରି ଭାବ ଯେ ଦେଖାଦେଇଥିବ ତାହା ସ୍ୱାଭାବିକ । ଏ କଥା ପାଠକମାନେ ଧରିନେବେ ବୋଲି ଆଶାକରେଁ । ସେତିକିବେଳେ ଆଇରିଶ୍ କବି ଇଏଟ୍ସଙ୍କ କୌଣସି ଏକ ଛୋଟ ନାଟକରେ ଏଇ ଭାବଟିର ଆଭାସ ପାଇ ମୋର ନିଜର ମାନସିକ କ୍ରିୟାପାଇଁ ମୁଁ ଯେପରି ସମର୍ଥନ ପାଇଲି । ତା'ପରେ ସମ୍ପୂର୍ଣ୍ଣ ଓଡ଼ିଆ ଭୂମିକାରେ ଏଇ ଭାବଟିକୁ କିପରି ରୂପଦିଆଯାଇପାରେ ଚିନ୍ତା କରୁ କରୁ ମୁଁ ଏହି ସାକ୍ଷିଗୋପାଳ-ଲକ୍ଷ୍ମୀ କିଂବଦନ୍ତୀକୁ ପରୀକ୍ଷା ପାଇଁ ଗ୍ରହଣକରିନେଲି । ଲକ୍ଷ୍ମୀ ପ୍ରକୃତରେ ଏଠି ଜଣେ ପଣ୍ଡାର କନ୍ୟା ମାତ୍ର ବା ଦେବତା, ସତ୍ୟବାଦୀର ସାକ୍ଷିଗୋପାଳ ମନ୍ଦିରରେ ବିଜେ ଥିବା ସେହି କୃଷ୍ଣପ୍ରସ୍ତରର ମୂର୍ତ୍ତି ନୁହେଁ । ଏଠି ଲକ୍ଷ୍ମୀ ସାନ୍ତ ମାନବାତ୍ମା, ଦେବତା ହେଉଛି ସେହି ଅନନ୍ତ, ଅଜ୍ଞାତ, ସୁଦୂର ବିରାଟର ଚିର ଆକର୍ଷଣ । ମୂଳଭାବଟି ହେଲା ଏହି । ଭାବଟି ଗୋଟିଏ ପରିଚିତ କିଂବଦନ୍ତୀକୁ ଆଶ୍ରୟ କରିଥିବାରୁ, ରଚନାକୁ ସେହି କିଂବଦନ୍ତୀର ରଙ୍ଗରେ ରଞ୍ଜିତ କରିବାକୁ ଚେଷ୍ଟା କରାଯାଇଛି ମାତ୍ର ।

'ପୂଜାରିଣୀ' ଲେଖାହେଲା ପର୍ଯ୍ୟନ୍ତ ମୁଁ ଥରେ କେବଳ ଗୋପବନ୍ଧୁଙ୍କ ସତ୍ୟବାଦୀ ସ୍କୁଲର ବକୁଳବନ ଦେଖିଥିଲି । ସାକ୍ଷିଗୋପାଳ ମନ୍ଦିରକୁ ଯାଇ ନ ଥିଲି । ଦେଖିବାର ବିଶେଷ ଆଗ୍ରହ କେବେହେଲେ ନ ଥିଲା । ଶୁଣିଥିଲି ମାତ୍ର ଯେ, ସାକ୍ଷିଗୋପାଳ ମୂର୍ତ୍ତି ଅତ୍ୟନ୍ତ କମନୀୟ । 'ପୂଜାରିଣୀ' ରଚନାର ପ୍ରାୟ କୋଡ଼ିଏ ବର୍ଷ ପରେ ମୁଁ ଯେତେବେଳେ ଓଡ଼ିଶା ସରକାରଙ୍କ ପ୍ରୌଢ଼-ଶିକ୍ଷା ଅଫିସର ଭାବରେ ସତ୍ୟବାଦୀ ଯାଇଥିଲି, ସେତିକିବେଳେ କୌତୂହଳବଶତଃ ମନ୍ଦିରଭିତରକୁ ଯାଇ ଗୋପାଳ ଓ ଲକ୍ଷ୍ମୀଙ୍କ ମୂର୍ତ୍ତି

ଦେଖିଥିଲି । ଦେଖି କିନ୍ତୁ ବଡ଼ ନିରାଶହେଲି । ମୋର ମାନସିକ ପ୍ରତିକ୍ରିୟା ଇଂରେଜ କବି ଉଆଡ୍‌ସଉଆର୍ଥଙ୍କ 'ୟାରୋ ଭିଜିଟେଡ୍' ଓ 'ୟାରୋ ଅନଭିଜିଟେଡ୍' ପରି ହେଲା । କିନ୍ତୁ ଯେହେତୁ ମନ୍ଦିରସ୍ଥ ବିଗ୍ରହ ଏଇ ନାଟିକାର ପ୍ରକୃତ ନାୟକ-ନାୟିକା ନୁହନ୍ତି, ତେଣୁ ମୋର ଅବଶୋଷର କାରଣ ନ ଥିଲା ।

'ପୂଜାରିଣୀ' କେଉଁଠି କେଉଁଠି ଅଭିନୀତ ହୋଇଥିବ ମୁଁ ଜାଣେନା । କିନ୍ତୁ ପୁରୀ ଓ ସମ୍ବଲପୁରର ସରକାରୀ ବାଳିକା ହାଇସ୍କୁଲର ଛାତ୍ରୀମାନେ ଏହାର ଯେଉଁ ଅଭିନୟ କରିଥିଲେ ତାହା ମୁଁ ନିଜେ ଦେଖିଛି । ସମ୍ବଲପୁରରେ ଏହାର ଅଭିନୟବେଳେ 'ପୂଜାରିଣୀ'କୁ ନୃତ୍ୟ-ନାଟିକା କରିବାପାଇଁ ନୃତ୍ୟର ପଶ୍ଚାତ୍‌ ଭୂମିକା ଭାବରେ ମତେ ଠାଏ ଦି'ଠାରେ ଆଉ କିଛି ଯୋଗକରିଦେବାକୁ ହୋଇଥିଲା । ପରେ ଯେଉଁମାନେ ଏହାକୁ ନୃତ୍ୟ-ନାଟିକା ରୂପେ ଅଭିନୀତ କରିବେ, ସେମାନଙ୍କ ସୁବିଧାପାଇଁ ସେହି ଯୋଡ଼ା ଅଂଶତକ ଏଇ ସଂସ୍କରଣରେ ଦିଆଗଲା । କିନ୍ତୁ ମୂଳ କାବ୍ୟ-ନାଟିକାକୁ ପୂର୍ବେ ଯେପରି ଥିଲା ସେଇପରି ଚିହ୍ନି ରଖିବା ପାଇଁ ନୂତନ ଯୋଡ଼ା ଅଂଶକୁ ବନ୍ଧନୀ ଭିତରେ ରଖାଯାଇଛି ।

ସମ୍ବଲପୁର
୩। ୧୦। ୧୯୫୩

ମାୟାଧର ମାନସିଂହ

## [ ଏକ ]

[ସତ୍ୟବାଦୀର ବକୁଳବନ—ଜ୍ୟୋତ୍ସ୍ନାରାତ୍ରି—ଏକ ବକୁଳବୃକ୍ଷତଳେ ଦେବତା ସାକ୍ଷିଗୋପାଳ ଉପବିଷ୍ଟ ଓ ବେଣୁବାଦନରତ—ଦେବତାଙ୍କର ଜାନୁକୁ ଉପାଧାନ କରି ଦ୍ୱିଜକନ୍ୟା ଲକ୍ଷ୍ମୀ ଶୟାନା— ଦେବତା ବେଣୁବାଦନ ସମାପ୍ତ କଲେ ।]

ଦେବତା : ମଧୁର ଏ ଜ୍ୟୋତ୍ସ୍ନାରାତ୍ରି ! ଶୋଇ କି ପଡ଼ିଲ
ଆଗୋ ଲକ୍ଷ୍ମି, ଆଗୋ ଲକ୍ଷ୍ମି, ଚନ୍ଦ୍ରିକା-ମଦିର
ଦେଖ ଏ ବକୁଳବନ । ଆଲୋକ, ଅନ୍ଧାର
ଘନ-ବନସ୍ପତି-ମୂଳେ ଚିତ୍ରିତ-ବିହାର
କରେ ଶ୍ୟାମ ଘାସ ପରେ । ମନ୍ଦ ସମୀରଣେ
କୋମଳ ବକୁଳଗନ୍ଧ ଭ୍ରମେ ବନାଙ୍ଗନେ
ମତ୍ତ କରି ଇନ୍ଦ୍ରିୟରେ । ପ୍ରଫୁଲ୍ଲ ବକୁଳ
ବୃନ୍ତ ତେଜି ରାଶି ରାଶି ଏ ବନ-ବଧୂର
ବକ୍ଷପରେ କରୁଛନ୍ତି ଦେହ ବିସର୍ଜ୍ଜନ,
ତେଣୁ ଦେଖ ବନତଳ କୁସୁମ ଆଚ୍ଛନ୍ନ ।
ଏଇ ପୁଣି ତୁମର ଏ ଶୁଭ୍ର ଭାଲ-ପଟେ
ବୃନ୍ତ-ଚ୍ୟୁତ ପୁଷ୍ପ ଏକ ! କାହା ଭାଗ୍ୟେ ଘଟେ
ଏ କୁସୁମ ସରି ଏଡ଼େ ମଧୁର ପତନ !
ନେଲି କାଢ଼ି ପୁଷ୍ପଗୋଟି !—ମଦିରା-କ୍ଷରଣ
ପିଚ୍ଛିଳ କରିଛି ଗଣ୍ଡେ ।
ଏଇ ଶୁଣ ପିକ
ବନପ୍ରାନ୍ତେ ଝଙ୍କାରିତ କରି ନିମିଷେକ
ନୀରବିଲା ନିଜ ନୀଡ଼େ । ରତ୍ନଚୀରା-ତୀରେ
ବିଚ୍ଛିନ୍ନା ଚକୋର-ଜାୟା ବିଳପେ ଗଭୀରେ
ନିଶାର ବିରହ-ତାପେ । ଲକ୍ଷ୍ମି, ଉଠ ସଖୀ,
ମୁଁ ଯେ ଖାଲି କଥା କହେ—

ଲକ୍ଷ୍ମୀ : ପଦେ ଗଣ୍ଡ ରଖି
ତୁମର ମୁରଲୀ ଶୁଣି ତନ୍ଦ୍ରା ଥିଲା ଆସି—
ନିଦ୍ରା-ଜାଗରଣ-ମିଶ୍ର । ମନେହେଲା ଭାସି
ଯାଉଛି ମୁଁ କେଉଁ ଦେଶେ,—ଲକ୍ଷ ଲକ୍ଷ ତାରା,

ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ ଯହିଁ ଆଲୋକର ଧାରା
ଢାଳୁଛନ୍ତି ଅବିରଳ; ଆଲୋକ-ଉଜ୍ଜ୍ୱଳ
ସେ ଭୁବନେ ଭ୍ରମୁଛନ୍ତି ଜୀବ ଆଲୋକର ।
ସକଳେ ଆଲୋକ-ପ୍ରାଣୀ,—ଲକ୍ଷ ଶତ ଶତ,
ଚାଲିଛନ୍ତି ଏକ ଦିଗେ । ରଜତ ପର୍ବତ
ପଥ-ପ୍ରାନ୍ତେ ଅଛି ଉଭା, ସେହି ଗିରି ପରେ
ତୁଷାରଧବଳ ଘନ ମେଘମାଳ ତଳେ
କନକ-ମନ୍ଦିର ମଧ୍ୟେ ଦେବତା ବିରାଜେ,
ବିଦ୍ୟୁତର କଷାଘାତେ ମେଘ ମନ୍ଦ୍ରି ବାଜେ
ଦେବତାର ପୂଜାବେଳେ । ସେଇ ପଥ ଧରି
ମୁହିଁ ଗୋ ଚଳିଲି ଯାତ୍ରୀ-ପଦ ଅନୁସରି
ସେ ମନ୍ଦିରେ । କିନ୍ତୁ ବନ୍ଧୁ, ଦେଖିଲି କାହାରେ ?
ତୁମେ ଯେ ସେଠାରେ ପୁଣି ! ନୀଳଚନ୍ଦ୍ରିକାରେ
ମଣ୍ଡିତ ଏପରି ଭାଲ, ଏଇ ପୀତବାସ,
ଏଇ ବେଣୁ, ରକ୍ତାଧରେ ଏଇ ମଧୁହାସ,—
ଚମକିଲି ଦେଖି ମୁହିଁ ! ହସି ନଟବର,
ମୋର ନାମ ଧରି ଚାଣ୍ଡେ ଧରିଲ ମୋ କର,
ସହସା ମୋ ତନ୍ଦ୍ରା ଗଲା !—

ଦେବତା : ସ୍ୱପ୍ନମାତ୍ର ଜାଣ,
କିଛି ସେ ନୁହଇ, ସଖି —ମନର ଭିଆଣ ।
ତନ୍ଦ୍ରାପୂର୍ବେ ମୁଁ ଯେ ଏଇ ଆକାଶେ ଅନାଇ
ଦେଉଥିଲି ଗୋଟି ଗୋଟି ଜ୍ୟୋତିଷ୍କ ଚିହ୍ନାଇ
ମେଷ, ବୃଷ, ବୃହସ୍ପତି, ଶୁକ୍ର ଆଦି କରି;
ନିଦ୍ରାବେଶେ ସ୍ମୃତି ତା'ର ବୁଝି ଥିବ ଝରି ।
ବଡ଼ ଲାଭ ହେଲା କିନ୍ତୁ । କ୍ଷଣକେ ଆସିଲ
ଚନ୍ଦ୍ର-ସୂର୍ଯ୍ୟ ଗ୍ରହ ଭ୍ରମି !

ଲକ୍ଷ୍ମୀ : ଆଚ୍ଛା ତ କହିଲ !
ତୁମେ କ'ଣ ଭ୍ରମି ନାହିଁ ? କହୁଛନ୍ତି ଜନେ
ତୁମେ ପୁଣି ଅଟ ରାଜା ଭୁବନେ ଭୁବନେ ।
ତୁମ ଆଜ୍ଞାବଳେ ଚନ୍ଦ୍ର ସୂର୍ଯ୍ୟ ଦୁଇ ଭାଇ
ଭ୍ରମୁଛନ୍ତି ଦିବାରାତି; ତୁମ ଆଜ୍ଞା ପାଇ
ବାଲୁକାର ବନ୍ଧ ଡେଇଁ ନ ଆସେ ବାରିଧି;

ତୁମେ ସୃଷ୍ଟିକର୍ତ୍ତା, ତୁମେ ଅଟ ମହାବିଧି,
ତୁମେ ପୁଣି ଚଳାଉଛ ନିଖିଳ ଜଗତ,
ଲୋମେ ଲୋମେ ପୁଣି ତବ ରାଜେ ଶତ ଶତ
ବ୍ରହ୍ମାଣ୍ଡ, କହନ୍ତି ଜନା । ମୋହର ବିଶ୍ୱାସ
ନ ହୁଅଇ ତିଳେ ଏଥି । କହ ପୀତବାସ,
କହ ମତେ ସତ୍ୟକଥା —ତୁମେ ବଡ଼ ଏତେ ?

ଦେବତା : ତୁମର କହ ତ ଆଗେ କି ହୁଏ ପରତେ !

ଲକ୍ଷ୍ମୀ : ମୁଁ ଜାଣେ ତୁମରେ ଖାଲି ପ୍ରିୟ ବୋଲି ମମ,
ନାହିଁ ମୋର ଏ ସଂସାରେ ପ୍ରିୟ ତବ ସମ,
କେହି ଜଣେ ଆଉ ଶ୍ୟାମ ! ମନ୍ଦିର-ଦେବତା
ହୋଇ ତୁମେ ପୂଜାପାଅ, ମୁହିଁ ମୋ ମମତା
ତୁମ ପଦେ ଦେଲି ତବ ଲକ୍ଷ ଭକ୍ତ ପରି,
କରୁଣା-ବାରିଧି, ଅଧୀନାରେ ଦୟାକରି,
ପ୍ରସ୍ତର-ପ୍ରତିମା ତୁମେ ପ୍ରିୟରୂପ ଧରି
ଖେଳା କର ମୋହ ସାଥେ ।

ଦେବତା : ସେହି ଲକ୍ଷ୍ମି, ସତ
ନୁହେଁ ମୁଁ ସଂସାର-କର୍ତ୍ତା, ବିପୁଳ, ମହତ ।
ଜାଣ ମତେ ଖାଲି ତୁମ ପ୍ରଣୟଭିଖାରୀ ।

ଲକ୍ଷ୍ମୀ : ସେନେହ-ଭାଜନ ଆଉ ହେ ମୁରଲୀଧାରୀ,
ନାହାନ୍ତି ତୁମର କେହି ? ନ ଥିଲେ ବା କେହି ?
କେଉଁ ଗୁଣେ ଅଧୀନାରେ ହେଲେ ହେ ସେନେହୀ ?
କାହିଁପାଇଁ ଏତେ ଦୟା ?

ଦେବତା : ଶୁଣ ଲକ୍ଷ୍ମୀ ମୋର,
ମୋହର ଚରିତ୍ର ତେବେ । ପ୍ରଣୟ-ବିଭୋର
ନିତ୍ୟ ମୁହିଁ କାଟେ କାଳ । ଏଇ ସେ ମନ୍ଦିରେ
ଲକ୍ଷ ଲକ୍ଷ ଭକ୍ତଜନ ଉଚିତ ବିଧିରେ
ନିତ୍ୟ ମୋର କରିଥା'ନ୍ତି ଷୋଡ଼ଶ ଅର୍ଚ୍ଚନା,
ଏଥିରେ କି ତୁଷ୍ଟ ମୁହିଁ ? ଅନ୍ତର-ବେଦନା
ଶମେ ଖାଲି କେବେ ଯେବେ ଲକ୍ଷ ଭକ୍ତଜନେ
ଆସେ କେହି ଅନ୍ତର୍ଯ୍ୟାମୀ ବନ୍ଧୁ ମମ ଜଣେ,
—ନୟନେ ଆନନ୍ଦବାରି, ମୁଖେ ମୋର ନାମ,
ହୃଦୟେ ଯାଚନା ମୋର ପ୍ରଣୟ ନିଷ୍କାମ,

ପଛେ ରଖି ପ୍ରପଞ୍ଚର ତ୍ୟକ୍ତ ମାୟା-ମୋହ
ପୁତ୍ରକନ୍ୟା, ନାରୀନର, କାଞ୍ଚନ-ସମ୍ମୋହ,
ପଥର ଭିଖାରୀ ଖାଲି ମୋର ପ୍ରୀତି ଲାଗି,—
ସେଇ ଶମେ କ୍ଷୁଧା ମୋର । ବର-ଅନୁରାଗୀ
ଦାସରୂପେ ଲଭେ ମତେ । ପ୍ରେମଲାଗି ତା'ର
ସହେ ମୁଁ ଭର୍ତ୍ସନା; ଅଭିମାନ, ଅହଙ୍କାର
ତୁଚ୍ଛ କରି ତାହା ଲାଗି । ପ୍ରଣୟ-କ୍ଷୁଧିତ
ଚିରିଦିନ ପ୍ରାଣ ମୋର । ଉତ୍କଣ୍ଠ ମୋ ଚିତ୍ତ
ରହିଥାଏ ଚାହିଁ କେବେ ଆସିବ କେ ପ୍ରିୟ,
ସଖା ବୋଲି ଡାକି ମତେ 'ମୋରେ ପ୍ରେମ ଦିଅ',
କହିବ ନୟନ-ନୀରେ ।
ଯେ ଦିନ ପ୍ରଥମେ
ମୋ ମନ୍ଦିରେ ଆଗମନ କଲ ଲକ୍ଷ୍ମି, ତୁମେ
ବୃଦ୍ଧ ପିତା ଗହଣରେ, ସହସା ମୋ ଚିତ୍ତ
ଚମକି ଉଠିଲା କ୍ଷଣେ, ଶୟନ-ଉତ୍‌ଥିତ
ସମ ମୁଁ ଭାବିଲି ନିଜେ, ମନେହେଲା ସତେ
ଯୁଗ ଯୁଗ ପରିଚିତ ବଂଧୁ ମୋ ପୁରତେ
ସହସା ହୋଇଲା ଉଭା, ବିରହର ଶେଷେ !
ନିର୍ମ୍ମଳ ହୃଦୟେ, କ୍ଷୁଦ୍ର ପୂଜାରିଣୀ ବେଶେ
ମାଳା ରଖି ପଦେ ମୋର, କ୍ଷୁଦ୍ର କର ଦୁଇ
ଏକ କରି, ମଥା ନୋଇଁ ଶେଷେ ଭୂମି ଛୁଇଁ
ପୁଣି ଯେବେ ନିର୍ନିମେଷେ ଚାହିଁଲ ମୋ ମୁଖେ,
ପ୍ରସ୍ତରଶରୀର ମୋର ମର୍ମ୍ମରିଲା ସୁଖେ;
ଉତ୍‌କଣ୍ଠ ହୋଇଲା ଚିତ୍ତ ଭାଷିବାକୁ ବାଣୀ,
ଡାକିବାକୁ ସଖୀ ବୋଲି—

ଲକ୍ଷ୍ମୀ : ବିଚିତ୍ର କାହାଣୀ !
ମୋର ସବୁ ମନେଅଛି ! ଦେଖିଲି ପ୍ରଥମେ
ଯେବେ ହେ ମନ୍ଦିରେ ତବ ମୂରତିରେ; ତୁମେ
ଲାଗିଲ ଯେପରି ମୋର ଚିହ୍ନାଲୋକ ପରି,
ହୋଇଅଛି ପରିଚୟ ବହୁଦିନ ଧରି,—
ବହୁତ ଦିନର ବଂଧୁ ! ହୋଇ ନାହିଁ କଥା
ବହୁ ଦିନୁଁ, ତେଣୁ ଦେଖି ଉଠିଲା ମମତା

ସହସା ଭରଳ ହୋଇ ! କିନ୍ତୁ ତୁମ କଥା
ଶୁଣୁଥାଇ  ନିତ୍ୟ ଘରେ; ଶାସ୍ତ୍ରର ବାରତା
ନନା ମତେ ସଂଧ୍ୟାକାଳେ ଶୁଣାନ୍ତି ବସାଇ,
ତାଙ୍କ ମୁଖେ ତୁମ କଥା ନିତ୍ୟ ଶୁଣୁଥାଇ ।
ବୃନ୍ଦାବନେ ଥିଲ ତୁମେ, ରାଧା ବୋଲି ତବ
ପ୍ରଣୟିନୀ ଥିଲେ କେହି, ମଧୁ ଅନୁଭବ
ଘଟିଛି ତୁମର ତହିଁ,—ରାଧା ଲାଗି ତମେ
ଅପରର ପଦଧରି କାନ୍ଦିଛ ସରମେ
ରାଧାର ଚରଣ ଧରି ମାଗିଅଛ କ୍ଷମା;
ସତ୍ୟ ସବୁ ଏ କାହାଣୀ ?

ଦେବତା : ମିଥ୍ୟା ନୁହେଁ ଲମା ।

ଲକ୍ଷ୍ମୀ : ସତ୍ୟ ବୋଲି ମଣି ସବୁ, ଶୁଣି ସେ ସଙ୍ଗତି,
ଅନ୍ତରେ ଅସୀମ ଭକ୍ତି ହେଲା ତୁମ ପ୍ରତି ।
ଅନ୍ତରେ ଭାବିଲି ଖାଲି ମୁଁ ହେଲେ ରାଧିକା
ହୋଇଥା'ନ୍ତି; କୃଷ୍ଣଲାଗି ହୋଇ ପ୍ରାଣ-ବିକା
ଘର ଛାଡ଼ି ଯା'ନ୍ତି ଚାଲି । କିନ୍ତୁ ପୀତବାସ,
କାହାନ୍ତି ରାଧିକା ତବ ? କାହିଁ ସେହି ରାସ
ଶ୍ରଦ୍ଧାବତୀ ଗୋପୀ ମେଳେ ?

ଦେବତା : ରାଧା ପ୍ରିୟତମା ଲକ୍ଷ୍ମୀ ରୂପେ

ଲକ୍ଷ୍ମୀ : ଚାଟୁ କଲେ ନାହିଁ ଜାଣ କ୍ଷମା !
ଯିବି ଚାଲି ଗୃହେ ଫେରି ।

ଦେବତା : ଶୁଣ ସତ୍ୟ କଥା,
ତୁମ ଦେହେ ଫୁଟିଅଛି ରାଧାର ମମତା ।
ବହୁଦିନୁ ରାଧିକାରେ ହରାଇଛି ସଖି,
ମଧୁର ମୋ ବୃନ୍ଦାବନ ପଛେ ମୋର ରଖି,
ଆସିଲି ମୁଁ ସତ୍ୟ ରଖି ଏ ବକୁଳ ବନେ ।
ଯାପୁଥିଲି ଦିନ ମୋର ଅତି ନିକାଞ୍ଚନେ
ରାଧାହୀନ, ଗୋପୀହୀନ । ମୋର ଲାଗି ପୁଣି
ରାଧା ତେଣେ ଦୂରେ ରହି ହେଉଥିଲା ଗୁଣି
ମୋର ସଙ୍ଗ । ଅବଶେଷେ ଶରୀରେ ତୁମର
ଫେରାଇଛି ବିଧି ରାଧା ଜାଣୁଛି ନିକର ।
କିନ୍ତୁ ଲକ୍ଷ୍ମି, ସତେ କ'ଣ ମତେ ଭଲପାଅ ?

ସନ୍ଦେହ ଲାଗଇ ମତେ ! ନିତ୍ୟ ଆସୁଥାଅ
ପ୍ରଥମେ, କିନ୍ତୁ ଗୋ ଏବେ ଆସିବାକୁ ଥରେ
କେତେ ମୁଁ ମିନତି କରେ ।

ଲକ୍ଷ୍ମୀ : ରଖ ରଖ ଘରେ
ତୁମର ସେ ଛଳ କଥା ! ଲଜ୍ଜା ମୋର ନାହିଁ ?
ଯୁବତୀ ମୁଁ ! ଘରେ ମୋର ପିତାମାତା ଥାଇ
ଘଟେ ଯଦି ବାର ବାର ଗ୍ରାମେ ଅପଯଶ
କେମନ୍ତେ କହିଲ ମୋର ହୋଇବ ସାହସ
ନିଶୀଥେ ହେବାକୁ ଘରୁ ବାହାର ଏ ବନେ ?
ତା'ପରେ ସେଥର ମୋର ଭାଙ୍ଗିଲ କଙ୍କଣେ
ତୁମର ଏ ବେଣୁଘାତେ, ଚନ୍ଦ୍ରିକା ସେବାର
ଅଜ୍ଞାତେ ମୋ କବରୀରେ ଗୁଞ୍ଜି, ହେଲା କାଳ
ଏବେ ପୁଣି ସେହି ଦିନ ଆମ ଘର ପଥେ
ମିଳିଲା ତୁମର ବେଣୁ ! ସାରା ଗ୍ରାମ ରଟେ
ଲକ୍ଷ୍ମୀ ଆଉ ଦେବତାର ଗୋପନ-ପ୍ରଣୟ !
ଅନ୍ତର ବଂଧୁ ହେ, ସିନା ନାହିଁ ଧରେ ଥୟ
ତୁମର ଏ କୃପା ଲଭି; ଇତରଙ୍କ ଆଗେ
କିପରି ଗର୍ବିଣୀ ହେବି ଏହି ଅନୁରାଗେ ?
ବଡ଼ ଲଜ୍ଜା ହୁଏ ମୋର ! ଲୋକ ମେଳେ ଥାଇ
ସରମେ ଏ ମନ୍ଦିରରେ ଚାହିଁପାରେ ନାହିଁ ।
ତା'ପରେ ଜାଣ ତ ତୁମେ ବିବାହିତା ମତେ,
କିବା ଅପଯଶେ ମତେ ଟାଣି ରଖ ସତେ !
ଏଥିରେ କହୁଛ ପୁଣି ନ ଆସିଲି ବୋଲି ?
ଯାଏଁ ଏବେ ଗୃହେ ଫେରି, ଧର ମତେ ତୋଳି,
ବଡ଼ହିଁ ଅବଶ ଲାଗେ !

ଦେବତା : ଆଉ ଆଗମନ
କେବେ ହେବ ?

ଲକ୍ଷ୍ମୀ : ଆୟତ୍ତରେ ନାହିଁ ନିଜ ମନ,
ତେଣୁ ପାରେ ନାହିଁ କହି । ସେଇ କହୁ କିନା
ଯା' ଅଙ୍ଗୁଳିଘାତେ ବାଜେ ମୂକ-ଚିତ୍ତ-ବୀଣା
ନିରାଶ୍ରିତା ବାଳିକାର । ହେ ବନ୍ଧୁ, ହେ ସଖା,
କେଉଁ ଅପରାଧେ ମମ ପ୍ରେମେ କର ଶଙ୍କା ?

ଅନ୍ତର ଜାଣ ହେ ମୋର, ସଖା ଅନ୍ତର୍ଯ୍ୟାମି,
ତୁମ ପଦେ ଚିତ୍ତ ମୋର ନିତ୍ୟ ଅନୁଗାମୀ
ସକଳ ସମ୍ପଦ ମମ ହୃଦଏ ଦେଇଛି
ତୁମର ଏ ପଦ୍ମପଦେ । ଅହଙ୍କାର କିଛି
ଅଛି ଯଦି ସେ କେବଳ ତୁମ ଅନୁଗ୍ରହ,
ସେହି ଦିଏ ମତେ ବଳ; କ୍ରୀଡ଼ା ତବ ସହ
ରଚିବାକୁ ସଖା ଭାବି । ଦିଏ ସେ ସାହସ
ପିଙ୍ଗିବାକୁ ପୁଣି ତବ ମିନତି ସରସ ।
ସେ ସବୁ କ୍ଷମିବ ବଂଧୁ—

ଦେବତା : ଆସିଲେ କ୍ଷମିବି,
ନ ଆସିଲେ—

**ଲକ୍ଷ୍ମୀ** : ଆଚ୍ଛା ତେବେ ନିଶ୍ଚୟ ଆସିବି
ପୂଜାଛଳେ ନିକଟରେ ବିଜନ ସମୟେ ।

ଦେବତା : ଭଲକଥା, ଶୁଣ କିନ୍ତୁ ବେଣୁ କିସ କହେ,—
ଦିଅ କିଛି ନର୍ମ୍ମ ସୁଖ । ଗୃହେ ଯିବ ଫେରି ?
ଦେଖୁଛ ଚନ୍ଦ୍ରିକା କେଡ଼େ ଭୋଗୁଅଛି କେଳି
ଏ ବନର ପତ୍ରେ ପତ୍ରେ ? ବୃକ୍ଷେ ବୃକ୍ଷେ ସଖି,
ଅଗଣ୍ୟ ବିହଗ ପ୍ରିୟାକଣ୍ଠେ କଣ୍ଠ ରଖି
ବୁଝୁଛ, କି ମୁଗ୍ଧ ସୁଖ ଭୋଗୁଛନ୍ତି ପ୍ରାଣେ ?
କୁସୁମର ଗଂଧ, ଯାହା ଲଭୁଛି ଆଘ୍ରାଣେ,
ତା'ଲଭି ଏ ଶୀତ ବାୟୁ ସ୍ଫୀତ ହୋଇଉଠେ;
ଦେଖୁଛ ତା' ଲକ୍ଷ୍ମି, ତୁମେ ? ଶାଖେ ଶାଖେ ଫୁଟେ
ଅସଂଖ୍ୟ କୁସୁମ କିପାଁ ? କା ଲାଗି ଚନ୍ଦ୍ରିକା ?
କାହାଲାଗି ମଧୁରାତ୍ରି ? ହେ ଅଭିସାରିକା,
କେଉଁ ଲାଭେ ଗୃହୁ ଆସି ଗୃହେ ଯିବ ଫେରି ?
କେ ଦେଖିବ ଚନ୍ଦ୍ରିକା ଓ ଧରଣୀର କେଳି ?
ରହ ଲକ୍ଷ୍ମି, ଆଉ ଦଣ୍ଡେ । କହ ଆଉ କଥା ।
ଜ୍ୟୋତ୍ସ୍ନା ତଳେ ନତ କରି ସରମିତ ମଥା ।
କହ ପୁଣି କେତେମତେ ଭଲ ପାଅ ମତେ;
ଯେତେହେଁ କହିଲେ ମନେ ଶଙ୍କା ଲାଗେ ସତେ,
ତୁମେ ମତେ ମନ ପୋଛି ଭଲ ନାହିଁ ପାଅ !

ଲକ୍ଷ୍ମୀ : ବନ୍ଧୁ ମୋର, ସବୁ ମୋର, କି କଥା ଶୁଣାଅ !
କାହିଁକି ସନ୍ଦେହ ଲାଗେ ? ମରିଯାଏଁ କିନା !
କେମନ୍ତେ ମୁଁ ଜଣାଇବି ତୁମ ପଦେ କିଣା
ମୋର ଏ ଶରୀର ମନ ? କେ ଅଛି ସୁନ୍ଦର
ତୁମ ପରି ? କେବା ନିଜ ବାନ୍ଧବ ଜନର
ତୋଷ ପାଇଁ ତୁମ ପରି ନିଜେ ଯାଏ ଭୁଲି ?
ଦୀନାହୀନା ମୁହିଁ ମାତ୍ର ଜନପଥ ଧୂଳି,
କିବା ଅହଙ୍କାର ମୋର ଅଛି ପ୍ରିୟ, କହ
ତୁମରି କରୁଣା ବିନା ? ପ୍ରାଣେ ଅହରହ
ତୁମ ଲାଗି ଭୋଗେ ଯାହା, ନାରୀ-କଣ୍ଠ ଦେଇ
ସରମରେ ନାହିଁ ଫୁଟେ । ବିଶ୍ୱେ ନାହିଁ କେହି
ପ୍ରିୟ ମୋର ତୁମ ବିନା । ସଙ୍ଗସୁଖ ପାଇଁ
ଏ ମୋର ସକଳ ଆତ୍ମା ନୃତ୍ୟ କରୁଥାଇ
ଅହରହ, ଅବିରତ ! ସକଳ ମିଳନେ
ବିରହ ଅଶାନ୍ତ ମୋର ରହିଛି ଜୀବନେ ।

ଦେବତା : ପ୍ରେମ ସଦା ଶଙ୍କାକୁଳ; ତୁମ ଏ ସନ୍ଦେହ ।
କ୍ଷମା କର ମତେ ସଖି ! ଏବେ ଯିବ ଗୃହ ?

ଲକ୍ଷ୍ମୀ : କର କ୍ରୀଡ଼ା, ନାହିଁ ଯିବି । ପ୍ରାଣେ ଭୟ ଖାଲି,
ଯଦି ଜାଣେ କେହି ତେବେ ପୁଣି ନିଶ୍ଚେ କାଲି
ଗ୍ରାମଯାକ ହେବ ହଟା । ମତେ ନଟବର,
ସତେ କିହୋ, ଜାଣି ଜାଣି ସରମିତ କର ?
ବଡ଼ ଦୁଷ୍ଟ !

ଦେବତା : ମୁକ୍ତାବିନ୍ଦୁ ନୟନେ, ତୁମର
ପାଟଳ ବଦନ-ଶୋଭା, କମ୍ପିତ ଅଧର,
ଦେଖିବାକୁ ଲାଗେ ମୋର ସୁଖ ଅତି ପ୍ରାଣେ ।

ଲକ୍ଷ୍ମୀ : ଆଉ ଥରେ କର ଯଦି, ଜାଣ, ମୁହିଁ ଜାଣେ
କେମନ୍ତେ ଶୁଝିବି ଋଣ !

ଦେବତା : କଙ୍କଣ ଆଘାତେ
ଏକ କରି ଦେବ କିଗୋ ଏହି ଭୂମି ସାଥେ
ମୋର ଏ ମନ୍ଦିର, ସଖି ?

ଲକ୍ଷ୍ମୀ : ଜାଣିବ ସୁନ୍ଦର,—
ମୁରଲୀ ବଜାଅ ଏବେ, ଶୁଣେ ବଂଶୀଧର !

ଦେବତା : ବଜାଇବି, ଶୁଣାଇବି, ଅନ୍ତର ବ୍ୟଥିତ
ମୋର ଏହି ବେଣୁସ୍ୱନେ, ହୃଦୟ ମଥିତ
ତବ କରିପାରେ ଯଦି ମୋ ଲାଗି କିଂଚିତେ !
ସେ ସ୍ୱନେ ଶୁଣିବ ମୋର ଅଶ୍ରୁ-ଦଗ୍ଧ-ଚିତ୍ତେ ।
ତୁମେ କିନ୍ତୁ କିଛି ବିନୋଦନ ଦେବ ନାହିଁ ?
ବିନିମୟ ନାହିଁ କିଛି ? ଫାଙ୍କିରେ ପଳାଇ ?

ଲକ୍ଷ୍ମୀ : (ଦେବତାର ସମ୍ମୁଖରେ ବିନୀତଭାବରେ ଠିଆ ହୋଇ)
ଗାଅ ବନ୍ଧୁ, ତବ ବକ୍ଷ ପିଇ ଏ ଶ୍ରବଣେ
ସର୍ବସ୍ୱ ମୋ ସମର୍ପିବି ପରମ ନର୍ତ୍ତନେ ।

(ଦେବତା ବଂଶୀ ବଜାଇଲେ ଓ ଲକ୍ଷ୍ମୀ ନୃତ୍ୟ କଲା । ଦେବଦାସୀ ନୃତ୍ୟ ।
ନୃତ୍ୟ ଶେଷରେ ପଟ ପତନ ।)

## [ ଦୁଇ ]

[ଶରଦ୍ ଅପରାହ୍ଣ । ଲକ୍ଷ୍ମୀର ପିତା ବେଲେଶ୍ୱର ମହାପାତ୍ରଙ୍କ କୁଟୀରାଙ୍ଗନରେ ମହାପାତ୍ରେ ଓ ତଦୀୟ ପତ୍ନୀ । ଅଙ୍ଗନରୁ ସାକ୍ଷିଗୋପାଳଙ୍କ ମନ୍ଦିର ଚୂଡ଼ା ଦେଖାଯାଉଅଛି ।]

ବେଲେଶ୍ୱର : ଶୁଣ ସଖି, କେତେ କାଳ ରଖିବା କନ୍ୟାରେ
ନିଜ ଘରେ କହ ଆଉ ? କହନ୍ତି କଥାରେ
ଘିଅ ଝିଅ ରଖି ନୁହେଁ । ସ୍ନେହ ଅଛି ବୋଲି
ରଖିବା କି ଦେଲୁ ଯାହା ଆନ ହାତେ ତୋଳି,
ଚିରକାଳ କୋଳେ ଧରି ? ଲାଗିଛି ସଂସାର,
ଯାଏ କନ୍ୟା ଶାଶୁଘର; ବ୍ୟଥିତ ହେବାର
ଲୋକହସା ସିନା ସଖି !
ଶୁଣିଛି ମୁଁ ଆଜି
ଶ୍ୱଶୁରର ତର୍ଜନରେ ଗ୍ରାମ ପଡ଼େ ଭାଜି !
କହୁଛି ଆସିବ ଏହି ଭାଦ୍ର ପୂର୍ଣ୍ଣିମାରେ,
ନେବ ବୋହୂ, ନ ହେଲେ ସେ ଛାଡ଼ି ବୋହୂଠାରେ
ଚିରକାଳ ଲାଗି ଆଶା, ଯିବ ଫେରି ପୁଣି ;
କିପାଇଁ କହିଲୁ ଏତେ ଗୋଳ କରି ଶୁଣି ?

ପତ୍ନୀ : ସତ୍ୟ କଥା ସିନା ନାଥ, ଫେରାଇ ଫେରାଇ
ଲୋକ ତାଙ୍କ, କହିବାକୁ ମୁହଁ ଆଉ ନାହିଁ ।
ବୋଲୁଛନ୍ତି ଗ୍ରାମଲୋକେ 'ଏକାକୀ ଜଗତେ

ଏଇ ପାଇଥିଲା ଝିଅ, ରଖିଛି ପଣତେ,
ଛାଡୁ ନାହିଁ ଶାଶୁଘର ! ଏତେ ସ୍ନେହ ଯଦି,
ବିଭା ଦେଲା କରି କିପାଁ ? ବିଧାତା ସରଜି
ଦେଇଛି ଯା' ପାଇଁ ଯା'ରେ, ସେ ସିନା ତାହାର,
ଏପରି କଥା ତ କାହିଁ ଶୁଣିନି ସଂସାର ?
ଶୁଣି ସେ ଟାହୁଲି ବୁକୁ ହୋଇଯାଏ ପାଣି,
ଉତ୍ତର ଦେବାକୁ ମୁଖେ ନ ଫୁଟଇ ବାଣୀ ।
ଦୋଷ ତ ଆମରି ନାଥ ! ବିଭା ହୋଇ ପିଲା
ଏତେ ଦିନ ଯାଏ ଶାଶୁଘର ନ ଦେଖିଲା;
ଥର ଥର ଲୋକ ପେଷି ଫେରିଲା ଶଶୁର,
ରାଗିବା ବିଚିତ୍ର କିବା ?
                    କିନ୍ତୁ ସେ ମଧୁର
ମୁଖଟିକି କେମନ୍ତେ ମୁଁ ପାସୋରିବି ନାଥ !
ସେଇ କଥା ନିତ୍ୟ ଭାବେ; ସଙ୍ଗାଳି ବିନା ତ
କ୍ଷଣକେ ଅନ୍ଧାର ମତେ ଦିଶଇ ସଂସାର;
ଗଲେ ଚାଲି, ଶୂନ୍ୟ ଗୃହେ କରି ହାହାକାର
କା' ମୁଖ ଅନାଇ ପ୍ରାଣ ବୋଧିବି କହ ତ ?
ପୁର ହେବ ଖାଲି । ମୋର ହୀରା-ପରବତ
ଯିବ ଚାଲି । ଶୂନ୍ୟ ପୁରେ ବଞ୍ଚିବି କେସନେ ?
ଗୋଟାକୁ ଦୁଇଟା ବିଧି– (କ୍ରନ୍ଦନ)

ବେଳେଶ୍ୱର : ଦୋଷି ଭଗବାନେ
କି ଲାଭ କହିଲୁ, ସଖି ! ଭାଗ୍ୟହିଁ ସକଳ;
ପୂର୍ବ କର୍ମ୍ମ ଅନୁସରି ପ୍ରାଣୀ ଫଳାଫଳ
ପାଇଥାଏ ଏ ଜଗତେ । ଶାସ୍ତ୍ରକଥା ଏହି
ଏଡ଼ି କି ପାରିବ ତା'ରେ ବଳବନ୍ତ କେହି ?
ଦେଇଛନ୍ତି ପୁଣ୍ୟ ଦେଖି ଏକଇ କଳିକା,
ପୁତ୍ର ସେଇ, କନ୍ୟା ସେଇ, ସେ କୁଳପାଳିକା ।
ଯେତେଦିନ ବଢ଼ିବାର ଥିଲା ଏ କୁଟୀରେ
ବଢ଼ିଲା, ଏବେ ଲୋ ସଖି ତା ନିଜ ମନ୍ଦିରେ
ଉଚିତ ଦେବାର ଛାଡ଼ି । କନ୍ୟା ତ ବେଭାରେ
ପର-ଘର ପାଇଁ ଗଢା, ଲୁହ ଡେଙ୍ଗିବାରେ

ଫଳ କିବା କହ ମତେ ? ଫଳ ହେବ ସିନା
ଶଶୁର ତା ଗଲେ ଫେରି, ସ୍ୱାମିସୁଖ ବିନା
ଚିରକାଳ ହେବ କନ୍ୟା ସେ ଭାଗୁଁ ବଞ୍ଚିତ !
ସେ ଦୁଃଖ କି ଆମ ସ୍ନେହେ ହେବ ଅପଚିତ ?
ସେକଥା ବିଚାରି ଏବେ କର ଆୟୋଜନ
ଲକ୍ଷ୍ମୀର ପହିଲିପାଳି; କିବା ପ୍ରୟୋଜନ
ଏ ଘରେ ତାହାର ଆଉ ?

ପତ୍ନୀ : ଯିବ ସେ ଯେ ଘର
କି ଅବା ଜାଣିଲା ତା'ର ସଙ୍ଗାଳି ମୋହର !
ବର ବୋଲି ଯୋଡ଼ିଦେଲେ ଆଣି ବା ଯାହାକୁ
ଜାଣିଲ କି କେମନ୍ତେ ସେ ଏ ରତ୍ନମାଳାକୁ
କରିବ ଆଦର-ସ୍ନେହ ? ଶୁଣୁଛି ମୁଁ ଶାଶୁ
ବଡ଼ ଦୁରୁଦଣ୍ଡ ପୁଣି । ଡାକିନୀର ହାତୁ
କେ ଜାଣେ କି କଷ୍ଟ ପାଇ ସଙ୍ଗାଳି ମୋହର,
ହାତ ପଛେ ଆଖି ପୋଛି ହୋଇଣ ବିକଳ
ଅନ୍ତରେ 'ବୋଉଲୋ' ବୋଲି ଡାକିଲେ କି ନାଥ,
ଥିବି ମୁହିଁ ପାଶେ ତା'ର ? ମୁଣ୍ଡେ ମାରି ହାତ
କୋଳେ ଧରି ଆଖି ଦେବି ପୋଛି ମୁଁ ପଣତେ ?
କି ଦୁଃଖ ସେ ! କି ବେଦନା ନ ପାଇବ ସତେ
ଧନ ମୋର ପରପୁରେ ନିରାଶ୍ରିତା ପରି ! (ପୁଣି କ୍ରନ୍ଦନ)

ବେଲେଶ୍ୱର : କାହିଁକି କାନ୍ଦୁଛ ପୁଣି ? ଲୀଳା ତ ଏପରି
ଲାଗିଛି ଜଗତଯାକ । ନାରୀ-ଜନ୍ମ ପାଇ
କିଏ କାହିଁ ଏ ବେଭାରୁ ପାଇଅଛି ତ୍ରାହି ?
ନିଜ ଘର ତେଜି ଯିବ ଦୂର ପରଘରେ,
ମୁଣ୍ଡପାତି ନେବ ସହି ସକଳ ଜଞ୍ଜାଳେ,
ସଂସାର କରିବ ପୁତ୍ର କନ୍ୟା କରି ଜାତ,
ତାଙ୍କରି ଜଞ୍ଜାଳେ ନିଜ-ସୁଖ ଆତଯାତ,
ଏଇ ତ ନାରୀର ଭାଗ୍ୟ ? ଆମ ଲାଗି କିବା
ସଂସାର ହୋଇବ ନୂଆ ?

ପତ୍ନୀ : ସ୍ୱାମିଘର-ଯିବା
ଶୁଣିଲେ କିନ୍ତୁ ମୋ' ଧନ କାଳୀପଡ଼ିଯାଏ !

ଜାଣ ତ ? ଜାଣି ନା ? —ଲକ୍ଷ୍ମୀ ହସି ଖେଳୁଥାଏ
ସଙ୍ଗମେଳେ, କେହି ସାଥୀ ପରିହାସ ରସେ
କହିଲେ ସ୍ୱାମୀର କଥା, ବିଷମ ବିରସେ
ସଞ୍ଜାଳିର ଚାନ୍ଦମୁହଁ ରକ୍ତ ହୋଇ ଉଠେ,
ବଚନ ନ ଫୁଟେ ମୁଖୁଁ ହସ ମୁଖୁଁ ତୁଟେ,
ପଳାଇବା ପାଇଁ ଉଠେ ସଜନୀଙ୍କ ପାଶୁଁ ।
କେତେ ଥର ଦେଖିଲିଣି, ଶୁଣିଲିଣି ଭାଷୁଁ
ସାଥୀଙ୍କର ପୁଣି ତା'ର, ଦେଖୁଛି ଯେପରି
ମାଆର ମୋ ଅଭିଳାଷ ନାହିଁ ତିଳ ସରି
ଯିବାପାଇଁ ଶାଶୁଘର । ଭାବୁଛ ସରମ ?
ନାହିଁ ଜାଣ, ଜନନୀ ମୁଁ ବୁଝିଛି ମରମ ।
ଥର ଥର ଦେଖିଲିଣି, ଆସେ ଯେଉଁ ଦିନ
ଶାଶୁଘରୁ ଲୋକ ଡାକି—ତା'ର ତନୁ କ୍ଷୀଣ
ତାତିଉଠେ ଜରତାପେ; ଅନ୍ନ ତେଜି ଧନ
ନିଶବଦେ ପଡ଼େ ଶୋଇ; ପୁଛିଲେ କାରଣ
'ମାଆଲୋ, କାହିଁକି ଦେହେ ହେଲା ଆଜି ତାତି ?
ଖାଲି କହେ, 'ଜାଣି ନାହିଁ,— କିନ୍ତୁ ଏ ମୋ ଛାତି,
କିପାଁ ବୋଉ ଦମଦମ ପଡ଼େ ଲୋ ଏପରି ?
'କାହିଁକି ଲୋ' 'କାହିଁକି ଲୋ' ବୋଲି କୋଳକରି
ସଞ୍ଜାଳିରେ ଧରେ ଜାକି—
ଏଥିରେ କେସନେ
ଶାଶୁଘରେ ଦେବି ପେଲି କହିଲ ମୋ' ଧନେ ?

ବେଲେଶ୍ୱର : କେମନ୍ତେ ବୁଝିବୁ ଆଉ କହିଲୁ ବାୟାଣୀ ?
ଚାହାଁ ସେଇ ଦେଉଳରେ, ଅପବାଦ-ବାଣୀ
କେମନ୍ତେ ଉଠୁଛି ଗ୍ରାମେ ପୁଣି ପକା ମନେ;
କହ ତହୁଁ ଘରେ କେହ୍ନେ ରଖୁ ପରଧନେ ?
ବୁଝିଲୁ ? ବୁଝିଲୁଟିକି ?

ପତ୍ନୀ : ଘୋର ମିଥ୍ୟା କଥା !
ଲଗାନ୍ତି ମୋ ଧନ ନାମେ କେତେ ନଟ କଥା
ଅସହଣୀ ଗାମ-ଲୋକେ । ସେସବୁକୁ ସତ
ମଣିବାରେ କି ଗରଜ ଅଛି ମୋ କହ ତ !
ମୋ ପିଲାରେ ମୁହିଁ ଜାଣେ ! ନାହିଁ ପାରେ କହି
ଦି'ପଦ ବଚନ ଗୁରୁଜନ ଆଗେ ରହି

ଲାଜକୁଳୀ ଲତା ମୋର ! ଘରେ ଲାଗୁଁ ବତୀ
ଶେଯ ଧରି ମତେ ଡାକେ ଶୋଇବାକୁ କତି,
ଭୟ ଲାଗେ ଘରେ ଏକା । ସାଙ୍ଗସାଥୀ କେହି
ଟାଣେ ପଦେ ଦେଲେ କହି, ମୋ' ଲବଣି ଦେହୀ
ସଢ଼ିଯାଏ ଅପମାନେ, ଟପଟପ ନୀର
ବହିଯାଏ ଦୁଇ ନେତ୍ରୁଁ, ସେ ପୁଣି ଗଭୀର
ରାତ୍ରେ କାହିଁ ଘର ଛାଡ଼ି ଛୁରୀଅନାବନେ
ବୁଲେ ଏକା; ବାଂଧି ପୁଣି ଆପଣା ବସନେ
ଗୋପୀନାଥେ କରେ ଖେଳ ଚନ୍ଦ୍ରପକ୍ଷ ରାତେ,
ରନ୍ତୀରା-କୂଳେ ପୁଣି ବୁଲେ ଧରି ସାଥେ
ଦେବତାରେ ଦିବସରେ; ଅନାସୃଷ୍ଟି କଥା
ଶୁଣି କିପାଁ ହୁଏ ଶୁଣେ ତୁମ ମୁଣ୍ଡ-ବ୍ୟଥା !
ଘଟେ ଅବା ଏତେ ଲୀଳା କହ କେତେବେଳେ ?
ରଖିଛି ଧନରେ ମୋର ସଦା ଆଖିତଳେ,
ଛାଡ଼ି ନାହିଁ ପାରେ ରହି । ସଞ୍ଜ ଲାଗୁଁ ଘରେ
ନାହିଁ ନାହିଁ କରୁ କରୁ ଭୁଞ୍ଜାଇ ଏ କରେ
ଯତନେ ଦିଅଇ ଶୋଇ; ଘରକାମ ସାରି
ଶୋଇବାକୁ ଆସି ଦେଖେଁ ନିଦରେ ସଞ୍ଚାଳି
ପଡ଼ିଛି କନକ-ଲତା ପରି ଶେଯପରେ ।
ଦୀପ ରଖି ଗୁଖାପରେ ମୁଖେ ଚାହିଁ ଥରେ
ଦୁଇ ଆଖି ପୂର୍ଣ୍ଣ କରି, ସାଉଁଳି ବଦନ,
ସାଉଁଳି ସର୍ବାଙ୍ଗ, କରି ଶିଥିଳ ବସନ
ଯତନ; ଧନରେ କୋଳେ ଆଣି ଭିଡ଼ି ଧୀରେ
ଶୋଇପଡ଼େଁ । ନିଦଭାଙ୍ଗେ ସକାଳ ହୋଇଲେ
ତା'ରି ଡାକେ 'ବୋଉ କିଲୋ ଉଠିବୁ ନାହିଁ କି ?
ନନା ଡାକୁଛନ୍ତି ପରା !'
କହ ମତେ ଦେଖି
କିପରି ପରତେ ଯିବି ଏ ଯେ ଅପବାଦେ ?
କାହିଁ ବେଳ ? କିପାଇଁ ବା ଏତେ ପରମାଦେ
ଯିବ ମୋର ଗଣ୍ଠିଧନ ?

ବେଲେଶ୍ୱର : ନାରୀଜନ୍ମ ହେଲେ
ବୁଲି-ଧୂଆଁ ସଙ୍ଗେ ବୁଦ୍ଧି ଉଡ଼ିଯାଏ ହେଲେ !
ଦେବତାର ମାୟା ତୁହି କି ଜାଣିବୁ କହ,

ରହୁ ବା ସଙ୍ଗାଳି ତୋର ସାଥେ ଅହରହ !
କେତେ ଦିନ ହେଲା ରାତ୍ରେ ଶୁଣୁନି କି ମୁହିଁ
ଥିର ଥିର-ପଦପାତ; ପୁଣି ଜନ ଦୁଇ
ଆସିବା-ଫେରିବା ନିତ୍ୟ ଗଭୀର ନିଶାରେ
ଏଇ ଆମ ଅଗଣାରେ ? ପଛ ବନଧାରେ
ଶୁଣୁନି କି ହସ-ଖେଳ, ରଙ୍ଗ-ନାଟ-ଲୀଳା
ଚୁପୁଚୁପୁ ଘଟିବାର ? ଆଗଦ୍ୱାର ଶିଳା
ଟୁଣୁଟୁଣୁ ବାଜିବାର ବଳା -ନାଦେ କାର
ଶୁଣୁନି କି ? ଶୁଣୁଛି ମୁଁ,– ପିଶାଚ-ପ୍ରକାର
ଭାବି ମନେ, ଭୟେ ଥାଏ, କହି ନାହିଁ କା'ରେ ।
କିନ୍ତୁ କେ ନ ଜାଣେ କହ, ସେ ଦିନ ଦୁଆରେ
ପାଇଲା ପୂଜାରୀ କେହ୍ନେ କନକ ମୁରଲୀ,
କେସନେ ମୟୂର-ପୁଚ୍ଛ ଖୋଜୁ ଶେଯ-ତଳି
ଲକ୍ଷ୍ମୀର ପାଇଲା ଅପା; ଏଥିରେ କି କହ
ଅବିଶ୍ୱାସ କରିହୁଏ ?

ପତ୍ନୀ : ଥିର ତେବେ ରହ
ଜାଣିଲ ଦେବତା ଯଦି ଆସେ ଏ କୁଟୀରେ ।
ଅପବାଦ ବୋଲ କିପାଁ ? ଆମେ ତ ବିଧିରେ
ଅତି ଦୁଃଖୀଠାରୁ ଦୁଃଖୀ; ଏଥିରେ ଦେବତା
କୃପା ଯଦି କଲେ, ସେ ତ ଅତି ଭାଗ୍ୟ କଥା ।
ଲକ୍ଷ୍ମୀ ମୋ ତାଙ୍କରି ସିନା, ତାଙ୍କରି ଇଚ୍ଛାରେ
ସରଗ-ପ୍ରତିମା ଆମ ଆସିଛି ସଂସାରେ;
ତାଙ୍କରି ଇଚ୍ଛାରେ ବେଳ ଉଠେ ବୁଡ଼େ ନିତି;
ଧର୍ମ ଅଛି ଜଗତରେ; ତାଙ୍କ ବିନା ଗତି
କାହିଁ କା'ର ? ମୋ ପିଲାରେ କଲେ ଯଦି ଆଖି,
ଧନ୍ୟ ହେଲା ଗର୍ଭ ମୋର ।

ବେଲେଶ୍ୱର : ଆହା, ସେ କଥା କି
ବୁଝିବେ ଅପର ଲୋକେ ? ପରଶ୍ରୀକାତର
କେତେକ କରିବେ ହିଂସା, ପରିହାସରେ
ରଟିବେ କେତେକ ପୁଣି ଘୋର ଅପବାଦ,
ତିଳେ ତାଳ କରି ସେ ଗୋ ଘୋର ପରମାଦ
ଘଟାଇବେ କେତେବେଳେ; ଏତେ ହଟହଟା
କିପାଇଁ କହିଲୁ ସଖୀ ? ବର-ଘର କଥା

ଅଛି ପୁଣି । ଏ ସଂବାଦ ଶୁଣିଲେ ସେ କାନେ
ମନେକର ବୁଡ଼ିବି ମୁଁ କିବା ଅପମାନେ !
ଦେବତା ହେଲେ କି ହେଲା– ବ୍ୟଭିଚାର ଏ ତ !
ଭୁଆସୁଣୀ ସଙ୍ଗେ ଏଇ ଲୁଚା-ଚୋରା ଭେଟ !
ସେ କଥା ଶଶୁର-ସ୍ୱାମୀ ନ ପାରିବେ ବୁଝି,
ଦେବତା ବୋଲି କି ସେ ଗୋ ଦେବେ ଆଖି ବୁଜି ?
ଏତେ ନଟ କିଏ ଚାହେ ? ଦୁଃଖୀ ଲୋକ ଆମେ,
ଆମ ଦୁଖେ ରହିଥାଉ ଲାଗି ଆମ କାମେ,
ପରତୁଣ୍ଡେ ଆମ କଥା ପଡ଼ିବାର କାହିଁ
ଶୁଣି ନାହୁଁ ଏତେ କାଳ, ନିଜ ଦୁଃଖେ ଥାଇ
ଏ ଭାଗ୍ୟ ତ କେବେହେଲେ କରିନୁ ଯାଚନା,
କିପାଇଁ ଏ ଅନୁକମ୍ପା ? ତେଣୁ ମୋ ଭାବନା
ଏ କେବଳ ଏ ଦୁଃଖୀରେ ଦେବାକୁ ଗଞ୍ଜଣା
ଦଶ ଜଣ ଆଖି ଆଗେ,–
ଏଇ ଦେଖ, ଅନା,
ପୂଜାରୀ ଆସୁଛି ପୁଣି, ପୁଣି ହଜିଲା କି
ଦେଉଳରୁ ଆଉ କିଛି ? (ପୂଜାରୀର ପ୍ରବେଶ)
ଆସିଲ କାହିଁକି ?

ପୂଜାରୀ : ଜାଣିନା କି ? ଶ୍ରୀଜୀଉଙ୍କ କନିଷ୍ଠ ଆଙ୍ଗୁଠି
ମୁଦ୍ରିକା ହରାଇଅଛି । ସାଉଁଟି ସାଉଁଟି
ଦୀପ ଧରି ଚାରିଆଡ଼ ଖୋଜିଲି ବିଶେଷ,
ପାଇଲିନି କିନ୍ତୁ କାହିଁ–

ବେଲେଶ୍ୱର : ମୁଁ କି ବରବେଶ
ହେବାକୁ ଆଣିଛି ମୁଦି, –ଧାଇଁଲ ଏଠାକୁ ?

ପୂଜାରୀ : ନାହିଁ, ନାହିଁ, –ଇଚ୍ଛା ଥିଲା ଥରେ ପୁଚ୍ଛିବାକୁ ଲକ୍ଷ୍ମୀରେ...

ପତ୍ନୀ : ଲକ୍ଷ୍ମୀ କି ମୋର ଚୋରଣୀ ଦିଶିଲା ?
ହଜୁଛି ଦେଉଳୁ ଯାହା, ସୁନା ଅବା ଶିଳା
ଧାଉଁଛ ଏଠାକୁ ନିତି ?

ପୂଜାରୀ : ସେ କଥା ମାଉସି
ମୁଖେ ଧରି ନାହିଁ ଆସେ । କହିଲା ପାତୁଷୀ*
ଲକ୍ଷ୍ମୀ ଆଜି ଯାଇଥିଲା ଫୁଲମାଳ ଧରି
ଦେଉଳକୁ ଖରାବେଳେ–

---

* ପାତୁଷୀ– ପଞ୍ଚଜ୍ୟୋତିଷୀ ଶବ୍ଦର ଅପଭ୍ରଂଶ

ପତ୍ନୀ : ଦିଅଁ ପୂଜା କରି ?
ମିଥ୍ୟା କଥା ! ମିଥ୍ୟା କହ !
ପୂଜାରୀ : ମିଛ ନାହିଁ ଏଥି,
ବୁଝନା ଦେଖି ଗୋ ଟିକେ । ଡାକିଆଣ ଏଠି
ଲକ୍ଷ୍ମୀରେ । ଅଛି ତ ଘରେ ?
ପତ୍ନୀ : ସକାଳୁ ଅଛି ସେ
ଘରେ ମୋର । ଲାଗିଅଛି ଘରଣୀ ପରି ସେ
ନିଜ କାର୍ଯ୍ୟେ । ଡାକେ ଦେଖି, —ଲକ୍ଷ୍ମୀ—ଏ ସଂଖାଳି...
(ନୀରବତା)
ଏଇ ଆସେ.... (ଲକ୍ଷ୍ମୀର ପ୍ରବେଶ)
ଯାଇଥିଲୁ ତୁହି ଫୁଲ ଧରି
ଦେଉଳକୁ ଆଜି ?
ଲକ୍ଷ୍ମୀ : (ମୁହଁପୋତି) ଯାଇଥିଲି ଦି'ପହରେ ।
ପୂଜାରୀ : ହୀରାର ମୁଦ୍ରିକା ନାହିଁ ଦେବତାଙ୍କ କରେ ।
ଜାଣୁ କିଛି ?
ଲକ୍ଷ୍ମୀ : (ସଲଜ) ଦେବତା କି ମାଗୁଛନ୍ତି ପୁଣି ?
ଏଇ ନିଅ (ଅଙ୍ଗୁରିକା ପ୍ରଦାନ)
ପତ୍ନୀ : ମାଆ ମୋର, ଏ କି କଥା ଶୁଣି !
ବେଲେଶ୍ୱର : ଏତିକିରେ ଶେଷହେଉ ଜଞ୍ଜାଳ ତୁମର,
ହେ ଦେବତା !
ପୂଜାରୀ : ମୁହିଁ ପ୍ରଭୁ ମାତ୍ର ପରିଚର !

(ପଟପତନ)

## [ ତିନି ]

[ଅର୍ଦ୍ଧରାତ୍ରି । ବେଲେଶ୍ୱର ମହାପାତ୍ରଙ୍କ ବାତାୟନ ନିକଟରେ ଦେବତା ସାକ୍ଷିଗୋପାଳ ଦଣ୍ଡାୟମାନ ।]

ଦେବତା : (ଅନୁଚ୍ଚ ସ୍ୱରରେ)
ଲକ୍ଷ୍ମି, ଲକ୍ଷ୍ମି ! (ନୀରବତା)
ଲକ୍ଷ୍ମି, ଡାକେ ମୁହିଁ ସାଥୀ ତବ । (ନୀରବତା)
ଉଠ ବଂଧୁ, ଆସ ଦାଣ୍ଡେ, ପାଏ ଅନୁଭବ
ତୋ ସାଥୀର; (ନୀରବତା)
ଲକ୍ଷ୍ମୀ ମୋର, କିପାଁ ଦେଉ ବ୍ୟଥା,

ଦୁଇ ଦିନ ସଙ୍ଗେ ତୋର ହୋଇନାହିଁ କଥା;
ନ ପାରିଣ ସହି ତେଣୁ ଅନ୍ତର ବେଦନା
ଆସିଛି ମୁଁ, ବୁଝିଥା'ନ୍ତି କି ଅବମାନନା
ଦେଇଛି ତୋ ପ୍ରାଣେ ମୁହିଁ, ତେଣୁ ମୋ ମନ୍ଦିରେ
ଯାଇ ନାହୁଁ ଦୁଇ ଦିନ—ଫିଟାଅ ସଖିରେ,
ଥରେ ହେଲେ ବାତାୟନ, ଦେଖୁ ଥରେ ଆଖି
ମୁଖ ତୋର, ଧନ୍ୟ ହୁଏ ମୁହିଁ ନିରିମାଖୀ ।
ଉଠ ଲକ୍ଷ୍ମୀ, କହ କଥା– (ନୀରବତା)
ଏତେ ଡାକେ ତା'ର
ଭାଙ୍ଗୁନାହିଁ ନିଦ ଆଜି ! ସାମାନ୍ୟ ପ୍ରହାର
କନକ-ବେଣୁରେ ଦେଲେ ବାତାୟନ ପରେ
ଅନ୍ୟ ଦିନେ, ରାଜପଥେ ଠିଆହୁଏ ଖରେ,
ଆଜି ଏ କି ବିଡ଼ମ୍ବନା ?—ଲକ୍ଷ୍ମୀ ସାଥୀ ମୋର,
ଏକମାତ୍ର ସାଥୀ ଗ୍ରାମେ,— ଏକମାତ୍ର ଡୋର
ଏ ପ୍ରାଣର ଜାଣୁନି କି ଏଇ ଅଭିମାନ
ଦିଏ କେତେ ବ୍ୟଥା ମତେ ? ଦେଲି ମୋର ରାଣ,
ଆସ ସଖି, ଉଠି ଦାଣ୍ଡେ (ନୀରବତା)
କର ଯୋଡ଼ିକରି
ଡାକେ ପୁଣି ଲକ୍ଷ୍ମୀ, ମତେ କହ ଥରେ କଥା, (ନୀରବତା)
ଥାଅ ଲକ୍ଷ୍ମୀ, ଗର୍ବେ ତବ ଉଚ୍ଚ ଥାଉ ମଥା,
ଯାଏ ମୁହିଁ ନିଜ ପୁରେ । (ଗମନୋଦ୍ୟତ)

ଲକ୍ଷ୍ମୀ : (ସହସା ବାତାୟନ ଖୋଲି)
ଯାଅ ଧୂର୍ତ୍ତ ଶଠ !
ଲୋଡ଼ା ନାହିଁ ସାଥି ତବ ନିପଟ କପଟ !
ତୁମ ସଙ୍ଗ ପାଇ ମୋର ଗ୍ରାମେ ଅପବାଦ
ଧରି ନୁହେଁ, ଦିନୁଦିନ ନାନା ପରମାଦ
ଘଟାଇ, ନିୟତ ମତେ ବୁଡ଼ାଇ ଲଜ୍ଜାରେ
ଅବସର ରଖି ନାହଁ ମୋ ପାଇଁ ସଂସାରେ
ମୁଣ୍ଡ ଟେକି କାହା ଆଗେ କହିବାକୁ କଥା ।
ତୁମଲାଗି, ତୁମଲାଗି ଏତେ ହଟହଟା
ଭୋଗିବାକୁ ହେଲା ମତେ ! କରେ ମୁଁ ଜୁହାର
ଏବେ ତବ ସ୍ନେହେ ଧୂର୍ତ୍ତ ! ଏ ସାଙ୍ଗ ବିହାର
ଲୋଡ଼ା ନାହିଁ ମୋର ଆଉ ।

ଦେବତା : (ଫେରି)
ଅଭିମାନ ପରେ
ଏତେ ପୁଣି ଅପମାନ ! ତୋ' ଚରଣ ତଳେ
କିବା ଅପରାଧ ସଖି, କରିଛି କହ ତ
ଭୋଗିବାକୁ ଏ ଲାଞ୍ଛନା ? ସାତ ଶତ୍ରୁବତ
ଫେରାଇଦେଉଛୁ ମତେ ଦ୍ୱାରଦେଶୁ ତବ
ଧିକ୍କାରି ମୋ ସଙ୍ଗ-ସ୍ପର୍ଶ ! ନୂଆ ଅନୁଭବ
କି ପାଇଁ ମୋ ପ୍ରଣୟର, 'ଶଠ' ବୋଲି ମତେ
କହିବାକୁ ଥିଲା ଆଜି ? ହାୟ, ସଖି , ସତେ
ସଂଶୟ କି ହେଲା ପୁଣି ଚିତ୍ତେ ଆଜି ସରି,
ବୁଝିବାକୁ ଏ ଜନର ହୃଦୟ କିପରି
ଏକାନ୍ତ ଆଶ୍ରୟ ଖୋଜି ଯେ ଚରଣ ତଳେ
ମାଗିଛି ସେନେହ ତବ ?

ଲକ୍ଷ୍ମୀ : ସ୍ନେହ ଯେହୁ କରେ
ସେ କି ଧୂର୍ତ୍ତ, ସ୍ନେହୀ ଜନେ ଦିଏ ଅପମାନ
ଏତେ ଲୋକ ଆଖି ଆଗେ ? ମରଣ ସମାନ
ଲାଞ୍ଛନା ସେଦିନ ଦେଇ ମୁଦ୍ରିକାର ଲାଗି
କେଉଁ ମୁଖେ ଆସିଅଛ ଶଠ ଅନୁରାଗୀ,
ମାଗିବାକୁ ପ୍ରେମ ମୋର ? ନେଇଛ ମୁଦ୍ରିକା,
ଆଉ କିସ ଅଛି ପୁଣି ଯାଚନା ଅଧିକା
ମୋଠାରୁ ହେ ନଟଶ୍ରେଷ୍ଠ ? ଯାଅ ଚାଲି ତ୍ୱରା,
ପାଟି ଶୁଣି ନନା-ବୋଉ –

ଦେବତା : ଏସନ ମୁଖରା
କିପାଁ ହୁଅ ସଖି, ଆଜି ? ପାସୋରି କି ଯାଅ
ମୁହିଁ ସେହି ଶ୍ୟାମ ତବ ? ବୃଥା ଏତେ ଦାହ
ପ୍ରାଣେ ମୋର ଦିଅ କିପାଁ ସାମାନ୍ୟ କଥାରେ,
ସ୍ନେହ ନିକି ଜାଣେ ନାହିଁ କ୍ଷମାକରିବାରେ ?
ମୋର ସାଙ୍ଗ ଲାଗି ବଂଧୁ ବହୁ ଅପମାନ
ଲଭିଲଣି । ମୁହିଁ ଜାଣେ ମୁଁ ତା'ର ନିଦାନ ।
ଶେଷବାର କ୍ଷମାକର ।

ଲକ୍ଷ୍ମୀ : କ୍ଷମା ନାହିଁ ଜାଣେ ।
ରଖ ତବ କୂଟ କଥା ଚାଟୁ ଗୁଣଗାନେ
ଭୁଲାଇ ଏ ବାଳିକାରେ ଏତେ ଦିନ ହରି,

କପଟପ୍ରଣୟ-ମୋହେ ବୁଦ୍ଧି ଅନ୍ଧକରି
ରଖିଥିଲ ଏତେ କାଳ, ଏବେ ମୁଁ ସକଳ
ବୁଝିଲିଣି ଆଚ୍ଛା କରି ।
ଧିକ ଏ ଚପଳ
ମନ ମୋର ! ଜାଣି ଜାଣି ଯାଙ୍କ କପଟତା
ଧାଉଁଥିଲି ପଛେ ଯାହା; ଏ ମରମ-କଥା
କହିଲି ଯା' ବିଶ୍ୱାସେ ମୁଁ ଏ ଶଠ ଜନରେ
ଏ ପ୍ରାଣର ପ୍ରିୟତମ ଭାବିଣ ମନରେ
ସେ ଲାଗି ସରମଭରେ ନଇଁଆସେ ମଥା !
ସେ ବିଅର୍ଥ କଥା
ଭାବି ବା କି ଲାଭ ଆଉ ?
ଯାଅ ଏବେ ଫେରି
ନିଦ୍ରା ଯାଏ ମୁହିଁ ସୁଖେ, ହେଲେ ପୁଣି ଡେରି
ଶେଯ ଛାଡ଼ୁଁ କାଲି ପ୍ରାତେ କହି ନାନାକଥା
ଗ୍ରାମ-ନାରୀ ମୋର ନାମେ ଲଗାଇବେ ଅଠା ।
ତୁମ ଲାଗି ମୁଖ-ଲାଜ ମାରିବାକୁ ମୁଖେ
ନାହିଁ ଆଉ ଅଭିଳାଷ । ମୁହିଁ ମୋର ଦୁଃଖେ
ରହେ ଗୃହେ । ତୁମେ ତୁମ ମନ୍ଦିରରେ ରହି
ପାଉଥାଅ ରାଜ-ପୂଜା ।

ଦେବତା : ଆଚ୍ଛା, ତେବେ ସହି,
ଯାଏ ମୁହଁ ନିଜ ପୁରେ । ନିଦ୍ରା ଯାଅ ସୁଖେ
ନିଶ୍ଚିନ୍ତେ ଆପଣା ଶେଯେ । ଯାଉଛି ମୁଁ ପୁରେ,
ମୋ ଲାଗି ଯା' ଅପବାଦ ରହୁ ଏବେ ଦୂରେ ।
ଏଇ ତେବେ ହେଲା ଶେଷ ?

ଲକ୍ଷ୍ମୀ : ହେଲା ଅବା ଶେଷ,–
ନାହିଁ ତହିଁ ମୋର କିଛି ଆପତ୍ତି ବିଶେଷ ।
ଯୁବତୀ ମୁଁ, ଅଛି ମୋର କୁଳ ପୁଣି କୁଳମାନ,
ଦେବତା ଜାଣିବ କେହ୍ନେ କିବା ଅପମାନ
ଲାଗେ ମତେ । ଥର ଥର ପାଇ ଗୁରୁ ଲାଜ
ମୁଣ୍ଡ ଟେକି ଚାଲେ ଯାହା, ରମଣୀ-ସମାଜ
ଆଚମ୍ବିତ ହୁଏ ଭାବି । ତୁମେ ନଟବର
ନିଜ ସୁଖ ପାଇଁ ନଟ ରଚୁଛ ମାତର ।

ସେ ନଟରେ ମିଶି ଲାଜ ନ ପାରିବି ସହି,
ଯାଅ ତୁମେ, ମୋ ଦିନ ମୋ ଦୁଃଖେ ଯାଉ ବହି ।

[ଦେବତା ଆଉ କିଛି ନ କହି ମୁଖ ଫେରାଇ ଧୀରେ ଧୀରେ ବନ ମଧ୍ୟରେ ଲୁଚିଗଲେ । ଲକ୍ଷ୍ମୀ ବାତାୟନ ଦେଇ ଚକିତ ନେତ୍ରରେ ସେଇ ଅନ୍ଧାରଆଡ଼କୁ ଚାହିଁରହିଲା ।]

ଲକ୍ଷ୍ମୀ : ଚାଲିଗଲେ ସତେ !
ସତେ ଚାଲି ସେ ଯେ ଗଲେ !
ଲେଉଟାଇ ପୁଣି ତାଙ୍କୁ ଆଣେ କେଉଁ ଛଳେ ?
ସେଦିନର ଅପମାନ ଲାଗି ଦୁଇ କଥା
ଶୁଣାଇ ନୁଆଇଁଥା'ନ୍ତି ସିନା ତାଙ୍କ ମଥା ।
କିଛି ଯେ ନ କହି ମାନେ ଚାଲିଗଲେ ସତେ !
ଆଉ କି ଆସିବେ ନାହିଁ ? ଭାବିଲେ କି ମତେ
ସତ ବୋଲି ? ସତେ କ'ଣ ଶେଷହେଲା ସବୁ,
ତ୍ୟକ୍ତ ହେଲି ସତେ ତାଙ୍କ ପ୍ରଣୟ-ଗରବୁଁ ?
ଯାଏଁ ଘରୁ, —ଧାଇଁ, ପଥ କରେ ଓଗାଳିବି ।
ଯିବି ? ଯିବି ? —ନାଇଁ ଲୋ ମା, ବାଜେ ଡିବିଡିବି
ଗ୍ରାମଯାକ କଥା ମୋର ହୀରାମୁଦିଲାଗି,
ଆଜି ପୁଣି ଘରୁ ଗଲେ କେ ଜାଣି ଅଭାଗୀ—
ଭାଗ୍ୟରେ କି ଲେଖା ଥିବ ?
ଡାକେଁ ତେବେ ଥରେ,
ଲୁଚିଥିବେ କେଜାଣି ବା କେଉଁ ବୃକ୍ଷତଳେ,
ବୁଝିବାକୁ ମନ ମୋର । ଡାକେଁ ତେବେ—
(ଅନୁଚ୍ଚ ସ୍ୱରରେ) ସାଥି !
ବଂଧୁ ମୋର, ଦୋଷ ସବୁ ମାଗେ ମୁଣ୍ଡପାତି;
ଫେର ଥରେ, ଶୁଣ ଥରେ; ଦିଅ ଥରେ କ୍ଷମା,
ହେ ସୁନ୍ଦର, ଆଉ ଥରେ କର ପରିକ୍ରମା ।
ଶୁଣ ଶୁଣ, ଫେରି ଶୁଣ, ଆସ ଆଉ ଥରେ
ଶ୍ୟାମ ମୋର, ସାଥି ମୋର !
ମାଆଲୋ ପଥରେ
ଯିବା-ଜନ ଯଦି ଶୁଣେ, ବୁଡ଼ିବ ମୋ ଭେଳା,—
ନ ଡାକିବି ଆଉ ପୁଣି । ଯାହା ଅବହେଳା
ଦେଲି ତାଙ୍କୁ ସେଥିରେ ସେ ଫେରିବେ କିପରି ?

ଶୁଣିବେ ବା କିପାଁ ଡାକ ?

(ବସିପଡ଼ି)

ସତେ ମୁଁ କି କଲି !
କଅଣ ନ କଲି ହାୟ, ରାକ୍ଷସୀ ମୁଁ ସତେ !
ରାଜା ମୋର ଆସିଥିଲେ ଦେଖିବାକୁ ମତେ
ଯାଚି ତାଙ୍କ ସ୍ନେହ ଦୟା ପଦତଳେ ମମ,
ଇତର ପରି ମୁଁ ତାଙ୍କୁ ଦିଆଇ ସରମ
ଫେରାଇଲି ଘୃଣା କରି ! ମୁଖେ ସିନା କଥା
ନ କହିଲେ ଶ୍ୟାମବନ୍ଧୁ କେତେ ସତେ ବ୍ୟଥା
ଲାଗିଲୋ ନ ଥିବ ପ୍ରାଣେ ମୋର ଏ ଆଚାରେ !
କି କଲି, କି କଲି ମୁଁ ଲୋ ! ଜଗତସଂସାରେ
ଏକମାତ୍ର ସାଥୀ ମୋର, ପ୍ରାଣବଂଧୁ ମମ,
ତାଙ୍କୁ ମୁଁ ଫେରାଇଦେଲି, ଏଡ଼ିକି ନିର୍ମ୍ମମ !
କାହା ପାଶେ ଏବେ ଯିବି, ପଶିବି ଶରଣ,
କେ ଦେବ ସେନେହ ମତେ ? କାହାର ଚରଣ
ଧରିଲେ କେ ଦେବ ମତେ ଶ୍ୟାମର ସେନେହ,
ପାଇବି କାହିଁ ବା କହ ତାହା ସମ ପ୍ରିୟ,
ପ୍ରେମମୟ, ଅନ୍ତର୍ଯ୍ୟାମୀ ।
ସେଦିନ ନିଶାରେ
ଦେଖିଲି ମୋଲାଗି ଧାଇଁପଡ଼ି କେଉଁଠାରେ
ଅଙ୍ଗୁ ବହେ ରକ୍ତଧାର ! ପୋଛିଲି ପଣତେ,
ଚାହିଁ ସ୍ୱେଦ-ସିକ୍ତ ମୁଖେ କହିଲି ମୁଁ, "ସତେ
କହ ମୋତେ କିବା ଛାର ସଙ୍ଗ ଲାଗି ମୋର
କୋମଳ ଏ ଅଙ୍ଗେ କିପାଁ ବ୍ୟଥା ଏତେ ଘୋର
ଦିଅ ତୁମେ ! କିପାଁ ଏତେ ପଥ-ଶ୍ରମ କହ,
ମୋର ଛାର ଲାଗି କିପାଁ ଏତେ ଦୁଃଖ ସହ ?"
ଭାଷିଲେ ହସି ସେ ଶ୍ୟାମ, "କହିବି କେସନେ
ତୁମେ ମୋର କିବା ଲକ୍ଷ୍ମୀ ? ହୃଦୟ-ଆସନେ
ବସିଛ ଧରଣୀ ମାଡ଼ି । ଧ୍ୟାନ ସଦା ମମ
କେମନ୍ତେ ଏ ପ୍ରାଣ-ଧାରା ସ୍ରୋତେ ସ୍ରୋତ ସମ
ତୁମରି ପରାଣ ସାଥେ ଦିଅନ୍ତି ମିଶାଇ
ଅଣୁ ପରମାଣୁ ଧରି । ତେଣୁ ଥାଏ ଧାଇଁ

ଚିତ୍ତ ମୋର ତବ ପାଶେ ସଖି, ଅହରହ
ବିଚ୍ଛେଦେ ଭୋଗଇ ହିୟା ବେଦନା ଦୁଃସହ ।
ନିଖିଳ ମୋ ପ୍ରାଣ ଇଚ୍ଛେ ତୋ ସାଥେ ମିଳନ
ଦିବସର ପ୍ରତି କ୍ଷଣେ । ବିରହ-କଷଣ
ବଡ଼ ଲାଗେ ପ୍ରାଣେ ସଖି ! ସେନେହ ଯାଚନା
ଲାଗି ମୋର ଅପମାନେ ନ ଥାଏ ଶୋଚନା ।
ନିତ୍ୟ ମୁହିଁ ମାଗି ବୁଲେ ଭିକ୍ଷାପାତ୍ର ଧରି
ଏ ସଂସାର ଦ୍ୱାରେ ଦ୍ୱାରେ, କ୍ଷୁଧାତୁର ପରି,
ସେନେହର ଭିକ୍ଷାଞ୍ଜଳି କେ ବା ଦିଏ ମତେ ?
କେତେ ରସବନ୍ତ ଛନ୍ତି ତୋ' ପରି ଜଗତେ ?
ଦେଲେ, କେତେ ବିନିମୟେ ମାଗିଥା'ନ୍ତି କିଛି,
ସେ ସ୍ନେହେ କି ଆତ୍ମା ପୂରେ ? ତା କି ମୁଁ ମାଗିଛି ?
ତୁମେ ଲକ୍ଷ୍ମୀ ମୋର ଲାଗି ସ୍ନେହ କର ମତେ,
କି ସେ ସ୍ନେହ—ଧନ ମୋର, କହିବି କେମନ୍ତେ ?
ଧୂପ ଦୀପେ କରୁଛନ୍ତି ପୂଜା ଶତଶତ,
ଏ ତୋ ସ୍ନେହ କାହିଁ ତହିଁ କରିବ ତ୍ରୁପତ
ଆତ୍ମା ମୋର ? ତେଣୁ ଲକ୍ଷ୍ମୀ-ରାଣି, ସ୍ନେହ ତବ
ସକଳ-ଗୌରବେ ମୋର ପ୍ରଧାନ ଗୌରବ ।''
''ଗୋଟି ଗୋଟି ମନେପଡ଼େ ସେଦିନର କଥା
ରାକ୍ଷସୀ ମୁଁ ସେ ସ୍ନେହର ଭକ୍ଷିଲି ବା ମଥା !
ବଂଧୁ ମୋର, ସଖା ମୋର, କ୍ଷମା କର ମତେ,
ଲେଉଟ ଦେଖିବି ପୁଣି ମୋ' ଅନ୍ତର-ଗତେ
ସେଇ ବଂଧୁ, ସେଇ ଶ୍ୟାମ ! ତୁମଛଡ଼ା ହରି
କାହା ସଙ୍ଗ ଦେଇ ନାହିଁ ଆନନ୍ଦ ଏପରି
ଲଭେ ଯାହା ତବ ସାଥେ ପରାଣ ମୋହର !
ସେ ଆନନ୍ଦ, ସେଇ ସୁଖ ଲାଗି ନଟବର,
ତୁମ ଲାଗି, ତୁମଠାରେ ଢାଳିଅଛି ପ୍ରାଣ,
ଏ ପ୍ରାଣେ କି ସ୍ନେହ ବଂଧୁ, ତୁମେ ଖାଲି ଜାଣ !
ସକଳ ଏ ଅପବାଦେ, ଅପମାନେ ହରି,
ନାହିଁ ମୋର ହୃଦ ତବ ପଦ ପରିହରି !
ତୁମର ସଙ୍କେତେ ନିତି ତେଜି ପିତାମାତା,
ନିଶୀଥେ ଛାଡ଼ିଛି ଘର ଶୁଣିବାକୁ କଥା

ତୁମର ମଧୁର ମୁଖୁ । ଫେରିଲେ ଭବନେ
ସକଳ କରମେ ଶ୍ୟାମ, ଭାବେ ଅନୁକ୍ଷଣେ
ତୁମରି ସୁନ୍ଦର ଛବି; ଅନ୍ତର ନିରତ
ଡାକୁଥାଏ, ହେ ଦେବତା, ସଖା ହେ ମହତ,
ସବୁଠାରୁ ଆପଣାର ତୁମେ ମୋର ଶ୍ୟାମ,
ଆଖି ତୃପ୍ତ ମୋର ଚାହିଁ ରୂପ ଅଭିରାମ,
ଆତ୍ମା ମୋର ତୃପ୍ତ ପାଇ ସ୍ନେହଧାରା ତବ,
ଇନ୍ଦ୍ରିୟ ତୃପତ ପାଇ ତବ ଅନୁଭବ ।
ଏଡ଼େକ ଗୌରବେ ପ୍ରଭୁ ଏଡ଼େକ ଆଦରେ
ଅଭାଗୀର ମୁଣ୍ଡ ନଇଁଯାଏ ସରମରେ,
ସଖା ତୁମେ, ବଂଧୁ ତୁମେ, ପ୍ରଭୁ ତୁମେ ମୋରି,
ତୁମେ ଜାଣ କିପାଇଁ ହେ ଲଗାଇଛ ଡୋରି ।''
ଏକାନ୍ତ ଭରସା ରଖି ପ୍ରଣୟରେ ତବ
ସହିଛି ସକଳ ଅପବାଦ ଅଗୌରବ ।
କ୍ଷମାକର ପ୍ରଭୁ, ଆଜି ଏ ରାତିର ଦୋଷ
ସେଇ ଲକ୍ଷ୍ମୀ·ଡାକେ ମୁହିଁ, ମୁଞ୍ଚ ମନୁ ରୋଷ ।
(ଉଠି, ପୁଣି ବାତାୟନ ଦେଇ କିଛିକ୍ଷଣ ନୀରବରେ ଚାହିଁ)
ନାହିଁ ସେ ଆସିବେ ଆଉ ! ନାହିଁ ସେ ଫେରିବେ,
ଆଦରେ ନୟନ ଚିପି ନାହିଁ ସେ ଧରିବେ !
କାହା ମୁଖ ଚାହିଁ ଆଉ ମରମର ବାଣୀ
ଏକାନ୍ତ ବିଶ୍ୱାସେ ମୁହିଁ କହିବି ବଖାଣି ?
ଅଧରେ ନ ଫୁଟୁ କେବା ମରମର କଥା,
ଜାଣିବ, ବୁଝିବ ମୋର ମରମର ବ୍ୟଥା ?
କିଏ ଆଉ ମୋର ଛାର-ଚୁଲି-ସ୍ନେହଲାଗି
ଆକୁଳେ ଧାଇଁବ ରାତେ ହୋଇ ଅନୁରାଗୀ ?
କିବା ସ୍ନେହ ହରାଇଲି, କି ଅବା ସଙ୍ଗାତ !
ଦେବେ କି ତା ମତେ ମୋର ଜ୍ଞାତି, ପିତା, ମାତ ?
(ପୁଣି ବସିପଡ଼ି, ହାତ ଯୋଡ଼ି କରି)
ଡାକେ ଶେଷଥର ଶ୍ୟାମ, ପୂର୍ବ ସ୍ନେହନାମେ ।
କ୍ଷମା କର, ଫେର ପୁଣି । ଏ ନିର୍ଦ୍ଦୟ ଗ୍ରାମେ
ତୁମରି ଚରଣେ ବଂଧୁ କରିଣ ଭରସା
ସହିଥିଲି ଅପବାଦ । ଏବେ ଲୋକହସା

କରିଲେ ହେ, ପରିହାର କରି ପଦତଳୁ,
କାହା ନାମ ଡାକି କହ ମୋର ଦୁଃଖ ଗରୁ
କହିବି ନୟନ ଲୁହେ ତିନ୍ତାଇ ଉରସ ?
କେ ଶୁଣିବ ମୋ ବିପାକ ? ପରାଣେ ପରଶ
ଲାଗିବ କାହାର ଏଇ ଅଭାଗୀର ଲାଗି ?
ତ୍ୟଜ ନାହିଁ, ତ୍ୟଜ ନାହିଁ, ଆହେ ଅନୁରାଗୀ,
ଡାକେ ସେହି ଲକ୍ଷ୍ମୀ ତବ । ଦେବା-ଅଧିକାରେ
ଗର୍ବ ବହି ସିନା ମୁହିଁ କହିଲି ଧିକ୍‌କାରେ,
ନିଜର କି ଅଧିକାର ଥିଲା ନଟବର ?
ସ୍ନେହ ଯୋଗୁ ହେଲା ସବୁ । ସ୍ନେହେ କରି ବଡ଼
ଅଭାଗୀରେ ଉଠାଇଲ, ନିଜର ସମାନେ,
ଭୁଲାଇଲ ଜ୍ଞାନ ତା'ର ଆଦର ସନ୍‌ମାନେ,
ତେଣୁ ତବ ଅବମାନେ ହେଲା ତା' ସାହସ,
ଅଜ୍ଞାନେ, ସେନେହେ ବଂଧୁ କଲି ଅପଯଶ,—
ତା'ର କିହେ ନାହିଁ କ୍ଷମା ? କିପାଁ ପ୍ରେମ ଢାଳି,
ଏ ହୃଦୟେ ତବ ପ୍ରେମ-ପରଶ ସଂଚାରି,
କଲ ତେବେ ମୋହମୁଗ୍‌ଧ ଏଇ ବାଳିକାରେ
କିପାଇଁ ପ୍ରଣୟ-ମନ୍ତ୍ର ଝାଡ଼ି ମୋହଠାରେ
ଉଠାଇଲ ସ୍ନେହ ମମ ? ଜାଣି ମୁଁ ନ ଥିଲି
ସ୍ନେହ କିବା; ତୁମେ ଶ୍ୟାମ, ବୁକୁ ମୋର ଚିରି
ଫିଟାଇଲ ଉତ୍ସ ତା'ର । ଭୁଲିଲି ମୁଁ ହେଲେ
ଦେବତା ବୋଲି ମୁଁ ଶ୍ୟାମ, ତୁମରେ ହେ ବେଳେ;
ସାଥୀ ପରି ତୁମ ସାଥେ କଲି ରଙ୍ଗରସ,
କେମନ୍ତେ ଜାଣିବି କହ, ବାଳୁତ ବୟସ !
ସେଇ ଜ୍ଞାନେ ଦେଲି ଆଜି ଧିକ୍‌କାର ତୁମରେ
ଅବଜ୍ଞା ନ ଥିଲା କିଛି ତବ ପଦତଳେ ।
କ୍ଷମାକର ପ୍ରଭୁ, ଏବେ; ହୃଦୟ ମେଲାଇ
କହିଲି ଯା' ହୃଦ-କଥା । ପୁଣି ହେ ଗୋଟାଇ
ଭୂମିତଳୁ ରଖ ମତେ ପଦ ପରେ ତବ ।

(ଲକ୍ଷ୍ମୀ, ଦେବତାର ଆଗମନ ପାଇଁ ପୁଣି ଠିଆହୋଇ ବାତାୟନ ଦେଇ ବନ ଆଡ଼କୁ ଅନାଇଥିଲା । ଦେବତା ଆସିଲେ ନାହିଁ । ଲକ୍ଷ୍ମୀ ଶଯ୍ୟା ଉପରେ ଅବସନ୍ନ ହୋଇ ପଡ଼ିଯାଇ କାନ୍ଦିବାକୁ ଲାଗିଲା ।)

ମଲି ! ମଲି ! ମଲି ଏବେ ନନା ବୋଉ ମୋର,
ବକ୍ଷ ମୋର ଯାଏ ଫାଟି, ବେଦନା ମୋ ଘୋର !
ଆସିବନି ଧୂର୍ତ୍ତ, ଶଠ, ବୁଝିଲାନି ସ୍ନେହ,
ଲଜ୍ଜାରେ, ସରମେ ମୋର ଜଳିଯାଏ ଦେହ !
ଛୁଞ୍ଚି ବିଦ୍ଧ ହୁଏ ଯେହ୍ନେ, ସାରା ଦେହେ ମମ,
ସ୍ମରିଲେ ସେ ଦେବତାରେ ନିଠୁର, ନିର୍ମ୍ମମ !
ସ୍ନେହ ଦେଇ ଫିଙ୍ଗିଦେଲା ଶେଷେ ସେ ନିଠୁର,
କେମନ୍ତେ ସହିବି କହ ପରାଣ ଆତୁର ?
ବଂଧୁ ବୋଲି ଧରିଥିଲି, ଦେଲା ସେ ଫୋପାଡ଼ି
ନିରାଶ ସାଗର-ଜଳେ, ଧୂର୍ତ୍ତ ନ ବିଚାରି !
ଶଶୁର ଆସିବ ପୁଣି ଦୁଇଦିନ ପରେ,...
କାହିଁ ଯିବି ?– କାହିଁ ଯିବି ?—ବିଷ ଦିଅ କରେ
ବୋଉ ମୋର, ମରିଯିବା ଭଲ ଏ ଜୀବନୁ,
ସେଇ ଏକା ଉଦ୍ଧାରିବ ମତେ ଏ କଷଣୁ ।
ହେଉ ଅବା ଶେଷ ଏଥି—ଦିଏ ଚିପି ଗଳା
ଯାଏଁ ମରି ।

(ଦେବତା ସହସା ବାତାୟନ ପଥରେ ଦେଖାଦେଲେ ।)

ଦେବତା : ଲକ୍ଷ୍ମୀ ମୋର, ଲବଣି-କୋମଳା,
ନିର୍ଦ୍ଦୟ ନ ହୁଅ ରାଣି, ପୁଣି ଡାକେ ସଖି,
ଏଥର ଆସ ଗୋ ଦାଣ୍ଡେ, ମାନ ମୋର ରଖି ।
ଶେଷ ଯଦି ସ୍ନେହ ଆଜି, ଦିଅ ଶେଷ ଦେଖା,
ସେଥିପାଇଁ ଫେରି ପୁଣି କଲି ଗୋ ଅପେକ୍ଷା ।
ବିରହ ତମର ସଖି, ନ ପାରେ ମୁଁ ସହି । (ନୀରବତା)
ପୁଣି କିପାଁ ଦୁଃଖ ଦିଅ ଅବହେଳା ବହି,
ସ୍ମର ସଖି, ପୂର୍ବ ସ୍ନେହ । (ନୀରବତା)
ପୁଣି ଯିବି ପୁରେ
ଫେରି ମୋର ? କାଟିବି ଏ ରଜନୀ ଆତୁରେ ?
ସୁନ୍ଦର କି ଦିଶିବ ତା ସଖି, ତୋ ନୟନେ ?

ଲକ୍ଷ୍ମୀ : (ଗୃହ ଭିତରୁ, ଶଯ୍ୟା ଉପରେ ରହି)
ଆସିଛ ? ଆସିଛ ଫେରି ପୁଣି ମୋ ଭବନେ
ରଖିବାକୁ ମାନ ମୋର ? ଅବା ମୁଁ ସ୍ୱପନେ ।
କିଏ ତୁମେ ?

ଦେବତା : ଜାଣିନା କି ମୋ ମୁଖ ବଚନେ ?
ପର ପରି ଭାଷା କିପାଁ ?

ଲକ୍ଷ୍ମୀ : ପର ମୁହିଁ ସିନା !
ପର ଆପଣା ତ ଏଇ ପଡ଼ିଗଲା ଚିହ୍ନା
ସାମାନ୍ୟ କଥାରେ—

ଦେବତା : ଆହା କରିଲ ଧିକ୍କାର
ମିନତି ନ ଶୁଣି କଲ ଅଜସ୍ର ପ୍ରହାର—

ଲକ୍ଷ୍ମୀ : କ୍ଷମା କର, କ୍ଷମା କର, ପାଦ ଦୁଇ ଧରେ

ଦେବତା : କ୍ଷମା କି ନ କରି ଆସିଅଛି ଆଉ ଥରେ ?
ଉଠ ସଖି, ଦିଅ ହାତ—

(ଲକ୍ଷ୍ମୀ ଗୃହ ଭିତରୁ ହାତ ବଢାଇଦେଲା । ଦେବତା ବାତାୟନ ଦେଇ ସେଇ ହାତକୁ ଚିପି ଧରିଲେ ।)

ଦେବତା : ଓଦା କାହିଁପାଇଁ ?
କାନ୍ଦୁଥିଲ ?

ଲକ୍ଷ୍ମୀ : ଧିକ୍କାର ଯେ ଦେଲାକ ଫେରାଇ
ତୁମରେ, ନିଠୁର ତା'ର ଚକ୍ଷେ କାହିଁ ଜଳ ?
ଥାଉ ତାହା । କହ ମତେ ସୁନ୍ଦର, ଏଥର
କ୍ଷମା କି କରିଛ ସତେ ? ମୋ ଧିକ୍କାର ବାଣୀ
କେଡ଼େହେଁ କୋମଳ ବୁକେ ଯାଇଥିବ ହାଣି;
କ୍ଷମା ତା'ର କାହିଁ ପୁଣି ? ତଥାପି ମୁଁ ମାଗେ
ତୁମର ହୃଦୟ ଗୁଣେ ।

ଦେବତା : ଗାଢ ଅନୁରାଗେ
ପ୍ରଣୟୀ-ଧିକ୍କାର ଲାଗେ ମଧୁର, ସଜନି !
ବୁଝିଲି ପ୍ରଥମେ ସଖି, ଆଜି ଏ ରଜନୀ,
ମୋ'ଠାରେ ଯେ ପ୍ରେମ ତବ, ଶକ୍ତି ତା'ର କିବା,
ଗ୍ରହଣ ଯେ କରେ ସଖି, ତାହାର ଫିଙ୍ଗିବା
ଅଧିକାର ସିନା ଥାଏ ? ନ ଥିଲେ ପ୍ରଣୟ,
ମୁଁ କିପାଁ ଆସନ୍ତି ଏଥି ହୋଇଣ ଅଥୟ,
ତୁମେ ବା କିପାଇଁ—

ଲକ୍ଷ୍ମୀ : ଆଉ ଲଜ୍ଜା ନାହିଁ ଦିଅ ।
ମୋ ଧିକ୍କାର ପାଇ ପୁଣି ଆସିଛ ଯା' ପ୍ରିୟ,
ସେଇ ଲାଜେ ଯାଏଁ ମରି ।

ଦେବତା : ନ ଆସି କିପରି
ରହନ୍ତି ମୁଁ ସଖି, କହ ? ଯାଏଁ ମୁହିଁ ମରି
ତୁମର ମିଳନ ବିନା । ଧିକ୍‌କାର ବା କିବା
ବାଧା ତହିଁ ? ଜାଣିଛି ମୁଁ ଏ ବକ୍ଷେ ସହିବା
ବଂଧୁର ମୋ' ପଦାଘାତ ।
ପାହେ ଯେ ରଜନୀ,
ଉଠ ଏବେ, ଆସ ଦାଣ୍ଡେ ବହନ, ସଜନି,
ଚାହେଁ ମୁଖେ ଭଲେ ଥରେ ।

ଲକ୍ଷ୍ମୀ : ଯିବି, ହାତ ଛାଡ଼ ।
ଶ୍ରୀବତ୍ସ-ଲାଞ୍ଛନ ବୋଲି ଡାକ ନାମ ଯା'ର,
ତାକୁ ମୁଁ ନିଷ୍ଠୁର ବୋଲି କହୁଥିଲି ସତେ,
ଅହଙ୍କାରେ ଏ ବଂଧୁରେ ଜାଣିବି କେମନ୍ତେ !
(ପଟପତନ)

## [ ଚାରି ]

[ସୁନାରୀ ଘର । ଜନୈକା ପୂଜକ-ପତ୍ନୀ ସେଇବାଟେ ଯାଉଯାଉ ସୁନାରିଣୀଙ୍କୁ ଡାକିବାକୁ ଲାଗିଲେ ।]

ପୂଜକ-ପତ୍ନୀ : କବାଟ ଫିଟାଲୋ ବୋହୂ, —ଆଗୋ ଜେମା-ବୋଉ— (ନୀରବତା)
ଅଛ ନା ମଲଣି ସତେ । ଫୁଲସଞ୍ଜ ନୋହୂ
ଶେଯପାରି ଶୋଇଲଣି । କି ଭାଗ୍ୟ ତୁମର !

ସୁନାରିଣୀ : (କବାଟ ଫିଟାଇ)
ନେତ-ବୋଉ, ଆସ ଆସ, ଭଲ ତ ଖବର ?
ଏତେ ଦିନେ ଆଜି କିପାଁ ମନେପଡ଼ିଗଲି
ଆସିଲ ବା ଏ ବାଟରେ ଆଜି ଭ୍ରମ କରି !
କି ଖବର ? ଆସ ଘରେ—

ପୂଜକ-ପତ୍ନୀ : ବସିବାକୁ ଡର
ମୋର ପୁଣି ଅଛି ଆଉ ? ଏତେ ବଡ଼ ଘର
ଦେଖିବାକୁ କେହି ନାହିଁ, ବାଟେ ଯାଉ ଯାଉ
ଭାବିଲି ମୁଁ ଆସିବି କି ନ ଆସିବି ଆଉ,
ଜେମା-ମା'କୁ ଦେଖିଯାଏଁ । ଘରଲୋକ ଜାଣ
ସବୁବେଳେ ଦେଉଳରେ । ଦେଲେ ଯେତେ ରାଣ
ରାତି ନୋହୁଁ ଫେରିବାକୁ, ହେଲା ନାହିଁ କିଛି,

ତା' ପରେ ସେ ମାହାପାତ୍ର-ଝିଅକଥା, —ଛି ! ଛି !
ତା' ଯୋଗୁଁ ତ ସାରା ହେଲେ ପଣ୍ଡା-ପଡ଼ିହାରୀ !

ସୁନାରିଣୀ : ଆଉ କିଛି ଘଟିଲା କି ? ନନା ତା' ତିଆରି
କହିବାରୁ ଆଉ ପରା ବନ୍ଦ ସବୁ କଥା ?

ପୂଜକ-ପତ୍ନୀ : ଆଜି ପରା ଲକ୍ଷ୍ମୀ ଦେହେ ଦେବତାର କଣ୍ଠା
ଦେଖିଛନ୍ତି ଲୋକେ ପୁଣି—

ସୁନାରିଣୀ : ଆଚମ୍ବିତ ସତେ !

ପୂଜକ-ପତ୍ନୀ : କାହା ଗୋପ୍ୟକଥା କିଏ ଜାଣିବ କେମନ୍ତେ ?
କହୁଛନ୍ତି ମହାପାତ୍ର ମନ୍ତ୍ରଯନ୍ତ୍ର କରି
ବନ୍ଧନ କରିଛି ଦିଅଁ । ଦିଅଁ ତେଣୁକରି
ଆସୁଛନ୍ତି ଘରେ ତା'ର । ନ ହେଲେ କାହିଁକି
ଏତେ ଝିଅ ଥାଉ ଦିଅଁ ତା ଝିଅ ପାଇଁକି
ଧାଇଁଥା'ନ୍ତେ ? ସେଇଠି କି ମୋ ପିଲା ନ ଥାଇ ?

ସୁନାରିଣୀ : କେଜାଣି ମା ! କାହା କଥା କିଏ ଜାଣିଥାଇ !
ଲକ୍ଷ୍ମୀରେ ଦେଖିଲେ କିନ୍ତୁ ପେଟ ପୂରିଯାଏ
ଯାହା କହ, ନେତ-ବୋଉ । ସେବେ ଆସୁଥାଏ
ଆମ ଘରେ ସବୁବେଳେ । ରୂପରେ ତାହାର
ଅଗଣାରେ ଫୁଲ ଫୁଟେ । ଜେମା-ବାପାଙ୍କର
ସବୁବେଳେ ବଡ଼ ମନ, ନାନା ଅଳଙ୍କାର
ଗଢ଼ି ତା'ର ମନ ଜାଣି, ରୂପ ଲାଗି ତା'ର
ଦେବାକୁ ପିନ୍ଧାଇ ତା'ରେ ।
କିବା ଗୁଣ ପୁଣି !
ଉଚବାଚ କଥା ନାହିଁ, ବଡ଼ ତୁନି ତୁନି
କଥା କହେ, —ତା' ତୁଣ୍ଡରେ ମିଠା·ଶୁଭେ କଥା,
ସବୁବେଳେ ଲାଜେ ଲାଜେ ପୋତିଥିବ ମଥା,—
ବଡ଼ ଲାଜକୁଳୀ ପିଲା ! ପର୍ବ-ପର୍ବାଣିରେ
ପିଠା-ପଣା ଯାହା କିଛି ଧରି ଥାଳିଟିରେ
ଦେଇଯିବ, ହସି ହସି 'ବୋଉ ଦେଲା' ବୋଲି ।
ଧନ୍ୟ ଗର୍ଭ-ଧାରୀ-ମାତା, ରଖିଥାଇ ତୋଳି
ମୁଣ୍ଡ'ପରେ ତାକୁ, —ସେ ତ ଯୋଗ୍ୟ ରଖିବାର;
ଏଭଳି ରତନ ଧରେ ଉଦର କାହାର ?
ତା'ର କିବା ଦୋଷ କହ ?

ପୂଜକ-ପତ୍ନୀ : କେ ଜାଣି ଲୋ ମାଆ,
ଲୋକତୁଣ୍ଡେ ବାଜୁଅଛି କଥା କାହିଁ କାହିଁ—
ଶୁଣାକଥା କହେ ସିନା ! କହୁଛନ୍ତି କେହି,
ଦୁଇ ମାସ ଗର୍ଭ ତା'ର—
ସୁନାରିଣୀ : ଛି ! ଛି ! କାନ ଦେଇ
ଏ କଥା ଶୁଣଲୋ କିଆଁ ? ଶୁଣିଲେ ଯେ ପାପ !
ଯା' ତୁଣ୍ଡୁ ଏ କଥା ଆସେ, ପଡୁ ଅଭିଶାପ
ତା' ମୁଣ୍ଡେ ଅକାଳ-ବେଳେ ।
ନେପଥ୍ୟେ : ଆହୋ, —ଶୁଣିଯାଆ !
ପୂଜକ-ପତ୍ନୀ : ଆସିଲେଣି ଘରଲୋକ, —ଯାଏଁ ମୁଁ, —ତୁ ଥାଆ ।
ସୁନାରିଣୀ : ଆଚ୍ଛା ହେଉ, —ଭୁଲିବନି, —ଆସୁଥିବ ନାନି !

(ପୂଜକ-ପତ୍ନୀର ପ୍ରସ୍ଥାନ)

(ସୁନାରୀର ପ୍ରବେଶ)

ଡେରି ଏତେ କିପାଁ କଲ ? ମଲା ଆଖିପାଣି...
ସୁନାରୀ : କଥା ହେଉଥିଲା ପରା ପୂଜକ ସଭାରେ,
ଦେଉଳରେ ରଖାହେବ ରାଧା-ପ୍ରତିମାରେ
ଚଞ୍ଚଳ ସୁନାରେ ଗଢି । ସେଇ କଥା ପାଇଁ
ହୋଇଥିଲା ଡକା ମତେ ।
ସୁନାରିଣୀ : ପ୍ରତିମା ନ ଥାଇ
ଏତେଦିନ ଗଲା ଚଳି, ଏବେ କି କାରଣେ
ଥାପିବେ ପ୍ରତିମା ପୁଣି ? ଦେବତା ସ୍ୱପନେ
ଜଣାଇଲେ କା'ରେ କିଛି ?
ସୁନାରୀ : ନାହିଁ, ନାହିଁ—ଏଇ
ସବୁ କଥା ଆମର ସେ ଲକ୍ଷ୍ମୀ କଥା ନେଇ ।
ଆଜି ପୁଣି ଦେବତାର କଷ୍ଟା ଦେଖାହେଲା
ଆମର ଲକ୍ଷ୍ମୀର ଅଙ୍ଗେ । ଦିଅଁ ସତେ ଦେଲା
ବଡ଼ କଷ୍ଟ ପିଲାଟିରେ । ନିର୍ଦ୍ଦୋଷ ପିଲାଟି,
ସେ କ'ଣ ଜାଣିବ ମାୟା ? ଅଙ୍ଗ ଦେଲେ କାଟି
ପଦେ ହେଲେ କଥା ତା'ର ତୁଣ୍ଡୁ ନ ଭାରିବ,
ସେ ପୁଣି କି ମନ୍ତ୍ର ଜାଣି ବନ୍ଧନେ ରଖିବ
ଦେବତାରେ ? ସବୁ ସେ ଲୋ ଖେଳା ଦେବତାର ।

ଘଟିବାର କିନ୍ତୁ ଏତେ କଥା ବାରବାର
ପୂଜକ ଭାବିଲେ ଆଜି,— ଏ ସାକ୍ଷିଗୋପାଳ
ବୃନ୍ଦାବନେ ଶ୍ରୀମତୀଙ୍କୁ କରି ପରିହାର,
ପାଗଳ ହେଲେଣି ଏଥି; ଲକ୍ଷ୍ମୀ ଅବା ଜାତ
ହୋଇଛି ଶ୍ରୀମତୀ-କଳା ଧରି; ପିତାମାତ
ତେଣୁ ତା'ର ଧନ୍ୟ ଧନ୍ୟ; ତେଣୁ ଦେବତାର
ଏତେ ପ୍ରୀତି ତାହାଠାରେ; ତେଣୁ ବାରବାର
ମନ୍ଦିର ତିଆଗି ଦିଅଁ ବିରହ-ବାଧିତ
ଲକ୍ଷ୍ମୀପାଶେ କରିଥା'ନ୍ତି ବିଜେ; ଆରାଧିତ
ହେଲେ ଯେତେ ଉପଚାରେ ମନ ନାହିଁ ଲାଗେ,
ପାଉଛନ୍ତି ରାଧା-ପ୍ରେମ ଲକ୍ଷ୍ମୀ-ଅନୁରାଗେ ।
ଏବେ ଏକ କଥା ହେଉ,—ଦେବ-ମୂର୍ତ୍ତି-ପାଶେ
ଶ୍ରୀମତୀ-ପ୍ରତିମା ଗଢ଼ା ହେଉ ତାଙ୍କ ଆଶେ,
ସଖୀ ଲଭି ତୁଷ୍ଟ ହେବେ ମନ୍ଦିର-ଦେବତା
ତୁଟିବ ବିରହ ତାଙ୍କ, ଶେଷ ହେବ କଥା ।
ପୂଜକମଣ୍ଡଳ ମତେ, ଏଇ ମନ କରି
ଡାକିଲେ, କହିଲେ ହେଉ ଆଜି କେଉଁପରି,
ଶୁଭାରମ୍ଭ କରିଦିଅ ରାଧା-ପ୍ରତିମାର ।
ସେଇକ୍ଷଣି ଫିଟାହେଲା ଦେଉଳ ଭଣ୍ଡାର,
ଅଣାହେଲା ସ୍ୱର୍ଣ୍ଣ-ପିଣ୍ଡ; ପୂଜା-ଉପଚାର
ନାନା ମନ୍ତ୍ରେ ପଣ୍ଡା-ପ୍ରତିହାରୀ କଲେ ତା'ର;
ତା'ପରେ ଫେରୁଛି ଏଇ ।

ସୁନାରିଣୀ : ଦେବତା ଗଢ଼ିବା
ବଡ଼ କଷ୍ଟ, ବଡ଼ ଦୋଷ । ମନ୍ତର ପଢ଼ିବା
ନୁହେଁ ତ ଏ,—କେ ଜାଣିବ କିସ ପୁଣି ଘଟେ,
ମଙ୍ଗିଲ କାହିଁକି ?

ସୁନାରୀ : ଧ୍ୟାନ ଦେବତା ନିକଟେ
ରଖି ମୁଁ ଲାଗିବି କାର୍ଯ୍ୟେ । ଇଙ୍ଗିତେ ତାଙ୍କରି
ଯାହା ହେବ । କି କରିବ ମୂର୍ଖ ମୋହପରି
ନିଜ ବଳେ ?

ସୁନାରିଣୀ : ଲକ୍ଷ୍ମୀ ମୋର କିପରି ଅଛି ସେ
ଜାଣ କିଛି ?

ସୁନାରୀ : ଜାଣେ,— ଏଇ ମାତ୍ରକ ନିମିଷେ,
ଶୁଣିଲି ମୁଁ ମୂର୍ଚ୍ଛା ହୋଇ ପଡ଼ିଲା କାହିଁକି,—
ମହାପାତ୍ର ବ୍ୟସ୍ତ ଭାରି ।

ସୁନାରିଣୀ : ମୋ ଲକ୍ଷ୍ମୀ ପାଇଁକି
ଏ କଥା ଶୁଣି ମୋ ବୁକୁ ଯାଉଅଛି ଥରି,
କେଜାଣି କି ହେବ ସତେ !

ସୁନାରୀ : ଲକ୍ଷ୍ମୀ ଅନୁସରି
ମୂର୍ତ୍ତି ମୁଁ ଗଢ଼ିବି—

ସୁନାରିଣୀ : ମୂର୍ତ୍ତି, ମୁଣ୍ଡ ତା' ଖାଇବ,
ଦିଶିଯାଏ ମତେ ଯେହ୍ନେ, —ଚାଲ ଘରେ ଯିବ,
ସଂଧ୍ୟା ଆସି ହେଲା ଏବେ । ହେ ସାକ୍ଷିଗୋପାଳ,
ଲକ୍ଷ୍ମୀରେ ଦିଅ ହେ ତବ ଘଣ୍ଟ ଆଡୁଆଳ ।

## [ ପାଞ୍ଚ ]

[ବେଲେଶ୍ୱର ମହାପାତ୍ରଙ୍କ କୁଟୀରାଙ୍ଗନ । ଅଙ୍ଗନରେ ବୃଦ୍ଧ ମହାପାତ୍ରେ ଓ ତଦୀୟ ପତ୍ନୀ । ଏକ ଗୃହାଭ୍ୟନ୍ତରରେ ଲକ୍ଷ୍ମୀ ରୋଗଶଯ୍ୟାରେ ଶାୟିତା । ତା'ର ଶଯ୍ୟା ବାହାରକୁ ଦେଖାଯାଉଛି । ସମୟ ଆସନ୍ନ ସଂଧ୍ୟା ।]

ପତ୍ନୀ : କଥା ମୋର ନ ଶୁଣିବ, ଭୋଗ ଏବେ ଦଶା,
ଲୋକେ ଡରି, ହୁଏ ଏବେ ନିଜେ ଲୋକହସା ।
କହିଲି, 'ଉଚ୍ଛୁର କର ଆଉ କିଛି ଦିନ—
ଦିନୁଦିନ ପିଲା ମୋର ହୁଏ ଶିରୀହୀନ,
ଶାଶୁଘର ଯିବା ଶୁଣି କଳା ଯାଏ ପଡ଼ି,
ମୁଖ ଦିଶେ ଦଶମାସ ରୋଗ ଭୋଗପରି,
ଆଉ ମାସେ ଡେରି ହେଲେ କ୍ଷତି କିବା ଥିଲା,
ତାଙ୍କରି ଘରେ ତ ଯିବ ଦିନେ ତାଙ୍କ ପିଲା !'
ତା'ପରେ ସେଦିନ ସେହି କଠିଣ ଝିଙ୍ଗାସ.!
ମାରିବାକୁ ତାକୁ ଯେହ୍ନେ ତୁମ ଅଭିଳାଷ !
ତୁମ ଟାଣ କଥା ତା'ର ରକ୍ତ ନେଲା ଶୋଷି,
ମୋ ପିଲାର ଦୁଃଖପାଇଁ ଆଉ କା'ରେ ଦୋଷି ?
ଦୁର୍ବଳ ହେଲାରୁ ପିଲା, ମୂର୍ଚ୍ଛା ଦେଖାଦେଲା
ମୂର୍ଚ୍ଛା ପରେ ଜର ଏବେ ପିଲା ପ୍ରାଣ ନେଲା ।
ଦଶଦିନ ହେଲା, ଆଜି ବଢ଼ିଅଛି ଜର,

ମାନୁନି ଓଷଦ, ଏବେ କି ଉପାୟ କର ।
ଖାଅ ଏବେ ଧନେ ମୋର, ନିଅ ତା'ର ପ୍ରାଣ,
ତା' ସାଥେ, ମୋ ପ୍ରାଣ ମଧ୍ୟ କର ଯମେ ଦାନ ।

ବେଲେଶ୍ୱର : କିପାଁ ଏତେ ଟାଣ କଥା କହ ସତେ ମତେ,
ଗୃହସ୍ଥର ଦୁଃଖ ସଖି, ବୁଝିବ କେମନ୍ତେ ?
ଧନ ଗଲେ ପୁରୀ ମୋର ହେବ ଅନ୍ଧକାର ,
ଏ କଥା କି ମୁହିଁ ପ୍ରାଣେ କରିନି ବିଚାର ?
ଭାବିଲେ ନୟନ ହୁଏ ଅନ୍ଧ, ବାଷ୍ପଭାରେ,
କଣ୍ଠ ହୁଏ ଜଡ଼, ମନ ବିଷମ ବିକାରେ
ଉତ୍କଣ୍ଠ ହୁଅଇ ସଖି ! କିନ୍ତୁ ଏ ସଂସାର
ବଡ଼ହିଁ ନିଷ୍ଠୁର ଜାଣ । କି ଯାଏ ଏହାର
ତୁମେ ଆମେ ଗୁରୁଶୋକେ କାନ୍ଦି କାନ୍ଦି ମଲେ,
କାନ୍ଦୁଥିଲେ ଆହା ବୋଲି କହିବନି ଥରେ !
ଅପବାଦ, ପରିହାସ ଅଧିକରେ ଫଳ,
ତାକୁ ଡରି ପୋଛିବାକୁ ହେବ ଆଖିଜଳ ।
ପିଲା ନାମେ ଉଠେ ହୁରି ଗ୍ରାମେ ବାର ବାର,
ସୁଖ କି ଲାଗନ୍ତା ସଖି ଧରି ସେ ଜଞ୍ଜାଳ ?
ବଚନ ମୁଁ ଦେଲି ତେଣୁ ଶ୍ୱଶୁରେ ତୁରିତେ
ଜାଣି କି ଥିଲି ମୁଁ ସଖି, ଫଳ ବିପରୀତେ
ଘଟିବାର ଏହିପରି ? ପୁଣି ସେ ଝିଙ୍ଗାସ,—
ସେଥିରେ କି ଥିଲା ମୋର ମନ୍ଦ ଅଭିଳାଷ ?
ମୁଦି କଥା ନେଇ ଗ୍ରାମେ ଲିଭି ନାହିଁ ଗୋଳ,
ଦୁଇଦିନ ପରେ ଗ୍ରାମେ ଆସିବ ଶ୍ୱଶୁର,
ଏଥିରେ ଘଟିଲା ଯଦି ପୁଣି ଅନାଚାର,—

ଲକ୍ଷ୍ମୀ (ରୋଗଶଯ୍ୟାରୁ) ବୋଉ ! ବୋଉ !

ପତ୍ନୀ : ନିଦ ବୋଧେ ଭାଙ୍ଗିଲା ମାଆର !

(ମହାପାତ୍ର-ପତ୍ନୀ ଭିତରକୁ ଗଲେ ଓ ଶଯ୍ୟା ଉପରେ ବସିଲେ । ବେଲେଶ୍ୱର ବିଷଣ୍ଣ ବଦନରେ ଘରଭିତରକୁ ଅନାଇ ବାରଣ୍ଡାରେ ଠିଆ ହୋଇ ରହିଲେ ।)

ମହାପାତ୍ରୀ : ମାଆ ମୋର, ପ୍ରାଣ ମୋର ଗଣ୍ଠି ସୁନା ମୋର,
କେମନ୍ତେ ଲାଗୁଛି ଦେହ ?

ଲକ୍ଷ୍ମୀ : ହାତ ଆଣି ତୋର
କପାଳରେ ଥୁଅ ବୋଉ !

ମହାପାତ୍ରୀ : (କପାଳରେ ହାତ ଦେଇ)
ଏ କି ଲୋ ସଙ୍ଖାଳି,
ଦେହେ ତୋର ଫୁଟେ ଖଇ ! ମୋ ଧନରେ
ସାରିଦେଲାଣି ଏ ଚୁଲି ଜର !

ଲକ୍ଷ୍ମୀ : ଶୋଷ, ବୋଉ, ଭାରି, ପାଣିଦିଅ ।

ମହାପାତ୍ରୀ : ଜର ପରା ? ପିଇବୁ ସଂଖାଳି ?
ବୈଦ ଆସୁ, ଦେଖୁ ଦେହ—

ବେଲେଶ୍ୱର : ବୈଦ୍ୟ ଆସିଲେଣି—

ଲକ୍ଷ୍ମୀ : ବୋଉ, ବୋଉ, କହ ତାଙ୍କୁ ଆଉ ଆସିବେନି
ନ ମାଗିବି ପାଣି ପଛେ—

ବେଲେଶ୍ୱର : ମାଆ ମୋର ଓଷ
ଖାଇବାକୁ ଡରି, ହେଲେ ଖାଲି 'ଶୋଷ','ଶୋଷ'
ଦେହ ଭଲ ହେବ କେହ୍ନେ ?

(ବୈଦ୍ୟର ପ୍ରବେଶ, ମହାପାତ୍ର-ପତ୍ନୀ ଦ୍ୱାରରେ ଠିଆହେଲେ ।)

ବେଲେଶ୍ୱର : ଆସନ୍ତୁ ଏ ଘରେ;
ଦେଖନ୍ତୁ ଅବସ୍ଥା କିସ । ଓଷ୍ୱ * ଆଉଥରେ
କହନ୍ତୁ କି ଦେବା ପୁଣି ?

(ବୈଦ୍ୟ ଗୃହରେ ପ୍ରବେଶକରି ଲକ୍ଷ୍ମୀର ନାଡିକା ଓ ଅନ୍ୟାନ୍ୟ ଅଙ୍ଗ ପରୀକ୍ଷା କଲେ ।)

ବୈଦ୍ୟ : ବଢ଼ିଲା ଯେ ଜର !
ହଉ, ଚିନ୍ତା ନାହିଁ କିଛି,—ଦେବି ଏଇ ଥର
'ଜ୍ୱର-ଗଜ-ମୃଗରିପୁ',—ହୋଇବ ନିକାଶ
ଏକାଦିନେ ସବୁ ଦୋଷ ।

ମହାପାତ୍ରୀ : (ଦୂରରେ ଥାଇ) ପିଇବାରେ ଆଶ
ବଢ଼ୁହିଁ ବଢୁଛି—

ବୈଦ୍ୟ : କିଛି ନ ଶୁଣିବ ତାହା ।
ବିନ୍ଦୁ ଜଳ ଦେଲେ ତୁମେ ଦେଖ ତୁମ ରାହା ।

ମହାପାତ୍ରୀ : ତିନିଦିନ ହେଲା ପେଟେ ଅନ୍ନ ନାହିଁ ପଡ଼ି ।

ବୈଦ୍ୟ : ପାଚନ ହିଁ ଦେବ କିଛି, ଛାଡ଼ି ଦୁଇ ଘଡ଼ି ।

(ବୈଦ୍ୟ ବେଲେଶ୍ୱର ଦୁହେଁ ବାହାରକୁ ଚାଲିଗଲେ । ମହାପାତ୍ର-ପତ୍ନୀ ପୁଣି ଶଯ୍ୟା ନିକଟକୁ ଆସି ବସିଲେ ।)

---

*ଓଷ, ଓଷ୍ୱ—ପୁରୀ ଅଞ୍ଚଳରେ ଔଷଧର ଲୌକିକ ଉଚ୍ଚାରଣ ।

ଲକ୍ଷ୍ମୀ : ନନା କାହିଁ ଗଲେ ବୋଉ ? ଗଲେଣି ବଇଦ ?
ମହାପାତ୍ରୀ : (ମୁଣ୍ଡ ସାଉଁଳି ସାଉଁଳି) ହଅଁ ଲୋ ମା—
ଲକ୍ଷ୍ମୀ : ଶୁଣ ବୋଉ, ଏତେ ତ ପଇଡ଼
ଫଳିଛି ବାଡ଼ିରେ, ମତେ ଦିଅ ନା ଗୋଟାଏ
ପିଇ ପାଣି ଏକାଥରେ ଶୋଷ ମୋ ମିଟାଏ ।
ବୈଦ୍ୟ ତ ଜାଣିବେ ନାହିଁ ।
ମହାପାତ୍ରୀ : ଚୁପ୍ ବାଇଆଣୀ,
ମରିବାକୁ ଇଚ୍ଛା ତୋର ?
ଲକ୍ଷ୍ମୀ : ହଁଅଁ ଲୋ କେଜାଣି,
ମରିବାକୁ ଇଚ୍ଛା ହୁଏ—
ମହାପାତ୍ରୀ : (କାନ୍ଦ କାନ୍ଦ ହୋଇ) ଆମକୁ ଅନାଥ
କରି, ତୋର ମରିବାକୁ ଇଚ୍ଛା ହୁଏ ଜାତ ?
ତୁଣ୍ଡରେ ନ ଆଣ ଧନ, ସେ କଥା ତୁ ଥରେ ।
ଲକ୍ଷ୍ମୀ : ହଉ ଆଉ ନ କହିବି । କିନ୍ତୁ ବୈଦ୍ୟ ଡରେ
ପିଇବାକୁ ନ ଦେଲେ ତ ମରିବି ନିକର,
ଦିଅ ବୋଉ, କିଛି ମତେ ।
ମହାପାତ୍ରୀ : ସେ ସବୁ ଫିକର
ରଖ୍ ଏବେ । ଦୁଇଘଡ଼ି ପରେ ତୁ ପାଚନ—
ଲକ୍ଷ୍ମୀ : ମଲି ତେବେ, ମଲି ବୋଉ—
ମହାପାତ୍ରୀ : କିପାଁ ଅକାରଣ
ଆକୁଳ ହେଉଛୁ ଏତେ ? ତୁନିହୋ ସଙ୍ଖାଳି,
କରୁଛୁଁ ଯା', ତାହା ସିନା ତୋ ଭଲ ବିଚାରି ।
ଲକ୍ଷ୍ମୀ : (ଦ୍ୱାରଆଡ଼କୁ ଅନାଇ)
ତୁମେ କିପାଁ ଆସୁନାହଁ ? ବୁଝି ହେ ଏମାନେ
ନ ପାରନ୍ତି ଇଚ୍ଛା ମୋର । କି ଯେ ଶୋଷ ପ୍ରାଣେ
ନ ପାରନ୍ତି ବୁଝି ଏ ଗୋ—
ମହାପାତ୍ରୀ : ଡାକୁଛୁ କାହାରେ
ଧନ ମୋର ? ନନା ପରା ଗଲେଣି ବାହାରେ
କେତେବେଳୁଁ ।
ଲକ୍ଷ୍ମୀ : ନାହିଁ ବୋଉ, କାରେ ଡାକୁ ନାହିଁ ।
କିନ୍ତୁ ବୋଉ, ନିଦବେଳେ ଦେଖିବାର ପାଇଁ
ଆସିଥିଲେ କେହି ଏଥି ?

ମହାପାତ୍ରୀ : କେହି ନାହିଁ ଧନ !

(ସହସା ଦେବତାର ଛାୟାମୂର୍ତ୍ତି ଦ୍ୱାରଦେଶରେ ଠିଆହେଲା । ଲକ୍ଷ୍ମୀର ମୁଖରେ ହାସ୍ୟ ଦେଖାଦେଲା । ଜନନୀଙ୍କର ଉପସ୍ଥିତି ଯୋଗୁଁ ସେମାନେ କେବଳ ପରସ୍ପରକୁ ନୀରବରେ ଚାହିଁରହିବା ଛଡ଼ା ଆଉ କିଛି କରିପାରିଲେନାହିଁ । ଲକ୍ଷ୍ମୀକୁ ବହୁକ୍ଷଣ ଚୁପ୍ ରହିବାର ଦେଖି ଲକ୍ଷ୍ମୀ-ଜନନୀ ନିଦ୍ରା ଆସିବାର ଭାବି, ଶଯ୍ୟାରୁ ଉଠି ଠିଆହେଲେ ।)

ମହାପାତ୍ରୀ : ମାଆ ମୋର ଶୁଅ କ୍ଷଣେ, ରାନ୍ଧେଁ ମୁଁ ପାଚନ ।

ଲକ୍ଷ୍ମୀ : ଆଚ୍ଛା ହେଉ ।

(ଲକ୍ଷ୍ମୀ-ଜନନୀ ବାହାରିଗଲେ । ଦେବତା ଶଯ୍ୟାରେ ବସି ଲକ୍ଷ୍ମୀର କପାଳ ସ୍ପର୍ଶ କରିବାକୁ ଲାଗିଲେ ।)

ଲକ୍ଷ୍ମୀ : କିବା ଶାନ୍ତି, କିବା ଦେଲ ସୁଖ
ଆହା, ଛୁଇଁ ତପ୍ତ ଭାଲ । ଅଙ୍ଗୁଳିରେ ମୁଖ
ଆଉଁସ ହେ ଧୀରେ ବଂଧୁ !

ଦେବତା : (ସେହିପରି କରି) ଆହା ଲକ୍ଷ୍ମୀ-ରାଣୀ,
ଦିଅନ୍ତା ଯଦି କେ ମତେ ସେବା-ଯୋଗ ଆଣି
ଚିରଦିନ ଏଇପରି । ଆନ-ପୂଜାଠାରୁ
ସୁଖ ମତେ ବେଶି ମିଳେ ତୁମରେ ସେବାରୁ ।
କେମନ୍ତେ ଲାଗୁଛି ଦେହ ?

ଲକ୍ଷ୍ମୀ : ତୁମେ ସିନା ଜାଣ ?

ଦେବତା : (ସମସ୍ତ ଦେହ ଦେଖି ହସି ହସି)
ଲକ୍ଷ୍ମୀ-ରାଣୀ, ହେଲା ବେଳ, କରିବ ପ୍ରୟାଣ
ଏଥର ଶ୍ୱଶୁରାଳୟେ ।

ଲକ୍ଷ୍ମୀ : ଜନନୀ ତୁମର
ଥାନ ଯଦି ଦେବେ ପଦେ, ତେବେ ହେ ମୋହର
ଆପତ୍ତି ତ କିଛି ନାହିଁ !

ଦେବତା : ମାନିବ ତ ମତେ ?
ଦିନମାନ ଖେଳିବ ତ ମୋହରି ସଙ୍ଗତେ ?

ଲକ୍ଷ୍ମୀ : ରାଣ ମୋର, ଏତେ ସ୍ନେହେ ଲାଗେ ମତେ ଲାଜ !

ଦେବତା : (ହଠାତ୍ ଦୁଆରଆଡ଼କୁ ଅନାଇ)
ଆସିଲେଣି ଲକ୍ଷ୍ମୀ, ତବ ସଙ୍ଗିନୀ-ସମାଜ;
ଯାଏଁ ମୁହିଁ (ଠିଆ ହୋଇ)
ବେଳେ ଆସି ଭଭା ହେବ ରଥ,

ଯିବ ତହିଁ, କିନ୍ନରୀଏ ଡାକିନେବେ ପଥ ।
ଯାଏଁ ଏବେ ।

ଲକ୍ଷ୍ମୀ : ନିଅ ମତେ ତୁରିତେ ହେ ହରି,
ଏମାନଙ୍କ ସାଥେ ବଂଧୁ, ନାହିଁ ପାରେ ଚଳି ।

(ଦେବତା ଗଲିଗଲେ । ସେତେବେଳକୁ ଅନ୍ଧକାର ହୋଇଆସିଥିଲା । ଲକ୍ଷ୍ମୀର ଚାରିଟି ସଖୀ ସେଇ ଅନ୍ଧକାର ଗୃହରେ ପ୍ରବେଶକଲେ ।)

ପଦ୍ମା : ଅନ୍ଧାର ଯେ !

ହେମା : ଦୀପ କାହିଁ ?

ଫୁଲ : ସେଇ କୋଣେ ଥିବ ।

ନେତ : ଖୋଜ୍ ପଦ୍ମା !

ପଦ୍ମା : ଖୋଜ୍ ଫୁଲ !

ହେମା : ଅନ୍ଧାରେ ଦିଶିବ ?

ଫୁଲ : ପାଇଲିଣି ।

ନେତ : ଝିକିମିକି ରଖିଛ ଲୋ କିଏ ?

ପଦ୍ମା : ମୁଁ ରଖିଛି ।

ହେମା : ମୋ ହାତରୁ ଏଇ ଶୋଲ ନିଏ ।

(ସେମାନେ ଦୀପ ଲଗାଇଲେ । ଦୀପର କ୍ଷୀଣାଲୋକରେ କ୍ଷୁଦ୍ର ଗୃହଟି ଆଲୋକିତ ହୋଇଉଠିଲା । ସେମାନେ ସମସ୍ତେ ଲକ୍ଷ୍ମୀର ଶଯ୍ୟା ଚାରିଆଡ଼େ ଘେରିଗଲେ ।)

ହେମା : ଲକ୍ଷ୍ମୀ ନାନୀ !

ଫୁଲ : ଶୋଇଛି କି ?

ନେତ : ଶୁଣୁ ନାହିଁ କଥା ?

ପଦ୍ମା : ହାତ ମାରେଁ...

ହେମା : ଦେଖେଁ ଦେହ,...

ଫୁଲ : ଛୁଏଁ ଦେଖି ମଥା ।

ନେତ : ପାଦ ଦେଖେଁ— କି ଶୀତଳ !

ପଦ୍ମା : ଥଣ୍ଡା ବଡ଼ ହାତ !

ହେମା : ଦେହସାରା ବହେ ପାଣି,

ଫୁଲ : ସେଇପରି ମଥା !

(ସମସ୍ତେ କ୍ଷଣକ ପାଇଁ ପରସ୍ପର ଆଡ଼କୁ ଚାହିଁଲେ )

ଲକ୍ଷ୍ମୀ : (ତନ୍ଦ୍ରାରୁ ଉଠି) ବୋଉ, ବୋଉ !

ପଦ୍ମା : ନାହିଁ ବୋଉ,

ହେମା : ରାନ୍ଧୁଚି ପାଚନ ।

ଫୁଲ : ଲକ୍ଷ୍ମୀ ନାନୀ, କହିବୁନି ଆମକୁ ବଚନ ?

ଲକ୍ଷ୍ମୀ : (କ୍ଷୀଣ ସ୍ୱରରେ)
ଯାଉଛିଲୋ,—ମନେରଖ,—ବୋଉ କାହିଁ ଡାକ ।

ପଦ୍ମା : (ଉଚ୍ଚସ୍ୱରରେ) ଏ ମାଉସି !

ହେମା : (ଉଚ୍ଚ ସ୍ୱରରେ) ବଡ଼ ମାଇଁ !

ଫୁଲ : ଯାଅ ଜଣେ ପାଖ ।

(ନେତ ଦ୍ରୁତଗତିରେ ବାହାରକୁ ଗଲା । କିଛିକ୍ଷଣ ପରେ ଲକ୍ଷ୍ମୀ-ଜନନୀ ବ୍ୟସ୍ତ ହୋଇ ଘରେ ପଶି ଏକାବେଳକେ ଲକ୍ଷ୍ମୀକି କୁଣ୍ଢାଇଧରିଲେ ।)

ମହାପାତ୍ରୀ : (କ୍ରନ୍ଦନ ସ୍ୱରରେ) ଦେହୁ ବହେ ପାଣି ଧାର ! କି ଦେଖେରେ ଧନ !

ଲକ୍ଷ୍ମୀ : ବୋଉ ମୋ'ର, ଗଲି ମୁହିଁ,—ରଖିଥିବୁ ମନ ।

ମହାପାତ୍ରୀ : ମନ ମୋର ପୋଡ଼ିଯାଉ,—ଚଣ୍ଡାଳୁଣୀ ପିଲା,
କି କଥା କହୁ ଲୋ ତୁହି !

ପଦ୍ମା : (ହଠାତ୍ ବାହାରକୁ ଅନାଇ ) ଏ କିସ ଦିଶିଲା !

ହେମା : ଆଲୋକର ରଥ ଏକ !

ଫୁଲ : (ଲକ୍ଷ୍ମୀର ମୁଣ୍ଡଆଡ଼କୁ ଅନାଇ) ମୂର୍ତ୍ତି ସେ କାହାର ?

ଲକ୍ଷ୍ମୀ : (ଶେଷ ନିଶ୍ୱାସ ସହ)
ଗଲି ବୋଉ, ମୋହ ସଙ୍ଗେ ସାରି ତୋ ଜଞ୍ଜାଳ !

(ଲକ୍ଷ୍ମୀ-ଜନନୀ ମୂର୍ଚ୍ଛିତା ହୋଇ ଶବ ଉପରେ ପଡ଼ିରହିଲେ । ସଖୀମାନେ ସ୍ତବ୍ଧ ହୋଇ ଠିଆହୋଇରହିଲେ । ଏଇ ସମୟରେ ବୈଦ୍ୟ, ବେଲେଶ୍ୱର ଓ ଲକ୍ଷ୍ମୀର ଶ୍ୱଶୁର ଆସି ଦ୍ୱାରଦେଶରେ ଚକିତ ଭାବରେ ଠିଆହେଲେ....) (ପଟ ପତନ)

## [ ଛଅ ]

[ମନ୍ଦିରରେ ସାକ୍ଷିଗୋପାଳ ମୂର୍ତ୍ତି-ପୀଠ । ସାକ୍ଷିଗୋପାଳଙ୍କ ପାର୍ଶ୍ୱରେ ନବପ୍ରତିଷ୍ଠିତା ରାଧାପ୍ରତିମା । କୁମାରୀ ଦେବଦାସୀମାନଙ୍କର କଥୋପକଥନ, ଗାନ ଓ ନୃତ୍ୟ ।]

ପ୍ରଥମ କୁମାରୀ : ତା'ରି ମୁଖ ପରି ସଖି, ଦିଶେ ଅବିକଳ,

ଦ୍ୱିତୀୟ : ତା'ରି କଣ୍ଠ, ତା'ରି ନେତ୍ର-ଯୁଗ୍ମ ଢଳଢଳ ।

ତୃତୀୟା : ତପୋବନ୍ତୀ କନ୍ୟା ସତେ,— କି ତପସ୍ୟା ବଳେ
ଲଭିଲା ଆସନ ଏଇ ପୁଣ୍ୟ-ପୀଠ ପରେ ।

ଚତୁର୍ଥୀ : ପ୍ରେମ ଲୋ ତପସ୍ୟା ତା'ର,—ମନ୍ତ୍ର, ଆରାଧନା,
ତା' ଘେନି ସେ ଦେବତାକୁ କଲା ବନ୍ଦାପନା ।
ପ୍ରଥମା : ମନ୍ଦିରେ ତ ନିତ୍ୟ ଆମେ ନୃତ୍ୟ କରୁଥାଇଁ,
କା' ପ୍ରାଣେ ଭକତି ଥାଏ ଦେବତାର ପାଇଁ ?
ଦ୍ୱିତୀୟା : ବାଦ୍ୟତାନେ ପଦ ପଡ଼େ, କର ଦୋଳୁଥାଏ,
ଏ ପୋଡ଼ା ଚିତ୍ତ ଲୋ ସଖି, କାହିଁ ଚାଲିଯାଏ !
ତୃତୀୟା : ପ୍ରେମ ପୁଣି କରେ ଏହା ! ପଥର ମୂରତି,
ଜୀବ ଧରି, ଜୀବ ସାଥେ କରଇ ପୀରତି !
ଚତୁର୍ଥୀ : ଆସ ଏବେ ଗୁଣ ତା'ର ଗାଇ ଲୋ ସଜନି,
ଦେବତାରେ ତୋଷୁଁ ହେଲେ ଆଜିକ ରଜନୀ ।
ପ୍ରଥମା : ତୋଳି ଧରି ଫୁଲମାଳା, ଛଣ ଛଣ କରି
ଭଉଣୀର କଣ୍ଠେ ଦେବା ନୃତ୍ୟ କରି କରି ।

(ସମବେତ ନୃତ୍ୟ—ମଣିପୁରୀ)

ପ୍ରଥମା : ତା' ପଦଧୂଳି ଲାଗି ପାବନ ପଥ ଏଇ ଗାଆଁର,
ଦ୍ୱିତୀୟା : ସୁରଭି, ଛୁରିଅନା, ବିପିନ ଅଭିସାରେ ତାହାର ।
ତୃତୀୟା : ସୁରଭି ନିଶ୍ୱାସେ କେତେ ସେ ଫୁଟାଇଛି ବକୁଳ,
ଚତୁର୍ଥୀ : ଚରଣ ପରଶରେ କେତେ ସେ ଘାସେ କଲା ଆକୁଳ ।
ପ୍ରଥମା : ନଈକି ଯାଇ ସେ ଯେ ପାବନ କଲା ନଈତୋଠରେ,
ଦ୍ୱିତୀୟା : କମଳେ ଲାଜ କେତେଥର ସେ ଦେଲା ତା'ର ଓଠରେ ।
ତୃତୀୟା : କନକ-ପ୍ରତିମା ତା', ତୋଷିଲା କେତେ ଜନନୟନ,
ଚତୁର୍ଥୀ : ବାଳିକା ବୟସେ ସେ ପ୍ରଣୟ-ତପ କଲା ଚୟନ ।
ପ୍ରଥମା : ପ୍ରଣୟେ ଜିଣିଲା ସେ ମରଣେ
ଦ୍ୱିତୀୟା : ପ୍ରଣତି ଦିଅ ତା'ର ଚରଣେ ।
ତୃତୀୟା : ଯେ ପୀଠେ ପୂଜାରିଣୀ ଥିଲା ସେ
ଚତୁର୍ଥୀ : ବିଜେ କଲା ସେ ପୂଜା ବିଳାସେ !
ପ୍ରଥମା : ଜନକ-ଜନନୀ ତା' ସୁଭଗ,
ଦ୍ୱିତୀୟା : ମାଟି-କୁଟୀର ହେଲା ସରଗ ।
ତୃତୀୟା : ଦେବୀ-ଦେବତା ଏଇପରି କି
ଚତୁର୍ଥୀ : ହୁଅନ୍ତି ଜାତ ଦେହ ଧରିକି !
ପ୍ରଥମା : ମାଳା ତାହାରେ ଦେବା ଆସ ଲୋ,

ଦ୍ୱିତୀୟା : ଦେହେ ବୋଳିବା ଚନ୍ନ* ବାସ ଲୋ !
ତୃତୀୟା : ନାଟକୁ ଦିଅ ତାଳ ବାୟକ,
ଚତୁର୍ଥୀ : ସେବିବା ଲକ୍ଷ୍ମୀ, ତା'—ନାୟକ

(ସମବେତ ନୃତ୍ୟ—ମଣିପୁରୀ)

ପ୍ରଥମା : (ଗାନ, ନୃତ୍ୟ ଓ ମାଳାର୍ପଣ )
ମୁରଲୀ ଯୁଗେ ଯୁଗେ ବଜାଇ
ତୁମେ ନା ପ୍ରଭୁ ତବ ଅସୀମ-ପ୍ରୀତି-ରସେ
ସସୀମ ପ୍ରାଣ ଦିଅ ମଜାଇ ?
ପରାଣେ ଶୁଣି ଡାକ ତୁମର
ହୃଦୟେ ଫୁଟେ ଶୁଭ କମଳ
ଚେତନା ଦିଏ ସେ ଯେ ହଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । (ଧ୍ରୁବ)

ଦ୍ୱିତୀୟା : (ଗାନ, ନୃତ୍ୟ ଓ ମାଳାର୍ପଣ)
କିପାଇଁ ତୁମେ ବେଣୁ ବଜାଅ
ଶୂନ୍ୟ ଲାଭେ ପ୍ରାଣେ ଖୋଜାଅ ?
ପିୟାସ ଦିଅ ପ୍ରାଣେ ତେଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । (ଧ୍ରୁବ)

ତୃତୀୟା : (ଗାନ, ନୃତ୍ୟ ଓ ମାଳାର୍ପଣ)
ସେ ବେଣୁ, ସୃଷ୍ଟିର ନୀତିରେ
ଭୁବନ ବିକଶିତ ପ୍ରୀତିରେ;
ପ୍ରାଣେ ସେ ରସେ ଯାଏ ଗଁଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । (ଧ୍ରୁବ)

ଚତୁର୍ଥୀ : (ଗାନ, ନୃତ୍ୟ ଓ ମାଳାର୍ପଣ)
ସେ ବେଣୁ ଶୁଣି ଆମ ଭଗିନୀ
ରସେ ହୋଇଲା ଅନୁରାଗିଣୀ;
ଅମର ହେଲା ଏଇ ଅମର ପୀଠେ ରହି
ପ୍ରଣୟ ଲାଗି ସବୁ ହଜାଇ,
ମୁରଲୀ ଯୁଗେ ଯୁଗେ ବଜାଇ । (ଧ୍ରୁବ)

(ଧୀରେ ଧୀରେ ସମସ୍ତଙ୍କର ପ୍ରସ୍ଥାନ । ତା'ପରେ ଲକ୍ଷ୍ମୀ ଓ ଦେବତାର ଯୁଗ୍ମ-ସଙ୍ଗୀତ ଓ ନୃତ୍ୟ । ଗାନର ରାଗ ମିଶ୍ରଭୀମପଲଶ୍ରୀ, ନୃତ୍ୟ, ଭରତନାଟ୍ୟମ୍)

---

* ଚନ୍ନ— ପୁରୀ ଅଞ୍ଚଳରେ ଚନ୍ଦନର ଅପଭ୍ରଂଶ ଉଚ୍ଚାରଣ ।

ଦେବତା : ନିରୋଳ ରଜନୀ
ହେଲାରେ ସଜନି,
ମରମ ମିଳାଅ ଅନୁରାଗିଣି,
ପ୍ରଣୟ କ୍ଷୁଧା କି ମୋର, ଶାନ୍ତ ?
ରସ ଢାଳ ଚିର ପ୍ରାଣତୋଷିଣି !

ଲକ୍ଷ୍ମୀ : ଯାଚି ମୋ ପ୍ରଣୟ
ଦିଅ ଯେ ସରମ;
ତୁମରି ଏକାନ୍ତ ମୁଁ ଯେ, ପରମ ।
ମୁଁ ଯେ ରେଣୁ ତବ ପଦ ପ୍ରାନ୍ତେ,
କି ସୁଧା ଦେବ ଏ ଦୀନ ମରମ !

ଦେବତା : କ୍ଷୁଦ୍ରକୁ ଧାଏଁ ମୋର ପୀରତି,
ଦୀନ ଲାଗି ବକ୍ଷେ ମୋ ଆରତି,
ସଖି,
ହୃଦୟ ତୋ ଅକଲୁଷ କମଳ
ତେଣୁ,
ମୋହନ ତୋ' ମର୍ମର ଭାରତୀ !

ଉଭୟେ : ଏକ ଆମେ
ଏକ ଆମେ,
ଭୋଗ ପାଇଁ
ହୋଇଅଛୁଁ
ଯୁଗ୍ମ !
ଲୀଳାର ସୃଜନ-ସରେ
ସୂର୍ଯ୍ୟ ଓ ପଦ୍ମ !
ଏକ ଥାଇ, ଯୁଗେ ଯୁଗେ ଯୁଗଳ ରୂପେ,
ଗଢୁଥିବା ଭୋଗ ପାଇ
ବିରହର ଗୀତ ଗାଇ
ପୀରତିର ଏ ମଧୁର ଛନ୍ଦ ।

(ପଟ ପତନ)

———

# ନଷ୍ଟନୀଡ଼

(ପ୍ରଥମ ପ୍ରକାଶ—୧୯୩୮)

## ନବ ସଂସ୍କରଣରେ କିଂଚିତ୍ ବକ୍ତବ୍ୟ

ଏବେ ଓଡ଼ିଆରେ ନାଟକ କହିଲେଇ ସାମାଜିକ ନାଟକ ବୁଝାଉଛି । ମୁଖ୍ୟ କାରଣ ହେଉଛି ଯେ ବଂଗଳାରେ ବି ଏବେ ଏଇ ଧୂମ୍ ଚାଲିଛି । ଆମେ ଛାତ୍ରଥିଲାବେଳେ ଅବସ୍ଥା କିନ୍ତୁ ସଂପୂର୍ଣ୍ଣ ଓଲଟା ଥିଲା । ଆମେ ସେତେବେଳକୁ ଇଂରାଜୀରେ ବର୍ଣ୍ଣାଡ଼୍ ଶ୍', ଇବ୍ସେନଙ୍କ ନାଟକ ପଢ଼ିଲୁଣି । ତେଣୁ ଆମେ ଚାହୁଁଥିଲୁ ଯେ ଓଡ଼ିଶାର ରଂଗମଂଚରେ ସେହିପରି ନାଟକ ସବୁ ଆବିର୍ଭାବ ହେଉ । କିନ୍ତୁ ଥିଏଟର-ମାନେଜର ଓ ଅଭିନେତାଗଣ ସାମାଜିକ ନାଟକ କହିଲେ ସେତେବେଳେ ନାସିକା କୁଂଚନ କରୁଥିଲେ ।

କୋଡ଼ିଏ ବର୍ଷ ତଳେ ଏକ 'ସାମାଜିକ' ନାଟକ ପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏକ ପୁରସ୍କାର ଘୋଷିତ ହୋଇଥିଲା । ତାହାରି ଉତ୍ତରରେ ଏହି ନାଟକଟି ମୁଁ ନିମାପଡ଼ାରେ ଶିକ୍ଷକ ଥିଲାବେଳେ ଲେଖିଥିଲି—ଏକଶତ ମୁଦ୍ରାର ଲୋଭରେ । କିନ୍ତୁ ପୁରସ୍କାର ଗଲା ଏକ ଐତିହାସିକ ନାଟକର ଲେଖକଂକୁ । ସେତେବେଳେ ସେହି ବୋଧହୁଏ ଥିଲା 'ସାମାଜିକ' ନାଟକର ଏ ଦେଶରେ ଧାରଣା, ତା' ପୁଣି ଉତ୍କଳ ସାହିତ୍ୟ ସମାଜ ପରି ଆକାଡ଼େମୀର । କିନ୍ତୁ 'ସମାଜିକ' ନାଟକ ପାଇଁ ଯେତେବେଳେ ପୁରସ୍କାର ଘୋଷଣା କରାଯାଉଥିଲା, ସେତେବେଳେ ଏ ପ୍ରକାର ସାହିତ୍ୟର ବିରଳତା ବା ଶୂନ୍ୟତା ଅନୁମେୟ ।

ତେଣୁ, ଏ ପୁସ୍ତକର 'ପ୍ରସ୍ତାବନା'ରେ ସାମାଜିକ-ନାଟକର ଆବିର୍ଭାବର ଯୁକ୍ତିଯୁକ୍ତତା ଓ ସେପରି ନାଟକର ଅଭିନୟରେ ସ୍ୱାଭାବିକତା ଉପରେ ଯେଉଁ ତର୍କ-ବିତର୍କ ହୋଇଛି ତାହା ପାଠକମାନେ ତତ୍କାଳୀନ ଓଡ଼ିଶାର ସାହିତ୍ୟିକ ରୁଚିର ପରିପ୍ରେକ୍ଷିତରେ ବୁଝିବାକୁ ଅନୁରୋଧ । ଗୋଟିଏ ଅନଭ୍ୟସ୍ତ ପଦାର୍ଥକୁ ଅଭ୍ୟାସଗତ କରାଇବାପାଇଁ ତାହା ଏକ ଚେଷ୍ଟା ମାତ୍ର । ସେତେବେଳେ ତାହା ଦର୍କାର ଥିଲା । ଆଜି ଯେ ଓଡ଼ିଶାରେ ସାମାଜିକ ନାଟକର ବନ୍ୟା ଚାଲିଛି, ତାହା କ'ଣ ଓଡ଼ିଶୀ ସମାଜର ଦର୍କାରବୋଧରୁ ପ୍ରକୃତରେ ଘଟୁଛି ? ଖାଣ୍ଟି ଓଡ଼ିଆ ଜୀବନର ଛବି ଆମେ ସେଠାରେ କେତେ ପରିମାଣରେ ପାଉ ? ଅଧିକାଂଶ ଅନ୍ୟର ନକଲ ପରି ମନେହୁଏନାହିଁକି ?

କିନ୍ତୁ କୋଡ଼ିଏ ବର୍ଷ ତଳେ ଏ ଲେଖକ ଏହି ନାଟକ ଏକ ସାମାଜିକ ଆବଶ୍ୟକତା-ବୋଧରୁହିଁ ଲେଖିଥିଲା— ପ୍ରତିବେଶୀର ନକଲ କରି ନୁହେଁ ।

ସମଗ୍ର ମାନବ ସଭ୍ୟତାର ଇତିହାସରେ, ପ୍ରାଚୀନ କାଳରେ କେବଳ ଦୁଇଟି ସଭ୍ୟ ଦେଶରେ ଉଚ୍ଚାଙ୍ଗ କଳା ଭାବରେ, ନାଟକ ଓ ଅଭିନୟ ଦେଖାଦେଇଥିଲା । ସେ ଦୁଇଟି ଦେଶ ହେଉଛନ୍ତି ଗ୍ରୀସ୍ ଓ ଭାରତବର୍ଷ । ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ୟୁରୋପୀୟ ପଣ୍ଡିତମାନଙ୍କର ଧାରଣା ଥିଲା ଯେ ନାଟକ-ସାହିତ୍ୟ ୟୁରୋପୀୟ ସଭ୍ୟତାର ଏକାନ୍ତ ନିଜସ୍ୱ ଗୌରବ । ସାର୍ ଉଇଲିୟମ୍ ଜୋନସ୍‌ଙ୍କ ଶକୁନ୍ତଳାର ଅନୁବାଦ ସମଗ୍ର ୟୁରୋପୀୟ ବୁଦ୍ଧିଜୀବୀ ମଣ୍ଡଳରେ ତେଣୁ ଚହଲ ପକାଇ ଦେଇଥିଲା –ଅସଭ୍ୟ, ପରାଧୀନ ଭାରତରେ ପୁଣି ଏପରି ସାହିତ୍ୟ !

ଏ ଦେଶରେ ନାଟକର ଇତିହାସ କେବଳ ପ୍ରାଚୀନ ନୁହେଁ, ନାଟକୀୟ ତର୍କ ମଧ୍ୟ ସେହିପରି ପ୍ରାଚୀନ । ବସ୍ତୁତଃ ନାଟକ ଆଲୋଚନାରୁହିଁ ଏ ଦେଶରେ ସାମଗ୍ରିକ ସାହିତ୍ୟାଲୋଚନା ଆରମ୍ଭ ହୋଇଛି । ଏ ଦେଶରେ ନାଟକ ଏକ ଶୁଦ୍ଧପୂତ, ଗମ୍ଭୀର, ମଧୁର କଳାରୂପେ ବିବେଚିତ ଥିଲା । ଆମର ଆଲଂକାରିକମାନେ ଏ କଳାକୁ ଇତର ତାମାସାରୂପେ କେବେ କଳ୍ପନା କରି ନ ଥିଲେ । ଏହା ଈଶ୍ୱର ଓ ମନୁଷ୍ୟକୁ ଏକ କରୁଥିଲା; ପୁଣି ଏଥିରେ ରଂଗମଂଚ, ନାଟ୍ୟକାର, ଅଭିନେତା, ଅଭିନେତ୍ରୀ ଓ ଦର୍ଶକମଣ୍ଡଳ– ସମସ୍ତ ଗୋଟିଏ ଅଭିନ୍ନ ଏକକ ବୋଲି ଧରାଯାଉଥିଲେ । ତାହା ତ ହେବାର କଥା । ଆମ ନାଟ୍ୟକାରମାନେ ଅତି ମନୋରମଭାବରେ ନାଟକର ପ୍ରସ୍ତାବନା ବା ଇଣ୍ଟ୍ରୋଡକ୍‌ସନ୍‌ରେ ତାହା ସୂଚିତ କରି ରଖୁଥିଲେ । ଶକୁନ୍ତଳା ପାଠ ପରେ ଗେଟେ ତାଙ୍କର ପ୍ରସିଦ୍ଧତମ ପୁସ୍ତକ 'ଫାଉଷ୍ଟ'ରେ ଭାରତୀୟ ନାଟକ-ପଦ୍ଧତିର ଏହି ଅଂଶ ପ୍ରବର୍ତ୍ତିତ କରିଛନ୍ତି । ଅଥଚ ଆମ ନିଜର ଏହି ଯୁକ୍ତିଯୁକ୍ତ ପ୍ରାଚୀନ ଶୈଳ୍ପିକ ଶୈଳୀକୁ ପଶ୍ଚିମର ମୂଢ ଅନୁକରଣରେ ପରିତ୍ୟାଗ କରି 'ମଡର୍ଣ୍ଣ'ର ଅହମିକାବୋଧରେହିଁ ଆମେ ଆତ୍ମ-ତୁଷ୍ଟ । କିନ୍ତୁ ପଡ଼ୋଶୀ ପ୍ରଦେଶରେ ଆଜି ଏ ଧାରା ଦେଖାଦେଲେ, କାଲି ହୁଏତ ଓଡ଼ିଶାରେ ପ୍ରତି ନାଟକରେ ତାହା ଦେଖାଦେବ । କିନ୍ତୁ କୋଡ଼ିଏ ବର୍ଷ ତଳେ ସଂସ୍କୃତ ନାଟକମାନଙ୍କର 'ପ୍ରସ୍ତାବନା' ଅଂଶଟିରେ ଏକ ଉଚ୍ଚ ସାହିତ୍ୟିକ ସଂସ୍କୃତିର ସୂଚନା ଥିବାର ବୋଧକରି ଏହି ସାମାଜିକ ନାଟକରେ ମଧ୍ୟ ତାହା ମୁଁ ରଖାଇଥିଲି । ଏସବୁ କହୁଛି, କାରଣ କେହି କେହି ଏ ପ୍ରସ୍ତାବନା ପୁରୁଣାକାଳିଆ ବୋଲି ମତ ଦେଇଛନ୍ତି ।

ଯାହାହେଉ ଓଡ଼ିଶାରେ ତଥାକଥିତ 'ସାମାଜିକ' ନାଟକରେ ବନ୍ୟା ତ ଏବେ ଚାଲିଛି । କିନ୍ତୁ କଥାକଥାକେ ନାୟକନାୟିକା, ମନ୍ତ୍ରୀ, ଏମ.ଏଲ.ଏ., ପଂଚାୟତ, ସରପଞ୍ଚ, କଲେଜ ପ୍ରଫେସର୍ ଓ ଛାତ୍ର, ଏ ସମସ୍ତଙ୍କଠାରୁ ରଂଗମଂଚରେ ଗୀତ ଛୁଟୁଛି କିପରି ? ଏ କ'ଣ ଆମ ସମାଜର ଫଟୋଗ୍ରାଫ୍ ? ଏଇପରି କ'ଣ ଆମ ରଂଗମଂଚ ଆମର ଜୀବନକୁ ପ୍ରତିବିମ୍ବିତ କରୁଛି ? ସ୍ୱାମୀ-ସ୍ତ୍ରୀ ଘରେ ଘରେ ଗୀତ ଓ ନୃତ୍ୟରେ ଆଳାପ କରୁଛନ୍ତି ! ଫାଣ୍ଟାଷ୍ଟିକ୍ ! କଳା ନାମରେ ସତ୍ୟର ହତ୍ୟା ଓ ରୁଚିର ଅପମାନ ।

କିନ୍ତୁ ଚିତ୍ତବିନୋଦନ ଓ ନାଟକକୁ ବର୍ଣ୍ଣାଢ୍ୟ କରିବାପାଇଁ ନୃତ୍ୟଗୀତ ଦର୍କାର— ତାହା ଅନସ୍ୱୀକାର୍ଯ୍ୟ । ସେଥିପାଇଁ ଆମର ଦୂରଦ୍ରଷ୍ଟା ପ୍ରାଚୀନ ଆଲଙ୍କାରିକମାନେ ସୁନ୍ଦର ବ୍ୟବସ୍ଥା କରିରଖିଥିଲେ 'ନଟୀ'କୁ ନାଟକର ଏକ ଅପରିତ୍ୟାଜ୍ୟ ଅଂଗ ରୂପେ ରଖି । ସେକ୍ସପିଅରଂକ ନାଟକାବଳୀରେ ସଂଗୀତର ଏହିପରି ସ୍ୱତନ୍ତ୍ର ବ୍ୟବସ୍ଥା ଅଛି ।

ଏହି ସାମାଜିକ ନାଟକରେ ଆମର ସେହି ପ୍ରାଚୀନ ଧାରାଟିକୁହିଁ ଯୁକ୍ତିଯୁକ୍ତ ବ୍ୟବସ୍ଥା ବୋଲି ପୁନଃପ୍ରବର୍ତ୍ତିତ କରିଥିଲି ।

କିନ୍ତୁ ଆମ ଆଲଂକାରିକମାନଙ୍କୁ ମୁଁ ଗୋଟିଏ କଥାରେ ମାନିନି । ସେମାନେ 'ଦୁଃଖାନ୍ତ' ନାଟକ ମଂଚସ୍ଥ ହେବା ବିରୁଦ୍ଧରେ ମତ ଦେଇଯାଇଛନ୍ତି । କିନ୍ତୁ ସେକ୍ସପିଅର ଓ ଇବ୍‌ସେନଙ୍କ ନାଟକାବଳୀରେ ଟ୍ରାଜେଡ଼ିର ଭୀମକାନ୍ତ ମହିମା ଅନୁଭବ କଲାପରେ, ଦୁଃଖର, ପତନର, ଅନୁତାପର ଯେ ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟ ଅଛି ତାହା ଆଉ ବୁଝାଇବାକୁ ପଡ଼ିଲା ନାହିଁ ।

ତେଣୁ ମୋର ଏହି ସାମାଜିକ ନାଟକଟିକୁ ମୁଁ 'ଟ୍ରାଜେଡ଼ି'ରେହିଁ ଜାଣି ଜାଣି ଶେଷ କରିଥିଲି । ବୋଧହୁଏ ଓଡ଼ିଆରେ ଏହା ପ୍ରଥମ ଟ୍ରାଜେଡ଼ି ।

ଏହି ନାଟକର ନିଜର ନାଟକୀୟ ମହିମା କି ଓ କେତେ ତା'ର ପରିମାଣ, ତା' ମୋର କହିବା ବାହାରେ । କିନ୍ତୁ ନାଟକ ଲେଖାର କୋଡ଼ିଏ ବର୍ଷ ପରେ, ଏତିକି କହିରଖିବା ଆବଶ୍ୟକ ମନେକଲି ଯେ, ଏହି ମୋର ପ୍ରଥମ ଅଭିନେୟ ନାଟକଟିରେ କେତେଗୁଡ଼ିଏ ଏକ୍‌ସପେରିମେଣ୍ଟ ବା ପରୀକ୍ଷା ମୁଁ ପ୍ରବର୍ତ୍ତିତ କରିରଖିଥିଲି । ମଫସଲ ଗ୍ରାମ ନିମାପଡ଼ାରେ ଯାକୁ ଲେଖିଥିଲି । ରଂଗମଂଚ ବା ଅଭିନୟକାରୀମାନଙ୍କ ସହିତ ମୋର ଘନିଷ୍ଠତା କେବେ ନ ଥିଲା ବା ନାହିଁ । ନାଟକର ଗଳ୍ପ ଓ ନାଟକର ପରିବେଷଣରୀତି ସମସ୍ତହିଁ ମନେ ମନେ ଭାବି ଭାବି ଯାହା ଠିକ୍ ବୋଧକଲି ତାହା କରିଚାଲିଥିଲି ।

ଶୁଣିଛି, କଟକ ରେଡ଼ିଓରେ ଏହା ବହୁବାର ଅଭିନୀତ ହୋଇଛି । ଆଠଗଡ଼ରେ ବା ଅନ୍ୟତ୍ର ଆମାଟର-ଅଭିନୟର କଥା ମୁଁ ଜାଣେ । କିନ୍ତୁ ରକ୍ତ, ବୋତଲ, ଚାବୁକ ଇତ୍ୟାଦି ଆମର ସଦ୍ୟ 'ସାମାଜିକତା' ଗୁଡ଼ାକ ତ ଏଥିରେ ନାହିଁ,ପେଶାଦାର ରଂଗମଂଚ ଏ ପ୍ରକାର 'ସାମାଜିକ' ନାଟକକୁ ଛୁଇଁଯିବେ କିଆଁ ? ଇତି ।

*ମାୟାଧର ମାନସିଂହ*

*୨୫ । ୧ । ୧୯୬୪*

## ପ୍ରସ୍ତାବନା

[ ନାନ୍ଦ୍ୟନ୍ତେ ତତଃ ପ୍ରବିଶତି ସୂତ୍ରଧର ଓ ନଟ ]

ସୂତ୍ରଧର– ମୋର ଆଦେଶ ଓ ବ୍ୟଞ୍ଜନାନୁସାରେ ରଙ୍ଗମଞ୍ଚ ବେଶ୍ ସଜ୍ଜିତ ହୋଇଛି । ବର୍ତ୍ତମାନ ଅଭିନୟ ଆରମ୍ଭ କରିବାର ସମୟ ଉପସ୍ଥିତ । କାରଣ ନାଟ୍ୟରସିକ ଭଦ୍ର ଓ ଭଦ୍ରାଗଣ ଆସନ ଗ୍ରହଣ କରି ଆଜିର ଅଭିନୟ, ବିଶିଷ୍ଟ ନଟନଟୀ, ଅନୁପସ୍ଥିତ ଓ ଆଗମିଷ୍ୟନ୍ତି ବଂଧୁ ବାନ୍ଧବୀମାନଙ୍କ ସମ୍ବନ୍ଧରେ କଥୋପକଥନ ଆରମ୍ଭ କରିଦେଲେଣି । ଆଉ ବେଶି କାଳ ସେମାନଙ୍କୁ ଅପେକ୍ଷାରେ ରଖିବା ଉଚିତ ନୁହେଁ; କାରଣ ଭୋଜନବେଳା ଅତିକ୍ରାନ୍ତ କରାଇ କ୍ଷୁଧାତୁର କଲେ ଲୋକେ ଅତି ପ୍ରିୟତମା ପତ୍ନୀଙ୍କୁ ମଧ୍ୟ କ୍ରୁଦ୍ଧ ହୁଅନ୍ତି । କ'ଣ ନଟ ?

ନଟ– ତା'ଠିକ୍ ।

ସୂତ୍ରଧର– ତା' ହେଲେ କ'ଣ ଅଭିନେତୃମାନଙ୍କର ବେଶବିନ୍ୟାସ ଶେଷ ହେଲାଣି ?

ନଟ– ହଁ ପ୍ରାୟ ଶେଷ–ଅନ୍ତତଃ ପ୍ରାଥମିକ ଦୃଶ୍ୟମାନଙ୍କରେ ଅବତୀର୍ଣ୍ଣ ହୋଇଥିବା ଅଭିନେତାମାନଙ୍କର ।

ସୂତ୍ରଧର– ଏହି ରସଜ୍ଞ ଭଦ୍ର ଓ ଭଦ୍ରାମାନଙ୍କୁ ସନ୍ତୁଷ୍ଟ କରାଇପାରିବା ତ ?

ନଟ– କରିପାରିବାନି କାହିଁକି ? ତେବେ ଏହା 'ସାମାଜିକ ନାଟକ'–ସାଧାରଣ ଜୀବନର ବର୍ଣ୍ଣନା– ଏଥିରେ ଉତ୍ତେଜନା ଓ ବୀରତ୍ୱ ପ୍ରଦର୍ଶନ ବା ଯୁଦ୍ଧ ଦ୍ୱନ୍ଦ୍ୱାଦିର ବ୍ୟବସ୍ଥା ନ ଥିବାରୁ କେତେକ ପ୍ରାଚୀନ ଅଭିନେତା ଅସନ୍ତୁଷ୍ଟ ।

ସୂତ୍ରଧର– ସାଧାରଣ ନାଗରିକର ଦୈନିକ ଜୀବନରେ ଉତ୍ତେଜନା ବା ବୀରତ୍ୱର ସ୍ଥାନ କାହିଁ ? ତେଣୁ ସେ ସବୁ ଏଥିରେ ଭର୍ତ୍ତି କଲେ ଅତ୍ୟନ୍ତ ଅସ୍ୱାଭାବିକ ହେବ । ତେଣୁ ଅଭିନୟକୁ ମଧ୍ୟ ପରିବର୍ତ୍ତନ କରି ଅତ୍ୟନ୍ତ ସ୍ୱାଭାବିକ କରିବାକୁ ହେବ । ସେମାନେ ତା' କରିଅଛନ୍ତି ତ ?

ନଟ– ହଁ, ସେମାନଙ୍କୁ ସେହିପରି ଶିକ୍ଷିତ କରିବାକୁ ହୋଇଛି ।

ସୂତ୍ରଧର– ତା' ନ କଲେ ଏ ଅଭିନୟ ବିଫଳ ହେବ । ଅନୁଭୂତିକୁ ସ୍ୱାଭାବିକ ଭାବରେ ବ୍ୟକ୍ତ କରିବା ସମସ୍ତ କଳାର ମେରୁଦଣ୍ଡ –ଅଭିନୟର ମଧ୍ୟ ।

ନଟ– ଆମ୍ଭର ଅଭିନେତାମାନଙ୍କୁ ମୁଁ ଏଇକଥା ବୁଝାଇଦେଇଛି ।

ସୂତ୍ରଧର– ତେବେ ଅଭିନୟ ଆରମ୍ଭ କରାଯାଉ । ନଟୀକି କହିରଖ ଦୃଶ୍ୟର ବ୍ୟବଧାନମାନଙ୍କରେ ସଂଗୀତ ଓ ନୃତ୍ୟ କରି ସମାଗତମାନଙ୍କର ମନୋନିବେଶ ଓ

ମନୋହରଣ କରିବ । ଅଭିନୟ ଆରମ୍ଭରୁ ତାକୁ ମଙ୍ଗଳ-ସଙ୍ଗୀତ ଆରମ୍ଭ କରିବାକୁ କହ ।

ନଟ— ଆଚ୍ଛା ।

(ଯବନିକା)

## ମାଙ୍ଗଳିକ
## (ନଟୀର ସଙ୍ଗୀତ)

ଅମ୍ବୁଦ ଦେଖି ଗଗନେ ମୟୂର
ଯେ ନାଟ କରେ
ନଟରାଜ ମୋର ଅବୟବେ ଦିଅ
ସେ ନାଟ ଥରେ ।
ଦକ୍ଷିଣା ପବନେ ଆମ୍ରକାନନ
ଗନ୍ଧେ ଯେସନ ହୁଏ ଛନଛନ
ଅଙ୍ଗ ମୋହର କର ସେହିପରି ନୃତ୍ୟଭରେ ।
କୁମୁଦ କମଳ ନୀଳ ସରସୀରେ
ପ୍ରଣତି ଯେସନ ଦିଅଁତି ରବିରେ
ନୃତ୍ୟେ ସେପରି ଢାଳିଦିଏଁ ପ୍ରାଣ ତୁମରି ତଳେ ।
କଙ୍କଣେ ମୋର ହେଉ ଝଙ୍କୃତ
ତୁମ ବଳୟର ନର୍ତ୍ତନ ଗୀତ
ପାଦ ମୋ ଯେସନେ ଜଳଧି ଲହରୀ ଲଘୁତା ଧରେ ।

## [ ପ୍ରଥମ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ଶିକ୍ଷକ ମଧୁବାବୁଙ୍କ ଗୃହର ପଢାଘର । ମଧୁବାବୁ କଟକର କୌଣସି ହାଇସ୍କୁଲ ଶିକ୍ଷକ— ସେ ଚୌକିରେ ଆସୀନ । ପଛରେ ଆଲମାରି —ସାମାନ୍ୟ କେତେଖଣ୍ଡ ବହି —ଖଣ୍ଡିଏ ଟେବୁଲ —ତା' ଉପରେ ପିଲାଙ୍କ ଖାତା । ମଧୁବାବୁ ଘଣ୍ଟାକୁ ଚାହିଁ 'ସମୟ ହୋଇଗଲା ଯେ' କହିଲେ ଓ ତରବରରେ ପଞ୍ଜାବି ଗଳାଇଦେଇ, ଟେବୁଲ ଉପରେ ବହିପତ୍ର ସଜାଡୁ ସଜାଡୁ— ]

ମଧୁବାବୁ— ହେ ଶୁଣିଲ— (ପୁଣି ଟେବୁଲ ସଜଡ଼ା) ହେ ଶୁଣ ମ, କ'ଣ କରୁଛ ? କୃଷ୍ଣ !! (ଚାରିଆଡ଼କୁ ଅନାଇ) ମଲା, ଏ ମାଇପିଲୁଗାଟା ଏଠି ଆଣି କିଏ ଥୋଇଲା ? ଆଚ୍ଛାଟା

ଘର ଏ...(ଲୁଗାଟା କାଢି ଗୋଟିଏ ଗୁପ୍ତସ୍ଥାନରେ ଗୁଞ୍ଜିଦେବା । ତା' ପରେ ଉଚ୍ଚସ୍ୱରରେ—) ହେ ଶୁଣିଲ ! କ'ଣ କରୁଛ, ମଲଣି ନା କ'ଣ ।...ମାଧେଇ...

(ମାଷ୍ଟ୍ରାଣୀଙ୍କର ପ୍ରବେଶ । ପ୍ରାଚୀନ ପ୍ରୌଢା । ମାଷ୍ଟ୍ରଙ୍କ ଯତ୍ନରେ ବହିରାବରଣ ମାତ୍ର ସଭ୍ୟକୃତ ହୋଇଥିଲାପରି ଜଣାପଡ଼େ ।)

ମାଷ୍ଟ୍ରାଣୀ— (ପ୍ରବେଶ କରି) କାହିଁକି ଏତେ ଡାକପଡ଼ିଛି ? ମରିନି ମ- ମୁଁ ଜୀଇଁଛି ଏଇ !

ମଧୁବାବୁ— (କିଞ୍ଚିତ୍ ବିରକ୍ତିସହ) କୁଠି ବସି ଗପ ହେଉଥିଲା ? ଏତେ ଡାକୁଛି— କେହି ଶୁଣିବାକୁ ନାହାନ୍ତି । ଦେଖିଲ ସମୟ, କେତେ ହେଲାଣି !

ମାଷ୍ଟ୍ରାଣୀ— ହେଲେ ହେଲା ଯା—ଭାସିଗଲା କ'ଣ ? ମା'ଲୋ, ଆଜି ତ ରଇବାର—ଘରକରି ଟିକିଏ ଉଛୁର ସଅଳ ହେଲେ କଅଣ ଭାସିଯାଉଚିଟି ! ଦୋପଟି, ଓକିଲ, ବାରିଷ୍ଟରଙ୍କ ଘରେ ପଛେ ଉଛୁର ସଅଳ ନିଇତି ଲାଗିଛି, ଯାଁକ ଦେହରେ ଆଉ ସୁହାଯିବନି ! ମୁଁ କ'ଣ କରିବିଟି !

ମଧୁବାବୁ— ଦେଖ, ଏ କଥା ସବୁ ଶୁଣିଲାବେଳକୁ ମୋ ହାଡ଼ ଜଳିଉଠୁଛି । କି ଅଶିକ୍ଷିତା ଏମାନେ ! ରବିବାର ବୋଲି କଅଣ ଆଉ କାମ କରିବାନି —ସମସ୍ତେ ଶୋଇବା ? ସାଇବ ସାଇବାଣୀ—

ମାଷ୍ଟ୍ରାଣୀ— (ଆଡ଼ରୁଷା ଦେଇ) ରଖ ତମ ସାଇବ ସାଇବାଣୀ । ବିଭା ହୋଇପଡ଼ିଲନି ଗୋଟେ ! ସବୁବେଳେ ସେଇ ନାଁ ଘୋଷି ହଉଚ କାହିଁକି ?

ମଧୁବାବୁ— ମଲା, ଯାହାକୁ ପ୍ରଶଂସା କରାଯାଏ ତାକୁ କଅଣ ଖାଲି ବିବାହ କରାଯାଏ ? ତମେ ସେଦିନ ଶନିଆ ଗଉଡ଼ ଭଲ ଦୁଧ ଦେଉଛି ବୋଲି ଭାରି ତାରିଫ କରୁଥିଲ— ତାକୁ ତମେ ବିଭା ହେବ ନାଁ କ'ଣ ? ଠିକ୍ ସମୟରେ—

ମାଷ୍ଟ୍ରାଣୀ— କ'ଣ କହିଲ ! ଫେର୍ ସିମିତି କହିବ ତ ଘରେ ନିଆଁଲଗେଇଦେବି । ମୁଁ ତମ ସାଙ୍ଗେ କଥାହୋଇପାରିବିନି— ଯାଏଁ । (ଯିବାର ଉଦ୍ୟମ)

ମଧୁବାବୁ— ଶୁଣ ଶୁଣ, ଏମିତି ହେଉଛ କାହିଁକି ? ତୁମେ କହିବାରୁ ସିନା ମୁଁ କହିଲି ! (ମାଷ୍ଟ୍ରାଣୀଙ୍କର ଫେରିବା) କେତେଥର କହିଲି, ସାହେବ ସାହେବାଣୀ ଯିମିତି ଠିକ୍ ସମୟରେ କାମ କରନ୍ତି, ଆମେ କାହିଁକି ସିମିତି ନ କରିବା ? ତମେ କଅଣ କଥା ବୁଝୁଛ ? ଏଥିରୁ ଗୋଟେ ଗୋଟେ ବଣୁଆ ଜୀବ ଆଣି ମଣିଷ କି ହଟହଟାରେ ପଡ଼ିଲା !

ମାଷ୍ଟ୍ରାଣୀ— ହଟହଟା ! ତମେ ହଟହଟା ହେଲାବେଳେ ବାପା ଯେ ମୁଠାକୁ ମୁଠା ଟଙ୍କା ଖର୍ଚ୍ଚ କରି ପାଠ ପଢେଇଥିଲେ ! ସେ କଥା ମନେପଡୁନି ? ହେଁ ! ନାରୀ ଜୀବନ ବୋଲି ଆମେ କଅଣ ଇମିତି ସବୁ ସହିଯିବୁ ? ଆମେ ଆଉ ହଟହଟା ହେଉନୁ ପରା ! (ଗଦ୍‌ଗଦ୍ ସ୍ୱରରେ) କି କଷ୍ଟରେ କୁଟୁମ୍ବ ଚଳାଉଛି ଯିଏ ବେଳ ଆତଯାତ କରୁଛନ୍ତି ସେହି ଏକା ଜାଣିମେ ସିନା ! ନାଁ —ମତେ ଛାଡ଼ିଦିଅ । ଏ ଭାରା ତମେ ମୁଣ୍ଡା—ଏ ଗଂଜଣା ମୁଁ ଆଉ ସହିପାରିବିନି !

ମଧୁବାବୁ— (ସୁଆଗରେ ହାତ ଧରି) କମଳା, ଏମିତି ରାଗ ହେଲେ ହେବ ! ସାମାନ୍ୟ କଥାରେ—ଆସ ଆସ, ଦେଖ ବେଳ ହୋଇଗଲା, ପୂର୍ଣ୍ଣ ଆସିବ ପରା,—ପୁଣି ତା'ର ସାଙ୍ଗ କିଏ ଆସିପାରେ —ଏହି ସବୁପାଇଁ ଯୋଗାଡ଼ କରିବନି ? ମାଧବୀ କାଇଁ ?

ମାଷ୍ଟ୍ରାଣୀ— ଏଥର ସୁଆଗ ବାହାରିଲା ପରା ! ରଖିଥା ସେ ଶୁଖିଲା ସୁଆଗ ତମର,ନିଆଁଖୁଣ୍ଟା ମାରି ଦେହକୁ ଫୁଙ୍କିବା କଥା ଇଏ !

ମଧୁବାବୁ— ଦେଖ କମଳା, ବେଳହୋଇଗଲା । ଭଦ୍ରଲୋକପିଲାଙ୍କୁ ଡାକିଆଣି କଅଣ ହଟହଟା କରିବା ?

ମାଷ୍ଟ୍ରାଣୀ— ଭଦରନୋକ ! ଆମେ ଆଉ ଭଦରନୋକ ଦେଖିନୁ ପରା ! ଖାଲି ଯାଁକରି ଘରେ ଭଦରନୋକ ଚରଚା ହୁଅନ୍ତି ଯିମିତି !

ମଧୁବାବୁ— ଶୁଣିଲ, ଏତେବେଳେ ରାଗିଲେ ହେବ ? କଅଣ ସବୁ ଠିକ୍ କରିସାରିଛ ? ଜଳଖିଆ ହୋଇସାରିଛି ତ ?

ମାଷ୍ଟ୍ରାଣୀ— ହଁ ସାରିଛି ।

ମଧୁବାବୁ— ମାଧବୀ କ'ଣ କରୁଛି ?

ମାଷ୍ଟ୍ରାଣୀ— ସେ ଘରେ ଲୁଗା ପିନ୍ଧୁଚି ।

ମଧୁବାବୁ— (ହାତଧରି) ଏ କଥା କହିଦେଇଥିଲେ ତ ହୋଇଥା'ନ୍ତା ।

ଆସ, ଆସ....

(ନେପଥ୍ୟେରୁ 'ସାର୍ ସାର୍' ଶୁଣାଗଲା)

ମଧୁବାବୁ— ଆରେ, ଏଇ ତ ପୂର୍ଣ୍ଣ ଅଇଲାଣି—ହଁ, ଆସ ପୂର୍ଣ୍ଣ— ଭିତରକୁ ଆସ । ତମେ ଗଲ; ସବୁ ଠିକ୍ ରଖ ।

(ମାଷ୍ଟ୍ରାଣୀଙ୍କ ପ୍ରସ୍ଥାନ । ପୂର୍ଣ୍ଣ ଓ କିଶୋରଙ୍କର ପ୍ରବେଶ—ଉଭୟେ କଲେଜ ଛାତ୍ର । କିଶୋର ଚଷମା-ପରିହିତ, ଫାସନେବଲ୍ ଯୁବକ—ମୁଖରେ ସ୍ନୋର ମାର୍ଜନା, କିନ୍ତୁ ଆଦୌ ଶ୍ରୀସଂପନ୍ନ ନୁହେଁ । ପୂର୍ଣ୍ଣ ଖଦଡ଼ପରିଧାୟୀ, ମୁହଁରେ ତା'ର ଗୋଟିଏ ସାରଲ୍ୟଶ୍ରୀ)

ମଧୁବାବୁ— ଆସ ପୂର୍ଣ୍ଣ ଆସ— ବସ ଏଠି । ଏ ବାବୁ କିଏ ?

ପୂର୍ଣ୍ଣ— (ନମସ୍କାର କରି) ଇଏ ବି.ଏ.ପଢ଼ନ୍ତି । ନାମ କିଶୋର ମହାପାତ୍ର—ଘର ଯାଜପୁର ।

(ଦୁହେଁ ଉପବିଷ୍ଟ ହେବା)

ମଧୁବାବୁ— ଆଚ୍ଛା, ତମ କଲେଜରେ ବଡ଼ ଏକ ଆନ୍ଦୋଳନ କ'ଣ ହୋଇଛି ଶୁଣିଲି ?

ପୂର୍ଣ୍ଣ— ହଁ, ଗୋଟିଏ ପିଲା ଅସବର୍ଣ୍ଣ ବିବାହ କରିଛି ।

ମଧୁବାବୁ— ଅସବର୍ଣ୍ଣ ବୋଇଲେ ? କି କି ଜାତି ?

କିଶୋର— କଲେଜ ପିଲାଟି ବ୍ରାହ୍ମଣ, କନ୍ୟାଟି କାୟସ୍ଥ ।

ମଧୁବାବୁ— ଆନ୍ଦୋଳନ କ'ଣ ଚାଲିଛି ଆଉ ?

ପୂର୍ଣ୍ଣ— ସେଠି ଆଉ ଆନ୍ଦୋଳନ କ'ଣ ? ସେ ପିଲାଟିକୁ ତା' ଗାଁରେ ଓ ଘରେ ସମାଜଚ୍ୟୁତ କରାହୋଇଛି । ସେ ବର୍ତ୍ତମାନ ଶ୍ୱଶୁର ଘରେ ଆଶ୍ରିତ— ଏଇ ମାତ୍ର ସମସ୍ୟା !

କିଶୋର— ଶ୍ୱଶୁର ଘରର ଅବସ୍ଥା ପୁଣି ସ୍ୱଚ୍ଛଳ ନୁହେଁ ।

ମଧୁବାବୁ— ତାହାହେଲେ ବିନା ଧନରେ ବାଣିଜ୍ୟ କରିବାକୁ ଗଲେ କାହିଁକି ? ଅନେକ କ୍ଷେତ୍ରରେ ଭାବିଚିନ୍ତି କାର୍ଯ୍ୟ କରିବାକୁ ହୁଏ— ଖାଲି ଉତ୍ତେଜନା କାମ ଦି-ଏନି ସବୁବେଳେ— ପରେ ବିଫଳତା ଓ ନୈରାଶ୍ୟ ଆସେ । ଅତି ଉତ୍ତାପରେ ତରକାରି ସିଦ୍ଧ ହେବା ଅପେକ୍ଷା ପୋଡ଼ିଯିବାର ଭୟ ବେଶି କି ନା !....ରାମିଆ...

(ନେପଥ୍ୟେ—ରାମିଆ ଚାକର କହିବାର ଶୁଣାଗଲା 'ଆଜ୍ଞା ନଉଚି')

ପୂର୍ଣ୍ଣ— ନା ସାର୍, ଭାବନା ଓ ଚିନ୍ତା ମନୁଷ୍ୟକୁ ଭବିଷ୍ୟତର ବିପଦ ଦେଖାଇ, କାମରୁ କେବଳ ନିବୃତ୍ତ କରାନ୍ତି । ଉତ୍ତେଜନାହିଁ ମନୁଷ୍ୟକୁ କାମରେ ପ୍ରେରଣା ଦିଏ । ବର୍ଷଯାକର ସୂର୍ଯ୍ୟକିରଣରେ ଯାହା ହୁଏନି, ବୈଶାଖ ମାସର ସେହି କେତୋଟି ଦିନର ତୀବ୍ର ଉତ୍ତାପରେ ତାହା ହୁଏ—ସମୁଦ୍ର ଜଳ ଆକାଶରେ ସଂଚରିତ ହୋଇ ପୃଥିବୀରେ ଖସିପଡ଼େ । ସକଳ କର୍ମରେ ଏଇ ପ୍ରକାର ତୀବ୍ରତା ଟିକିଏ ଦରକାର, ସାର୍ ! ବାଧା-ବିପଦକୁ ବିଚାରିବସିଥିଲେ କ୍ଲାଇବ ଆର୍କଟ୍ ଜୟ କରିପାରି ନଥା'ନ୍ତେ, କି ରାମମୋହନ ବ୍ରାହ୍ମଧର୍ମ ପ୍ରଚାର କରିପାରି ନ ଥା'ନ୍ତେ । ଜଗତର ସମସ୍ତ ମହତ୍ କାର୍ଯ୍ୟର ମୂଳରେ ଉତ୍ତେଜନା ଅଛି ।

ମଧୁବାବୁ—ତମେ ବର୍ତ୍ତମାନ ଯୁବକ ପୂର୍ଣ୍ଣ ! ତୁମେ ମଧ ଅତ୍ୟନ୍ତ ଭାବପ୍ରବଣ । ତୁମକୁ ବୁଝାଇ ହେବନି । ରା-ମି-ଆ !

(ରାମିଆର ପ୍ରବେଶ—ହାତରେ ଗୋଟିଏ ପାତ୍ରରେ ପାନ ଓ ସିଗାରେଟ୍)

ମଧୁବାବୁ—(ପାତ୍ରଟିକୁ ଟେବୁଲ୍‌ରେ ରଖି) ପୂର୍ଣ୍ଣ, ନିଅ ! (କିଶୋରକୁ ଲକ୍ଷ୍ୟ କରି) ଆପଣ ନିଅନ୍ତୁ । ସିଗାରେଟ୍ ଖାଆନ୍ତି ତ ?

କିଶୋର— ହଁ ମୁଁ ଖାଏ । ପୂର୍ଣ୍ଣ କିନ୍ତୁ ଏ ସବୁ ତ ଛୁଏଁନା । (ଗ୍ରହଣ ଓ ପାନର ଚେଷ୍ଟା)

ପୂର୍ଣ୍ଣ— ତମେ ଜମିଦାରପିଲା । ବାପ-ମାର ଗୋଟିଏ ପୁଅ; ଯଥେଷ୍ଟ ଟଙ୍କା ପାଅ । ମତେ ଟଙ୍କା ମିଳିବ କାହୁଁ ଯେ ମୁଁ ସିଗାରେଟ୍ ଖାଇ ଉଡ଼େଇବି ?

କିଶୋର— ତମ ଘରେ ଟଙ୍କା ନାହିଁ ପରା—ପ୍ରତିବର୍ଷ ଯେ ଜମିଦାରୀ କିଣାହେଉଛି କ'ଣ ବିନାମୂଲ୍ୟରେ ?

ମଧୁବାବୁ— ପୂର୍ଣ୍ଣର ପିତା ଟିକିଏ କଞ୍ଜୁସ; ଆଉ ନ ହେଲେ କ'ଣ....

ପୂର୍ଣ୍ଣ— ବାପା ଟଙ୍କା ଦେଉଥିଲେ ମଧ ମୁଁ ସିଗାରେଟ୍‌ରେ ଟଙ୍କା ଉଡ଼ାନ୍ତିନି । ମୁଁ ଏସବୁକୁ କିପରି ଘୃଣା କରେ ଆପଣ କ'ଣ ଜାଣନ୍ତିନି ସାର୍ ?

କିଶୋର– ମଣିଷ ହୋଇ ସିଗ୍ରେଟ୍‌ଖଣ୍ଡେ ଖାଇବନି, ଭଲ ଲୁଗା ପିଂଧିବନି, ଭଲ ଖାଇବନି– ଇଏ କି ନୀତି ମୁଁ ବୁଝିପାରୁନି । ଏସବୁ ମଫସଲିଙ୍କ କାରଖାନା ଖାଲି ।

ମଧୁବାବୁ– ହଁ, ଆଜିକାଲି ସେଇ ନୀତିର ପ୍ରଚାର ହେଉଛି ତ । ଲୋକେ ଆଣ୍ଠୁ ନ ଲୁଚା ଲୁଗା ପିନ୍ଧିବାକୁ, ମୁଣ୍ଡଟା ଖିଅର ହେବାକୁ, ଲୁଗାପଟା ଯଥାସମ୍ଭବ ମଇଳା ରଖିବାଟାକୁ ଓ ଘିଅଦୁଧ ଖାଇବାଟାକୁ ବିଳାସ ରୂପେ ଓ ମାଛ-ମାଂସ ଖାଇବାକୁ ପାପ ଓ ବ୍ୟଭିଚାର ରୂପେ ଗ୍ରହଣ କରିବାକୁ ଆଦର୍ଶ ବୋଲି ଗ୍ରହଣକରୁଛନ୍ତି । କିନ୍ତୁ ମୁଁ ତା'ର ଅର୍ଥ ବୁଝିପାରୁନି ।

ପୂର୍ଣ୍ଣ– (ଉତ୍ତେଜିତ ଭାବରେ) ତା'ର ଅର୍ଥ ଏହି –ଯେଉଁ ଦେଶରେ ସାଧାରଣ ଲୋକେ ଦୁଇଓଳି ଦି' ମୁଠା ଭାତ ଖାଇବାକୁ ପାଆନ୍ତିନି, ଯେଉଁଠି ଲୋକେ ଏତେ ଦୀନ ଯେ ରୋଗରେ ପଡ଼ିଲେ ତାଙ୍କର ଔଷଧ କିଣିବାକୁ ଶକ୍ତି ନ ଥାଏ; ଯେଉଁଠି ଘୋର ଦାରିଦ୍ର୍ୟରେ ପଡ଼ି ବିରାଟ ପ୍ରତିଭା ସବୁ ନଷ୍ଟ ହୋଇଯାଉଛି; ଲୋକେ ଜୀବନରେ ଆନନ୍ଦ କ'ଣ ଜାଣିପାରୁନାହାନ୍ତି, ଦେହରେ ଯୌବନ ଓ ଯୌବନରେ ସୁଖ କ'ଣ ଲୋକେ ଯେଉଁଠି ଜାଣୁନାହାନ୍ତି; ଜୀବନ ଯେଉଁଠି ଏକ ଦୀର୍ଘ ଅଶ୍ରୁରେଖା ମାତ୍ର, ଜନ୍ମ ଯେଉଁଠି ଦୁଃଖର ଓ ମୃତ୍ୟୁ ସୁଖର ପଥ ବୋଲି ଗୃହୀତ; ଯେଉଁଠି ଦୁଇଜଣ ପଥିକ ଏକତ୍ର ହେଲେ ନିଜ ନିଜର ଦୁଃଖଦୁର୍ଦ୍ଦଶା ଛଡ଼ା ଅନ୍ୟ କିଛି କହିବାକୁ ପାଆନ୍ତିନି, ଯୁବକ ଯେଉଁଠି ପୁଷ୍ଟି ଅଭାବରୁ ବୃଦ୍ଧ ଓ ବୃଦ୍ଧ ଯେଉଁଠି ଜୀଇଁ ଥାଉ ଥାଉ ମୃତ; ଜୀବନ ଯେଉଁଠି ସକଳ ମାନବିକ ଦୁର୍ଗତିର ଗୋଟିଏ ଭୟାବହ ରଂଗମଂଚ, ସେଠି ଆନନ୍ଦ ଉତ୍ସବରେ, ସିଗ୍ରେଟ୍-ଖିଆରେ, ବିଳାସ-ବ୍ୟସନରେ ଧନ ବ୍ୟୟ ଓ ମନ ବ୍ୟୟ କରିବା କ'ଣ ପୁରୁଷକାର ?

ମଧୁବାବୁ– ପୂର୍ଣ୍ଣ, ତମେ ପିଲା ଅଛ । ମୋ ବୟସ ହେଲେ ତମର ଏ ମତ ବହୁତ ପରିବର୍ତ୍ତନ ହୋଇଯିବ, ଏହା ମନେରଖ । ଶିଂଘ ଗଜୁରିଲାବେଳେ ପିଲା ବାଛୁରୀ ପବନକୁ ମଧ ଢିଅ ମାରିବାର ଚେଷ୍ଟାକରେ । କିନ୍ତୁ ବେକରେ ଜୁଆଳି, ଆଉ ପିଠିରେ ପାଞ୍ଚଣ ପଡ଼ିଲେ ସେ ଭାବଟା ଆଉ ରହେନି ତ ! ତମ ବୟସରେ ମୁଁ ମଧ ଏହିପରି ଥିଲି । କିନ୍ତୁ ଆଜି ଦେଖୁଛି ଧନ-ଦାରିଦ୍ର୍ୟର ପ୍ରଭେଦ ବିଧାତାର ଅଭିପ୍ରେତ ।....ରାମିଆ, ଠିଆଟା ରହିଲୁ କାହିଁକି ? ଯା' ସେଣେ– (ରାମିଆର ପ୍ରସ୍ଥାନ)

(ଠିଆ ହୋଇ) ହଉ ତମେ ଥାଅ ପୂର୍ଣ୍ଣ । ଆଜି ଏଠି ରହିବ ତ ? ମୁଁ ଟିକିଏ ଯାଉଛି, ମୋର କାମ ଅଛି ।

ପୂର୍ଣ୍ଣ– କୁଠି, କି କାମ ସାର୍ ? ଟ୍ୟୁସନ୍ ?

ମଧୁବାବୁ– ହଁ–ସେହି ଜମିଦାରପିଲାଟିକି !

ପୂର୍ଣ୍ଣ– ସାର୍, ମୁଁ ସେ ପିଲାଟାକୁ କାଲି ଦେଖିଥିଲି ବଜାରରେ । ସେଇଟା କି ମୋଟା ହେଲାଣି ! ଏ ବର୍ଷ ସେଣ୍ଟଅପ୍ ହୋଇପାରିନି ପରା ! ତାହାହେଲେ ଦେଖୁଛି ତା' ଦେହପରି ବୁଦ୍ଧିଟା ମଧ–

ମଧୁବାବୁ—(ମୃଦୁ ହସି) ମୁଁ ଦେଖୁଛି, ଧନୀ, ଜମିଦାରଙ୍କ ଉପରେ ତମର ବଡ଼ ରାଗ ତ ! ତମେ ନିଜେ ପରା ଜମିଦାର ! ହଉ ମୁଁ ଯାଉଛି—ତମେ ଥାଅ—

ପୂର୍ଣ୍ଣ— ଆଚ୍ଛା, ନମସ୍କାର !

(ମଧୁବାବୁଙ୍କର ପ୍ରସ୍ଥାନ, ପୂର୍ଣ୍ଣ ଓ କିଶୋର ଆସନ ଗ୍ରହଣ କଲେ ଓ କିଛିକ୍ଷଣ ନୀରବ ରହିଲେ ।)

କିଶୋର— ହଉ ବକ୍ତୃତା ତ ସବୁଠି ଶୁଣୁଛି ତୋର, ଏବେ ତୋ' ଲୀଳାବତୀଙ୍କି ଟିକିଏ ଦେଖା ।

ପୂର୍ଣ୍ଣ— ତୋର ଏ ଉଦ୍‌ବିଗ୍ନତା ମତେ ଭଲଲାଗୁନି, କିଶୋର । ତୁ ଟିକିଏ ଉଚ୍ଚଚିନ୍ତା କର୍ । ବାପାଙ୍କର ପଇସା ଅଛି । ତୁଇ ତ ତା'ରି ଅଧିକାରୀ ହେବୁ; ତାକୁ ଭଲଭାବରେ ବ୍ୟୟ କରିବାକୁ ଶିଖ୍ । ସେତିକିବେଳୁ ମୋ ସାଥୀ ଧରିଛୁ ଯେ, ଖାଲି ମାଧବୀ କଥା ପଚାରୁଛୁ । ତୋର କ'ଣ ଆଉ କିଛି କଥା ନାହିଁ ? ତା'ପରେ, ସେ ଦିନ ତ ସିନେମାରେ ତା'କୁ ଦେଖିଛୁ ବୋଲି କହୁଛୁ— ଆଉ କ'ଣ ପୁଣି ?

କିଶୋର— (ରସିକତାରେ) ସେ ଦେଖା କିଛି ନୁହେଁ—ଟିକିଏ ଭଲକରି ଦେଖିବା ।

ପୂର୍ଣ୍ଣ— ଲାଭ ?

କିଶୋର— ଏକଜିବିଶନ୍ ହେଲେ ଲୋକେ ଦଉଡ଼ନ୍ତି କାହିଁକି ? ଦେଖିବାର ଜିନିଷକୁ ଦେଖିବାଟା ତ ଅପରାଧ ନୁହେଁ । ତୁ ବାପା ମା'ଙ୍କ କଥା ନ ମାନି ଗରିବଘରେ, ପୁଣି ତମଠୁ ନୀଚରେ ବିଭାହେଉଛୁ । ଯା'କୁ ବିଭା ହେଉଛୁ ତା' ଗୁଣଗ୍ରାମ ପୁଣି ଏତେ ଶୁଣାଯାଉଛି—ଏଥିରେ ତା'କୁ ଟିକିଏ ଦେଖିଯିବା କ'ଣ ଅପରାଧ ହୋଇଗଲା ? ପୁଣି ମୁଁ ତୋର ବଂଧୁ ! ସେଦିନ ପରା ରାଜୁ ଯା'କୁ ବିଭାହେବ ତାକୁ ସେ ତା' ବଂଧୁମାନଙ୍କ ସହ ଦେଖିଆସିଛି ! ମୁଁ ପରା ସେଥିରୁ ଜଣେ । କାଇଁ କ'ଣ ଅପରାଧଟା ହେଲା ମୁଁ ତ ଜାଣିପାରିଲିନି ! ତୁ ଖାଲି ବକ୍ତୃତା ଦେଇଜାଣୁ ! ଭାବିଛୁ ବୋଧହୁଏ, ଆମେ ଏଡୁକେଟେଡ୍ ଗାର୍ଲଙ୍କ ସଙ୍ଗେ ମିଶୁନି ! ଏଇ କଟକ ସହରରେ କେତେ ଓକିଲ, ଜମିଦାରଙ୍କ ଘରକୁ ତତେ ନେଇଯିବି—ହାଇଲୀ ଏଡୁକେଟେଡ୍ କଲ୍‌ଚର୍ଡ଼ ଗାର୍ଲଙ୍କ ସଙ୍ଗେ ତୋର ପରିଚୟ କରେଇଦେବି ଆ;—ତୁ ଗୋଟେ କ'ଣ ଜାଣୁବେ ? ନା ହେଲା ଏବେ (ଉଠିବାର ଚେଷ୍ଟା)—ଭାରି ତ ଗାର୍ଲ ବିଭାହେଉଛି—

ପୂର୍ଣ୍ଣ— ନାଇଁ, ନାଇଁ, ମୁଁ ସିମିତି ଭାବିନଥିଲି । ମତେ କ୍ଷମା କର—ତତେ କଷ୍ଟ ଦେଲି । (ଧରି) ମୋର କି ଏଥିରେ ତିଳେ ଆପତ୍ତି ଅଛି ? ଡାକୁଛି ରହ । କୃଷ୍ଣ—

(ଡାକିବା—ନେପଥ୍ୟେ କୃଷ୍ଣ ଉତ୍ତର ଦେଲା—'ଯାଉଛି')

ପୂର୍ଣ୍ଣ— ରହ । ଆସୁଛି—ମାଧବୀର ଭାଇ ।

(କୃଷ୍ଣର ପ୍ରବେଶ । ସୁଗଠିତ ବାଳକ—ସ୍କୁଲ ଛାତ୍ର)

ପୂର୍ଣ୍ଣ— ଅପା କ'ଣ କରୁଛି ? ଡାକିଦେବ ଟିକିଏ ?

କୃଷ୍ଣ— ମତେ ଗୀତ ଶିଖେଇବାକୁ ଯାଉଥିଲା । ଡାକିଦେଉଛି ।

ପୂର୍ଣ୍ଣ— କିଶୋର, ଏଇକ୍ଷଣି ଡାକିବାନି । ମାଧବୀ ସୁନ୍ଦର ଗୀତ ବୋଲି ଜାଣେ, ସେ ଗୋଟିଏ ଗୀତ ବୋଲୁ ? କ'ଣ ?

କିଶୋର— ହଉ, ହଉ !

ପୂର୍ଣ୍ଣ— ଯା ଅପାକୁ କହିଦିଅ, ଆମେ ଏଠି ବସିଛୁ ଗୋଟିଏ ଗୀତ ବୋଲିବ ।

କୃଷ୍ଣ— ଆଚ୍ଛା—(ପ୍ରସ୍ଥାନ)

କିଶୋର— ମଧୁବାବୁ ପିଲାଗୁଡ଼ିଙ୍କୁ ବେଶ୍ ଟ୍ରେନିଂ ଦେଇଛନ୍ତି ତ ! ବେଶ୍ ଭଦ୍ର, ବେଶ୍ ସ୍ମାର୍ଟ୍ । ଲାଜ ନାହିଁ, ପୂର୍ଣ୍ଣି—

ପୂର୍ଣ୍ଣ— ସେଇଯୋଗୁଁ ତ ଯାଙ୍କ ଘରେ ମୋର ଘନିଷ୍ଠ ସମ୍ପର୍କ ।

କିଶୋର— (ହସି ହସି) ତେବେ ବିଶେଷତଃ—

ପୂର୍ଣ୍ଣ— ନାଁ, ନାଁ, ସେ ସବୁ କିଛି ନୁହେଁ । ଲୋକେ ନାନା କଥା କହିପାରନ୍ତି ।

କିଶୋର— କିନ୍ତୁ, ପୂର୍ଣ୍ଣ ! ବଡ଼ ଦୁଃସାହସ କରୁଛୁ ।

ପୂର୍ଣ୍ଣ— ଆରେ, ଇଉରୋପ୍‌ରେ ଲୋକେ ଯୁଦ୍ଧଭୂମିରେ ପ୍ରାଣ ଦେଇ, ଅଜ୍ଞାତ ଦେଶ ଆବିଷ୍କାର କରି, ପ୍ରକୃତିକୁ ଜବଦ୍ କରି ସାହସ ଦେଖାନ୍ତି । ଏ ଦେଶରେ ସେ ସବୁର ଅଭାବ । ତେଣୁ ଏଇ ବିବାହରେ ମୋର ଯତ୍‌କିଞ୍ଚିତ୍ ସାହସ ଦେଖୋଉଛି ଭାଇ, ଆଉ କଅଣ ?

କିଶୋର— କିନ୍ତୁ ଫଳରେ—

(ନେପଥ୍ୟେ ଗୀତ ଧ୍ୱନି)

ପୂର୍ଣ୍ଣ— ହଉ, ଭବିଷ୍ୟତ ଛାଡ଼ି ବର୍ତ୍ତମାନର ମଧୁରତା ଉପଭୋଗ କର !

(ନେପଥ୍ୟେ ମାଧବୀର ସଙ୍ଗୀତ)

ଫୁଟିଲେ ଫୁଲ ଦୂର କାନନେ
ଭ୍ରମର କାହିଁ ଥାଏ ଖୋଜି ତା ମଧୁ ଖାଏ
ଲଭେ ସକଳ ତହିଁ ଜୀବନେ (ଧ୍ରୁବ)
ଏକ ହୃଦ କମଳେ ଉଠିଲେ ପ୍ରୀତିବାସ
ଆରେକ ମୁଖେ କିପାଁ ଫୁଟଇ ମଧୁହାସ
ଏକର ଆଶା ଆନ
ବୁଝେ କିପରି ସତେ ଗୋପନେ ।
ପରାଣେ ପରାଣେ ଏ ମଧୁର ବୁଝାବୁଝି
ଗୋପନେ ଗୋପନେ ଏ ପ୍ରଣୟ ସୁଝାସୁଝି
ଖଞ୍ଜିଲା ଧାତା କିପାଁ
ସୁରଭି ଭରି ସାରା ଭୁବନେ ।

(ଗାନ ଶେଷ)

କିଶୋର— ବେଶ୍ ସୁନ୍ଦର ତ ! ରେକର୍ଡ଼ରେ ଦେବାର ଚେଷ୍ଟା କରୁନୁ କାହିଁକି ?

ପୂର୍ଣ୍ଣ— (ମୃଦୁ ହସି) ପ୍ରାଣ-ରେକର୍ଡ଼ରେ ତ ନିତ୍ୟ ଏ ସବୁ ଗୀତ ଖୋଦିତ କରି ରଖୁଛି ! ପ୍ରାଣ-ହୀନ ରେକର୍ଡ଼ରେ ସେଇମାନଙ୍କ ଗୀତ ରହେ ଯେଉଁମାନଙ୍କ ବାଣୀକି ଧାରଣ କରି ରଖିବାକୁ ଅନ୍ୟ ପ୍ରାଣ ନ ଥାଏ । ବୁଝିଲୁ ?

କିଶୋର— ହଉ ତୁ ରେକର୍ଡ଼ କରୁଥା । ଏବେ ସ୍ୱୟଂ ବାଣୀଟିକି ଦେଖା ଟିକିଏ, ମୁଁ ଯିବି ଯେ !

ପୂର୍ଣ୍ଣ— ହଉ ହଉ—କୃଷ୍ଣ ! (କୃଷ୍ଣକୁ ଡାକିବା)

(ନେପଥ୍ୟରୁ କୃଷ୍ଣ 'ଯାଉଛି' କହି ପ୍ରବେଶ କଲା )

ପୂର୍ଣ୍ଣ— ଅପାକୁ ଡାକିଦିଅ !

କୃଷ୍ଣ— ଆସୁଛି । (ପ୍ରସ୍ଥାନ)

ପୂର୍ଣ୍ଣ— ସଂଧ୍ୟା ହୋଇଗଲା ଯେ !

କିଶୋର— ହଁ , ମୋର ବଜାରରେ କାମ ଅଛି । ତାକୁ ସାରି ଚଞ୍ଚଳ ହଷ୍ଟେଲ ଯିବାକୁ ହେବ । ଡେରିହେଲେ ତ ଗେଟ୍-କିପର୍ ହାତରେ ପଡ଼ିବାକୁ ହେବ । ଏବେ ସେଗୁଡ଼ାକ ଯମଦୂତ ପରି ଠିଆରହୁଛନ୍ତି ।

(ମାଧବୀର ପ୍ରବେଶ—ସୁନ୍ଦରୀ, ତନ୍ୱୀ, ରୁଚିସଂପନ୍ନା, ଲଜ୍ଜା-ନମ୍ରା । କିଶୋର ଓ ପୂର୍ଣ୍ଣ ଉଭୟେ ଦଣ୍ଡାୟମାନହେଲେ ।)

ପୂର୍ଣ୍ଣ— ଆସ, ଆସ, ବସ ଏ'ଠି ! ଏ ଗୀତ କିଏ ଦେଇଥିଲା ? ମୁଁ ତ ନୂଆ ଶୁଣିଲି ଆଜି ।

ମାଧବୀ— କୃଷ୍ଣ କୁ'ଠୁ ଲେଖି ଆଣିଥିଲା ।

(ସମସ୍ତେ ଉପବେଶନକଲେ । କିଶୋର ମାଧବୀର ସର୍ବାଙ୍ଗ ନିରୀକ୍ଷଣ କରି ଚାହିଁ ଚାହିଁ ହଠାତ୍ ଉଠିବା—)

କିଶୋର— ହଉ, ଥା ପୂର୍ଣ୍ଣ ! ମୁଁ ଯାଏଁ—ସଂଧ୍ୟା—

ପୂର୍ଣ୍ଣ— ହଉ ଯା—ହଁ, କୁମୁଦକୁ କହିଦେବୁ, ମୋ ବହିଗୁଡ଼ାକ ଯେପରି ସେ ତୋ ରୁମ୍‌ରେ ଛାଡ଼ିଯାଏ—ମୁଁ ଗାଁକୁ ଯିବି ।

କିଶୋର— ଆଚ୍ଛା ମୁଁ କହିବି ।

(ପ୍ରସ୍ଥାନ—ଯାଉଁ ଯାଉଁ ମାଧବୀକୁ ବାରଂବାର ଅବଲୋକନ)

ମାଧବୀ— ଏ କିଏ ? କଲେଜବାବୁ ? କୁଆଡ଼େ ଆସିଥିଲେ ?

ପୂର୍ଣ୍ଣ— ତମକୁ ବାଛିନେବାକୁ ।

ମାଧବୀ— ଛି ଛି ଛି, ସେ ସବୁ ଥଟା ମତେ କରନି ! ଏସବୁ ଭାବିଲେ ମୋ ଦେହ କଣ୍ଟକିତ ହୋଇଉଠେ । କାଇଁକି—ତମେ କାଇଁକି ଯାକୁ ତାକୁ ସଙ୍ଗରେ ଆଣ ? ଏ ଲୋକଟାର ଚାହାଣିଟା କିମିତି କେଜାଣି, ମତେ ଘୃଣା ଆସୁଛି କାଇଁକି !

ପୂର୍ଣ୍ଣ— ଛି ମାଧବି, ମନୁଷ୍ୟକୁ ଏପରି ଘୃଣା କରିବ କାହିଁକି ? ତମେ ଜାଣ, ବିଛୁଆତି ମଧ ଓଷଦରେ ଲାଗେ । କାହା ଭିତରେ ବିଧାତା କି ଗୁଣ ରଖିଛି ତା' ତୁମେ ଜାଣିପାରିବ

ନି— କିନ୍ତୁ ଦେଖିବ କିଛି ନା କିଛି ଗୁଣ ଅଛି । ଏ ପିଲାଟା ସେତେ ଖରାପ ନୁହେଁ ତ— ମୁଁ ବିଶେଷ କିଛି ଜାଣେନା । ତେବେ ଦିନେ ମୋ ଆଗରେ ତୁମ୍ଭର ନିନ୍ଦା କଲା । ମୁଁ ତା' ସହିପାରିଲିନି । ତମକୁ ଥରେ ଦେଖେଇଦେଇ ତା'ର ମୁହଁ ବନ୍ଦୀକରିବି ବୋଲି ଭାବି ଡାକିଆଣିଲି । ମୋର ଅନ୍ତରର ଇଚ୍ଛା ଲୋକେ ଜାଣନ୍ତୁ ମୁଁ କିପରି ବାଳିକାର ସ୍ନେହ ପାଇଛି— ଏଁ ! ଲାଜ ଏତେ କରୁଛ କ'ଣ ?

(ମାଧବୀର ଲଜ୍ଜାଭିନୟ)

ମାଧବୀ— (ମୁଣ୍ଡ ଟେକି) ଛି, ତୁମେ ଗୋଟାଏ ବାୟା ! ମୋତେ ଦେଖି ଯେ ଲୋକେ ହସୁଥିବେ, ଏ କଥା ତୁମର ଧାରଣା ନାହିଁ ପରା ! ଛି, ବଡ଼ ଲାଜକଥା । ମୁଁ ଏସବୁ ଜାଣିଥିଲେ ଯା'ତା ଆଗରେ ଠିଆହୁଅନ୍ତିନି; ତମେ ଆଉ ଇମିତି କା'କୁ ଡାକିବନି— ମୋ ରାଣ ! ମାଆଲୋ, ଲୋକେ କ'ଣ କହୁଥିବେଟି !

ପୂର୍ଣ୍ଣ— ହଉ, ଆଦେଶଟା ମାନିବି ।

ମାଧବୀ— ମାନିବ ଆଉ କେବେ ? ଗାଁକୁ ଯିବ ବୋଲି କହୁଛ ପରା— କେବେ ଯିବ ?

ପୂର୍ଣ୍ଣ— କା'ଲି ପ'ରଦିନ । ପରୀକ୍ଷା ତ ସରିଲା । ଆଉ ଏଠି କାମ କିଛି ନାହିଁ— ଗାଁରେ କିଛି କାମ କରିବି ଯାଇ ।

ମାଧବୀ— ଆସିବ ପୁଣି କେବେ ?

ପୂର୍ଣ୍ଣ— ତମକୁ ଯେବେ ନେବାକୁ ପଡ଼ିବ । ଯିବ ତ ?

ମାଧବୀ— (ଲଜ୍ଜାବନତ)

ପୂର୍ଣ୍ଣ— ମାଧବି, କଥା କହ, ଆଜି ସମସ୍ତ ନିଷ୍ପତ୍ତି କରିଦେବାକୁ ଆସିଛି !
(ସେ ଆସନରୁ ଉଠି ମାଧବୀ ସମ୍ମୁଖ ଟେବୁଲରେ ବସିଲା ଓ ମାଧବୀ ହାତ ଧରିଲା)
କଥା କହ ମାଧବି— କ'ଣ କହିବାର ଅଛି ସ୍ପଷ୍ଟ କହ ।

ମାଧବୀ— ମୋର କହିବାର କଥା କ'ଣ ତମେ ଜାଣନି ?

ପୂର୍ଣ୍ଣ— ଜାଣେ, ଜାଣେନି ମଧ । ବସନ୍ତ ଆରମ୍ଭରେ ଆମ୍ବଗଛରେ ଯେତେ ବଉଳ ହୁଏ ସବୁ କ'ଣ ଆମ୍ବ ହୁଏ ? ମନୁଷ୍ୟର ଅଧିକାଂଶ ଆଶା ତ ଶୁଖି ଝଡ଼ିପଡ଼େ ! ମୋର ଆଶଙ୍କା ଅଛି...

ମାଧବୀ— କି ଆଶଙ୍କା ?

ପୂର୍ଣ୍ଣ— ମୋର ଅଯୋଗ୍ୟତାର ଆଶଙ୍କା ?

ମାଧବୀ— ମତେ ଅକାରଣ ଏତେ ବଡ଼ କରୁଛ ବୋଲି ନିଜେ ନିଜକୁ ଅଯୋଗ୍ୟ ଜଣାପଡୁଛ । କିନ୍ତୁ ମୋର ସେମିତି କ'ଣ ଅଛି କହିଲ ? ମୁଁ ତ ସାଧାରଣ ଭିତରେ ସାଧାରଣ । ମତେ ବୃଥା ପ୍ରଶଂସା ଭଲ ଲାଗୁନାହିଁ । ତା'ପରେ, ସ୍ନେହ ଢଳା ହୋଇସାରିଲା ପରେ ଯୋଗ୍ୟ-ଅଯୋଗ୍ୟର ପ୍ରଶ୍ନ ଉଠୁଛି କାହିଁକି ?

ପୂର୍ଣ୍ଣ— ତେବେ ମୁଁ ନିଶ୍ଚିନ୍ତ ରହିଲି ।

ମାଧବୀ— ମୋ' ଠାରୁ ଯାହା ଆଶାକର ସେଥିରେ ନିଶ୍ଚିନ୍ତ ରହ । କିନ୍ତୁ ସମାଜ ତ ଅଛି । ବୋଉ କଥା ତ ଜାଣ—ତମ ଘର ଅବସ୍ଥା ତ ତମକୁ ଜଣା ।

ପୂର୍ଣ୍ଣ— ସେ ସବୁକୁ ଭାଙ୍ଗି ପଦାଘାତ କରି ଚାଲିବାକୁ ହେବ !

ମାଧବୀ— ଏପରି ସଂଗ୍ରାମ କ'ଣ କରିପାରିବା ?

ପୂର୍ଣ୍ଣ— ମାଧବି, ତୁମକୁ ନେଇ ମୁଁ ଗୋଟିଏ ପ୍ରକାର ଭବିଷ୍ୟତ ଗଢିବାଲାଗି ଆଉ ଗୋଟିଏ ଭବିଷ୍ୟତକୁ ଜଳାଞ୍ଜଳି ଦେଇଛି । ମୋ ବିପଦବେଳେ ତମେ ମୋ ପଛରେ ଠିଆହୋଇ କାନ୍ଧରେ ହାତ ଦେଇଥିଲେ ମୁଁ କି ସଂସାରକୁ ଖାତିର୍ କରିବି ?

ମାଧବୀ— କିନ୍ତୁ ଆମ୍ ସମାଜରେ ନାରୀଙ୍କର ଯେଉଁ ସ୍ଥାନ, ସେଥିରେ ମୋ ସାହସର ସୀମା ଅଛି ତ ? (କିଛିକ୍ଷଣ ନିରବତା ପରେ ପୂର୍ଣ୍ଣର ହାତ ଧରି) ପୁଣି ଥରେ ଥରେ ମୋ ମନରେ କେଜାଣି କାହିଁକି ଏକ ତୀବ୍ର ଆଶଙ୍କା ଉଠୁଛି ଯେ, ମୁଁ ତମକୁ ପାଇପାରିବିନି । ତମକୁ ପାଇବାର ଯୋଗ୍ୟତା ତ ମୋର ନାହିଁ, କିନ୍ତୁ ପ୍ରାଣର ପ୍ରାଣ ଚାହେ ତୁମ ପଦତଳେ ପ୍ରାଣ ଢାଳିଦେବାକୁ । ସତେ କ'ଣ ତମେ ମତେ ଗ୍ରହଣକରିବ ?

ପୂର୍ଣ୍ଣ— ମାଧବୀ, ପାଗଳୀପରି କ'ଣ କହୁଛ ମ ? ମୁଁ ତମକୁ ଗ୍ରହଣ କରିବିନି ?

ମାଧବୀ— କେଜାଣି ! ଏ ମନର କେଉଁ ଅଜ୍ଞାତ କୋଣରୁ କେଉଁ ଏକ ଦୈତ୍ୟ ଚିତ୍କାର କରିଉଠୁଛି— ମୋ ଭାଗ୍ୟରେ ତମେ ଯେପରି ନାହଁ । ଭାଗ୍ୟର ଗତି ବିଚିତ୍ର । ମୋର ଗୋଟେ ସାଙ୍ଗ ଆରବର୍ଷ ବିଭାହୋଇଗଲା—ଏବେ ବିଧବା ହୋଇ ଘରକୁ ଫେରିଆସିଛି । ମନୁଷ୍ୟର ଭାଗ୍ୟ ତ ଅନ୍ୟ ହାତରେ !

ପୂର୍ଣ୍ଣ— ନାଁ —ମନୁଷ୍ୟର ଭାଗ୍ୟ ନିଜ ହାତରେ ।

ମାଧବୀ— ହଉ, ଥାଉ ଏ ବୃଥା ତର୍କ । ମୋ ପ୍ରାଣ କଂପିଉଠୁଛି ! ବାପା ତ ଜାଣି ଜାଣି ଆମର ମିଳନ ଲାଗି ସୁଯୋଗ ଦେଇଛନ୍ତି— ତେବେ ଏ ବୃଥା ତର୍କ କାହିଁକି ?

ପୂର୍ଣ୍ଣ— ବେଶ୍, ସେୟା କହ ମାଧବି ! ତୁମର ପ୍ରେମ, ଅରୁଣାଲୋକ ହୋଇ ମୋର ହୃଦୟ-ପଦ୍ମକୁ ବିକଶିତ କରିଦେଇଛି । ଏହି ଦୀର୍ଘ ଦୁଇବର୍ଷ କାଳ ତୁମ ପ୍ରେମର ସୌରଭ ବାସ୍ତବିକ ମତେ ପାଗଳ କରି ରଖିଛି । ମୁଁ ମୋର ଅଧ୍ୟୟନ ଭୁଲିଛି । ପିତାମାତା, ବଂଧୁଜନଙ୍କୁ ଭୁଲିଛି, ସବୁ ଭୁଲିଛି । ଭବିଷ୍ୟତରେ ତୁମ୍ଭେହିଁ ମୋର ସକଳ କର୍ମ୍ମର ପ୍ରେରଣା ହେବ । ତମକୁ ଯଦି ନ ପାଏ ତେବେ ଏ ଜୀବନ ନଷ୍ଟ, ଭସ୍ମ, ଧୂଳି, ପାଉଁଶ ହେବ ।

ମାଧବୀ— (ଉଠି କାନ୍ଧରେ ହାତଦେଇ) ଛି,ଛି, ଏପରି ବିବ୍ରତ ହୁଅନି ! ମୋ ଛାର୍ ପାଇଁ ଏତେ ବ୍ୟାକୁଳ କାହିଁକି କହିଲ ? ତମକୁ କ'ଣ ବାଳିକା ଅପ୍ରାପ୍ୟ ହେବ ?

ପୂର୍ଣ୍ଣ— ମୁଁ କି କେବଳ ନବନୀତ କୋମଳା ବାଳିକାଟିଏ ଚାହେ ? ମୁଁ କେବଳ ତମକୁହିଁ ଚାହେ ମାଧବି ! ମୋ ଆଖିରେ ତମେ ଗୋଟିଏ ବାଳିକାଠାରୁ ବହୁ ଅଧିକ । ମନେଅଛି ଯେଉଁଦିନ ମୁଁ ତମକୁ 'ଜେନି ଡାର୍କ'ର କଥା କହୁ କହୁ ତମେ କହିପକାଇଲ, ''ଆମ ଦେଶରେ ଇମିତି ହଉ ନାହାନ୍ତି କାହିଁକି ? ଆମେ କ'ଣ ଖାଲି ପନ୍ନୀ ହୋଇଥିବୁ

ସବୁବେଳେ ?'' ସେହିଦିନଠାରୁ ମୁଁ ତୁମକୁ ମନେ ମନେ ବରଣ କଲି ଯେ ତୁମ୍ଭେହିଁ ମୋର ଜୀବନ ସଂଗ୍ରାମର ପ୍ରକୃତ ସଙ୍ଗିନୀ ହେବ !

ମାଧବୀ— ଛି, ପାଗଳପରି କାହିଁକି ଇମିତି କହୁଛ କହିଲ ! ପରେ ମୋହ ଭାଙ୍ଗିଗଲେ ଅନୁତାପ କରିବ ଯେ ! ମତେ ଭଲକରି ଜାଣିନା ବୋଲି ସିନା ପୂଜାକରୁଛ; ପରେ ବାସିହୋଇଗଲେ ପୂଜାଫୁଲ ପରି ପୁଣି ଖତଗଦାରେ ପଡ଼ିବି ଯେ ! ହଉ ଆସ, ବାପା ଆସିବା ସମୟ ହୋଇଗଲା— ତେଣେ ବୋଉ ବିରକ୍ତ ହେଉଥିବ । ତମକୁ ଜଳଖିଆ ଦେଇଦିଏଁ କି, ମୁଁ ଯିବି ତେଣେ । ଆସ, ଭୋଖ ହେବଣି—ଉଠ !

ପୂର୍ଣ୍ଣ— ଆଚ୍ଛା, ଚାଲ, କିନ୍ତୁ ପ୍ରଥମେ ମୋର ପୂଜା ଗ୍ରହଣକରିସାର, ମାଧବି— ବାସି ହେବା ବେଳ ତ ଅଛି । (ପ୍ରସ୍ଥାନ)

(ଯବନିକା)

## [ ଦ୍ୱିତୀୟ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ପୂର୍ଣ୍ଣର ଗ୍ରାମରେ ଗୋଟିଏ ହରିଜନ କୁଟୀର । ଗୃହସ୍ଥ ରାମ ପାହାଣ ଅନୁପସ୍ଥିତ । ଗୃହିଣୀ ଦୁଆର ଲିପୁଛି । ପାଖରେ ଦଶବର୍ଷର ପୁଅଟିଏ କ'ଣ ବହିଟିଏ ଧରି ପିଣ୍ଡା ଉପରେ ପଢୁଛି ।]

ଗୃହିଣୀ— (ଲିପୁ ଲିପୁ) ବାପ, ଦେଖିଲୁ ବାପା କାଇଁକି ଏତବେରଯାଏଁ ଆଇଲେ ନାଇଁ । ସାଆଁତଙ୍କ ଘରକୁ ଯାଇଥିଲେ, ଏତେବେରଯାଏଁ କ'ଣ କଲେମ ! ବେର ଆସି ଏତେ ହେଲାଣି—ଚୁଲୀରେ ହାଣ୍ଡି ବସିଲାନି— ଆସିଲେ ଖାଲି ବିରକତ ହେବେ ସିନା, କିଛି କ'ଣ ବୁଝିବେ ! ଦେଖିଲୁ, ଅନେଇଲୁ—

ବାଳକ— (ପଢୁ ପଢୁ) ହଁ ମା, ଆସିବେନି କୁଆଡ଼େ ଯିବେ ଆଉ ? ତୁ ଇମିତି ବ୍ୟସ୍ତ ହୋଇ ପଡୁଛୁ କାଇଁକି ?

ଗୃହିଣୀ— (ଲିପୁ ଲିପୁ) ନାଇଁମ, ଦେଖୁନୁ କେତେ ବେର ହେଇଗଲାଣି । ଅଇବାର ବୋଲି ସିନା; ଅନ୍ୟ ବାର ହେଇଥିଲେ ତୁ ତ ଏତେ ବେରକୁ ଇସ୍କୁଲକୁ ଯାଆନ୍ତୁଣି । ଆଚ୍ଛା, ତୁ ପାଟି କରି ଟିକିଏ ପଢ୍ ଭଲା । ତତେ ପାଠ ପଢେଇ ଭାବିଥିଲୁ ତୋଠୁ ଶାଆତ୍ର ଶୁଣି ଆମର ମୂରୁଖଦୋଷ କଟିଯିବ । ନଇଲେ ବାଉରି କଣ୍ଡରା ଘରେ କିଏ କାଇଁକି ପାଠ ପଢେଇବାକୁ ଯିବ ଲୋ ମା' ? ପାଠ ପଢି ହେବ କ'ଣ ? ଯେତେ ହେଲେ ତ ସାଁତମାନଙ୍କ ପାଦସେବା ! ଆମେ କ'ଣ ସାଇବ ନା ଦୁପୁଟି ହୋଇଯିବା ! ହେଲେ, ତୁ କି ପାଠ ପଢିଲୁ ଆମେ ତ ଜାଣିପାରିଲୁନି । ମାଷ୍ଟ୍ର କ'ଣ ଭଲ ପଢାଉନି କିରେ ? ମିଛଟାକୁ ଯାଇ ଦିଓଳା ଚାହାଳିଟାରେ ବସୁଛୁକିଆଁ ? ସାଆନ୍ତଘର ଗାଈ ଜଗିଲେ

ହେଲେ କେତେ କଥା ହ'ନ୍ତା । ଗୋଟେ ନୋକ ସେ, କେତେ ଆଡ଼କୁ ହେବେ ? ଘରକାମ କରୁ କରୁ ମୋର୍ ତ ଦିନ ଅଣ୍ଟୁନି, ମୁଁ ବା ପାରିବି କୁଆଡୁ ? —ଏ—କମଳା ରାଣ୍ଡ ! କୁଆଡ଼େ ଗଲୁ ଲୋ । ଆଲୋ ଗୁହାଳ ଦେଖିଲୁ, ବାଛୁରୀ ଅଛନ୍ତି କି ନାଇଁ । ରାଣ୍ଡ କ'ଣ ଶୁଣୁଛି ! ବାପ, କୁଆଡ଼େ ଗଲା ବା ସିଏ ? ଦେଖିଲୁ—

ବାଳକ— ମୁଁ ପଢୁଛି । ମୁଁ ଇନେ ଯାଇ ପାରିବିନି—ତୁ ଯାଉନୁ !

ଗୃହିଣୀ— ମଲା ମୋର ପାଠ ! ଶାଆସ୍ତ୍ର ନା ପୁରାଣ ନା, କଣ ବା ? ଏଇ ପାଠକୁ ଛାଡ଼ିପାରୁନୁ ? ନାହାକ ପୁଅ ନାଟକରେ ମିଶି କେଡ଼େ ସୁନ୍ଦର ହେଲେ ଗୀତ ଗାଉଛି । ତୁ ତ ଗୀତ ପଦେ ହେଲେ କେବେ ଗାଇବାର ମୁଁ ଶୁଣିଲିନି— ଖାଲି ପଢୁଚି, ପଢୁଚି— ମା,ଲୋ ପାଠ ! —ନାଁ, ଆମର ସେ ପାଠ ଦରକାର ନାହିଁ । କାଲିଠୁଁ ଆମର ଘରକାମ ବୁଝ୍—ବାଉରି ପିଲା ବାଉରି କାମ କରିବନି ଯେ ଯାଇ ପାଠ ପଢିବ !

ବାଳକ— କେତେ କେତେ ବଡ଼ଲୋକଙ୍କର ପିଲା ପଢୁଚନ୍ତି—କଟକ, ପୁରୀରୁ ପାସ୍ କରି ଆମ ମାଷ୍ଟ୍ର ସବୁ ଆସିଚନ୍ତି—ତୁ ଇନେ କହିଦେଲେ—

ଗୃହିଣୀ— ବାବୁ ଘର ପିଲେ ପାଠ ପଢି ଚାକିରି କରିବେ । ତୁ କି ଚାକିରି କରିବୁ ?

ବାଳକ— ମୁଁ ଦୋପଟି ହେବି—ଇସ୍କୁଲରେ ମାଷ୍ଟର ହେବି—ହାକିମ ହେବି—

(ରାମ ପାହାଣର ସହସା ଦ୍ରୁତ ଗତିରେ ପ୍ରବେଶ)

ରାମ ପାହାଣ— (ମୁଣ୍ଡରୁ ବୋଝ ଥୋଇଦେଇ) ହଇରେ ପାଜି, ସଇତାନ୍, ତୁ ମତେ କାଇଁକି ଇମିତି ଫଜିତ୍ ଶୁଣାଉଛୁ ?

ଗୃହିଣୀ— (ଠିଆ ହୋଇ) କଥା କ'ଣ ? କ'ଣ କଥାବା ?

ପାହାଣ— ଦେଖ ଏ ଟୋକାକୁ, କ'ଣ ଟିକିଏ ଇସ୍କୁଲରେ ପଢିଦେଲା ବୋଲି ଯାକୁ ଆଉ ଇନ୍ଦ୍ର ଚନ୍ଦ୍ର ଦେଖାଯାଉନାହାନ୍ତି ।

(କର୍ଣ୍ଣ ମୋଚନ)

ଗୃହିଣୀ—(ବାରଣକରି) ଥାଉ, ଥାଉ,—କଥା କ'ଣ କହୁନା, ଏଦେରେ ହଉଚ କିଆଁ ମ ?

ପାହାଣ— ଦେଖ, ଏ ଟୋକା କାଲି ସେ ବଡ଼ ବାବୁଙ୍କୁ କ'ଣ କହିଚି ଯେ ଆଜି ଗଲାବେଳକୁ ସେ ଆଉ ବୁଢ଼ା ସାଆନ୍ତେ ରାଗରେ ନାଲ୍ ।

ଗୃହିଣୀ— କ'ଣ ଇମିତି କହିଲା ମ ? କ'ଣ କହିଲୁରେ ?

ପାହାଣ— କିରେ ଗୁଣବନ୍ତ, କହୁନୁ କାଇଁକି ? ଏ ପାଜି ତାଙ୍କୁ କୁ'ଠି କହିଚି, ତମେ ତ ମନିଷ ଆମେ ତ ମନିଷ ଆମେ ତମକୁ ଡରିବୁ କାହିଁକି ? ଆମେ ପାଠ ପଢିଲେ ତମପରି ହବୁ ନି କି ?

ଗୃହିଣୀ— (ପୁଅ ଆଡ଼କୁ ଅନାଇଁ) ଛି ଛି ବାପ, ଇମିତି କଥା ତୁଣ୍ଡରେ ଧରନ୍ତି ? ସେ ପରା ସାଆନ୍ତ ! ରାଜା ! ଆମେ ତାଙ୍କ ସେବାକରି ତାଙ୍କ ଅନ୍ନ ଖାଇ ପେଟ ପୋଷିବା ।

ପାହାଣ— ଆରେ, ଯେତେକର ଲୋକ, ସେତକରେ ରହିଲେ ସିନା ହବ—ଇମିତି ଉଦୁବାର୍ଯ୍ୟା ହେଲେ କିଏ ସହିବ ? ଆମକୁ ତ ବିଧାତା ନୀଚ କରି ଜନମ ଦେଇଛି ।

(ହଠାତ୍ ପୂର୍ଣ୍ଣର ପ୍ରବେଶ)

ପୂର୍ଣ୍ଣ— ନାଇଁ ପାହାଣ, ବିଧାତା କାହାକୁ ଉଚ୍ଚ ନୀଚ କରି ଜନମ ଦିଏନି—ମଣିଷ ଏଇ ଉଚ୍ଚ ନୀଚ ଭେଦ କାଢ଼ିଚି ।

(ମଣ୍ଡରେ ଲୁଗା ଦେଇ ଗୃହିଣୀ ଭିତରକୁ ଚାଲିଗଲେ । ପାହାଣ ହଠାତ୍ ଶାନ୍ତ ହୋଇ ପଡ଼ି ନମସ୍କାରକଲା—ବାଳକ ପିଣ୍ଡାରୁ ଉଠିଆସି ମଧ ପୂର୍ଣ୍ଣକୁ ନମସ୍କାରକଲା) ।

ପାହାଣ— (ହାତ ଯୋଡ଼ି) ବାବୁ, ଆପଣ କାଇଁକି ଏଠିକି ବିଜେକଲେ ?

ପୂର୍ଣ୍ଣ— ଦେଖ ପାହାଣ, ନନା ଆଉ ବାପା ତତେ ଫଜିତ୍ କରି ଅନ୍ୟାୟ କରିଛନ୍ତି । ତା' ଦେଖି ମୋ ମନରେ ଭାରି କଷ୍ଟ ହେଲା । ମୁଁ ତତେ କ୍ଷମା ମାଗିବାକୁ ଆସିଚି ।

ପାହାଣ— ଛେ, ଛେ, ସାଆନ୍ତେ, ସେକଥା ଶ୍ରୀମୁଖରେ ଧରୁଚନ୍ତି କାଇଁକି ? ସେ କ'ଣ ଅନ୍ୟାୟ କଥା କହିଲେ କି ? ସେ'ତ ହକ୍ ନ୍ୟାୟ କଥା କହିଲେ !

ପୂର୍ଣ୍ଣ— ତୁ ବୁଝୁନୁ ପାହାଣ ! ମଣିଷ ହୋଇ ମଣିଷକୁ ଇମିତି ଘୃଣା କରିବ କାହିଁକି ? ବିଧାତା ତ ସମସ୍ତଙ୍କୁ ଏକାପରି ହାତ, ନାକ, କାନ, ଦେହ, ମୁହଁ ଦେଇ ଜନ୍ମ ଦେଇଚନ୍ତି । ଜଣେ ଜଣକୁ କାହିଁକି ତା' ହେଲେ ଇମିତି ଘୃଣା କରିବ ? କଲେ ବା ତମେ ସହିବ କାହିଁକି ?

ପାହାଣ— ଆଜ୍ଞା, ଏ ପାଞ୍ଚ ଆଙ୍ଗୁଠି କ'ଣ ସମାନ ? ସବୁ ମଣିଷ କ'ଣ ସମାନ ହେବେ ? କୁମ୍ଭାର ହାଣ୍ଡି ଗଢ଼ିଦଉଛି ସିନା, କୁ' ହାଣ୍ଡିରେ ବିଷ୍ଠା ରହୁଚି, କୁ' ହାଣ୍ଡିରେ ଦିଅଙ୍କ ପୂଜା ହେଉଚି—ସମସ୍ତେ ସମାନ ହେବେ କୁଆଡୁ ?

ପୂର୍ଣ୍ଣ— (ହସି) ପାହାଣ, ତୁ'ତ ବଡ଼ ତର୍କ କରିପାରୁଛୁ ରେ ! କିନ୍ତୁ ତମେସବୁଯେ ଆମରି ପରି ମଣିଷ— ତୁମକୁ ଘୃଣା କଲେ ତମ ମନରେ କଷ୍ଟ ହେବନି ? ତମେ ସେପରି ଘୃଣା କାହିଁକି ସହୁଚ ? ବିଧାତା ଆଖିରେ ତ ଆମେ ସମସ୍ତେ ସମାନ ! ତୁ ବାଲିଗାଁ ଦାସିଆ ବାଉରି କଥା ତ ଶୁଣିଛୁ, ସେ କିମିତି ଜଗନ୍ନାଥଙ୍କ ଭକ୍ତ ହେଲା ! କାଇଁ, ଜଗନ୍ନାଥଙ୍କ ପାଖେ ଯେଉଁ ପଣ୍ଡାମାନେ ଅହଙ୍କାର କରି ଆଉ କା'କୁ ଦେଉଳରେ ପୂରେଇ ଦଉନାହାନ୍ତି, ତାଙ୍କ ନାଁ ତ ଭକ୍ତମାନଙ୍କ ମଧରେ ଗୋଟିଏ ଦେଖିବାକୁ ମିଳେନି ?

ପାହାଣ— ସାଆନ୍ତ, ତା ବୁଝିଲି ଯେ— ହେଲେ ନୋକାଚାର ଅଛି; ନୋକାଚାରକୁ ଏଡ଼ିବ କିଏ ? ସାଇବ ସର୍କାର ଏତେ ବଡ଼ ପୃଥିବୀ ପାଳୁଚି, ହେଲେ ସେ' ତ ନୋକାଚାରକୁ ଡରିକି ଚଳୁଛି ! ଦେଖୁନାହାନ୍ତି, ବାବୁଭୟା ଯେତେ ଦେଖୁଛନ୍ତି ସବୁ ବଡ଼ ଜାତିର ନା, ବାଉରି-କଣ୍ଡରା କୁଳର କିଏ ଗୋଟେ ହାକିମ ହେଲା ? ହେବ କେମିତି ? ହେଲେ ଏ ସୃଷ୍ଟି ରହିବ ନା ବାବୁ ? ଆମେ ତ ଆପଣଙ୍କ ପାଖେ କୁରୁଚିରେ ବସିବୁ, ଆପଣମାନେ ଯିବେ କୁଆଡ଼େ ?

ପୂର୍ଣ୍ଣ— ତମେ ବସିବନି କାଇଁକି ? କାଇଁକି ହାକିମ ହେବନି ? ତମେ ପାଠ ପଢ଼ିନ ବୋଲି ସିନା । ପାଠ ପଢ଼ିଲେ ତ ଆମରିପରି ହେବ । ପାଠ ପଢ଼ିଲେ, ତୁମକୁ ବିରାଡ଼ି କୁକୁର

ପରି କେହି ଘୃଣା କରିବେନି । ତମେ ଜାଣିବ ଯେ ତମେ ଆମରିପରି ମଣିଷ । ଆ ପାହାଣ ! (ତାଂ' କାନ୍ଧରେ ହାତ ଦେଇ) ନନା, ବାପା, ବଡ଼ ଫଜିତ୍—

ପାହାଣ— (ଦୂରକୁ ଘୁଞ୍ଚିଯାଇ) ସାଆନ୍ତେ, ସାଆନ୍ତେ......ଛି,....ଛି....

ପୂର୍ଣ୍ଣ— ପାହାଣ, ତୁ ଯଦି ଆମ ଛୁଆଁକୁ ଇମିତି ଡରିବୁ , ତତେ ଅଛୁଆଁ ରଖିବେନି କାଇଁକି ? ତତେ ଘୃଣା କରିବେନି କାଇଁକି ?

ପାହାଣ— (ହାତଯୋଡ଼ି) ହଜୁର, ଆପଣଙ୍କୁ ଛୁଇଁବାର ଆମର ପ୍ରିଅଜନ କ'ଣ ? କାଇଁକି ଆମେ ସେ ପାପ କରିବାକୁ ଯିବୁ ? ଯିମିତି ଅଛୁ ସିମିତି ଆମେ ଥିବୁ । ଆମର ତ କଷ୍ଟ କିଛି ହେଇଯାଉନି ?

ପୂର୍ଣ୍ଣ—ତୁ ହେବୁନି ପାହାଣ ! ହଉ (ବାଳକଆଡ଼କୁ ଯାଇ) ତମେ ଆସ କୃପାସିନ୍ଧୁ ! ଆହା, ଯାଁକୁ କିଏ ମାରିଛି ବୋଧହୁଏ,—ଏଁ, କାନ୍ଦୁଛ ଯେ ! ତମ ବାପାଙ୍କୁ ଯେଉଁ ଅପମାନ ଦିଆଗଲା ସେଥିଲାଗି ମୁଁ କ୍ଷମା ମାଗୁଛି । ମନରେ କଷ୍ଟ କରିବନି । ତମେ କ'ଣ ପଢ଼ୁଚ ?

(ପୁରୋହିତଙ୍କର ପ୍ରବେଶ)

ଆପଣ ଏଠାରେ ? ବାପା ବୋଧହୁଏ ପଠେଇଲେ ମୁଁ ଏଠି କ'ଣ କରୁଛି ଦେଖିବାକୁ ? ଯା'ନ୍ତୁ କହିଦିଅନ୍ତୁ ଯେ ତାଙ୍କ ଜ୍ଞାତିମାନେ ଏ ସାହିରେ ଯେଉଁ ବ୍ୟଭିଚାର କରନ୍ତି ମୁଁ ତା' କରିବାକୁ ଆସିନି ! ସେମାନେ ଯେଉଁ ଅନ୍ୟାୟ କରିଛନ୍ତି ମୁଁ ତା'ର ପ୍ରାୟଶ୍ଚିତ କରିବାକୁ ଆସିଛି ।

ପୁରୋହିତ— ହଉ, ହଉ, ସେ ବାଉରି ପିଲାଟିକୁ ଛାଡ଼ିଦିଅ, ନିଜକୁ ଅଶୁଚି କରୁଛ କାଇଁକି, ବାପା ! ଘରର ନାଁ ରଖ, କୁଳର ମାନ ରଖ—ଏଗୁଡ଼ାକ କଲେ ଲୋକେ କ'ଣ କହିବେ କହିଲ ବାପା ? (ନସ୍ୟ ଗ୍ରହଣ)

ପୂର୍ଣ୍ଣ—ମୁଁ ତ କୁଳର ମାନ କିଛି ନଷ୍ଟ କରିଦେଉନି । ମୁଁ ନଷ୍ଟ କଲେ କ'ଣ ବାପା, ନନା, ନାହାନ୍ତି କୁଳ ମାନ ରଖିବାକୁ ?

ପୁରୋହିତ—ନା ବାବା, ତମେ ମାନ ରଖିବନି ଆଉ ରଖିବ କିଏ ? ଏତେ ପାଠ ପଢ଼ିଲଣି—ତମ ପୂର୍ବପୁରୁଷରେ କିଏ ଏତେ ପାଠ ପଢ଼ିଥିଲା ? ତମ ସଂଗେ କଥାକହିବାକୁ ଏ ଦଶ କୋଶରେ ଲୋକ କାହାନ୍ତି ? ହେଲେ, ତମେ ଇମିତି ଅଧର୍ମଗୁଡ଼ାକ କଲେ ଲୋକେ କ'ଣ କହିବେ କହିଲ ?

ପୂର୍ଣ୍ଣ— ମଣିଷ କୁକୁରକୁ ଛୁଇଁଲେ ଅଧର୍ମ୍ମ ହେବନି, ଆଉ ମଣିଷ ମଣିଷକୁ ଛୁଇଁଲେ ଅଧର୍ମ୍ମ ହୋଇଯିବ ଇଏ କି କଥା କହିଲେ ?

ବାଳକ—ପୁରୋହିତେ ଆମ ଘରୁ କେତେଥର କୁକୁଡ଼ା ନେଇଛଁତି ! କୁକୁର କୁକୁଡ଼ା ସବୁ ଆପଣଙ୍କ ଘରେ ପଶିବେ, ଆମେ ପଶିଲେ କାଇଁକି କୋଡ଼ିଏ ହାତ ଦୂରରୁ ଡାକ ପକେଇବେ ?

ପୁରୋହିତ—ଦେଖ ବାପା, ଦେଖ ! ଏ ବାଉରି ଟୋକାର ସାହସ ଦେଖ ! ବାପ ସେଠି ଠିଆହୋଇଛି, ରାଜ୍ୟର ରାଜା ଏଠି ବିଜେ କରିଛନ୍ତି । ମୁଁ ବୁଢ଼ା ବ୍ରାହ୍ମଣ ! ମତେ କିମିତି

କଥା କହୁଛି ସେ, ଦେଖୁଛ ନା ! ଏଇଆ ତ କରିବ ଶେଷରେ, ବାପା– ନୀଚ ଜାତିଙ୍କି ମୁହଁ ଦେବ !

ପୂର୍ଣ୍ଣ– ସେ ତ ଅନ୍ୟାୟ କିଛି କହିଲାନି ? ଏଥିରେ ଧର୍ମ୍ମର ତ କିଛି ବାଧା ଘଟୁନି !

ପୁରୋହିତ– (ବ୍ରାହ୍ମଣ ସ୍ୱରରେ ଖତେଇ ହେଲାପରି) କେମନ୍ତ ! ପ୍ରାଚୀନ ଶାସ୍ତ୍ରକାର, ମହାମହା ପଣ୍ଡିତ ଓ ଋଷିମାନଙ୍କଠାରୁ ଆପଣମାନେ ବେଶି ବୁଦ୍ଧିମାନ୍ ହୋଇଗଲେ ନା, ତେଣୁ ଏ ସନାତନ ପରଂପରାକୁ ଆପଣମାନେ ଭାଙ୍ଗିଦେବାକୁ ବସିଛନ୍ତି ! ଆରେ ବାପା, ଏ ତ ବିଧାତାର ସୃଷ୍ଟି –ଯାକୁ କ'ଣ ତମେ ଆମେ କରିଛୁଁ ? ପୂର୍ବ ଜନ୍ମର ପୁଣ୍ୟ ବଳରେ ବ୍ରାହ୍ମଣ କୁଳରେ ମନୁଷ୍ୟ ଜନ୍ମ ହୁଏ, ଛତିଶପାଟକର ରାଜା ହୋଇ । ଏ ତ ଆଜିକାଲିର କଥା ନୁହେଁ– କୁ' କାଳରୁ ଇଏ ଚଳିଆସୁଛି । ତମେ ଇଲେ ଚେଷ୍ଟାକଲେ କ'ଣ ବାଉରିଟା ବ୍ରାହ୍ମଣ ହୋଇଯିବ ? ଦେଖିଚି କେତେ ! ଏବେ ଖଣ୍ଡେଇତ-କରଣେ ସବୁ ପଇତା ପକାଉଛନ୍ତି– ହେଲେ କ'ଣ ସେ ବ୍ରାହ୍ମଣ ହୋଇଯାଉଛନ୍ତି ? ଯେତେ ପାଠ ପଢ଼ିଲେ ମଧ୍ୟ ଚଷା ବ୍ରାହ୍ମଣ ହୋଇଯିବ, ଯାକୁ ଶାସ୍ତ୍ରରେ ଲେଖାଅଛି ? ଜଗତ୍ରରେ କୁ'ଠି ଦେଖାଗଲାଣି ଏ ଅଘଟଣ ? ନୀଚ ତ ବେଦ ହେବାକାଳରୁ ଚଳିଆସୁଛି । ତମେ ଇଲେ ଓଲଟେଇଦେବ ?

ପୂର୍ଣ୍ଣ– କକେଇ, ବେଦରେ ଛୁଆଁ-ଅଛୁଆଁ କଥା ଆଦୌ ନାହିଁ । ବ୍ରାହ୍ମଣ–

ପୁରୋହିତ– ନାହିଁ ? ବେଦ ପଢିଛ ? ବେଦ ପଢିବାକୁ ଏକାଳେ ଆଉ ଲୋକ ଅଛନ୍ତି ? ଯା' ପଢିଛ ତା' ମିଛ, ସେଗୁଡ଼ାକ କହିଲେ ଆମେ ମାନିବୁ କିଆଁ ? କାଇଁ, ଆଣିଲ ବେଦ କୁ'ଠି ରଖିଛ-

(ଦ୍ରୁତ ଗତିରେ କେତେକ ଯୁବକଙ୍କର ପ୍ରବେଶ)

ପୂର୍ଣ୍ଣ– କିଓ ତୁମେସବୁ କୁଆଡ଼େ ?

ପ୍ରଥମ ଯୁବକ– ଆମେ ସ୍କୁଲରେ ବସି ଗଳ୍ପକରୁଥିଲୁ । ଏ କାଣ୍ଡ ଶୁଣି ଓ ଆପଣ ଏଠିକି ଆସିବାର ଶୁଣି ଦୌଡ଼ିଛୁ ।

ଦ୍ୱିତୀୟ ଯୁବକ– ବାପା ତ ଆପଣଙ୍କ ଉପରେ ରାଗରେ ନିଆଁ !

ତୃତୀୟ ଯୁବକ– ନନା ତ ଆଉରି !

ଚତୁର୍ଥ ଯୁବକ– ଗାଳିକରୁଛନ୍ତି –କୁଳାଙ୍ଗାର, ବଂଶର ମାନ ମହତ ସବୁ ନଷ୍ଟକଲା ! ଏତେ ଆଶା କରିଥିଲୁ, ସବୁ ସରିଗଲା !

ପ୍ରଥମ ଯୁବକ– ବାପା ବେବର୍ତ୍ତାଙ୍କୁ କହୁଥା'ନ୍ତି –ହଇଏ ପଟ୍ଟନାୟକେ, ଏ ନୀଚଲୋକଗୁଡ଼ାକୁ ପାଖରେ ବସାଇଲେ ଏମାନେ ଆମକୁ ଖାତିର କରିବେଟି –ଆମ କଥା ମାନିବେଟି ? ଦଦେଇଙ୍କ କାଳରେ ଦଦେଇ ଚାନ୍ଦେନୀରୁ କେବେ ତଳକୁ ଖସିନାହାଁନ୍ତି– ଯିଏ ଆସିବେ

ସେମାନେ ଚାନ୍ଦେନୀ ତଳେ ଠିଆହେଇ କଥା କହିବେ ! ଆମେ ତ ଆଖି ଆଗରେ ଏ କଥା ସବୁ ଦେଖିଅଇଲୁ, ଏବେ ଅନାଚାର କିମିତି ବରଦାସ୍ତ କରିବା କହିଲ ?

ଦ୍ୱିତୀୟ ଯୁବକ— ବେବର୍ତ୍ତା କହୁଥା'ନ୍ତି— ଦେଖୁନାହାନ୍ତି ସେ ପାହାଣ ପୁଅକୁ ?

ପୁରୋହିତ— (ନସ୍ୟ ଗ୍ରହଣକରି) ଭାରି ଅନ୍ୟାୟ କଥାଟା କହିପକେଇଲେ ! ହଉ ଟୋକା କେତେଟା ତ ବାହାରିଛ, ଦେଖାଯାଉ କ'ଣ କରୁଛ ? (ନସ୍ୟ ଗ୍ରହଣ) ବାପା ପୂର୍ଣ୍ଣଚନ୍ଦ୍ର, ବାପା ଭାବିଥିଲେ ତମେ କୁଳର ପ୍ରଦୀପ ହୋଇ ସମସ୍ତଙ୍କୁ ଆଲୁଅ କରିବ । କେତେ ଆଶା କରିଥିଲୁ, ସରକାରୀ ଚାକିରି ପାଇ ଦୋପୋଟି ମେଜେଷ୍ଟର ହୋଇ, ହାକିମ ହେଇ ଆମ ଆଖିଆଗରେ ମଟର ଗାଡ଼ିରେ ଯା' ଆସ କରିଥା'ନ୍ତେ,—ଯାଃ, ସେ ସବୁ ଆମ ଭାଗ୍ୟରେ ନାହିଁ ଦେଖିବାକୁ ! ପୁଣି ଆହୁରି ଶୁଣୁଛୁ, ସେଣେ କି ଜାତି ନାହିଁ କି ଜାତି ଲୋକଟାର ଝିଅକୁ ବିଭାହେବାକୁ ବସିଛ । ଏଠି କ'ଣ ତମକୁ ପାତ୍ରୀର ଅଭାବ ହେଇଥାଆନ୍ତେ, ନାଁ ବାପା, ଭାଇ ତମକୁ ବିଭା କରାନ୍ତେନି ? ଆ-ଆ-ଜି ହୁକୁମ ଦେଲେ ତ କା-ଆ-ଲି ଶହେ ଜମିଦାର ଚାନ୍ଦିନୀ ଦୁଆରେ କୋଷ୍ଠୀ ଘେନି ହାଜର ହୁଅନ୍ତେ ! ବାପା ଭାଇଙ୍କୁ ନ ପଚାରି ଇଏ କି ହାଲ୍ କହିଲ ? ଛି ଛି ଛି, ଶେଷରେ ଆମ ଭାଗ୍ୟରେ ଏଇୟା ଦେଖିବାକୁ ଥିଲା ?

ପୂର୍ଣ୍ଣ— କକେଇ, ଚାକିରି ନ କଲେ କ'ଣ ମଣିଷ ହୁଅନ୍ତିନି ?

ପୁରୋହିତ— ଚାକିରି ନ କଲେ, ହାକିମ ନ ହେଲେ, ମଣିଷ କ'ଣ ? ଦଶଜଣ ଖାତିର୍ କରିବେ, ଭୟ କରି ଦଶହାତ ଦୂରରେ ଠିଆହେବେ, ଦଶଜଣ ହାତକୁ ଅନେଇ ରହିବେ, ତା' ନାଁ ସିନା କଥା— ଏଗୁଡ଼ା ବାପ କାହିଁକି କରୁଛ କହିଲ ?

ପ୍ରଥମ ଯୁବକ— ପୁରୋହିତଙ୍କର ଏଥିରେ କ'ଣ ଟିକିଏ ହେଲେ ସ୍ୱାର୍ଥ ଅଛି କି ?

ପୂର୍ଣ୍ଣ— ଥାଉ ଥାଉ, ତାଙ୍କ ସଙ୍ଗେ ପରିହାସ କ'ଣ ? ବର୍ତ୍ତମାନ ବେଳ ହୋଇଗଲାଣି, ଚାଲ ଏଠାରୁ ଯିବା । ଏହିପରି କ୍ରମେ ନାନା ବାଧାବିଘ୍ନ ଦେଇ ଆମମାନଙ୍କୁ ଯିବାକୁ ହେବ । କ୍ରମେ ଲୋକେ ବୁଝିବେ ଯେ । ଥା, ପାହାଣ ! (ବାଳକକୁ) ଥାଅ ତମେ —ଭଲକରି ପଢ଼ । ଆଚ୍ଛା, ବର୍ତ୍ତମାନ ଆମର ଦଳ ସଙ୍ଗୀତ ଗାନକର, ବୋଲ...

(ସମସ୍ତେ ମିଳିତ ହୋଇ ଗାନ କରି ଗତି କରିବା)

ଗାନ

ଶଂକର ଶିବ ଭଗବାନ

ତ୍ରିଶୂଳ ପ୍ରହାରେ ଭୀମ ହୁଂକାରେ

ମୋ ଜାତିରେ କର ସାବଧାନ । ଧ୍ରୁବ ।

ଶତାବ୍ଦୀ ଧରି ଲାଂଛିତ, ଅପମାନିତ

ରହିଲା ଯେ ଜାତି ସୁଖରେ,

ବହୁଯୁଗ ହୋଇ ପରେ ପରେ ପଦ-ଦଳିତ
ଲଜ୍ଜା ନାହିଁ ତା ମୁଖରେ ।
କେବେ ହେବ ଯାର ଅବସାନ,
ହେବ ଅବସାନ,
ଶଂକର ଶିବ ଭଗବାନ ! ।୧।
ଭୟ ମୋ ଜାତିର ମୁକ୍ତ ସତ୍ୟ-କଥନେ
ଭୟ ଘରୁ ଦୂରେ ଯିବାରେ
ଭୟ ଶାସ୍ତ୍ରରେ,
ଭୟ ଶସ୍ତ୍ରରେ,
ଭୟ-ଶୃଙ୍ଖଳ ଚରଣେ !
ଭୟ ପ୍ରତିଦିନ-କ୍ରିୟାରେ !
କେବେ ହେବ ଯାର ସମାଧାନ,
ହେବ ସମାଧାନ
ଶଂକର ଶିବ ଭଗବାନ... ।୨।
ମହା ଜୀବନର ଗୌରବ ଭୁଲି ଜାତି ଯେ,
କ୍ଷୁଦ୍ରରେ ଲଭେ ଦହନ,
ନିତ୍ୟରେ ତେଜି କ୍ଷଣିକରେ ରହେ ମାତି ଯେ
ମିଥ୍ୟାର ନିଏ ଶରଣ !
କେବେ ହେବ ଯାର ଅବସାନ !
ହେବ ଅବସାନ !
ଶଂକର, ଶିବ, ଭଗବାନ ! ।୩।
ଡମ୍ବରୁ ତବ ବଜାଅ ତ୍ରିଶୂଳପାଣି ହେ,
ଜଳାଅ ତୃତୀୟ ନୟନ,
ମିଥ୍ୟା, ସ୍ୱାର୍ଥ, ଭୟ ଖବର ଦିଅ ହାଣି ହେ,
ଶେଷ ହେଉ ଜଡ଼ ଶୟନ !
ଭସ୍ମରୁ ହେଉ ମୋ ଜାତିର ନବ ଅଭିଯାନ,
ନବ ଅଭିଯାନ,
ଶଂକର, ଶିବ, ଭଗବାନ !* ।୪।

(ଗାନ କରୁ କରୁ ପ୍ରସ୍ଥାନ)

---

* ଏହି ଦୃଶ୍ୟର ଶେଷରେ ନୋଟ୍ ଓ ପରିଶିଷ୍ଟ ଦେଖ ।

ପୁରୋହିତ— ହଇରେ ପାହାଣ, ଇଏ କି କ୍ରିୟାରେ ? ଏମିତି କଥା ତ ଆମେ ସାତପୁରୁଷରେ ଶୁଣି ନ ଥିଲୁ ।

ପାହଣ— ଆଜ୍ଞା, ସାନବାବୁ ଆମର କିରସ୍ତାନ ହୋଇଗଲାପରି ଦିଶୁଛି । ସେଣେ କଟକ ଆଡ଼େ କୁଆଡ଼େ ବିଭାହେଉଛନ୍ତି ପରା—ସେ ବୋଧହୁଏ କିରସ୍ତାନ କି ସାଇବ କ'ଣ—ବାବୁ ତ ସେଇ ଆଶାରେ...

ପୁରୋହିତ— ଆହା, ଆମେ ଥାଉ ଥାଉ ରାଜୀବ ପଟ୍ଟନାୟକର ପୁଅ ଯା କରିଯିବ ! ଧର୍ମ କ'ଣ ଜଗତରୁ ପଳେଇଲା ? କାଳ ଆସି ନଟାରେ ପଶିଲା !

(ତରବରରେ ଜମିଦାରଙ୍କ ଗୁମାସ୍ତାର ପ୍ରବେଶ)

ପୁରୋହିତ— କଥା କ'ଣ ? କ'ଣ ? କଥା କ'ଣ ଗୁମାସ୍ତେ ?

ଗୁମାସ୍ତା— (ପରିହାସରେ) ସାନବାବୁ କୁଆଡ଼େ ଗଲେ ? ତାଙ୍କ ପାସ୍ ଖବର ଆସିଛି ପରା !

ପୁରୋହିତ— ଏଁ ଏଁ, ପାଆସ୍ ! ବେ'ନା ମେ' କ'ଣ ପଢୁଥିଲେଟି ସେ ? ପାଆସ, ନା ? ଦାମ କରର (ନିଜକୁ ଦେଖାଇ) ଚଣ୍ଡୀଗୁଣା କେବେ ନିଷ୍ଫଳା ହୋଇଛି ? ଯାହାହେଉ ବୁଢ଼ା ଯା ଶୁଣି ଟିକିଏ ହେଲେ ଖୁସିହୋଇଯିବ—କିଛି ଦକ୍ଷିଣା ମଧ୍ୟ...

ଗୁମାସ୍ତା— ନାଇଁ ପୁରୋହିତେ, ବାବୁ ଯେ ଫେଲ୍ ହୋଇଛନ୍ତି !

ପାହାଣ— ଏଁ ! ଫେଏଲେ ?

ପୁରୋହିତ— ଫେଲେ ? ତା ନ ହେବ କିଆଁ ? ମୁଁ ଏଇକ୍ଷଣି ତତେ କହୁ ନ ଥିଲିରେ ପାହାଣ—ଅଧର୍ମ କଲେ ଦିଅଁ କ'ଣ ତା' ଦେଖିବେନି ? ବରୁଣ ହେଉଥିଲି ସିନା, ମୁଁ ଜାଣିଥିଲି ବାବୁଙ୍କର କିଛି ହବନି ବୋଲି । ଘିଅଦୀପ ତିନି ଥର ଲଗେଇଲି, ତିନିଥରଯାକ ଲିଭିଗଲା ପରା ! କଥାଟାକୁ ସଂଗେ ସଂଗେ ବାରିନେଲି— ଖାଲି ବୁଢ଼ାଙ୍କ ମନରେ କଷ୍ଟ ହେବ ବୋଲି ଏଯାଁକେ ଗୁପତ ରଖଥିଲି ନାଁ ! ଧର୍ମ୍ମ କଥା ଛାଡ଼, ସାଇବସର୍କାର ଯିଏ ଏତେବଡ଼ ରାଜ୍ୟ ଚଳାଉଛି, ତା'ର କ'ଣ ବୁଦ୍ଧି ନାଇଁ ? ସେ ଦେଖିଲା ଏ ପିଲାଟା ଚଗଲା ହୋଇଗଲାଣି । ଯାକୁ ହାକିମ କାମ ଦେଲେ ଇଏ ମୋ ରାଜ୍ୟ ନଷ୍ଟ କରିଦେବ, ଦେବତା ବ୍ରାହ୍ମଣଙ୍କୁ ଅପମାନ କରିବ; ଯାକୁ ମୂଳରୁ ମାରିଥାଏଁ ଯେ ସେତେବେଳକୁ କିଛି କହିବାକୁ ନ ଥିବ । ବୁଝିଲ ଗୁମାସ୍ତେ ତା'ର ରହସ୍ୟଟି ଏଇ । ଟୋକାଟା କ'ଣ ହେଲା ହେ ! କେତେ ଆଶା କରିଥିଲୁଁ, ହାକିମ ହୋଇଥା'ନ୍ତା... ଏବେ ଆଉ ଜମିଦାରଙ୍କ ପାଖକୁ କ'ଣ ଯିବା ? ତାଙ୍କୁ ତ ବିପତ୍ତି ଉପରେ ବିପତ୍ତି । ହରେ କୃଷ୍ଣ, ହରେକୃଷ୍ଣ, ମାଧବ, ମାଧବ ! (ନସ୍ୟ ଗ୍ରହଣ)

ଗୁମାସ୍ତା— ହଉ, ବାବୁ ଆମର ଗଲେ କଆଡ଼େ ଏବେ ? ତେଣେ ସାଆନ୍ତାଣୀ ଅଥୟ; ପରୀକ୍ଷା ଖବର ଲାଗି ବୁଢ଼ା ବୁଢ଼ୀ ପ୍ରସ୍ତେ କଳିଲାଗିଗଲେଣି ।

ପୁରୋହିତ— ଗୁଣବନ୍ତ ଏଇବାଟେ କ'ଣ ଗୋଟାଏ ଗୀତ ଗାଇ ଗାଇ ଗଲେ— ଆମ ରଥଙ୍କ ଦି' ପୁଅ ତାଙ୍କ ସାଙ୍ଗକୁ ମିଶି ନାହାନ୍ତି କି ! ଇଏ ଇଂରେଜି ପଢାର ଏତକ ଗୁଣ ଜାଣ !

ସେଇ ଇସ୍କୁଲକୁ ତ ଯାଇଥିବେ— ଆଉ ଯିବେ କୁଆଡ଼େ ? ଚାଲ ଦୁହେଁ ଯିବା । ହଇରେ ପାହାଣ —ବାଡ଼ିରେ କାମ ଥିଲା, ଗଲୁନୁ ଟିକିଏ । ହଉ, ତୋ ପୁଅ ତ ଆଜିଠୁ ଏମିତି ହେଲାଣି.....କଳିକାଳ ତ ଇଏ !

ପାହାଣ— ନାଇଁ ଆଜ୍ଞା, ସେ ପିଲାନୋକ, ତା' ଦୋଷ ଧରିବେନି । ମୁଁ କାଲି ସକାଳେ ଯିବି ନିଚେ ।

ପୁରୋହିତ— ହଉ, ହଉ, ଚାଲ ଗୁମାସ୍ତାଏ.....

ଗୁମାସ୍ତା— ଆପଣ କୁଆଡ଼େ ଯିବେ କି ?

ପୁରୋହିତ— ହଁ ହଁ, କଥାଲହସରେ ମୁଁ ତମ ସାଙ୍ଗ ଧରିଥିଲି । ସେ ଆଡ଼େ ଯିବି କାଇଁକି ? ତମେ ତ ଇସ୍କୁଲକୁ ଯିବ, ଏଇ ବାଟେ ଚାଲିଯିବି—ମୁଁ ଏଇ ବାଟେ ବାଟେ ଘରକୁ ଯିବି ।

ଗୁମାସ୍ତା— ସାନବାବୁଙ୍କୁ ଏ ଖବର ଦେବି କିମିତି ? ସେ' ତ ଏ ଖବର ଶୁଣିଲେ ମୂର୍ଚ୍ଛା ହୋଇଯିବେ । ବଡ଼ କଅଁଳ କଳିଜା ତାଙ୍କର । ହେଲେ ପୁରୋହିତେ, ଆମ ଆଚାରରେ ଚଳୁନାହାଁତି ସିନା, ତାଙ୍କପରି ମଣିଷ, ତାଙ୍କ ଘରେ କାହାନ୍ତି ? ଆମେ ତାଙ୍କର ଚାକର ହେଲେ କ'ଣ ହେବ, ଆମକୁ ଦିନେହେଲେ ଆପଣ ବିନା ତମେ କହିନାହାନ୍ତି । ବାବୁ କେବେ ତ ଫେଲ୍ ହୋଇନଥିଲେ— ସବୁଥିରେ ପାଷ୍ଟ, ଏଣ୍ଟେନେସ୍ ପରୀକ୍ଷାରେ ଇଲପାନି ପାଇଥିଲେ । କଟକର ସେଇ ଟୋକୀ ତାଙ୍କୁ ଖାଇଗଲା । ଶାସ୍ତ୍ରରେ କ'ଣ ମିଛରେ କହିଛି—ବିଶ୍ୱାସ ନୈବ କର୍ତ୍ତବ୍ୟ, ସ୍ତ୍ରୀଷୁ ରାଜକୁଳେଷୁ ଚ— ମାଇପିଙ୍କ ଲଂପଟରେ ମଣିଷ ପଡ଼ିଲେ ତ ସରିଲା ।

ପୁରୋହିତ— ଠିକ୍ ସେଇଯା ! ନ ହେଲେ ଆମ ସାନବାବୁ କାଇଁକି ଖରାପ ହୁଅନ୍ତେ ? କଟକ ମାଇକିନା ବଡ଼୍ଡ଼ା ଖରାପ । କଥାରେ କହନ୍ତି, ଯା' କଟକ, ରହ ଅଟକ,—ସାନବାବୁ ସେଇ ପାଲରେ ପଡ଼ିଗଲେ । ଟୋକାଲୋକ ନା, ଶକ୍ତି କେତେ ? ସିଏ କଟକ ଗଲା ଦିନଠୁଁ ମୁଁ ବୁଢ଼ାଟାକୁ କହୁଛି ଗୋଟେ ଘର ଭଡ଼ାକରି ଚାକର ପୂଝାରି ବନ୍ଦୋବସ୍ତ କରି ରଖ—ମୁଁ ତତ୍ତ୍ୱ ନେବାକୁ ତିଆରି ହୋଇଥିଲି । ବୁଢ଼ା କଂଜୁସ୍— ସେ କ'ଣ ଶୁଣିଲା ? ଏବେ ପାଉ ତା ଫଳ ! ହଉ ଯାଅ ଗୁମାସ୍ତେ !

ଗୁମାସ୍ତା— ହଉ ମୁଁ ଯାଏଁ ଇସ୍କୁଲ ଆଡ଼େ । (ପ୍ରସ୍ଥାନ)

## [ ଦ୍ୱିତୀୟ ଅଂକ ପ୍ରଥମ ଦୃଶ୍ୟର ପରିଶିଷ୍ଟ ]

[ନୋଟ୍— ଏହି ନାଟକ ଭାରତ ସ୍ୱାଧୀନତା ପାଇବାର ଦଶବର୍ଷ ଆଗରୁ ଲେଖା ଯାଇଥିଲା । ତେଣୁ ତରୁଣମାନଙ୍କ କଣ୍ଠରେ 'ଶଂକର ଶିବ ଭଗବାନ୍' ଗାନଟି ଭାରତର ସ୍ୱାଧୀନତା ପ୍ରତି ଉତ୍ସାହ ଫୁଟାଇବା ପାଇଁ ଲେଖାଯାଇଥିଲା । ଦେଶ ତ ଆଜି ସ୍ୱାଧୀନ । ଲେଖକ ତେଣୁ ସେହି ଗାନଟିକୁ ଦେଶର ସ୍ୱାତନ୍ତ୍ର୍ୟୋତ୍ତର ପରିପ୍ରେକ୍ଷିତରେ କିଂଚିତ୍ ପରିବର୍ତ୍ତିତ କରିବାକୁ ଇଚ୍ଛା କଲେ । ମୂଳ ଗାନଟି ଯେପରି ଥିଲା ସେହିପରି ରଖାଇ, ତା'ର ରୂପାନ୍ତରଟିକୁ ଏଠାରେ ରଖିଦିଆଗଲା, ଯଦି କେତେବେଳେ କାହାର କର୍ମରେ ଆସେ ।]

## ଗାନ

ଶଂକର ଶିବ ଭଗବାନ୍
ତ୍ରିଶୂଳ ପ୍ରହାରେ ଭୀମ ହୁଂକାରେ
ମୋ ଜାତିରେ କର ସାବଧାନ (ଧ୍ରୁବ)
ଶତାବ୍ଦୀ ଧରି ଲାଂଛିତ, ଅପମାନିତ,
ଥିଲା ଯେଉଁ ଜାତି ଦୁଃଖରେ,
ବହୁଯୁଗ ରହି ପରେ ପରେ ପଦ-ଦଳିତ
ହାସ୍ୟ ନ ଥିଲା ମୁଖରେ ।
ହୋଇଅଛି ଆଜି ଅବସାନ,
ସେହି ଅପମାନ,
ଶଂକର ଶିବ ଭଗବାନ୍ ।୧।
ମହା ଜୀବନରେ ହାତେ ପାଇ କିପାଁ ଏ ଜାତି
କ୍ଷୁଦ୍ରରେ ଲଭେ ଦହନ ?
ନିତ୍ୟରେ ତେଜି, କ୍ଷଣିକ ମୋହରେ ମାତି ଯେ
ମିଥ୍ୟାର ନିଏ ଶରଣ ?
କେବେ ହେବ ଯାର ଅବସାନ ?
ହେବ ଅବସାନ ?
ଶଂକର ଶିବ ଭଗବାନ୍ ।୨।
ଭୟ କିପାଁ ଆଜି ମୁକ୍ତ ସତ୍ୟ କଥନେ ?
ବିଶ୍ୱାସ ନାହିଁ ହିୟାରେ !
ଦେଶ ପାଇଁ ନାହିଁ ପ୍ରାଣେ ଗୁରୁ ଅନୁବେଦନା,
ଉତ୍ସାହ ନାହିଁ କ୍ରିୟାରେ !
ସ୍ୱାର୍ଥର ବାଣ ଖରଶାଣ,
ଛୁଟେ ବଳବାନ୍,
ହାଣ ଭଗବାନ୍ ! !
ଶଂକର ଶିବ ଭଗବାନ୍ ।୩।
ଡମ୍ବରୁ ତବ, ବଜାଅ ତ୍ରିଶୂଳପାଣି ହେ,
ଜଳାଅ ତୃତୀୟ ନୟନ,
ମିଥ୍ୟା, ସ୍ୱାର୍ଥ, ଭୀରୁତା ଧ୍ୱଂସି ଶିଖାଅ
ମହାଜୀବନର ଚୟନ ।

ଭସ୍ମରୁ ହେଉ ମୋ ଜାତିର ନବ ଅଭିଯାନ,
ନବ ଅଭିଯାନ,
ଶଂକର ଶିବ ଭଗବାନ୍ ।୪।

## (ଦ୍ୱିତୀୟ ଦୃଶ୍ୟ)

(ସ୍କୁଲ ଗୃହରେ ଗଳ୍ପରତ ପୂର୍ଣ୍ଣ ଓ ସଙ୍ଗୀଗଣ)

ପୂର୍ଣ୍ଣ— ତ୍ରିଲୋଚନ, ଅତ୍ୟନ୍ତ ଭାଗ୍ୟବାଦୀ ହୋଇପଡୁଛ ତମେ ! ଥିଏଟର୍‌ଟେ କରିବା, ସେଥିପାଇଁ କହୁଛ—ଦେଖାଯାଉ ଭଗବାନ୍ କ'ଣ କରିବେ ! ଭଗବାନ୍ କ'ଣ ଆସି ଆମ ପାଇଁ ଖମ୍ବ ପୋତିବେ ନା ପାର୍ଟ ଘୋଷିଦେବେ ? ଇମିତି ହେଲେ କାମ କରିବ କ'ଣ ?

ପ୍ରଥମ ଯୁବକ— ଆପଣ ଜାଣିନାହାନ୍ତି, ତ୍ରିଲୋଚନର ଦୁଇ ତିନିଟି ଭାଇ-ଭଉଣୀ ଉପରୁ ମରିଯିବାରୁ, ତ୍ରିଲୋଚନ ଜନ୍ମ ହେଲାଖୁଣୁ ତା' ବୋଉ, ତା'କୁ ସତ୍ୟନାରାୟଣଙ୍କୁ ବିକି ଦେଇଛି । ପିଲାଦିନେ ତ୍ରିଲୋଚନ ପାଲାବାଲାଙ୍କ ବେଶ ପକାଇ, ଦାସକାଠି ବଜେଇ, ଖରାଦିନେ ଭିଖ ମାଗିବାର ଆମେ ଦେଖିଛୁ ପରା ! ତା' ବାପା ପୁଣି ବୈଷ୍ଣବ—ବେକରେ ତା'ର ତୁଳସୀମାଳି ଦେଖୁନାହାନ୍ତି ?

ପୂର୍ଣ୍ଣ— (ହସି ହସି) ହଇ ହେ ତ୍ରିଲୋଚନ ! ଯାହାହେଉ, ଏ ସବୁ ସତ୍ତ୍ୱେ ଯେ ତମେ ଆମ ଦଳରେ ମିଶିଛ ବଡ଼ ପ୍ରଶଂସାର କଥା । ତମ ବାପା କିଛି କହୁନାହାନ୍ତି ତ ?

ଦ୍ୱିତୀୟ ଯୁବକ— ତା' ବାପାଙ୍କ ଇଚ୍ଛା, ଖାଲି ପୂର୍ଣ୍ଣବାବୁ ହାକିମ ହେଲେ ତାକୁ କୁ'ଠି ଖଣ୍ଡେ ଚାକିରି କରେଇଦେବେ । ନଇଲେ କି ସିଏ, ତାକୁ ଛାଡୁଥିଲେ ?

ପୂର୍ଣ୍ଣ— (ହସି ହସି) ଇଏ ତ ବିଷମ କଥା ! ମୁଁ କୁ'ଠି ଚାକିରି କରାଇଦେବି ? ହଉ ସେ କଥା ଥାଉ, ଏବେ ଥିଏଟର ହେବାର ଠିକ୍ ତ ? ହଉ ଆସିଲ, କିଏ କି ପାର୍ଟ ନେବ ଦେଖିବା । ରାମ, ଦେଖି ତମେ କି ପାର୍ଟ ନେବ— ତମେ ଫିମେଲ୍ ପାର୍ଟ ବେଶ୍ କରିବ— ନିଅ, ଧର ବହି, ପଢିଲ ଏଇ ପଦ୍ମାବତୀର ସ୍ପୀଚ୍‌ଟା....(ବହି ପ୍ରଦାନ)

ତୃତୀୟ ଯୁବକ— (କୁଣ୍ଠିତ ଭାବରେ) ଦେଖେଁ—ମୁଁ ତ କେବେ ଫିମେଲ ପାର୍ଟ ନେଇନି, ଲାଜ ଲାଗିବ ମୋତେ.....

ପୂର୍ଣ୍ଣ— ନା ନାଁ, ଲାଜ କ'ଣ ? ଲାଜ କଲେ କାମ କରିବ କିପରି ? ପଢ, ପଢ ......ଶୁଣ ସବୁ ।

ତୃତୀୟ ଯୁବକ— (ପ୍ରଥମେ, ''କେତେବାର ଅଛି ବନ୍ଦି'' କହି ବନ୍ଦରଖିବା— ''ନା ପାରିବି ନି'' ବୋଲି କହିବା—ଅନ୍ୟମାନଙ୍କର ଉତ୍ସାହ—ପୁଣି ଚେଷ୍ଟା, ପୁଣି ବନ୍ଦରହିବା— ଏଇ କ୍ରମେ, ପରେ ସ୍ୱଚ୍ଛନ୍ଦ ଭାବରେ ଆବୃତ୍ତି—)

କେତେ ଥର ଅଛି ବନ୍ଦି ହେ ବରଦରାଜ,
ତବ ପଦେ, ବିଲ୍ୱଦଳ ଗୟସ ଚଢାଇ

ଜଣାଇ ପ୍ରାଣର କଥା,—ଅନ୍ତର୍ଯ୍ୟାମୀ ହୋଇ,
ଜାଣି କି ପାରିଲ ନାହିଁ ? ଜାଣି ଅବା ପ୍ରଭୁ,
ଦେଲ ନାହିଁ ଅନୁକଂପା ଯୋଗ୍ୟ ନାହିଁ ଭାବି !
ଆଶୁତୋଷ ନାମ ତବ, ଆରତ ପ୍ରାର୍ଥନା
ଶୁଣ ପରା ତ୍ୱରା ତୁମ୍ଭେ, ମୋ ବେଳକୁ କିପାଁ
ବଧିର ହୋଇଲ, ଶିବ ? ଶ୍ରୀକ୍ଷେତ୍ରେ ସେଦିନ
ଦେଖିଲି ନୟନେ ଯେବେ ସେ ସୁଠାମ ଠାଣି,
ସେ ବୀର ବିକ୍ରମଗତି, ସେ ପୁରୁଷୋତ୍ତମେ,
ପ୍ରାଣ ମୋର ଉଚ୍ଛଳିଲା ଅବ୍ୟକ୍ତ ଆନନ୍ଦେ,
ସକଳ ଏ ଦେହ-ମନ ଏକ ହୋଇ କ୍ଷଣେ
ଅଯାଚିତେ ବିଟାରିଲେ ପଦପ୍ରାନ୍ତେ ତାଙ୍କ
ଞ୍ଜଳି ହୋଇ ଯିବେ ବହି । ସେ କି ହେଲା ପାପ ?
ପାର୍ବତୀ-ଅନ୍ତର ଯେବେ ତବ ନାମ ଧରି
ପ୍ରଥମେ କମ୍ପିଲା ଥରି, ସେ କି ପାପ ପ୍ରଭୁ ?
ପାର୍ବତୀ-କାନ୍ତ ହେ ସ୍ୱାମି, ହେ ଯୋଗି ହେ ପ୍ରେମି !
ଜାଣ ତୁମ୍ଭେ ଯୁବତୀର ହୃଦୟ ବେଦନା,
ମୋ ବେଳକୁ ଅନୁକଂପା ନୋହୁଛି କିପାଇଁ ?

ପୂର୍ଣ୍ଣ— ବେଶ୍ ବେଶ୍ ଭଲ ତ କରୁଛ—ନୁହେଁ ? (ସମସ୍ତଙ୍କୁ ଅନାଇଁ)

ସମସ୍ତେ— ହଁ, ହଁ, ବେଶ୍ କରିବ,— ତାକୁଇ ସେ ପାର୍ଟ ଦିଆଯାଉ ।

ପୂର୍ଣ୍ଣ— ପୁରୁଷୋତ୍ତମଦେବ ପାର୍ଟ କିଏ ନେବ ?

ସମସ୍ତେ— ଆପଣ ନିଅନ୍ତୁ—ଆପଣ ନ ନେଲେ ହେବନି—ଆଉ କେହି ଚଳେଇ ପାରିବେନି ସେ ପାର୍ଟ୍ ।

ପୂର୍ଣ୍ଣ— କିନ୍ତୁ ମୁଁ କେବେ କୁ'ଠି ଷ୍ଟେଜ୍‌ରେ ଠିଆ ହୋଇନି ।

ଚତୁର୍ଥ ଯୁବକ— ଆପଣ ପଢନ୍ତୁ ନା ପୁରୁଷୋତ୍ତମଦେବର ଏଇ ସ୍ପୀଚ୍‌ଟା । ରିସାଇଟ୍ କରନ୍ତୁ—ଆମେ ଦେଖୁଁ ଆଗେ ।

ପୂର୍ଣ୍ଣ— ଆଚ୍ଛା ଦେଖେଁ—(ଆବୃତ୍ତି)

ପଦ୍ମାବତୀ, ପଦ୍ମାବତୀ, ପଦ୍ମାବତୀ ମମ
ପଦ୍ମସମ ପ୍ରସ୍ଫୁଟିତ ହୃଦ ସରୋବରେ;
ତୁମ୍ଭରି ସୌରଭେ ପ୍ରାଣ ହେଉ ପୁଲକିତ !
ପ୍ରେମିକ ମୁଁ ଯଦି, ତବ ପଦପ୍ରାନ୍ତେ ବସି
ରଞ୍ଜାଇବି ଅଳତାରେ ପଦନଖାବଳୀ;
ନୃପତି ମୁଁ ଯଦି ତବ ପଦ ତଟେ ଥୋଇ

ମୋର ଏ ମୁକୁଟ, ଦଣ୍ଡ, କହିବି ସମ୍ମୁଖେ
ଉତ୍କଳର ନରପତି, ଦାସ ତବ ସଖି !
ବୀର ମୁହିଁ ଯଦି ତେବେ, ବାଧା ଆସୁ ଯାହା
ଏହି ଖଡ଼୍‌ଗେ କରି ଛିନ୍ନ, ବରିବି ତୁମରେ !
କାଞ୍ଚିର ଉଜ୍ଜ୍ୱଳ ମଣି.....

(ହଠାତ୍ ଗୁମାସ୍ତାର ପ୍ରବେଶ)

ପୂର୍ଣ୍ଣ— କ'ଣ ଗୁମାସ୍ତାଏ ? ଚିଠି ? (ଚିଠି ନେଇ) ଏଁ ! ଟେଲିଗ୍ରାମ୍ !

ସମସ୍ତେ— ଟେଲିଗ୍ରାମ୍ ! ବୋଧହୁଏ ପାସ୍ ଖବର । ତା' ହୋଇଥିଲେ ତ ବଢ଼ିଆ ଥିଏଟର ହେବ ।

ପୂର୍ଣ୍ଣ— (ବିଷଣ୍ଣ ମୁଖରେ) ନାଁ, ପାସ୍ ନୁହେଁ; ବାପାଙ୍କ ଓକିଲ କଟକରୁ ତାର କରିଛନ୍ତି ଯେ ମୁଁ ଫେଲ୍ ହୋଇଛି ।

ପ୍ରଥମ ଯୁବକ—ଫେଲ୍ !

ଦ୍ୱିତୀୟ ଯୁବକ—ଫେଲ୍ !

ତୃତୀୟ— (ଗୁମାସ୍ତାକୁ) ତମର କ'ଣ ଗୋଟେ କାଣ୍ଡଜ୍ଞାନ ନାହିଁ ? ଏ ଖବର କ'ଣ ଏମିତି ଦିଆଯାଏ ?

ଗୁମାସ୍ତା— ବୁଢ଼ାବାବୁ ତ ସେୟା ହୁକୁମ କଲେ, ମୁଁ କ'ଣ କରିବି ?

ଚତୁର୍ଥ ଯୁବକ— କି ଦୁର୍ଘଟଣା ସତେ !

ପ୍ରଥମ ଯୁବକ— ବୋଧହୁଏ କିଏ ମିଛରେ ଲେଖିଛି— ଏତେ ଲୋକଙ୍କର ଆଶା ମାଟି ହୋଇଯିବ ?

ଗୁମାସ୍ତା— ଓକିଲ ବାବୁ କ'ଣ ଟୋକାଟାକିଳିଆ ଯେ ମିଛରେ ତାର କରନ୍ତେ ?

ଦ୍ୱିତୀୟ ଯୁବକ— ଓଃ, ଭାରି ଜାଣିବାଲୋକ ତମେ ! କାମିକ୍ ଖଣ୍ଡେ ଗଳାଇପକାଇ ଧାଇଁ ଆସିଛନ୍ତି !

ଗୁମାସ୍ତା— କିଓ ବାବୁ, ମୋର ଦୋଷ କ'ଣ ?

ପୂର୍ଣ୍ଣ— ନାଁ, ନାଁ, ତାଙ୍କୁ କାହିଁକି କ'ଣ କହୁଛ—ତମେମାନେ ଏଠି ଥାଅ—ମୁଁ ଟିକିଏ ଘରକୁ ଯାଏଁ.... !

ଗୁମାସ୍ତା— ଆସନ୍ତୁ, ତେଣେ ବୋଉ ଭାରି ବ୍ୟସ୍ତହେଉଛନ୍ତି ।

ସମସ୍ତେ— ହଉ, ଆପଣା ଯାଆଁନ୍ତୁ....

(ପୂର୍ଣ୍ଣ ଓ ଗୁମାସ୍ତା ଧୀରେ ଧୀରେ ପ୍ରସ୍ଥାନ)

ପ୍ରଥମ ଯୁବକ— ଯାଃ, କେତେବଡ଼ ମଉଜ ଭାଙ୍ଗିଗଲା !

ଦ୍ୱିତୀୟ ଯୁବକ—ପୂର୍ଣ୍ଣ ବାବୁ ତ ଫେଲ୍ ହୋଇଗଲେ, ତେବେ ଭାଇ ଆମର ଆଉ କି ଆଶା ? ୟୁନିଭରସିଟୀ ଦିନକୁ ଦିନ କ'ଣ ହେଲାଣି ! ଇମିତି ସ୍କଲାରଗୁଡ଼ାକ ତ ଫେଲ୍ ମାରିଲେ, ଆମେ ଆଉ ଯିବୁ କୁଆଡ଼େ ? ଚାଲ ଭାଇ, ଏ ରାଜ୍ୟ ଛାଡ଼ି ପଳେଇବା ।

ତୃତୀୟ ଯୁବକ— ପୂର୍ଣ୍ଣବାବୁ ଜମିଦାର ପିଲା, ଦଶ ବର୍ଷ ଫେଲ୍ ହେଲେ ଖାତିର କ'ଣ ? ଆମେ ତ ଥରେ ଫେଲ୍ ହେଲେ ଆମ କଥା ଶେଷ୍ ।

ପ୍ରଥମ ଯୁବକ— ଆରେ ପାସ୍ ଫେଲ୍ କଥା କାହିଁକି ପକେଇଚ ବା ? ଫେଲ୍ ହେଲେ ବୋଲି କ'ଣ ପୂର୍ଣ୍ଣବାବୁ ଆମ ସଂଘର ସଂପାଦକ ହେବେନି, ନା ଥିଏଟର୍ ହେବନି ? ଯାଅ, ଯାଅ, ଖାଇ ପିଇ ପୁଣି ଆସି ଏଠି ଜମାହୁଅ ।

ଦ୍ୱିତୀୟ ଯୁବକ— ଭାଇ, ସେ ସଂଘଫଘ କଥା ଛାଡ଼—ପରୀକ୍ଷା କଥା ଭାବିଲାବେଳକୁ ତ ମୋ ଛାତି ଥରିଉଠୁଛି ।

ତୃତୀୟ ଯୁବକ— ହଁ ଭାଇ, ପୂର୍ଣ୍ଣବାବୁ ସିନା ଜମିଦାର ପିଲା—ଆମେ ତ ଜମିଦାର ନୋହୁଁ...

ଚତୁର୍ଥ ଯୁବକ— ଫେଲ୍ କଥା ଶୁଣି ବାପା ଆଉ କ'ଣ ମତେ ଏଠିକି ଆସିବାକୁ ଛାଡ଼ିବେ ?

ପ୍ରଥମ ବ୍ୟତୀତ ସମସ୍ତେ— ଚାଲ ଭାଇ, ଥିଏଟର ଫିଏଟର ଭାଂଗ—ବାପା—ମା' ଟଙ୍କା ଦେଇ ପଢାଉଚନ୍ତି କ'ଣ ଥିଏଟର କରିବାକୁ ? ଚାଲ ଭାଇ ଏଠୁ.... (ପ୍ରସ୍ଥାନ)

ପ୍ରଥମ ଯୁବକ— ମୁହୂର୍ତ୍ତକରେ କି ପରିବର୍ତ୍ତନ ! (ପ୍ରସ୍ଥାନୋଦ୍ୟତ)

(ସହସା ଜମିଦାରଂକ ଜନୈକ ଭୃତ୍ୟର ପ୍ରବେଶ)

କିରେ ଖବର କ'ଣ ?

ଭୃତ୍ୟ— ବୁଢ଼ାବାବୁ, ବଡ଼ବାବୁ ଦିହେଁଯାକ ମିଶି ସାନବାବୁଙ୍କୁ କଷିକରି ଇମିତି ଗାଳିଦେଲେ ଯେ, ସାନବାବୁ ନ ଖାଇ ନ ପିଇ ଗୋଟେ ଘରେ ଶୋଇଲେଣି । ତାଙ୍କ ଦେଖାଦେଖି ମା' ଆଉ ଝିଅ ବି ଖାଇବାକୁ ନାହାନ୍ତି । ମହା ଗଣ୍ଡଗୋଳ । ମୁଁ ଯାଉଛି ଏଣେ....

ପ୍ରଥମ ଯୁବକ— ବୁଢ଼ାବାବୁ କୁ'ଠି ?

ଭୃତ୍ୟ— ସେ ଓ ବଡ଼ବାବୁ ଖାଇ ଶୋଇଲେଣି ।

ପ୍ରଥମ ଯୁବକ— ସେ ଓ ବଡ଼ବାବୁ, ଖାଇ ଶୋଇଲେଣି ! ତା' ହେଲେ ତ ମୁଁ ଯାଇ ପୂର୍ଣ୍ଣକୁ ଟିକିଏ ବୋଧଦେଇ ଆସିପାରେ ।

ଭୃତ୍ୟ— ହଁ, ଟିକିଏ ସାବଧାନରେ ଯିବେ—ବାଁ ପଟେ ବୁଲିକରି; ନ ହେଲେ ବୁଢ଼ା ହାବୁଡରେ ପଡ଼ିଲେ ରକ୍ଷାନାହିଁ । ତମେ ଯାଅ,....ମୁଁ ଯାଏଁ, ଏଣେ ବଡ଼ ଖରା ହେଲାଣି । କି ତାତି ! (ପ୍ରସ୍ଥାନ) (ଯବନିକା)

## (ତୃତୀୟ ଦୃଶ୍ୟ)

[ବିଷଣ୍ଣ ଭାବରେ ଶାୟିତ ପୂର୍ଣ୍ଣ—ପାଖରେ ତା'ର ଛୋଟ ଭଉଣୀ ରୋହିଣୀ ।]

ରୋହିଣୀ— ଭାଇ, ଉଠ୍ , ଖାଇବୁ ଉଠ୍—ବୋଉ ଡାକୁଛି ପରା ! (ପୂର୍ଣ୍ଣ ନୀରବ)

ଭାଇ, ମୁଁ ଡାକୁଛି ଏତେକରି, ତୁ ଶୁଣୁନୁ—ଉ-ଉ-ଠୁ ମ—ବୋଉ କହିଛିପରା ମୁଁ ତୋ ସାଥିରେ ଖାଇବି ।

ପୂର୍ଣ୍ଣ— ତୁ ଯା' ରୋହିଣୀ—ତୁ ଖା' ଯା'— ମୁଁ ଏକ୍ଷଣି ଖାଇବିନି । ତୁ ଏଠିକି ଅଇଲୁ କାହିଁକି ?

ରୋହିଣୀ— ବୋଉ ପଠାଇଲା । ତୁ କାଇଁକି ଖାଇବୁନୁ ? ଏତେବେଳକୁ ତ ଖାଇପିଇ ଶୋଇଥାଉ, ଆଜି କାଇଁକି ଖାଇବୁନୁ ? ଦେଖିଲୁ କେତେବେଳ ହେଲାଣି—ଖରା ଆସି ଦୁଆରକୁ ମାଡ଼ିଆଇଲାଣି—ଦାଣ୍ଡ ଶୂନ୍ ଶାନ୍—ନୂଆବୋଉ, ବୋଉ, କେହି ଖାଇନାହାନ୍ତି—ଉଠ୍ !

ପୂର୍ଣ୍ଣ— ତୁ' ଯା' ମୋତେ ବିରକ୍ତ କରନା....

ରୋହିଣୀ— ମୁଁ ଯିବିନି ଇ'ଠୁ, ତୁ ନ ଉଠିଲେ ।

ପୂର୍ଣ୍ଣ— କାଇଁକି ମୋତେ ଇମିତି ବିରକ୍ତ କରୁଛୁ କହିଲୁ ? ମୋ' ଭଉଣୀଟି ପରା, ତୁ ଚାଲିଯା' ଇ'ଠୁ । ମୋର ଖାଇବାର ଇଚ୍ଛା ନାହିଁ । ଯା'.... ଗଲୁ—

ରୋହିଣୀ— ମୁଁ ତ ଯିବିନି— ଯେତେ କହୁଥା' ।

ପୂର୍ଣ୍ଣ— ନ ହେଲେ ବସିଥା ଭୋକରେ ।

ରୋହିଣୀ— ଯିବୁନି ତା' ହେଲେ ? (ଗୋଟିଏ କ'ଣରୁ ଛୋଟ ବାକ୍ସଟିଏ ଆଣି) ହଉ ନେ ତୋର ଜିନିଷ ସବୁ—ମୁଁ ଆଉ ସବୁ ରଖିବିନି । (ପୂର୍ଣ୍ଣର ଶେଯରେ ପୋପାଡ଼ିଦେବା)

ପୂର୍ଣ୍ଣ— (ହଠାତ୍ ଉଠି) କାଇଁକି ତୁ ସେମିତି ହଉଚୁ ? ନେ, ନେ ତୋ ଜିନିଷ, ଧ—ଯା, ବୋଉକୁ କହିଦେ....

(ହଠାତ୍ ପ୍ରଥମ ଯୁବକର ପ୍ରବେଶ)

କିଓ ତମେ କୁଆଡ଼େ ? ରୋହିଣୀ, ଯା' ବୋଉକୁ କହିଦେ' ମୁଁ ଯାଉଛି, ତୁ ଖା' ଯା'....

ରୋହିଣୀ— ଶୀଘ୍ର ଆ'— (ପ୍ରସ୍ଥାନ)

ପ୍ରଥମ ଯୁବକ— ଏଇ ଖବରରେ ତମେ ଇମିତି ହୋଇଗଲ ?

ପୂର୍ଣ୍ଣ— ନାଁ, ନାଁ, ପ୍ରଥମେ ଟିକିଏ କିମିତି ଖରାପ ଲାଗୁଥିଲା— କେବେ ଫେଲ୍ ହୋଇ ନ ଥିଲି ନା ! ଏବେ ଆଉ କିଛି ନାଇଁ ।

ପ୍ରଥମ ଯୁବକ— ଶୁଣିଲି, ବାପା ଓ ଭାଇ ଭାରି ଗାଳିଦେଲେ ?

ପୂର୍ଣ୍ଣ— ଗାଳି ତ ଦେଲେ—କହିଲେ ଯେ ଆଉ ଟଙ୍କାଫଙ୍କା କିଛି ଦେବେନି—ଏତେ ଆଶା କରି ଏତେ ଟଙ୍କା ଖର୍ଚ୍ଚ କରି ଶେଷରେ ତ ଫେଲ୍ ଶୁଣିବାକୁ ହେଲା ।

ପ୍ରଥମ ଯୁବକ— ତା' ଯଦି କରନ୍ତି କ'ଣ କରିବ ?

ପୂର୍ଣ୍ଣ— ମୁଁ କି ତାଙ୍କ ଟଙ୍କାକୁ ଚାହିଁ ବସିଛି ? ମନୁଷ୍ୟର ଭାଗ୍ୟ ମନୁଷ୍ୟ ନିଜେ ଗଢେ । ଥରେ ଫେଲ୍ ହୋଇଗଲି ବୋଲି ଏମାନେ ଯେତେବେଳେ ଏତେ କଥା କହିଲେଣି, ଯାଙ୍କୁ ଆଉ ମାଗିଯିବି କାଇଁକି ? ପ୍ରଜାଙ୍କ ତଣ୍ଟିଚିପା ଟଙ୍କା ମୋ ପିଛା ନ ଲାଗିଲେ ମଧ ଭଲ, —ସେ ଟଙ୍କା ମକଦ୍ଦମାରେ ଭୂତଖାଆନ୍ତୁ ।

ପ୍ରଥମ ଯୁବକ— କିନ୍ତୁ କରିବ ଏହିକ୍ଷଣି କ'ଣ ? ତମ ଫେଲ୍ କଥା ଶୁଣି ଦଳର ଗୋଟି ଗୋଟି ହୋଇ ଖସିଲେଣି ।

ପୂର୍ଣ୍ଣ– (ସାଶ୍ଚର୍ଯ୍ୟ) ସତେ ? ଯା' ତ ମୁଁ ଆଶା କରି ନ ଥିଲି ! ମୁଁ ଯେ ସେଇମାନଙ୍କ ଭରସାରେ ଏତେ ଆନ୍ଦୋଳନ ଚଳେଇବାକୁ ବସିଥିଲି । କି ବିଶ୍ୱାସଘାତକତା ! ସତେ, ସତେ ?

ପ୍ରଥମ ଯୁବକ– ବାସ୍ତବିକ ବିଶ୍ୱାସଘାତକତା ! ମୁଁ କ'ଣ ଆଗରୁ ସେମାନଙ୍କୁ ଜାଣି ନ ଥିଲି– ସେଗୁଡ଼ାଙ୍କର କି ଶକ୍ତି ? ଖାଲି ସୁଅରେ ଭାସିବା କଥା ଜାଣନ୍ତି, ପହଁରି ସୁଅ କାଟିବେ କୁଆଡୁ ? ଆପଣ ଏବେ କରିବେ କ'ଣ କହୁନାହାନ୍ତି ?

ପୂର୍ଣ୍ଣ– ଭାବିଥିଲି ତମମାନଙ୍କୁ ଧରି ଥିଏଟର୍‌ଟା ଚଳେଇନେଇଥା'ନ୍ତି । କିନ୍ତୁ ଏ ବିଶ୍ୱାସଘାତକମାନଙ୍କୁ ନେଇ କ'ଣ କରିବି ଆଉ ? ମୋର ସବୁ ଆଶା ଯେ ଏମାନେ ସାରିଦେଲେ ! ଛି ! ଏମାନଙ୍କୁ ଆଗରୁ ହେଲେ ଜାଣିଥା'ନ୍ତି ! ବର୍ତ୍ତମାନ ଆଉ ଏଠି ରହି ଏଗୁଡ଼ାକଙ୍କ ସାଥିରେ ମିଶିବାକୁ ମୁଁ ଘୃଣାକରେ । ମୁଁ କଟକ ବାହାରିଯିବି !

ପ୍ରଥମ ଯୁବକ– କଟକ ଯିବ କାହିଁକି ?

ପୂର୍ଣ୍ଣ– ମୋର ପରମବନ୍ଧୁ ସେଇ ମଧୁବାବୁଙ୍କ ପାଖକୁ– ଆଉ କୁଆଡ଼େ ? ଜଗତରେ ଏକମାତ୍ର ବନ୍ଧୁ ମୋର ସେଇ । ସମସ୍ତେ ସିନା ଛାଡ଼ିଯିବେ, ସେ କ'ଣ ଆଉ ପରିତ୍ୟାଗ କରିବେ ମୋତେ ?

ପ୍ରଥମ ଯୁବକ– ଆଚ୍ଛା, ତା' ହେଲେ ଯାଆନ୍ତୁ । ବର୍ତ୍ତମାନ ତ ଅନେକ ବେଳ ହୋଇଗଲାଣି, –ଖାଇ ନାହାନ୍ତି–ଯା'ନ୍ତୁ ଖାଇବେ ! ମୁଁ ମଧ ଯାଏଁ । (ପ୍ରସ୍ଥାନ)

(ଯବନିକା)

ନଟୀର ଗାନ

ପ୍ରଭାତ ଶିଶିର-ମୋତି
କ୍ଷଣକେ ଉଭେଇଯାଏ
ବିଷାଦେ ପ୍ରାନ୍ତର ଘାସ
ବୃଥା ତାକୁ ଖୋଜୁଥାଏ ।

ଏକା ଚାଲ, ଏକା ଚାଲ,
ନାହିଁ ବନ୍ଧୁ, ନାହିଁ ପର,
ଏକା ଏ ଧରଣୀ ନିଜ
ପଥେ ଅବିରତ ଧାଏଁ ।

ଆସିବାର ଯେ ଆସିବେ,
ପଛକୁ ଚାହିଁବ କିପାଁ ?
କି ଯଶ ଜୀବନେ ଭିକ୍ଷା
– କରି ପର-ଅନୁକମ୍ପା

ଆଗେ ଚାହଁ, ଆଗେ ଚାଲ,
ତୁଟିବ ବିପଦ ଜାଲ,
ଏକାକୀ ମରଣେ ବରି
ବୀର ମାଥେ ଟିକା ପାଏ ।

## [ ତୃତୀୟ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ମଧୁବାବୁଙ୍କ ଦାସୀ କମଳୀ ଗୃହର ପଶ୍ଚାଦ୍ ଭାଗରେ କୂଅମୂଳେ ପରିବା ଧୋଉଛି ଓ ଆପେ ଆପେ ବକୁଛି....]

କମଳୀ— ମଲାମୋର, ଇଏ ପୁଣି ହେଲେଣି ମୋ ନାଁରେ କଥା ଉଠେଇବେ ? ଆଲୋ ମୁଁ ତ କମଳୀ, ଖଣ୍ଡାଧାରରେ ବାଟ ଚାଲିବା ନୋକ, ମୋ ନାଁରେ କହିବ କା' ଜିଭରେ ହାଡ଼ ହେଲାଣି ବା ? ଆଲୋ ମୁଁ କ'ଣ ତମରିମାନଙ୍କ ପରି କି ଲୋ— ଘର ଘର ବୁଲି ପିଲା କରିବି ? ଏ ଗୁରାଙ୍କର ଜାତି କ'ଣ—ଗୋତ୍ର କ'ଣ, ବଁଅଶ କ'ଣ, ମର୍ଯ୍ୟାଦା କ'ଣ— ବାଉଦ୍ୱୋରୀ ଗୁରାକ— ମତେ ପୁଣି ଇଏ ଦାଣ୍ଡରେ ଚଲେଇବେ ବୋଲି ବସିଚନ୍ତି— ଆଲୋ ମୁଁ ସିନା ଶହେ ଜଣଙ୍କୁ ଦାଣ୍ଡରେ ଚଲେଇବି— ମତେ କିଏ ଚଲେଇବ ବା ? ମୁଁ କ'ଣ ତମରିମାନଙ୍କ ପରି କିଲୋ, ହେଡାଖାଇଏ ? ରହ ହେଡାଖାଇଏ—ଆଜି ମତେ ଫୁରୁସତ ନାଇଁ ବୋଲି, ଅଜା ସାଁତେ ଚାଲିଯା'ନ୍ତୁ,—ତମ ନାକରେ ଦଉଡ଼ି ନଗେଇ ନଚେଇଦେବିନି ! ହଇଲୋ, କଟକ ସହରରେ ମତେ ଅଜଣା କ'ଣ ବା ? କା' ହାଣ୍ଡିରେ ସୋରିଷଟେ ଫୁଟିଲେ ତ କମଳୀକି ଜଣା । ମୁଁ ତ ସମସ୍ତଙ୍କ ନାଡ଼ି ଚିପିଚିପି ରହିଛି— ମତେ ତମେ ଦାଣ୍ଡରେ ଚଲେଇବ । କାହିଁ ଖଗ, କାହିଁ ବଗ—କାହିଁ ରାଣୀ, କାହିଁ...

(ସହସା ଏକ ପ୍ରତିବେଶିନୀର ପ୍ରବେଶ)

ପ୍ରତିବେଶିନୀ— କିଲୋ କମଳି, କ'ଣ ପାଟି କରୁଚୁ ବା ? ତୋ ପାଟି ଶୁଣି ମୁଁ କ'ଣ ବୋଲି ଶୁଣିବାକୁ ଆସିଲି ।—ଏତେବେଳେ ତମର ଆଜି ପରିବା ଧୁଆ ହେଉଚି କ'ଣ !

କମଳୀ— (ଠିଆହୋଇ) ନଟବୋଉ ! ନାଇଁ ମା, ତମେ ସେ ଗୁରା କ'ଣ ଶୁଣିବ । ଆମର ଆଜି ଅଜା ସାଁତେ ଆସିଚଁତି—ସେଥିପାଇଁ ଟିକିଏ ଉଛୁର ହୋଇଗଲା । ସକାଳୁ ତ କାମ କରୁଛି ଯେ, ନିଶ୍ୱାସ ମାରିବାକୁ ସମୟ ନାହିଁ । ଘର ନିକେଇଲି, ବାସନ ମାଜିଲି, ଲୁଗାପଟା ଧୋଇଲି, ପରିବା କାଟିଲି, ଏଇ ତ ଧୋଇବାକୁ ଆସିଚି —ତେବେ ବି ବାବୁଆଣୀ କହିବ— କମଳୀ କାମକରୁନି—ଯାଙ୍କୁ କିମିତି କାମ କଲେ କାମ କଲାପରି ଜଣାପଡ଼ିବ କେଜାଣି ?

ପ୍ରତିବେଶିନୀ— ହଁ, ମୁଁ କ'ଣ ତୋ କାମ ଦେଖୁନି— ଦିନରାତି ପିମ୍ପୁଡ଼ିପରି ଲାଗିରହିଚୁ କାମରେ । ଯେ, ଅଜା କାଇଁକି ଆସିଛଁତି ବା ? ଝିଅକୁ ନେଇଯିବେବୋଲି କି ?

କମଳୀ— ନାଇଁ ନଟବୋଉ—ଆମ ଦେଈଙ୍କ ବିଭାଘର ଠିକ୍ କରିବେ ବୋଲିବା—ବୁଢ଼ା ଦେଈକି କେତେ ଭଲପା'ନ୍ତି—

ପ୍ରତିବେଶିନୀ— ଠିଇକ୍ ଆଉ କଅଣ ବା, ଠିଇକ୍ ପରା ହୋଇଥିଲା ? ସେଇ ପିଲାଟି ଯିଏ ଯା' ଆସ କରୁଥିଲେ ତାକୁ ପରା ଦେଇଥା'ନ୍ତେ ?

କମଳୀ— ନାଇଁ ହେ—ସେ ସବୁ ଭାଙ୍ଗିବା ଉପରେ । ସେ ପିଲା କୁଆଡ଼େ ଫେଲ୍ ହୋଇଗଲା—ବାବୁଆଣୀଙ୍କର ତ ତିଳେ ଇଚ୍ଛା ନଥିଲା ସେଠି—ଦୂର ବାଟ, ଝିଅକୁ ଏତେ ବାଟରେ କିମିତି ଦେବେ । ତା'ପରେ ସେ ପିଲାଟାର ଯୁ' ଆଚାର, ଯୁ' ଚେରେଷ୍ଟା, ସେଥିରେ ଆମ ଦେଈଙ୍କି ନେଇ ଦାଣ୍ଡରେ ଚଲେଇଥା'ନ୍ତା ସେ ପିଲା । ବୋଉ ତ ଏଥିରେ ମଙ୍ଗିଲେନି— କହିଲେ, ମୋ ପିଲାକୁ କେଲୁଣୀ କରିଦେବ— ଦଶ ଲୋକ ଆଗରେ ଚଲେଇଦେବ !

ପ୍ରତିବେଶିନୀ— ମଲା, ଏ ଗୁରାକ କି ମଫସଲିଆ କଥାମ ! କଟକ ସହରରେ କ'ଣ ସେ ଆଖି ବୁଜିକି ଚଲୁଛନ୍ତି କି ? ଏ କାଳରେ କ'ଣ ଆଡ଼ଆଡୁଖା ଅଛି କି ଆଉ ? ବିଭା ହୋଇ ପୁରୁଷପିଲା ମାଇପକୁ ଧରି ବୁଲିଲେ ନାଁଚାର କଥା କ'ଣ ହୋଇଗଲା ? ସେଠି ଦେଇଥିଲେ ଭଲ ହୋଇଥା'ନ୍ତା— ପିଲାଟି ଭଅଲ ମୁଁ ଦେଖିଛି । ମାଧୋଇଙ୍କର ମିଶେ ସେଠି ମନ ଥିଲା....

କମଳୀ— ଦେଈଁକର ନା ? ଦେଇଙ୍କର ଷୋଳପଣ ମନ ସେଠି—ସେ ଫେଲ୍ ହେବା ଖବର ଶୁଣିବାଠୁ ତାଙ୍କ ମନରେ ଆଉ କ'ଣ ସୁଖ ଅଛି କି ? ଖାଲି ମନ ଗିଲାକରି ରହିଛନ୍ତି ।

ପ୍ରତିବେଶିନୀ— ହଁ, ମୁଁ କାଲି ଯାଇଥିଲି ଉପରଓଳି । ପିଲାଟା ସବୁଦିନେ ହସି ହସି କେତେ କଥା କହେ; କାଲି କାଇଁକି କିଛି କଥା କହିଲାନି !

(ନେପଥ୍ୟରୁ କମଳୀକୁ ଡକାଗଲା)

କମଳୀ— ଏ ମା ! —ମୁଁ ଯାଉଛି ନଟବୋଉ— ବାବୁଆଣୀ ଡାକିଲେଣି ।
ଖରାବେଳେ କଥା ହେବା ।

ପ୍ରତିବେଶିନୀ—ଆଚ୍ଛା ଯା, ଯା ! (ପ୍ରସ୍ଥାନ)

## (ଦ୍ୱିତୀୟ ଦୃଶ୍ୟ)

[ମଧୁବାବୁଙ୍କ ଘର—ମଧୁବାବୁଙ୍କ ଶ୍ୱଶୁର କୃଷ୍ଣମୋହନ ଦାସ, ରିଟାୟାର୍ଡ ସବ୍‌ଡେପୁଟି ଚୌକିରେ ଆସୀନ—ଚକଟି ଚକଟି ପାନ ଖାଉଛଁତି— ପାଖରେ ନାତି କୃଷ୍ଣ ।]

କୃଷ୍ଣ— ତମକୁ ବୟସ କେତେ ଅଜା ? ଅଶୀ ?

ଅଜା— ଅଶୀ ! ଆରେ ତମ ହେଡ଼ମାଷ୍ଟର ମୋ କ୍ଲାସ୍ ଫ୍ରେଣ୍ଡ ଟି ? ମୋତେ ଏଇ ପଚାଶ ଭିତରେ । (ପାନ ଗ୍ରହଣ)

କୃଷ୍ଣ— ତେବେ ବାଳ ପାଚିଗଲା କେମିତି ? ଦାନ୍ତ ପଡ଼ିଗଲା କେମିତି ? ଅଜା, ତମେ ମିଛ କହୁଚ !

ଅଜା— ରହ ସଇତାନ୍, ମତେ କାହିଁକି ଇମିତି ବ୍ୟସ୍ତ କରୁଛୁ । ଯା' ଯା' ବୋଉକୁ ଡାକି ଦେବୁ—ନା, ଦୁଷ୍ଟଟା ତୁ—ତୁ ଯିବୁ ନୁ—ମୁଁ ଡାକେ—ମାଧି...ଏ ମାଧି...(ମାଷ୍ଟ୍ରାଣୀଙ୍କର ପ୍ରବେଶ) ଆଲୋ, ସେ କୁଆଡ଼େ ଗଲେ ? ଡାକ୍ କଥାଟା ଛିଣ୍ଡେଇଦେବା ।

ମାଷ୍ଟ୍ରାଣୀ— ଯାଆ ତ କୃଷ୍ଣ, ବାପାଙ୍କୁ ଡାକିଦେବୁ !

(କୃଷ୍ଣର ପ୍ରସ୍ଥାନ ଓ ମଧୁବାବୁଙ୍କର ପ୍ରବେଶ)

ଅଜା— ବସ ବାପା—(ମଧୁବାବୁଙ୍କର ଆସନ ଗ୍ରହଣ) କ'ଣ ସ୍ଥିର କଲ ଶେଷରେ ? ଜାଣୁଜାଣୁ ତ ପିଲାଟାକୁ ଭସେଇଦେବାନି ଆଉ !

ମାଷ୍ଟ୍ରାଣୀ— ଏ ମା, ମୁଁ ସେହିଦିନୁ ତାଙ୍କୁ କହୁଛି, ସେ ପିଲାଗୁଡ଼ାଙ୍କୁ ଘରେ ପୂରାଅନାଁ । କି ଚେରେଷ୍ଟା କେଜାଣି—ମୋ କଥା ନ ଶୁଣି, ଥରକୁ ଥର ଖୁଆଇଲେ, ପିଆଇଲେ । ଘର ଝିଅକୁ ପର ପିଲାଙ୍କୁ ଦେଖେଇଲେ— ଏବେ ଶେଷରେ ଏଇ ଫଳ !

ଅଜା— ଘରର ଝିଅପରି କଥା କହିଲୁ ବାୟାଣୀ ମୋର ! ବୁଝିଲ ବାପା, ଏ' ଯୁ ନୂତନ ଢଙ୍ଗଢାଙ୍ଗ ଯାର ଫଳ ବଡ଼ ଭୀଷଣ । ଇଞ୍ଜେକ୍‌ସନ୍ ନେଲେ ପରେ କ'ଣ ହେବ ସେ କଥା ଥାଉ, କିନ୍ତୁ ଆଗେ ଦରଜ ସହିବାକୁ ହେବ । ଆମେ ଏ ନୂଆ ଢଂଗର ଦରଜ ସହି ପାରିବୁ ନାଇଁ କିଏ ଢଂଗ ଧରିବୁ ନାଇଁ । ଆମେ କ'ଣ ଇଂରେଜୀ ପଢ଼ିନୁ ? ସାହେବଙ୍କ କଥା କ'ଣ ଆମଠୁ କିଏ ବେଶି ଜାଣେ ? ଇର୍ଜ୍ଜନ ସାହେବ ମୋ ଘରକୁ ଦଶ ଥର ଆସି ଡାଲି ତରକାରି କଥା ବୁଝିଥିବ— ଏଇ ବାୟାଣୀ ଦେଖି ନ ଥିବ କି ?

ମାଷ୍ଟ୍ରାଣୀ— କେତେ ସାଇବସୁବା ଆସୁଥା'ନ୍ତି ! କେତେ ଦେଖିଛି ମୁଁ ।

ଅଜା— କିନ୍ତୁ ହେଲେ କ'ଣ ହେଲା, ଆମ ମର୍ଯ୍ୟାଦା ଆମେ ରଖି ଚଳିଛୁ ନା ! ବାୟାଣୀର ବୋଉ ମରିଗଲା ସିନା, ସେ ଘରୁ ଗୋଡ଼ କାଢ଼ିବାର କିଏ ଦେଖିଛି ? ଇମିତି ବାଉରି କଣ୍ଡରାଙ୍କ ଢଂଗଢାଂଗ ତ ଆମ ଦେହରେ ଯିବନି ବାପା !

ମାଷ୍ଟ୍ରାଣୀ— ଏଁ ମା, ନକଲାଖୁଣ୍ଟ ମୋ ଉପରେ ତ ତାନ ଛିଡାଉଥା'ତି । ତମେ କ'ଣ ଜାଣିଲ କିଛି, ବାପା, —ଯାହା ମୁଁ ସହିଛି.....(କ୍ରନ୍ଦନର ଅଭିନୟ)

ଅଜା— ହଉ ବାୟାଣୀ, ତୁନିହ—ଏବେ ବାପ ଏ ବିଷୟ ଛିଣ୍ଡେଇଦିଅ । ତମେ କ'ଣ ଠିକ୍ କଲ —ସେଠି ଦବ ?

ମଧୁବାବୁ— (ମୁଁହପୋତି) ପୂର୍ଣ୍ଣକୁ ବିବାହକଲେ ମାଧବୀ ସୁଖୀ ହୁଅନ୍ତା ।

ମାଷ୍ଟ୍ରାଣୀ— (ଗଦ୍‌ଗଦ ସ୍ୱରରେ) ବାପା, ମୋ ପିଲାକୁ ଭସେଇଦେବେ ଏ । କୁ' ରାଜ୍ୟ ନାଇଁ କୁ' ରାଜ୍ୟରେ ତାଙ୍କ ଘର—ମୋ ପିଲାକୁ ମୁଁ ବରଷକେ ଥରେ ହେଲେ ଆଖିରେ

ଦେଖିପାରିବିନି । ମୋ ପିଲା କେଲୁଣୀ, ବାଉରାଣୀ ପରି କଟକ ବଜାରରେ ବୁଲିବ ! ସେଠି ଦେଲେ ମୁଁ ନିଚେ ଦଉଡ଼ି ଦେଇଦେବି—ନିଚେ ମରିବି ! ସେ ପିଲାର ବାପା ମା ତ ନାହିଁ କରୁଛନ୍ତି, ମୋ ପିଲା କ'ଣ ଗୁଂଜିହୋଇ ପଶିବ ? ମୋ ପିଲା ଲୁହ ନ କାନ୍ଦି ରକତ କାନ୍ଦିବ ସେ ଘରେ । ମୁଁ ନିଚେ ମରିବି ବାପା ସେଠି ଦେଲେ ।

ଅଜା— ଛି ବାୟାଣୀ—ଏମିତି ହଉଛୁ କାଇଁକି ? ଦେଖ ବାପା, ସୁଖୀ ହେବ ବୋଲି କହୁଛ ଯେ, କିମିତି ହେବ ? ଦେଖୁଛ ତ ଫେଲ୍ ହେଲା । ଯାହା ବା ଚାକିରିଫାକିରିଟାଏ ପାଇବାର ଆଶା ଥିଲା ତା' ଗଲା । ତେଣେ ତା ଆଚରଣ ଯୋଗୁ ବାପା ଭାଇ ତାକୁ ଅଲଗା କରିଦେବେ ବୋଲି ବସିଛନ୍ତି—ଏଣେ ଫେଲ୍ । ଏଠି ବିଭା ଦେବାକୁ ବାପା ମା'ଙ୍କର ତ ମନ ନାଇଁ—ଝିଅକୁ ଦେଲେ, ରହିବ କୁ'ଠି ? ବଣରେ ?

ମଧୁବାବୁ— ମାଧବୀ ଏତେ ଶୀଘ୍ର ବିବାହ ହେବାର ତ କୌଣସି କାରଣ ନାହିଁ—ଯାଉ କେତେ ଦିନ —ତରତର କାହିଁକି ?

ମାଷ୍ଟ୍ରାଣୀ— ଏଁ ମା, ଶୁଣଲୋ—ମୋ ପିଲାକୁ ବୁଢୀ କରି ରଖିବେ—ଆସି ଷୋଳବର୍ଷ ହେଲା ମୋ ପିଲାକୁ । ତା ସାଂଗରେ ପିଲେ ଦି'ଦି ବର୍ଷ ଶାଶୁଘରେ ଖଟି, ଗୋଟେ ଗୋଟେ ପିଲାର ମା' ହେଲେଣି । ମୁଁ ତିନିବର୍ଷ ହେଲା ବିଭାଘର କଥା ଲଗେଇଛି ଯେ ସେ ହେଲେ କ'ଣ କାନ ଦଉଚଁ'ତି ? ଏବେ ପୁଣି କହୁଚଁତି, ମୋ ପିଲାକୁ ଆଉରି ଘରେ ରଖିବେ । ମୋ ପିଲାର ଦୁଃଖ ମୁଁ ସିନା ଜାଣିବି— ଇଏ ଜାଣିବେ କ'ଣ ? ବାପ....

(କ୍ରନ୍ଦନର ଅଭିନୟ)

ଅଜା— ବାୟାଣୀ, ତୁ ସିମିତି ହଉଚୁ କାଇଁକି ? ମୁଁ ବୁଝିଦଉଚି, ତୁନି ହ ! ଦେଖ ବାପା, ମାଧବୀକି ଷୋଳ ବର୍ଷ ହେଲାଣି—ତିନି ବର୍ଷ ହେଲା ଘରେ ରହିଲା । କଥାରେ କହନ୍ତି ଘିଅ ଝିଅ ଘରେ ସାଇତିବନି । ବଢ଼ିଲା ଝିଅକୁ ଘରେରଖି, ତମେ ଏ ଯେଉଁ ବ୍ରାହ୍ମ-ଖ୍ରୀଷ୍ଟିଆନ ଆଚରଣ ଧରିଛ, ଏଥିରେ ଆମର ସମସ୍ତଙ୍କର କୁଳ ଧର୍ମ ନଷ୍ଟ କରିବ ଦେଖାଗଲାଣି । ମାଷ୍ଟ୍ର ହେଲେ ସାଂସାରିକ ଜ୍ଞାନ ରହେନି—ବହି ପଢେଇ ପଢେଇ ମୁଣ୍ଡ ଖରାପହୋଇଥାଏ—ତମର ସେଇୟା ଘଟିଛି ବୋଧହୁଏ ।

ମଧୁବାବୁ— ଆଚ୍ଛା, ତା' ହେଲେ ଆପଣ ଯାହା ବ୍ୟବସ୍ଥା କରନ୍ତୁ !

ଅଜା— ମୁଁ ତ ସେଥିପାଇଁ ଆସିଛି । ବାୟାଣୀ, ତୋ ନୂଆବୋଉ ଘରକୁ ଜାଣୁ ତ ? ଯାଜପୁର ବିଁଝାଳ ଗାଁର କାମିନୀ ଦାସଂକ ଘର । ତାଂକରି ନିଜ ଭାଇ— ଜମିଦାର । ତାଁକ ପୁଅ କିଶୋର, କଲେଜରେ ବି.ଏ. ପଢୁଛି । ମାଧବୀ ପାଇଁ ସେଇ ଠିକ୍ (ବାଡ଼ିଦ୍ୱାରା ଭୂମିକୁ ଆଘାତ କରିବା)

ମାଷ୍ଟ୍ରାଣୀ— ବିଁଝାଳର ଦାସଘର ? ତାଂକୁ ରାଇଜରେ ନ ଜାଣେ କିଏ ? କେତେ ସଂପତ୍ତି, କେତେ ଟଙ୍କା, କେତେ ଘର— ଗୋଟିଏ ପୁଅ— ନୁହେଁ ? ମୋ ପିଲା ସେଇଠି ସୁଖରେ ରହିବ —ପୁଣି ଗାଁ ପାଖ ! ସେଇଠି କର—ମୋ ମନ ଖୁବ୍ ପାଉଛି ଏଠି ।

ମଧୁବାବୁ— ଯାହା ଭଲ ଦେଖୁଛନ୍ତି କରନ୍ତୁ ! କିନ୍ତୁ ମାଧବୀର ମତ ନେବା ଉଚିତ ତ !

ଅଜା— ଦେଖ ବାପା, ମାଧବୀ ପିଲାଲୋକ । ସେ କେବଳ ସେଇ ଟଗଲା ଟୋକା ପୂର୍ଣ୍ଣକୁ ଜାଣେ; ଏଇକ୍ଷଣି ସେ ପୂର୍ଣ୍ଣ ନାଁ କହିପାରେ । କିନ୍ତୁ ତା'ର ଭବିଷ୍ୟତ ଆମେ ଦେଖିବା ତ ? ସେ ସବୁ ଢଂଗ ଛାଡ଼ । ଆଉ, କାଲେ ସେ ଟୋକା କ'ଣ ବିଗିଡ଼ାବିଗିଡ଼ି କରିପାରେ, ସେଥିପାଇଁ ଏ ବିଭାଘର ଶୀଘ୍ର କରିଦିଅ । ଆଉ ପନ୍ଦରଦିନ ଭିତରେ ଏକ ଯୋଗ ଅଛି । ଆଉ ଦେଖ, ସେ ଟୋକା ଯେପରି ତମ ଘର ନ ମାଡ଼େ । ତା'ର ଆଚରଣ ଯାହା ଦେଖିଲିଣି, ସେଇଟା ଜେଲ୍ ଯିବ, ନ ହେଲେ ପାଗଳ ହୋଇଯିବ, ତାକୁ ଏଠି ପୂରାନି । ମୁଁ କହିରଖୁଛି । ସେ'ଟା ହାଡ଼ି ବାଉରିଙ୍କ ସଙ୍ଗେ ବସୁଛି । ବାପଭାଇଙ୍କ କଥା ମାନୁନି, ଦଳେ ଟୋକାଂକୁ ନେଇ ଖାଲି ହେଁଙ୍ଗଡାମି କରିବାରେ ଲାଗିଛି । ସେ'ଟାର କୁଳ ମର୍ଯ୍ୟାଦା ଜ୍ଞାନ ନାହିଁ । ମୁଁ ନିଶ୍ଚେ କହୁଛି, ସେ ଟୋକା ଜେଲ୍ ଯିବ । ତାକୁ ଏଠି ପୂରାନି !

ମାଷ୍ଟ୍ରାଣୀ— ମୁଁ ତ ସେବହୁଁ ନାହିଁକରୁଛି । ମୋ କଥା ଶୁଣୁଛି କିଏ ?

ଅଜା— ହଉ, ତା' ହେଲେ ଏଇ କଥା ଠିକ୍ ହେଲା ?

ମଧୁବାବୁ— (ନୀରସରେ) ହଉ !

ଅଜା— ତେବେ ଏଇ ତିନି ଦିନ ଭିତରେ ନିର୍ବନ୍ଧ ହୋଇଯାଉ— ସବୁ ଠିକ୍ କରି ରଖ ।

ମଧୁବାବୁ— ହେଉ ।

ଅଜା— (ଉଠି) ଆଚ୍ଛା ତେବେ ଉଠ—ବହୁତ ଡେରି ହୋଇଗଲାଣି— ତମର ଇସ୍କୁଲକୁ ଯିବା ସମୟ ହୋଇଗଲାଣି କେତେବେଳୁ । ଏବେ ଆଉ ଟ୍ୟୁସନ ନାହିଁ କି ? ପ୍ରମୋସନ୍ କେବେ ହେବ ? ସେ ସବୁ ଆଡ଼କୁ ଦୃଷ୍ଟି ଦେଉଥିବଟି—ହେଡ୍‌ମାଷ୍ଟ୍ରକୁ ହାତରେ ରଖିଥିଲେ ଗଲା, ଆଉ କ'ଣ ? ଟଂକା ପାଇଁ ଖୁସାମତିକଲେ, ଆମର ଏବେ କୁ ସମ୍ମାନ ନଷ୍ଟ ହୋଇଯାଉଛି ? ହାକିମମାନଙ୍କୁ ନାନାପ୍ରକାରେ ପଟେଇ ରଖିଥିବାରୁ ତ ମୋର ଯାହା କିଛି ଉନ୍ନତି । ସଂସାରରେ ଚଳିବାକୁ ହେଲେ ଇମିତି ନାନା ସୂତ୍ର ପ୍ରୟୋଗ କରିବାକୁ ହେବ । କେଉଟ ପାଣିରେ ପଶି ଖାଲି ଓଦା ହେଲେ କ'ଣ ମାଛ ମାରି ଆଣିବ ? ତା' କରିବାକୁ ତାକୁ କେତେ କୌଶଳ କରିବାକୁ ପଡ଼େ । ଜାଲ ବୁଣିବ, ଖାଳେଇ ବୁଣିବ, କାଠି ପୋଡ଼ିବ, ଧଉଡ଼ି ପକେଇବ, ଜାଣ ତିଆରି କରିବ—ତେବେ ସିନା ଯାଇ ମାଛ ପଡ଼ିବେ ? ଜଗତରେ ସବୁକାମରେ ଇମିତି କୌଶଳ ପ୍ରୟୋଗ କରିବାକୁ ହୁଏ । ତମେ ତ ସେ ଆଡ଼କୁ ଆଦୌ ମନ ଦେଲନି । ହଉ, ମୁଁ ଏଇ ବାରଟା ଗାଡ଼ିରେ ଚାଲିଯିବି । ଯାଜପୁର କୋର୍ଟରେ ଚାରିନମ୍ବର ମକଦ୍ଦମା ମୋର ଅଛି । ପ୍ରାୟ ଦଶ ହଜାର ଟଂକାର ସଂପତ୍ତି ନେଇ ଆମ ଗାଁର ଚାଳିଶ ଜଣ ପ୍ରଜା ଆଉ ମୋର ବିବାଦ ଲାଗିଛି । ମେଣ୍ଢାଗୁରାଂକୁ କୌଣସି ପ୍ରକାରେ ଜବଦ୍ କରି ହଳ ହଳ କରି ଜେଲ୍ ନ ପଠାଇଲେ ମୋ ମନରେ ଶାନ୍ତି ନାହିଁ । ନ ହେଲେ କ'ଣ ଟିକିଏ ଖାତିର କରୁଛନ୍ତି ଆଉ ? ହାକିମ ବୋଲି ଟିକିଏ ମାନୁଛନ୍ତି ? ହଉ, ଚାଲ ବାୟାଣୀ, ଗଣ୍ଡେ ଖାଇବାକୁ ଦେବୁ—

(ମଧୁବାବୁଙ୍କ ବ୍ୟତୀତ ଅନ୍ୟମାନଙ୍କର ପ୍ରସ୍ଥାନ । ମଧୁବାବୁ ନୀରବରେ ଚିନ୍ତିତ ହୋଇ ଠିଆରହିଲେ । ଏହି ସମୟରେ ନେପଥ୍ୟରୁ 'ସାର୍ ସାର୍' ବୋଲି ଡାକ ଶୁଣାଗଲା ।)

ମଧୁବାବୁ– (ଚମକିପଡ଼ି) ଏଁ ! ଏ ଯେ ପୂର୍ଣ୍ଣର ସ୍ୱର–ଯାଏଁ । (ପ୍ରସ୍ଥାନ)

## (ତୃତୀୟ ଦୃଶ୍ୟ)

[ସୁଟକେଶ୍ ହସ୍ତରେ ପୂର୍ଣ୍ଣର ପ୍ରବେଶ– ଏହିକ୍ଷଣି ଗାଡ଼ିରୁ ଓହ୍ଲାଇଛି– ମୁଖରେ ବିଷାଦର ଛାୟା ।]

ମଧୁବାବୁ– (ପ୍ରବେଶ କରି) କିଓ, ପୂର୍ଣ୍ଣ !

ପୂର୍ଣ୍ଣ– (ସଭକ୍ତି ନମସ୍କାର କରି) ଏଇ ତ ଆସିଛି ସାର୍ !

ମଧୁବାବୁ– ଗାଁରୁ ଅଇଲ ?

ପୂର୍ଣ୍ଣ– ହଁ ।

ମଧୁବାବୁ– ଏଇଠି ରହିବ ? (ପୂର୍ଣ୍ଣ ନୀରବ ରହିଲା)

ମଧୁବାବୁ– ହଷ୍ଟେଲଫଷ୍ଟେଲ ଖୋଲା ନାହିଁ ? ଆମର ଏଠି ଆଜି ଅସୁବିଧା ଅଛି–ମାଧବୀର ଅଜା ଆସିଛନ୍ତି ।

ପୂର୍ଣ୍ଣ– ନାଇଁ ସାର, ମୁଁ କୁ'ଠି ହେଲେ ରହିଯିବିନି ! କୃଷ୍ଣ ଅଛି ଘରେ ? ଖାଲି ତା'ରି ସାଥିରେ ଟିକିଏ କଥା ହୋଇ ଯିବି ।

ମଧୁବାବୁ– କୃଷ୍ଣ ବ୍ୟସ୍ତ ଥିବ ଏଇକ୍ଷଣି । ତା' ଅଜାକୁ ଚର୍ଚ୍ଚା କରିବାକୁ ହେବ କି ନା !

ପୂର୍ଣ୍ଣ– ହଉ ତା' ହେଲେ, ମୁଁ ପରେ ଆସିବି–ଆପଣଙ୍କର ଆଉ ସବୁ ଭଲ ତ ସାର୍ ?

ମଧୁବାବୁ– ହଁ ସବୁ ଭଲ । ନିକଟରେ ମାଧବୀର ବିଭାଘର ହୋଇଯାଉଛି ପୂର୍ଣ୍ଣ– ଜାଣିଛ ?

(ପୂର୍ଣ୍ଣ ହଠାତ୍ ବିବର୍ଣ୍ଣ ହୋଇଗଲା–ତା'ର ହୃଦୟ ଥରିବାକୁ ଲାଗିଲା ।)

ପୂର୍ଣ୍ଣ– କୁ'ଠି ସାର ?

ପୂର୍ଣ୍ଣ– କଲେଜରେ ଯାଜପୁର ଅଂଚଳର ବି.ଏ. ପଢନ୍ତି, କିଶୋର–ତାଁକୁଇ । ମାଧବୀର ଅଜା ସେଇୟା ଠିକ୍ କରିଦେବା ଲାଗି ଆସିଛନ୍ତି ।

(ପୂର୍ଣ୍ଣ ନୀରବ ହୋଇ ଠିଆ ହେଲା)

ମଧୁବାବୁ– ଆଚ୍ଛା ଯାଅ ପୂର୍ଣ୍ଣ–ବେଳହୋଇଗଲାଣି ! ମୁଁ ସ୍କୁଲକୁ ଯିବି । ତମେ କେଉଁ ସବ୍‌ଜେକ୍ଟରେ ଫେଲ୍ ହେଲ କି ? ଫେର୍ ପରୀକ୍ଷା ଦେବ ନା ? ମନଦେଇ ପଢିଲନି ସେତେବେଳେ, ଏଣେ ତେଣେ ମାତିଲ– ଅକାରଣେ ଫେଲ୍ ହେଲ ନା–କେବେ ଫେଲ୍ ହୋଇ ନ ଥିଲ । (ପୂର୍ଣ୍ଣ ନୀରବ ରହିଲା)

ମଧୁବାବୁ– ତମର ସ୍ୱାସ୍ଥ୍ୟ ଭଲ ନାହିଁ କି ପୂର୍ଣ୍ଣ ? ଗାଁରେ ଦେହ କ'ଣ ହୋଇଥିଲା ? କିମିତି କଳା ପଡ଼ି ଆସିଛ–ନିସ୍ତେଜ ଦେଖାଯାଉଛ ଯେ ! (ପୂର୍ଣ୍ଣ ନୀରବ)

ମଧୁବାବୁ– ପୂର୍ଣ୍ଣ, ଆଉ ଠିଆହେଲ କାଇଁକି ? ଯାଅ, ମୁଁ ମଧ ଯାଏ, ବେଳ ହେଲା–ଯାଅ–
(ପ୍ରସ୍ଥାନ) (ପୂର୍ଣ୍ଣ ସେହିପରି ନୀରବରେ ଦଣ୍ଡାୟମାନ, ଯବନିକା)

## (ଚତୁର୍ଥ ଦୃଶ୍ୟ)

[ନିଶାକାଳ—ଶୟନବେଳା—ମଧୁବାବୁଂକ ଘର ଶୂନଶାନ୍—କେବଳ ମାଧବୀର କକ୍ଷରେ ମାଧବୀ ଓ କମଳୀ ।]

ମାଧବୀ—କମଳୀ, ତୁ ଥିଲୁ ସେଠି ? କ'ଣ ଠିକ୍‌ହେଲା ? ତୁ ଭଲକରି ଜାଣିଛୁ ? ତୁ ତ ବାଉରୀ, ତୋ କଥାରେ ବିଶ୍ୱାସ କ'ଣ ?

କମଳୀ– ଦେଈ, ତମକୁ ମୁଁ ଥଟା କରନ୍ତି ? ପୁଣି ଇମିତି କଥାରେ ? ମୁଁ ବୋଉଙ୍କଠୁ ସବୁ ବୁଝିଲି ପରା ।

ମାଧବୀ—କ'ଣ ବୁଝିଲୁ ? ଆଉ ଥରେ କହ ତ—ମୁଁ ବିଶ୍ୱାସଯାଇପାରୁନି । ମୋ ମନ ଯା ସତ ବୋଲି ମାନୁନି ଆଦୌ ।

କମଳୀ—ଅଜା ପରା ସେଇଥିପାଇଁ ଖାସ୍ ଆସିଥିଲେ ଦେଈ—ତମକୁ ସିନା ସବୁ ଲୁଚେଇ କରି ଚଲୁଥାଁତି ।

ମାଧବୀ—ଅଜାଙ୍କର ଏଥିରେ ଏତେ ଜିଦ୍ କାହିଁକି ବୁଝିଛୁ କିଛି ?

କମଳୀ—ବାହାର ଦେଖାକୁ ନାତୁଣୀର ଭଲପାଇଁ, ଭିତର କଥା କ'ଣ କମଳୀକି ଅଛପା ? ମତେ କୁ କଥା ଅଜଣା ମ ? କେତେ ଫାନ୍ଦରେ କିଏ ଚାଲୁଛି—ତମେ ପିଲାଲୋକ ଦେଈ, କ'ଣ ଜାଣିବ ?

ମାଧବୀ—ମତେ କହ କମଳି, ତୁ କ'ଣ ମୋତେ ଲୁଚେଇବୁ ?

କମଳୀ– କି କଥା କହୁଛ ଦେଈ, ତମଠୁଁ କଥା ଲୁଚେଇବି ? ମଲାମୋର, ମୁଁ କ'ଣ ଇ'ଘରେ ସୁନାମୁଣ୍ଡା ପାଉଛି ଯେ ରହିଛି ? ମତେ ତ କେତେ ବାବୁଘର ଅନେଇ ବସିଛନ୍ତି । ଖାସ୍ ତମରିଲାଗି ଦେଈ, ରହିବା କଥା । ଯାଉ କମଳୀ, ଆସୁ କମଳୀ, କମଳୀ ଖାଇଲୁଣି କି, କମଳୀ ଗାଧେଇଲୁଣି କି, କମଳୀ ଲୁଗା ପିଂଧିନି ବୋଲି ବୋଉ ସଂଗେ କଳି, କମଳୀ ଯାତ୍ରା ଦେଖିବବୋଲି ବାପ ସଂଗେ ହଟ । –ପିଲାଟି ଦିନରୁ କାଖରେ କରି ବଢେଇଛି ଦେଈ, ମୁଁ ତମକୁ ଛାଡ଼ି କୁଆଡ଼େ ଯିବି ? ତମଠୁ କଥା କ'ଣ ଲୁଚେଇବି ? ତମର ଭଲ ହେଲେ ସିନା କମଳୀର ସୁଖ, ତା'ର ଆଉ ଏ ପୋଡ଼ା ଜୀବନରେ କି ସୁଖ ? (କ୍ରନ୍ଦନର ଅଭିନୟ)

ମାଧବୀ– (କମଳୀର ଆଖି ପୋଛିଦେଇ) ଛି କମଳି, ଏତେବେଳେ ତୁ କାନ୍ଦିବୁ ? କହ ନା ମତେ ଅଜାଂକର ଏତେ ଜିଦ୍ କାହିଁକି ?

କମଳୀ– (ସୁସ୍ଥ ହୋଇ)ଆଲୋ ମଉସା, ଜଡ଼ ପଇସା । ଜାଣିଲ ଦେଈ, ଏ ଜଗତ୍ର ରୂପା ଚକିରେ ଚାଲୁଛି । ମୁଁ ନିଚେ କହୁଚି ସେ ଯାଜପୁରବାଲା ବୁଢ଼ାକୁ ଟଂକାଟୋକର ଦେଇ

ପଟକେଇଛି । ନ ହେଲେ ଦଶବର୍ଷରେ ଥରେ ଯା'ର ଏଠି ପାଦ ପଡ଼େନି ସିନା ବିନା ଡାକରେ କାହିଁକି ଧାଆନ୍ତା ? ନାତି ନାତୁଣୀଂକି କିମିତି ଦେଖିପାରନ୍ତି ମୁଁ କ'ଣ ଜାଣିନି ? ଟଂକା ଖର୍ଚ୍ଚ ହେବ ବୋଲି ବୁଢ଼ା ତ ନାତି ନାତୁଣୀଙ୍କି ଦିନେ ହେଲେ ଘରକୁ ଡାକିନିଏନି । କ'ଣ ବା ନାଇଁ ତାଙ୍କର ? ତମେ ବା କ'ଣ ଖାଇଯାଁତ ?—ଆଉ ଏବେ କ'ଣ ଇମିତି ସେନେହ ହୋଇପଡ଼ିଲା ଯେ ବୁଢ଼ା ଧାଇଁଚି । ବୁଢ଼ା ଆସି ସାଂଗେ ସାଂଗେ ବୋଉକୁ ଫୁସଲେଇଲା—ମୁଁ ଶୁଣିଛି ସବୁ—ନହେଲେ ବୋଉ ଇମିତି ହୁଅନ୍ତେ କାଇଁକି ?

ମାଧବୀ— ହଉ, ବୁଢ଼ା କ'ଣ ଠିକ୍ କରିଦେଇଗଲେ ? ଯାଜପୁରର କୁ' ଗାଁ କହୁଥିଲୁ ? କା' ଘର ?

କମଳୀ— ଯାଜପୁର ବିଁଝାଳ ଗାଁର ବଡ଼ ଜମିଦାର ଘର ପରା । ସେ ପିଲା କୁ'ଠି ଏଇ କଟକରେ ପଢୁଛି । ଆମ ପୂର୍ଣ୍ଣବାବୁଂକର ସାଙ୍ଗ ପରା ! ସେ କୁ'ଠି ଦେଇ ତମୁକୁ ଦେଖିଯାଇଚଁତି ଦିନେ ଆସି—ତମେ ଦେଖିଛ ତାଂକୁ ?

ମାଧବୀ— ତା' ହେଲେ ମୁଁ ଦେଖିଛି, ଚଢେଇ ବାଣୁଆକୁ ଦେଖିଲାପରି ।

କମଳୀ— ସେଇ ଦେଖାରୁ ତ ଏତେ ନାଟ । ସେ ପିଲା କୁ'ଠି ତମକୁ ବିଭାହେବାଲାଗି ଅଡ଼ି ବସିଲା । ସେଇଥିରୁ ତ ଏ ଗୋଳମାଳ । ଆହା ଆମ ପୂର୍ଣ୍ଣବାବୁ ! କେଡ଼େ ସୁନ୍ଦର ମନିଷ ! କେଡ଼େ ସୁନ୍ଦର କଥା— ତମକୁ ନେବାକୁ ସେ ଚାହିଁବସିଥିଲେ ଦେଈ !— ତାଂକ ଭାଗ୍ୟରେ ତ ନାହିଁ, କ'ଣ ହେବ ?

ମାଧବୀ— ମୁଁ କ'ଣ ତାଂକର ଯୋଗ୍ୟ ? ତାଂକୁ କ'ଣ କନ୍ୟା ଅପୂର୍ବ ହେବ ?

କମଳୀ— (ଆଶ୍ଚର୍ଯ୍ୟରେ) ଏ ଦେଈ, ଜାଣିଛ ନା —ମୋର ମନେନଥିଲା କହିବାକୁ —ପୂର୍ଣ୍ଣ ବାବୁ ଯେ ଆଜି ଆସିଥିଲେ !

ମାଧବୀ— (ଉଠିପଡ଼ି) କୁ'ଠିକି ? କେତେବେଳେ ? ଆ-ଆ-ଜି ?

କମଳୀ— ଉଦୁଉଦିଆ ଖରାବେଳଟାରେ ଟରଂକଟାଏ ଧରି କୁଆଡୁ ଆସି ଦାଣ୍ଡଦୁଆରେ ପହଁଚିଲେ କେଜାଣି; ମୁହଁ ଏକଦମ୍ କଳାପଡ଼ିଯାଇଛି । ବାବୁଂକ ସଂଗେ କ'ଣ କଥା ହେଲେ, ବାବୁ ଘରଭିତରକୁ ଚାଲିଆସିଲା ପରେ ମିଶେ ଘଡ଼ିଏ ଦାଣ୍ଡରେ ଠିଆହେଇ ଏଣେ ତେଣେ ଅନାଇଲେ, ତା' ପରେ ପଳେଇଲେ । ମୁଁ ଘର ଝାଣ୍ଟିବାକୁ ଉପର ଘରକୁ ଯାଇଥିଲି ଝରକାବାଟେ ଦେଖିଚି ସବୁ ପରା—ଅଜ୍ଜା ଥିଲେ ବୋଲି ବୋଧେ ବାବୁ ଘରେ ରହିଲେନି । ଅଜ୍ଜା ତ ତାଙ୍କୁ ଆଉ ଘରେ ନ ପୂରେଇବାକୁ କହିଛନ୍ତି । ସେ ଯେତେବେଳେ ବେଗ୍ ଖଣ୍ଡେ ଧରି ଗଳି ଭିତରକୁ ସେଇ ଖରାରେ ପଶିଗଲେ, ମୋ ମନଟା କ'ଣ ହୋଇଗଲା ସତରେ, ଦେଈ !

ମାଧବୀ—ମତେ ଟିକିଏ ଡାକିଦେଲୁନି ଚଣ୍ଡାଳୁଣୀ; ମୁଁ ଟିକିଏ ଦୂରରୁ ଦେଖିଥା'ନ୍ତି ଖାଲି ହେଲେ । ଓଃ, ଆଉ କ'ଣ ତାଂକୁ ଦେଖିବି ଜୀବନରେ ? କି ପାପିନୀ ମୁଁ ! ମୁଁ ଚଣ୍ଡାଳୁଣୀ ନମଲି କାହିଁକି ସେତେବେଳେ ! ମୁଁ ଜୀଇଁ ଥାଉ ଥାଉ ସେ ଦୁଆରକୁ ଆସି ଫେରିଗଲେ । କ'ଣ ନକଲୁ କମଳୀ ତୁ ?

କମଳୀ—ବେସ୍ତହୁଅନା ଦେଈ ! ମୁଁ ମନକଲେ କାଆଲି ଭେଟେଇଦେବି । କମଳୀକି କଟକ ସହରରେ କୁ' ଗଳି-ସନ୍ଧି ଅଜଣା ? ଏଇ କଥାଟା ପାଇଁ ବେସ୍ତ ହେଉଛ ? ଶୋଇପଡ଼ । ମୁଁ କହୁଛି—ସେ କଥା ମୋ ଉପରେ । ଦୀପ ଲିଭେଇ ଦିଏଁ ।

ମାଧବୀ—ଦେ ଲିଭା । ମୋର ତ ସବୁଆଡ଼ ଅନ୍ଧାର, ଏ ଆଲୁଅ ଥିବ କାହିଁକି ? ତୁ ଶୁଅ କମଳୀ—ସମସ୍ତେ ତ ଶୋଇଛନ୍ତି !—ମୁଁ ଯାଏଁ ଦାଣ୍ଡକୁ, ସେ ଠିଆ ହୋଇଥିବା ଥାନର ଧୂଳି ମୁଣ୍ଡରେ ଲଗାଇ ଆସେଁ—ନହେଲେ ମୋ ପ୍ରାଣରେ ଶାନ୍ତି ନାହିଁ । ତୁ ଦୀପ ଲିଭେଇ ଥିର ହୋଇ ଶୁଅ ଏଠି—ମୁଁ ଯାଏଁ । (ପ୍ରସ୍ଥାନ)

(ପଛେ ପଛେ କମଳୀ 'ରହ ରହ ଦେଈ' କହି ଅନୁଗମନ ।)

## (ପଞ୍ଚମ ଦୃଶ୍ୟ)

[ଅନ୍ଧକାର—ଦ୍ୱାରଦେଶରେ ମାଧବୀ, ପଛରେ କମଳୀ । ମାଧବୀ କ୍ରମେ ତଳକୁ ଓହ୍ଲାଇ ରାଜପଥର ଧୂଳି ସ୍ପର୍ଶକରି ମୁଣ୍ଡରେ ବାରମ୍ବାର ଲଗାଇବାକୁ ଲାଗିଲା ।]

ମାଧବୀ—କମଳି, ତୁ କାହିଁକି ମୋ ପଛେ ପଛେ ଅଇଲୁ ? ମୁଁ ଏଇ ଫେରିଯିବି —ତୁ ତେଣେ ଚାଲିଯା ଟିକିଏ—ମୁଁ ମନପୂରାଇ ଏଇ ମାଟିର ସ୍ପର୍ଶ ଅନୁଭବକରେଁ ।

କମଳୀ— ଦେଈ, ଏତେ ରାତିରେ କାହିଁକି ବାହାରୁଛ କହିଲ ? ବୋଉହେରିକା ଜାଣିଲେ ମୋ ମୁଣ୍ଡ ରଖିବେ ନା ? ହଉ ତମ କଥା ମାନି ଏଇ କବାଟ ପଛଆଡ଼େ ମୁଁ ଠିଆ ରହିଛି, ଶୀଘ୍ର କାମସାରି ଆସ । (ପ୍ରସ୍ଥାନ)

ମାଧବୀ— (ମାଟି ସ୍ପର୍ଶକରି ମୁଣ୍ଡରେ ଲଗାଇ) ଦେବତା ମୋର, ଅପ୍ରତ୍ୟାଶିତ ଭାବରେ ମୋ ଜୀବନ ଆକାଶରୁ ଅନ୍ତରିତ ହୋଇଗଲ ! ସତେ କ'ଣ ତମେ ଆଉ ମୋର ନୁହଁ ? ବାହାରେ ସିନା ଅନ୍ୟମାନେ ବାଧାଦେବେ, ଅନ୍ତରରୁ ତମକୁ କିଏ କାଢ଼ିଦେବ ? ଶେଷଥର ଲାଗି ଏଇ ଦ୍ୱାରରେ ଏଇଠାରେ ପଦଧୂଳି ଦେଇଯାଇଛ । ଏ ଧୂଳି ମୋର ପବିତ୍ର ତିଳକ— ମୁଁ ମଥାରେ ସିନ୍ଦୂର କରି ଯାକୁ ଜୀବନଯାକ ଲଗେଇବି ।

(ଇତିମଧ୍ୟରେ ଧୀରେ ଧୀରେ ପୂର୍ଣ୍ଣର ପ୍ରବେଶ ।)

ପୂର୍ଣ୍ଣ— କିଏସେ ? କମଳୀ ?

କମଳୀ— (ଭିତରୁ ବାହାରିପଡ଼ି) କ'ଣ ଦେଈ ?

(ବର୍ତ୍ତମାନ ମାଧବୀ ଓ କମଳୀ ଦୁହିଁଙ୍କ ଆଗରେ ପୂର୍ଣ୍ଣ ଦଣ୍ଡାୟମାନ । ଦୁହେଁ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ ।)

ମାଧବୀ— (କମଳୀର ହାତଧରି) କମଳି, ମୋ ରାଣ, ପାଟିତୁଣ୍ଡ ନ କରି ଟିକିଏ ଅନ୍ତର ହୋଇଯା' । ଏତକ କଲେ ମୁଁ ଜୀବନଯାକ ତୋର ଋଣୀ ହୋଇ ରହିବି ।

କମଳୀ— (ହାତ ଛାଡ଼ିଦେଇ) ହାତ ଛାଡ଼ ଦେଣ, ଛାଡ଼ । (ପ୍ରସ୍ଥାନ)

(ମାଧବୀ ଓ ପୂର୍ଣ୍ଣ ପରସ୍ପରକୁ କ୍ଷଣକାଳ ଅନେଇ ରହିଲେ ।)

ପୂର୍ଣ୍ଣ— ଏତେ ରାତିରେ ବାହାରେ କ'ଣ କରୁଥିଲ ?

ମାଧବୀ— ତମେ ଏତେ ରାତିରେ ଏଠାକୁ ଆସିଲ କିପରି ?

ପୂର୍ଣ୍ଣ— ମୁଁ ତ ଏଇକ୍ଷଣି ଆସିନି— ସଂଧ୍ୟାବେଳୁ ଏଇ ଅଦୂରରେ ଅପେକ୍ଷା କରି ରହିଛି ।

ମାଧବୀ— କାହାକୁ ଅପେକ୍ଷା ?

ପୂର୍ଣ୍ଣ— ତୁମକୁ ।

ମାଧବୀ— ମୁଁ ତ ଦେଖାଦେବି ବୋଲି କହିନଥିଲି ।

ପୂର୍ଣ୍ଣ— କାଲେ କିପରି ଖବର ଦେଇ ତମ୍ଭକୁ ଅନ୍ତତଃ ଝରକାବାଟେ ହେଲେ ଶେଷଥର ପାଇଁ ଦେଖିଯିବି ବୋଲି ସେତିକିବେଳୁ ଠିଆହୋଇଛି । ଲୋକବାକଙ୍କ ଯା-ଆସ କ୍ରମେ ବଂଦହୋଇ ଆସିଲା; ସର୍ବଶେଷ ଘୋଡ଼ାଗାଡ଼ିଟି ଗଳି ଶେଷଆଡ଼କୁ ଯାଇ କ୍ରମେ ନୀରବ ହୋଇ ଆସିଲା, ତମ ଘରର ଆଲୁଅ ଲିଭି ଆସିଲା, ଦୁଆର ବଂଦ ହୋଇଗଲା, କିନ୍ତୁ ମୁଁ ଠିଆ ହୋଇଥାଏ । ଶେଷରେ କେହି ଜଣେ ଦୁଆର ଆଗରେ ଠିଆ ହେବାର ଦେଖି ସାହସ କରି ଏଠାକୁ ଆସିଲି । ତମେ କାହିଁକି ଏତେ ରାତିରେ ବାହାରକୁ ଆସିଥିଲ ମାଧବୀ ?

ମାଧବୀ— ମୁଁ କାଇଁଚ ଖୋଜି ଆସି ଗଜ-ମୋତି ପାଇଲି । ତମକୁ ଦେଖିବାର ଆଶା ନାହିଁ ଆଉ ଜାଣି,ଶେଷଥର ପାଇଁ ଏ ଦୁଆରେ ଯେଉଁଠି ଠିଆ ହୋଇଥିଲ, ସେ ସ୍ଥାନ ସ୍ପର୍ଶ କରିବାକୁ ଆସିଥିଲି । ମୋର ଆରାଧନା ମୋର ଦେବତାକୁ ଟାଣି ଆଣିଛି ଦେଖୁଛି । ଆଉରି ପାଖକୁ ଆସ—ଏତେ ଦୂରରେ ଠିଆ ହୋଇଛ କାହିଁକି ?

(ନିକଟକୁ ଆଣି ଦୁଇ ହାତ ଧରିବା ।)

ପୂର୍ଣ୍ଣ— ମୁଁ ତ ଆଉ ତମର କେହି ନୁହେଁ ମାଧବୀ, ମତେ ପୂଜା କରିବ କାହିଁକି ?

ମାଧବୀ— ଏଇ ନିଶୀଥ ରାତ୍ରିରେ, ଏଇ ନିଭୃତ ମିଳନ ବେଳେ ତମେ କ'ଣ ଏଇପରି କଥା କହି ସୁଯୋଗର ଅପବ୍ୟୟ କରିବ ? ମୁଁ ତୁମର ନୁହେଁ ? କିଏ ମତେ ତମଠାରୁ ଛିନ୍ନ କରିବ କହ ତ ? ଆକାଶର ଜାଜ୍ଜ୍ୱଲ୍ୟମାନ ଏହି କୋଟି କୋଟି ଜ୍ୟୋତିଷ୍କ ତଳେ ମୁଁ ତମ ପଦତଳେ ନିଜକୁ ଅର୍ପିତ କରୁଛି । ଧର, ମତେ ନେଇଚାଲ, ମୁଁ ସଂଯୁକ୍ତା ପରି, ସୁଭଦ୍ରା ପରି ତମଲାଗି ପିତାମାତା ଜ୍ଞାତିବଂଧୁଙ୍କୁ ତ୍ୟାଗକରି ତମର ଅନୁସରଣ କରିବି । ତମଲାଗି ମୁଁ ରାଜପଥରେ ଠିଆ ହୋବାକୁ ପ୍ରସ୍ତୁତ ଅଛି ।

ପୂର୍ଣ୍ଣ— ମାଧବି, ତମପରି ବାଳିକାର ଏ ପ୍ରତ୍ୟର୍ପଣ ଯେକୌଣସି ଯୁବକକୁ ଉନ୍ମତ୍ତ କରିବ— ମୋ କଥା ତ ଛାଡ଼ । କିନ୍ତୁ ତୁମ ପ୍ରତି ମୋର ଗଭୀର ସ୍ନେହହିଁ ମତେ ବାରଣ କରୁଛି । ମୁଁ ବର୍ତ୍ତମାନ ଗୃହଚ୍ୟୁତ, ଧନହୀନ ଓ ଫେଲ୍ ହୋଇ ସମାଜରେ ନ୍ୟୂନ । ମୋର ନିଜର ଲଜ୍ଜା ଘୋଡାଇରଖିବାକୁ ମୋର ଆବରଣ ନାହିଁ— ତମର ଲଜ୍ଜାକୁ

କି ଆଶ୍ରୟ ଦେବି ? ତା'ପରେ ବାପାଂକର ଉଭୟଙ୍କ ପ୍ରତି ଗଭୀର ସ୍ନେହ ମନେକର । ଏପରି କିଛି କଲେ ସାମାଜିକ କଳଙ୍କରେ ବାପା ମୃହ୍ୟମାନ ହେବେ । ସେସବୁ ଥାଉ । ତମେ ପ୍ରଚୁର ସଂପତ୍ତିର ଅଧିକାରିଣୀ ହେବ । କିପରି ସୁଖରେ ରହ, ଏଇ ଆଶୀର୍ବାଦ ମାତ୍ର କରିବାକୁ ମୁଁ ଆସିଛି— ବୁଝିଲ ?

(ଓଠ ଧରିବା—ମାଧବୀ ନୀରବ ରହିଲା ।)

ପୂର୍ଣ୍ଣ— ପାଗଳୀଟି ମୋର —ତମେ ବୁଝିବ ନାହିଁ ଯେ ପୂର୍ଣ୍ଣର ହୃଦୟ ବଦଳିଯାଇଛି । ତା' ହୋଇଥିଲେ ମୁଁ ଏଇ ନିଶୀଥ ରାତ୍ରିଯାଏଁ ତମକୁ ଅପେକ୍ଷା କରି ରାଜପଥରେ ଠିଆ ହୋଇ ନ ଥା'ନ୍ତି । କିନ୍ତୁ ଦେଖୁଛି, ମୋର ବର୍ତ୍ତମାନ ଯେପରି ଅବସ୍ଥା ସେଥିରେ ତମକୁ ଘେନିଯିବା ଘୋର ସ୍ୱାର୍ଥପରତା ହେବ । ତେଣୁ ଏ ଭାଗ୍ୟହୀନ ସାଥିରେ ତୁମକୁ ଆଣି ଯୋଡ଼ିଦେବାକୁ ମୋର ଇଚ୍ଛା ନୁହେଁ । ଥାଅ, ସୁଖରେ ରହ—ମୋତେ ଭୁଲିଯାଅ ! ବେଳେ ବେଳେ ଯଦି ଏହି ହତଭାଗା, ହତଲକ୍ଷ୍ମୀର କଥା ମନେପଡ଼େ ତେବେ ସେଇହିଁ ମୋର ପରମ ଭାଗ୍ୟ—ଥାଅ.....

(ଦ୍ରୁତ ଗତିରେ ପ୍ରସ୍ଥାନ—ଯବନିକା)

## (ଷଷ୍ଠ ଦୃଶ୍ୟ)

ନଟୀ

ଫୁଲ କି ଜାଣଇ,
ଚୁମିବ ତାକୁ କେ ଭ୍ରମର;
ରୂପ କି ଜାଣଇ,
ଜିଣିବ ତାକୁ କା' ସମର ।
କାହିଁ ଥାଏ କାହିଁ ଲାଗେ ଯାଇ
କାହାଲାଗି ଥୁଆ ଥୟ ନାହିଁ,
ପରମ ଭୋଗକୁ
ପାଇଥାଏ ନିକି ପାମର ?
ରୂପ ସତେ ନିକି ଅଭିଶାପ;
ସୁଖର କରୁଣ ଅପଳାପ;
ତାକୁ ଦେଇ ଧାତା
ଖୁଜିଥାଏ କିପାଁ ଜହର ?
ଭୋଗେ ରୂପ ସିନା ଏକା ସେହି,
ରୂପ ଆପେ ଯାର ପାଦେ ନଇଁ,

କହେ ଟେକି ମତେ
ଭୋଗ ମୋର ମଧୁ, ଭ୍ରମର !

## [ ଚତୁର୍ଥ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ କଟକର ଗୋଟିଏ ରାସ୍ତାର ଏକ ଅଂଶ—ତା'ରି ଉପରେ ଭିନ୍ନ ଭିନ୍ନ ଚରିତ୍ରମାନଙ୍କର ସମାଗମ । ପ୍ରଥମେ କିଶୋର ଓ ତା'ର ଜଣେ ବଂଧୁଙ୍କର ପ୍ରବେଶ—ବେଶ୍ ଫାସ୍‌ନେବଲ୍ ବେଶଭୂଷା—ବଜାରରେ ସାଂଧ ଭ୍ରମଣ ଲାଗି ବାହାର । ]

କିଶୋର— ବୁଝିଲୁ, ତା'ପରେ ଘରେ ଯାଇ ପହଁଚି ଦେଖିଲି ବିଭାଘର ଯୋଗାଡ଼ ଲାଗିଚି । ନାନାଆଡୁ ଟିପଣା ଆସିଛି—ମୁଁ କିନ୍ତୁ ଗୋଟି ଗୋଟି କରି ନାହିଁକରିଦେଲି—ଖାଲି କହିଲି ମୁଁ ବିଭାହେବିନି । ବୋଉ ତ କାନ୍ଦି ଅସ୍ଥିର—ଭାତଖାଇଲାନି ମିଶେ—ବାପାଙ୍କ ମୁଣ୍ଡରେ ବି ଚଡକ ପଡ଼ିଲା । ଶେଷରେ ନାନା ପଚରାପଚରିରେ ମରମ କଥାଟି କହିଲି— 'ଏଠି ବିଭାଘର ନହେଲେ ମୁଁ ବିଭାହେବିନି ।' ବାପା ପ୍ରଥମେ ଅମଙ୍ଗ ହେଲେ—ତାଙ୍କର ଇଚ୍ଛାଟା ଗୁଡ଼ାଏ ସୁନାରୁପା, ଟଙ୍କାପଇସା ପାଆନ୍ତେ—ବୋଉ ଧରିବସିଲା, 'ଆମର କ'ଣ ଟଙ୍କାପଇସା ନାଇଁ, ଗୋଟିଏ ବୋଲି ତ ପୁଅ; ତା'ର ଯେବେ ଇଚ୍ଛା ହେଲାଣି ସେଠି ବିଭାହେବାକୁ ସେଇଠି କର । ବୋହୂ ତ ଯୋଗ୍ୟ ହେଲେ ଗଲା—ଆମର ଟଙ୍କାପଇସା କ'ଣ ହେବ ?' ଶେଷକୁ ବାପା ବି ମଙ୍ଗିଲେ । ଲାଗିଲା ଧାଁଧପଡ଼ । ଆମ ଗାଁ ପାଖରେ ମଧୁବାବୁଙ୍କ ଶଶୁର ଘର । ଲୋକ ଦଉଡ଼ିଲେ ତା ପାଖକୁ—ସେ ବୁଢ଼ା ପ୍ରଥମେ ମଙ୍ଗିଲାନି, କହିଲା, 'ସବୁ ଠିକ୍‌ଠାକ୍ ହୋଇଯାଇଛି ।' ଇମିତି ନାନା କଥା—କିନ୍ତୁ ବୁଢ଼ା ଭାରି ଅର୍ଥଲୋଭୀ—ପକେଟରେ କିଛି ଟଙ୍କା ଯୁ'ଖିଣି ପଡ଼ିଛି, ସେ ବି ଦୌଡ଼ିଲା—କିନ୍ତୁ ଯାହାହେଉ, କାମଟା ହାସଲ କଲା । ବୁଢ଼ା ଭାରି ଜଣେ ! ତାକୁ ଆମର କ୍ଷୀରୋଦ୍ର ପାଟଯୋଡ଼, ହାର, ମୁଦି—କେତେ କ'ଣ ଦିଆହୋଇଛି—ବୁଢ଼ା ଭାରି ଖୁସି ନା ! ମୁଁ ଦେଖୁଛି ଭାଇ, ଟଙ୍କାର ଅସାଧ କିଛି ନାହିଁ । ସ୍ୱର୍ଣ୍ଣ ମଦିରା ସମସ୍ତଙ୍କୁ ପାଗଲ କରିବ ।

ବଂଧୁ— ହଉ, ମାଲ୍ କିମିତି ? ବଢ଼ିଆ ନା ?

କିଶୋର— ବାସ୍ତବିକ୍ ବଢ଼ିଆ ! ଭାଇ, ମୁଁ ତ ବହୁ ତୁଠରେ ପାଣି ପିଇଛି; କିନ୍ତୁ ସତ କହୁଛି, ଯାପରି ଜିନିଷଟାଏ ମୁଁ ଦେଖିନଥିଲି । ନ ହେଲେ ମୁଁ ଲଢ଼ନ୍ତି କାହିଁକି ? ଜଣେ ନଗଦ ଦଶହଜାର ଟଙ୍କା ଦେବ ବୋଲି କହୁଥିଲାଟି— ତାକୁ ଛାଡ଼ିଦେଲୁ । ମଧୁବାବୁଙ୍କ ଘରୁ ତ ଫଟା ପାହୁଲାଟାଏ ପାଇନୁ— ଖାଲି କନ୍ୟାରନ୍‌ଟି ଯାହା ମଧୁବାବୁ ଦେଲେ ।

ବଂଧୁ— ବଡ଼ ଭାଗ୍ୟବାନ୍ ତୁ କିଶୋର ! ଆଉ, ଆଉ ଗୁଣ କିମିତି ? ତତେ ଲଭ୍ କରୁଛି ନା ?

କିଶୋର— ଲଭ କରିବନି ଯିବ କୁଆଡ଼େ ? ଗୋଟାଏ ଗାର୍ଲକୁ ପାଲରେ ପକେଇବା କ'ଣ ବଡ଼ କଥା ? ମୁଁ ଇମିତି କେତେ ପରିଖିଛି । ତମକୁ ସବୁ ସିନା ବଡ଼କଥା ବୋଲି ଜଣାପଡୁଛି, ମତେ ସେ ସବୁ କିଛି ନୁହେଁ । ପ୍ରଥମେ ପ୍ରଥମେ ଭାରି କାନ୍ଦୁଥିଲା କାହିଁକି ! ଏବେ ସବୁ ତୁନ୍‌ତାନ୍, ବେଶ୍ କଥା କହୁଛି, ପାନ ଭାଙ୍ଗିଦଉଛି ।

ବଂଧୁ— ପୂର୍ଣ୍ଣ କଥା କିଛି କହେନି ?

କିଶୋର— ତା' ମନେ ମନେ କ'ଣ ଭାବୁଥିବ— ମୋର ସେ କଥାକୁ ଖାତର୍ କରୁଛି କିଏ ? ମୁଁ ବା ସେକଥା ପଚାରିଯିବି କାଇଁକି ? କାଇଁକି ବା ଆଉ ସେ ସବୁ ଭାବିବ ? ଆମ ଘରେ ତା'ର କ'ଣ ଅଭାବ ? ପୂର୍ଣ୍ଣକୁ ବିଭାହୋଇଥିଲେ ସେ ଅଧିକା ଇମିତି କ'ଣ ପାଇଥାଁତା ? ତେବେ ଅନେକ ସମୟରେ ସେ ମୁହଁ ଶୁଖିଲା କରି କ'ଣ ଭାବୁଥାଏ— ମୁଁ ଭାରି ବିରକ୍ତହୁଏ— ସେ ହସିହସି କରି କହେ ଯେ ଘରକଥା ଭାବୁଛି । ପ୍ରଥମେ ପ୍ରଥମେ ସମସ୍ତେ ତ ଘରକଥା ଭାବନ୍ତି —କ୍ଷତି କ'ଣ ?

ବଂଧୁ— ହଉ, ତୁ ଆମକୁ ଫିଷ୍ଟ ଦବୁନି, ହଇରେ ? ଗଡ଼ ଜୟ କଲୁ— ଏମିତି ମାଲ୍—

କିଶୋର— ହଉ ହଉ, ଆ ଭାଇ ! ତତେ ଆଜି ହୋଟେଲରେ ଖୁଆଇବି—ସେ'ଠୁ ତୁ ଯୁଆଡ଼େ ଯିବୁ ।

ବଂଧୁ— ହଉ, ଚାଲ—ବଢ଼ିଆ ଖୁଆଇବୁ ଯିମିତି ! (ଉଭୟଙ୍କର ପ୍ରସ୍ଥାନ)

(କିଛିକ୍ଷଣ ପରେ ଆଉ ଜଣେ କଲେଜ ଛାତ୍ରର ପ୍ରବେଶ ।)

ଛାତ୍ର— (ଚାରିଆଡ଼କୁ ଅନାଇ) ଆରେ, ଏଇ ତ କୁମୁଦ ଆଉ ବିଶ୍ୱମ୍ଭର ! (ଉଚ୍ଚସ୍ୱରରେ)ଏ, ଏ, ଫ୍ରେଣ୍ଡସ—ଶୁଣ୍ ! ଶୁଣ୍ ! (କାନଡେରି) ହଁ ହଁ, ଆଜି ଆସିଲି । (କାନଡେରି) କ'ଣ ? ବଜାରକୁ ଯାଉଛ ? ହଉ ହଉ, ଆସ, ଆସ ଟିକିଏ କଥାହେବା । ଶୁଣିଯା, (ସ୍ୱଗତ) ସବୁ ଚୋରଯାକ କେଦାରଶ୍ୱରଠି ଭେଟ । ଯାହାହେଉ ଫେଲ୍ ହେଇଛି ବୋଲି ମନଟା କିମିତି କିମିତି ହେଉଥିଲା—ମୁହଁ ଦେଖେଇ ହେଉ ନ ଥିଲା । ଏବେ ଆମ ଫେଲ୍-ସାଂଗ ଗୋଟେ ଯୋଡ଼େ ଦେଖିବାରୁ ମନଟା ପୁଣି ଫୁର୍ତ୍ତି ହେଲାଣି ଟିକିଏ ! (ଅନ୍ୟ ଦୁହିଁଙ୍କର ପ୍ରବେଶ—ପ୍ରକାଶ୍ୟେ) କିରେ, କୁଆଡ଼େ ଇମିତି ଛୁଟିଛ ?

ବିଶ୍ୱମ୍ଭର— ସିନେମାକୁ—ଯିବୁ ?

ପ୍ରଥମ ଛାତ୍ର— ଫେଲ୍ ହୋଇଛି ଯେ ମନ ଯାହା ହେଉଛି —ଆଉ ସିନେମା ଦେଖି ମୁଁ ଯାଉଛି !

ବିଶ୍ୱମ୍ଭର— ଲୋକେ ଆଉ ଫେଲ୍ ହେଉନାହାନ୍ତି ? ସେଥିପାଇଁ ଭାତଖାଇବାନି, ଲୁଗା ପିଂଧିବାନି ! ଯାଉନୁ ରାମଦାସ ପରି ଦାଢ଼ି ରଖି ବୁଲିବୁ !

ପ୍ରଥମ ଛାତ୍ର— କୁ' ରାମଦାସ ?

ବିଶ୍ୱମ୍ଭର— ଆରେ ସେଇ ରାମଦାସ, ରୋଲ ଫିପ୍‌ଟୀନ୍, ସବୁବେଳେ ସାଂସ୍କ୍ରିଟ କ୍ଲାସ୍‌ରେ ଉଠିକି ଯେ ପଚାରେ—ସେ ଫେଲ୍ ଖବର ଶୁଣିଲାଦିନୁ ଗୋଡ଼ରେ ଜୋତା ଲଗଉନି,

ଦେହରେ କୁର୍ତ୍ତା ଦଉନି, ଦାଢ଼ି ବି ଖିଅରହଉନି– ଖଣ୍ଡେ ଚାଦର ପକେଇଦେଇ ଦାଢ଼ି ଛାଡ଼ି ଖାଲି ଗୋଡ଼ରେ କଟକଯାକ ବୁଲୁଛି । କାଲି ତାକୁ ଚଉଧୁରୀ ବଜାର ଛକରେ ଦେଖିଥିଲି । ମୁଁ ତାକୁ ପଚାରିଲାକ୍ଷଣି କହୁଛି–'ଆଉ ଭାଇ ଏ ଜୀବନରେ ଆଶା ନାହିଁ !' ଯା କହି ପଳେଇଛି ତ, ଯେତେ ଡାକିଲି ଶୁଣିଲାନି–ତୁ ଯା ତା ସାଂଗ ହବୁ ।

ପ୍ରଥମ ଛାତ୍ର– ହେଲେ କ'ଣ ହେଲା ଭାଇ, ଫେଲ୍ ହେଇ ମୋ ମନ ଯାହା ହେଉଛି କ'ଣ ତତେ କହିବି ? ଓଃ,କି ଚେଷ୍ଟା ନ କରିଥିଲି ଏଥର ! ଯାହା ପ୍ରିପେୟାର କରିଥିଲି ତା ଆଦୌ ପଡ଼ିଲାନି; ଯାହା ପଡ଼ିଲା ତାକୁ ଦେଖିଲାବେଳକୁ ମୁଣ୍ଡ ଖାଲି ଘୂରେଇଲା । ମୋରି ପାଖର କମଳଟାକୁ ଦେଖ ! କିଛି ନାହିଁ ତା'ର; ନାଇଁ ଦେହଦୁଃଖ, ନାଇଁ ମୁଣ୍ଡବୁଲା–ଶୂନ୍ୟେ ଶୂନ୍ୟେ ଫାଷ୍ଟ ଡିଭିଜନ୍ । ଆଉ ମୁଁ ଅଣ୍ଡା ଖାଇ, ଫସ୍‌ପୋଲେସିଥିନ ଖାଇ, ଆସ୍ୱାନ ଖାଇ ଶେଷକୁ ହେଲି ଫେଲ୍ । ଭାଗ୍ୟକୁ କହିବା, ଆଉ କ'ଣ ? ଗାଁରେ କ'ଣ ମୁଣ୍ଡ ଟେକିହେଉଥିଲା କିରେ ଭାଇ ? ଏଠିକି ଆସି ତୁମକୁ ସବୁ ଦେଖିଲାକ୍ଷଣି ମନରେ ଟିକିଏ ଦମ୍ଭ ହେଲାଣି । କୁମୁଦର କ'ଣ ଅଛି ? ସେ ତ ଫାଷ୍ଟ ଡିଭିଜନ୍ ମାରିଦେଇଛି–ସ୍କଲାରଶିପ୍ ପାଇଯିବ ବୋଧହୁଏ ଗୋଟେ ।

କୁମୁଦ– ହଁ, ତୁ କ'ଣ ପାସ୍ କରିବୁନି ? ମୁଁ ପାସ୍ କରି କ'ଣଟା କରିପକେଇବି, ତୁ ନ କରିବୁ କ'ଣ ? ପୂର୍ଣ୍ଣ କ'ଣ କରିବ କହିପାରିବୁ ?

ବିଶ୍ୱମ୍ଭର– ହଁ, ହଁ, ପୂର୍ଣ୍ଣ କ'ଣ କରୁଛି ?

ପ୍ରଥମ ଛାତ୍ର– ଭାଇ, ଯାହାହେଉ ପୂର୍ଣ୍ଣ ଫେଲ୍‌ହୋଇଥିବାରୁ ଗାଁରେ ମୋ ମହତ ଟିକିଏ ରହିଛି । ଲୋକେ ପଚାରିଲେ ମୁଁ କହିଦିଏ ଦେଖୁନା, ସେ ଜମିଦାରଙ୍କ ପୁଅ ପୂର୍ଣ୍ଣ ଏତେ ଟଙ୍କା ଖର୍ଚ୍ଚ କରି କେମିତି ଫେଲ୍ ହୋଇଗଲା ! ପାସ୍ କ'ଣ ଖେଳଘର ହୋଇଛି ? ସରକାର ପାଖରେ ଚାକିରି ନାଇଁ ବୋଲି ସେ' ତ ଆଉ କାହାକୁ ପାସ୍ କରେଇ ଦେଉନି ।

କୁମୁଦ– ହଉ, ପୂର୍ଣ୍ଣ ଏବେ କରିବ କ'ଣ ? ତା' କଥା ଜାଣିଛ ? କହିଲ ।

ପ୍ରଥମ ଛାତ୍ର– ଫଳ ବାହାରିବା ପରେ ତାଙ୍କ ଗାଁକୁ ଯାଇଥିଲି । ମତେ ଭଲକରି କଥା କହିଲା ନି । ତା' ବାପା ଭାଇ ବଡ଼ ବିରକ୍ତ ତା' ଉପରେ । ତା' ପରେ ମଧୁବାବୁଙ୍କ ଘରେ ତା' ମାରେଜ୍ ବି ଭାଙ୍ଗିଗଲା ।

କୁମୁଦ– ଭାଙ୍ଗିଗଲା !

ବିଶ୍ୱମ୍ଭର– ସତେ !

ପ୍ରଥମ ଛାତ୍ର– ହଁ, ସେ ମାଲ୍ କିଶୋର ମାରିନେଲା ।

ବିଶ୍ୱମ୍ଭର– କିଶୋର ଦାସ ? ଯାଜପୁର କିଶୋର ?

କୁମୁଦ– ସେଇଥିପାଇଁ ମତେ ଚିଠିଫିଠି ଦେଇନି ତା' ହେଲେ ।

ବିଶ୍ୱମ୍ଭର– ଏଥର ତା' ହେଲେ ତା' ଦେଶସେବକ ହେବା ଏତିକି । ଭାରି ଗୋଟେ ଆଡ଼ା କରୁଥିଲା ମ ! ଫାଷ୍ଟଇୟର ପିଲାଙ୍କ ଆଗରେ ସେ'ତ ଗୋଟେ ଦେବତା ବନି ଆସୁଥିଲା ।

କୁମୁଦ— ଆଡ଼ା କାହିଁକି କରନ୍ତା ସେ ! ସେ ସେପରି ପିଲା ନୁହେଁ—ତମେ ତାକୁ ଚିହ୍ନିନ । ଓଃ, ଯା'ପରେ ତା' ଦଶା କ'ଣ ହେବ !

ପ୍ରଥମ ଛାତ୍ର— କଲେଜରେ ତା'ର ଯାହା ଟିକିଏ ନାଁ ଥିଲା ତା' ଗଲା ।

କୁମୁଦ— ବଡ଼ ସମସ୍ୟା ତା' ପାଇଁ ଆସି ପଡ଼ିଲା ତ ! କେବେ ସେ ଆସିବ ଭଲା ? ନାଁ ଆସିବନି ଆଦୌ ?

ବିଶ୍ୱମ୍ବର— ଓଃ, ଫେରେଣ୍ଟ୍ ପରା ! ଭାରି ଭାବନା ସେଥିପାଇଁ !

ପ୍ରଥମ ଛାତ୍ର— ହଁ, କଲେଜରେ ଯାଙ୍କର ଗୋଟେ ଅଲଗା ଦଳ—କିନ୍ତୁ ପୂର୍ଣ୍ଣ ଆସିଛି ନା କ'ଣ—କିଏ କହିଲା ମତେ ସିଏ ଏଇଠି କୁ'ଠି ଗୋଟେ ବସାରେ ଅଛି ।

କୁମୁଦ— ସତେ ?

ପ୍ରଥମ ଛାତ୍ର— ମୁଁ ତ ଶୁଣିଲି—ସତ କି ମିଛ ମୁଁ କହିପାରିବିନି ।

ବିଶ୍ୱମ୍ବର— (ବ୍ୟସ୍ତ ଭାବରେ) ଟାଇମ୍ ହୋଇଗଲା ଯେ-ତୁ ଯିବୁ ?

ପ୍ରଥମ ଛାତ୍ର— ହଁ ଭାଇ, ଗାଁରେ ରହି ରହି ମନଟା କିମିତି ମଫସଲିଆ ହୋଇଯାଇଛି । ତତେ ଦେଖି ମଧ ମନଟା ବେଶ୍ ଫୁର୍ତ୍ତି ହେଇଆସୁଛି । ଯିବି ? ହଉ ପ୍ରଥମ ଦିନଟା ମଉଜରେ କଟୁ—ପରେ ଯାହାହେବ ଦେଖିବା—ମନଟା ଟିକିଏ ରିଫ୍ରେସ୍ ହେଉ !

ବିଶ୍ୱମ୍ବର— (କୁମୁଦକୁ) ତୁ ଯିବୁଟି ସତେ ?

କୁମୁଦ— ନାଁ, ମୁଁ ଯିବିନି । ମୁଁ ଟ୍ରେଡ଼ିଂ କଂପାନୀରୁ ଖଣ୍ଡେ 'ଚୟନିକା' କିଣିବାକୁ ଯିବି । ଆଉ ପୂର୍ଣ୍ଣ ବସାଟା ମଧ କୁ'ଠି ଖୋଜିବି—ତମ ସାଂଗ ଧରିପାରିବିନି ।

ବିଶ୍ୱମ୍ବର— ଆରେ ଗୋପାଳ, ଯାଁକ ସଂଗରେ କେବେହେଲେ ଆମର ବନିବ କିରେ ? ଶୀଘ୍ର ଆ ତୁ— ।

(ଏକ ଦିଗରେ କୁମୁଦ ଓ ଅନ୍ୟପଟେ ଅନ୍ୟମାନଙ୍କ ପ୍ରସ୍ଥାନ— ଆଉ ଏକଆଡୁ କିଶୋରର ଶିଶିର୍ ମାରି ଓ ବାଡ଼ି ହଲାଇ ହଲାଇ ଧୀରେ ଧୀରେ ପ୍ରତ୍ୟାବର୍ତ୍ତନ—ତା' ମୁଖରେ ହୋଟେଲ-ଭୋଜନର ତୃପ୍ତି—ଶିଶିର୍‌ଟି କ୍ରମେ ଗୋଟିଏ କ୍ଷୀଣତାନ ସଂଗୀତରେ ପରିଣତ ହେଲା —କିଛିକ୍ଷଣ ପରେ ବିପରୀତ ଦିଗରୁ କୁମୁଦର ପ୍ରତ୍ୟାବର୍ତ୍ତନ ।)

କିଶୋର— କିଓ, କୁମୁଦବାବୁ ! କୁଆଡ଼େ ଯାଇଥିଲ କି ?

କୁମୁଦ— ଏଇ, ଯାଇଥିଲି ବଜାରକୁ ଯେ, —କିନ୍ତୁ ଆଉ ଯିବାକୁ ଇଚ୍ଛା ହେଲାନି ।

କିଶୋର— ନାଁ, ଗୋଟେ ଖବର ଶୁଣି ମନଟା ନିତାନ୍ତ ଖରାପହୋଇଗଲା । ପୂର୍ଣ୍ଣର ଖବର କିଛି ଦେଇପାର କି ?

କିଶୋର— ତା' ଫେଲ୍ ହେବାର ଖବର ତ ଶୁଣିଥିବ ?

କୁମୁଦ— ତା' ତ ଜାଣିଛି ।

କିଶୋର— ତା’ ମାରେଜ୍ ବି ଭାଙ୍ଗିଗଲା, ଜାଣିଛ ?

କୁମୁଦ— ହଁ, ତେବେ କାଇଁକି ଭାଙ୍ଗିଲା ? ଏଇ ଫେଲ୍ ପାଇଁ ? କନ୍ୟାର ମତ ନିଆଗଲାନି କି ?

କିଶୋର— ବଳେ ଭାଁଗିଲା, ଭାଁଗିବ କିଏ ? କନ୍ୟାର ମତ ନେଇ କ’ଣ ବିଭାଘର ସବୁ ହେଉଥାଏ ତମ ଘରେ ? ନିଆଗଲେ ବା ହୁଅନ୍ତା କ’ଣ ? ପୂର୍ଣ୍ଣଠୁ ଭଲ ବର କ’ଣ ଆଉ ଦୁନିଆରେ ନାହାନ୍ତି ନା କ’ଣ ?

କୁମୁଦ— କିନ୍ତୁ ବାଳିକାଟି ପୂର୍ଣ୍ଣକୁ ବିଭାକରିଥିଲେ ସୁଖୀ ହୋଇଥା’ନ୍ତା । ପୂର୍ଣ୍ଣର ଜୀବନ ମଧ୍ୟ ସୁଖକର ହୋଇଥା’ନ୍ତା । ଦେଖ, ଜଗତରେ ‘‘ଯୋଗ୍ୟଂ ଯୋଗ୍ୟେନ ଯୁଜ୍ୟତେ’’ ବୋଲି ଗୋଟେ କଥା ଅଛି— ପୂର୍ଣ୍ଣଠୁ ଭଲ ବର ଥାଇପାରନ୍ତି, କିନ୍ତୁ ସେ କନ୍ୟାକୁ ସେହିହିଁ ଠିକ୍ ହୋଇଥା’ନ୍ତା । ତମେ ଯେ ବିଭା ହେଲ, ଏଟା ଗହିର ବିଲରେ ମୋଟର୍ କାର୍ ପରି ଦିଶିଲା ।

କିଶୋର— ଏପରି କହିବାର ଅର୍ଥ ?

କୁମୁଦ— ତୁମେ ନିଜକୁ ପଚାରୁନା ?

କିଶୋର— ନା’, ଟିକିଏ ବୁଝେଇଦେଲେ ଭଲହୁଅନ୍ତା ।

କୁମୁଦ— ହଉ କହୁଛି । ଆହେ, ପୂର୍ବେ ଏ ଦେଶରେ ସ୍ୱୟଂବର ହେଉଥିଲା । ବୀରମାନେ ଯେଝାର ପରାକ୍ରମ ଦେଖାଇଲା ପରେ, କନ୍ୟା ଯାହାକୁ ଶ୍ରେଷ୍ଠ ଭାବୁଥିଲା ତାକୁଇ ବିବାହକରୁଥିଲା । ଏବେ ପାଶ୍ଚାତ୍ୟ ଦେଶରେ ସେଇ ପ୍ରଥାର ପ୍ରଚଳନ । ନାରୀ ପୁରୁଷକୁ ବାଛୁଛି—ପୁରୁଷ ନାରୀକି ନୁହେଁ । ତା’ର ଫଳରେ ପୁରୁଷର ବୀର୍ଯ୍ୟ ଓ ବ୍ୟକ୍ତିତ୍ୱ ରଣଭୂମିରୁ ଆରମ୍ଭକରି, କବିତା ଲେଖା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ବିକଶିତ ହେଉଛି । ପୁରୁଷ-ପୁରୁଷ ପରି ନ ହେଲେ, ନାରୀ ସେପରି ପୁରୁଷକୁ ଗ୍ରହଣ କରିବନି । କିନ୍ତୁ ଏ ହତଭାଗ୍ୟ ଦେଶରେ ତୁମ ପରି ପୁରୁଷ ମଧ୍ୟ ମାଧବୀପରି କନ୍ୟାକୁ ଉପଭୋଗ କରିପାରେ । ପୂର୍ଣ୍ଣହିଁ ଥିଲା ତା’ର ଉପଯୁକ୍ତ । ସେ ବୀର, ସେ ଚରିତ୍ରବାନ୍, ସେ ଜାତିର ଗୌରବ । ତୁମେ ଭୀରୁ, ସ୍ୱାର୍ଥପର, ବିଳାସୀ । ତୁମର କି ଯୋଗ୍ୟତା ଅଛି ତାକୁ ବିବାହ କରିବାକୁ ? ସ୍ନୋ ଲଗେଇ ଗାଲ ଚିକ୍କଣ କରି, ଚଷମା ଆଉ ସୁନାଘଡ଼ି ଲଗେଇ ଭାବୁଛ ତମେ ଗୋଟେ ସୁପୁରୁଷ, ନା ? ଭ୍ରାନ୍ତ ତୁମେ—କୌଣସି ଯୁବତୀ ତୁମପରି ଟୋକାକୁ ସ୍ନେହ କରିବାକୁ ଯିବନି । ତମେ ବିବାହ କରିଛ ବୋଲି ତା’ଠାରୁ ଅବଶ୍ୟ ଜବରଦସ୍ତି ସ୍ନେହ ଆଦାୟକରିପାର—ସେ ଭିନ୍ନ କଥା, କିନ୍ତୁ ତାହା ଏକ ଅସଭ୍ୟତା । ବୁଝିଲ ଏବେ— ନା ଆଉ ବୁଝେଇଦେବି ?

କିଶୋର— ରସନା ସଂଯତ କର !

କୁମୁଦ— ଭଦ୍ର ହେବାକୁ ଶିଖ !

କିଶୋର– ତମଠୁ ମୁଁ ଭଦ୍ରତା ଶିଖିବାକୁ ଯିବି, ନା ?

କୁମୁଦ– ମୋ'ଠୁ ଶିଖିବା ଦରକାର ନାହିଁ, ମୋ'ର ବଂଧୁ ପୂର୍ଣ୍ଣଠୁ ଶିଖିବ ।

କିଶୋର– ରଖ ତୁମର ପୂର୍ଣ୍ଣ—ସେ ତୁମକୁ ବଡ଼ ହୋଇପାରେ —ସମସ୍ତଙ୍କ ଆଖିରେ ନୁହେଁ ।

କୁମୁଦ– ମତେ ତ ବଡ଼ ନିଶ୍ଚୟ । ଯା'କୁ ବିଭାହୋଇଚ ତା' ଆଖିରେ ମଧ ସେ ବଡ଼ । ଆଉ ତୁମକୁ ମଧ ହେବା ଉଚିତ୍ । ଉଦ୍ୟାନର ସୌରଭକୁ ବାତାୟାନ ବନ୍ଦକରି ଘରେ ପଶିବାକୁ ନ ଦେଲେ, ଉଦ୍ୟାନ ନିର୍ଗନ୍ଧ ବୋଲି ପ୍ରମାଣିତ ହୋଇଯିବ, ନାଁ ? ତମେ ମାଧବୀକି ନେଇଯାଇପାର । ତାକୁ ନେଇ କ'ଣ ତମେ ଚଳେଇ ପାରିବ ? ଜାହ୍ନବୀ ତରଙ୍ଗକୁ ଶିବଜଟା ସିନା ଧରିରଖିବ ? ମାଧବୀ ଜୀବନ ବା କ'ଣ ସୁଖୀ ହୋଇପାରିବ ? ଉଦ୍ଭିଦ ମୃତ୍ତିକାରୁ ପୁଷ୍ଟି ସଂଗ୍ରହ କରେ—ମାର୍ବଲ୍ ଗୁଣ୍ଡ ଭିତରେ ସେ ବଞ୍ଚିପାରେ କି ? ବଡ଼ଲୋକୀ ବା ଧନଦୌଲତ ଜୀବନକୁ ସୁଖ ଦିଏନିମ । ବୁଝିବ ପରେ । ହଉ, ଏତେଗୁଡ଼ିଏ କଥା ହୋଇଗଲା —ମୋତେ କ୍ଷମାକରିବ —ମୁଁ ଯାଏଁ, ପୂର୍ଣ୍ଣ ଏଇଠି କୁ'ଠି ବସା କରିଛି ବୋଲି ଶୁଣିଲି—ଖୋଜେଁ । (ପ୍ରସ୍ଥାନ)

କିଶୋର– (ତା' ଆଡ଼କୁ ଅନାଇଁ) ଇସ୍କୁଲରେ ଯା ନାଁରେ କେଶ୍ ହୋଇଥିଲା—ପାସୋରି ଗଲାଣି ବୋଧହୁଏ । ବାହାରକୁ ସମସ୍ତେ ଭଲଲୋକ ! ଯାନେ ଦୋ....(ପ୍ରସ୍ଥାନ)

(କିଛିକ୍ଷଣ ପରେ ବିଷଣ୍ଣମୁଖ, ମଳିନବସନ ପୂର୍ଣ୍ଣ ପ୍ରବେଶକଲା । ବକ୍ଷରେ ହାତ ତା'ର ଛନ୍ଦା—ମୁହଁ ତଳକୁ—ଯେପରିକି ସେ ଜଗତରେ କାହାକୁ ହେଲେ ଅନାଇଁବାକୁ ଚାହେଁନା ।)

ପୂର୍ଣ୍ଣ– (ସ୍ୱଗତ) ମୋ ଛଡ଼ା ବୋଧହୁଏ ଜଗତରେ ଆଜି ସମସ୍ତେ ସୁଖୀ । କି ଆନନ୍ଦମୁଖର ଏ ସହର ! ଗତାଗତ ଜନତାର କି ଫୁର୍ତ୍ତି ! କୋଣର ସେଇ କୋଠାଟିକୁ ମୁଁ ବରାବର ଲକ୍ଷ୍ୟ କରି ଆସୁଛି—ଜଣେ ଯୁବକ ଡେପୁଟୀ, ତା'ର ସୁନ୍ଦରୀ ପତ୍ନୀକୁ ନେଇ କି ସୁଖରେ କାଳ କାଟୁଛି ! ଏଣେ ଆମର ପ୍ରଫେସର୍ ମଧ, ସେଇ ମସ୍ତ ପ୍ରାସାଦରେ ପୁତ୍ରକନ୍ୟାମାନଙ୍କୁ ନେଇ କି ଉତ୍ସବରେ ନାହାନ୍ତି ! ମୋତେ ବୋଧହୁଏ ତାଙ୍କ ଘରେ ଯେପରି ପ୍ରତିଦିନ ଭୋଜି ହେଉଛି ! ପ୍ରତିଦିନ ଗାଉଣା, ବାଜଣା, ପ୍ରତିଦିନ ଲୋକ ସମାଗମ ଯେ ! ଏଇ ସୁଖମୟ ସଂସାରରେ ମୁହିଁ ଏକା ହତଭାଗ୍ୟ ବୋଧହୁଏ ! ଦିନେ ଜଗତର ଦୁଃଖ ଦୁର୍ଦ୍ଦଶା ଦୂର କରିବି ବୋଲି ସ୍ୱପ୍ନ ଦେଖୁଥିଲି । ମୁଁ ଯେ ନିଜେ ଦୁର୍ଦ୍ଦଶାପନ୍ନ —ମୁଁ ନିଜେ ଆଜି ବୁଡ଼ି ମରୁଛି— ବୁଡ଼ିମରୁଥିବା ଅନ୍ୟ ଲୋକକୁ ଉଦ୍ଧାରିବି କ'ଣ ? ସେଦିନ ଭାଗ୍ୟର ପ୍ରଭାବକୁ ହସି ଉଡେଇଦେଇଥିଲି । ଭାବିଥିଲି ଏବଂ ପ୍ରଚାର କରୁଥିଲି ଯେ ମନୁଷ୍ୟ ତା'ର ଭାଗ୍ୟର ନିଜେଇ ବିଧାତା । କିନ୍ତୁ ଆଜି ମୁଁ ଭାଗ୍ୟଦ୍ୱାରା ଏପରି ଦଳିତ, ଲାଂଛିତ ଯେ, ସେହି ଅଦୃଷ୍ଟ ଶକ୍ତିକୁ ନ ମାନି ବାଟ ନାହିଁ । ଏହି ଅଦୃଷ୍ଟ ଶକ୍ତି କ'ଣ ? ଏହି ଶକ୍ତିକୁ କ'ଣ ଈଶ୍ୱର କହନ୍ତି ଲୋକେ ? ମନୁଷ୍ୟକୁ ଦୁର୍ଦ୍ଦଶାପନ୍ନ କରିବାରେ,

ତା' ଚକ୍ଷୁରୁ ଲୋତକ ବୁହାଇବାରେ ତା'ର କ'ଣ ଆନନ୍ଦ ? ତା' ଯଦି ହୁଏ ତେବେ ଏପରି ଏକ ନିଷ୍ଠୁର ଶକ୍ତିର ଖେଳନା ହୋଇ ରହିବାର, ତା'ରି ଖିଆଲରେ ବଂଚିବାର କି ପ୍ରୟୋଜନ ? ଆପଣାର ଜୀବନକୁ ଆପେ ଶେଷକରି ଏହା ପ୍ରଭାବରୁ ମୁକ୍ତି ଖୋଜିବା ତ ବୁଦ୍ଧିମାନର କାର୍ଯ୍ୟ । କିନ୍ତୁ ଘୋର ଦୁର୍ଦ୍ଦଶାରେ ପଡ଼ି ମଧ ମନୁଷ୍ୟ ଆତ୍ମହତ୍ୟା କରେନି କିଆଁ ? କିଆଁ ଏଇ ନଗରରେ ଦଳ ଦଳ କୁଷ୍ଠୀ, ନିରନ୍ନ, ନିର୍ବସ୍ତ୍ର ଭିକ୍ଷୁକ ଚଳିଷ୍ଣୁ ବିଭୀଷିକାପରି ବୁଲି ବୁଲି ବଂଚିରହିଛନ୍ତି ? ଏପରି ଜୀବନରେ ମଧ କ'ଣ ସୁଖ ଅଛି ? ଜୀବନ ପ୍ରତି କି ମାୟା ! କେଜାଣି, ସେମାନେ ତାଂକ ଜୀବନରେ କି ସୁଖ ପାଉଥିବେ ! ମୋ ଜୀବନରେ ଆଉ କି ସୁଖ ? ଏ ଜୀବନକୁ ବଞ୍ଚାଇ ରଖିବାର ପ୍ରୟୋଜନ ମଧ ମୁଁ ଦେଖୁନାହିଁ । କାହିକି ବଂଚିବି ? କି ଭବିଷ୍ୟତ ମୋର ଅଛି ଯେ ମୁଁ ସେଇ ଆଶାରେ ବଂଚି ରହିବି ? ମାଧବୀକୁ ହରାଇଛି । ତା' ସାଥିରେ ମୋର ସମସ୍ତ ସୁଖ ଯାଇଛି । କର୍ମରେ ଜୀବନ ବା ଢାଳିଦେଇଥା'ନ୍ତି, କିନ୍ତୁ ମୁଁ ତାକୁ ହରାଇ ଏପରି ଅପଦାର୍ଥ ହୋଇଯାଇଛି ଯେ କାମ କରିବାକୁ ଆଉ ମୋର ସାହସ ନାହିଁ । ଅଗ୍ନି ତ ଆପେ ପ୍ରକାଶିତ ହୋଇପାରେନା—କାହାର ଆଶ୍ରୟ ନେଲେ ସିନା ତା'ର ଅଭିବ୍ୟକ୍ତି ! ପୁରୁଷର ଶକ୍ତି ସେହିପରି ନାରୀକୁ ଆଶ୍ରୟ କରି ବ୍ୟକ୍ତ ହୁଏ । ସେ ଆଶ୍ରୟରୁ ବିଚ୍ୟୁତ ହୋଇ ମୁଁ ଚିରଦିନଲାଗି ଅକର୍ମଣ୍ୟ ହେଲି । ପୁଣି ଗୃହଚ୍ୟୁତ ଓ ଦରିଦ୍ର ହୋଇ ଅନ୍ଧକାର ଭବିଷ୍ୟତ ନେଇ କେତେଦିନ ବଂଚିବି ? କାହିଁକି ବା ବଂଚିବି ? କିଛି ତ ପ୍ରୟୋଜନ ଦେଖୁନି । ନା, ଏ ଜୀବନର ଶେଷ ହେଉ । ଆଜି ଚିଠି ପାଇଲି ରୋହିଣୀ ହଠାତ୍ ରୋଗରେ ଶଯ୍ୟାଗତ—ସବୁ ବେଳେ 'ଭାଇ' 'ଭାଇ' ବୋଲି ଚିତ୍କାର କରୁଛି । ତା'ର ସେହି ସ୍ୱର ମୋର ମର୍ମଭେଦକରୁଛି । କିନ୍ତୁ ଘରକୁ ଫେରିଯିବାର ପାଥେୟ ମୋଠି ନାହିଁ । ସାହସ ମଧ ନାହିଁ, ଏପରି ପୁଂଜୀଭୂତ ଦୁଃଖ, ଦାରିଦ୍ର୍ୟ, ଦୁର୍ଦ୍ଦଶା ଘେନି ଜଗତରେ ବଂଚିରହିବାର କି ଲାଭ ବା ପୌରୁଷ ? ଯାଏ—ସେଇପରା ଅଫିମ ଦୋକାନ ?

(ହଠାତ୍ କୁମୁଦର ପ୍ରବେଶ—ଧୀରେ ଧୀରେ ସେହି ଆଡ଼କୁପଦଚାରଣ ।)

କୁମୁଦ— କିଏ ? ପୂର୍ଣ୍ଣ ? (ମୁହଁକୁ ହାତରେ ଟେକିଦେବା)

ପୂର୍ଣ୍ଣ— (ଟିକିଏ ସ୍ତବ୍ଧ ହେଇ) କିଏ, କୁମୁଦ ! ତମେ ! କେବେ !

କୁମୁଦ— କାଲି ଆସିଛି । ତୁମକୁ ମୁଁ କେତେ ଖୋଜିଲିଣି ଯେ—

ପୂର୍ଣ୍ଣ— (ଗଦ୍‌ଗଦ ସ୍ୱରରେ) ବଂଧୁ ! (ଆଲିଙ୍ଗନ କରିବା) ଜଗତରେ ମତେ ଯେ କିଏ ଆଉ ଖୋଜିବ ଏ ଆଶା ମୋର ନ ଥିଲା ।

କୁମୁଦ— ଅନ୍ତତଃ ଜଣେ ଅଛି ବୋଲି ମୋତେ କ'ଣ ମନେରଖିନଥିଲ ? (ପୂର୍ଣ୍ଣ କୁମୁଦକୁ ଆଲିଙ୍ଗନରେ ଧରି ନୀରବ ରହିଲା) ହଉ, ତୁମ ବିଷୟରେ ମତେ ଖବର କିଛି ଦିଅ

ଆଗେ । ମୁଁ ଅତ୍ୟନ୍ତ ଉତ୍କଣ୍ଠିତ । କେବେ ଆସିଛ, କୁ'ଠି ଅଛ, ପରୀକ୍ଷା ଦେବ ତ ? ସବୁ କଥା କହିଲ ଆଗେ ।

ପୂର୍ଣ୍ଣ— (ଠିଆହୋଇ)ମୁଁ ଅନେକଦିନରୁ ଆସି ଏଠି ଏକପ୍ରକାର ଅଜ୍ଞାତବାସ କରିଛି । ବାପା ହେରିକା ବିରକ୍ତିରେ ଯିମିତି ଟଂକା ଦେବାକୁ ନାସ୍ତିକରିଦେଲେ, ମୁଁ ଗାଁ ଛାଡ଼ି ଏଠାକୁ ପଳେଇଆସିଲି ମଧୁବାବୁଙ୍କ ଘରେ ଆଶ୍ରୟ ନେବାକୁ । କିନ୍ତୁ ମାଧବୀର ବିବାହ ତ ଅନ୍ୟତ୍ର ହେଲା । ସେଠି ଆଉ ମୋର ସ୍ଥାନ କାହିଁ ? ଅନ୍ନସଂସ୍ଥାନ ପାଇଁ ଟ୍ୟୁସନ୍ ଖୋଜି ବସିଲି— ମତେ ଟ୍ୟୁସନ୍ ଦେଇ ଘରେ ପୂରେଇବାକୁ କୌଣସି ଭଦ୍ରଲୋକ ଇଚ୍ଛା କଲେନି । ପ୍ରଥମେ କାଳେ କିଏ ଦେଖିବ ବୋଲି ମୁଁ ରାତିରେ ଯାତାୟାତ କରୁଥିଲି— ଏବେ ସେ ଲାଜସବୁ ଗଲାଣି ଅବଶ୍ୟ—ଏବେ ଦିନରାତି ବୁଲି ବୁଲି ଗୋଡ଼ର ଜୋତା ସରିଗଲାଣି କିନ୍ତୁ ଟ୍ୟୁସନ୍ ମିଳିଲାନି । ଏଇ ମୋର ଇତିହାସ— କ'ଣ ଆଉ ଶୁଣିବ ? ଏବେ ମୋତେ ଲୋକେ ଦେଖିଲେ ଚିହ୍ନିପାରୁନାହାନ୍ତି ।

କୁମୁଦ— ଚଳୁଛୁ କିମିତି ?

ପୂର୍ଣ୍ଣ— ଆସିଲାବେଳକୁ ବୋଉ କିଛି ଟଙ୍କା ବାକ୍ସରେ ପୂରେଇଦେଇଥିଲା । ସେଇ ଟଂକାରେ କଷ୍ଟେମଷ୍ଟେ ଏ ଯାଏଁ ଚଳିଆସିଲି । ଶସ୍ତା ପଡ଼ିବ ବୋଲି ଏଇଠି ଗୋଟେ ବସାରେ ଅଛି—କିରାଣି, କମ୍ପାଉଣ୍ଡର, ଟରଣି, କଣ୍ଟ୍ରାକ୍ଟର, ସବୁଦଳର ଲୋକେ ଅଛନ୍ତି— ସମସ୍ତଂକର ଚେଷ୍ଟା କିମିତି ଖର୍ଚ୍ଚ କମ୍ ପଡ଼ିବ । ତଥାପି ସେପରି ମେସ୍‌ରେ ମଧ ମୋର ଏବେ ବାକୀ ।

କୁମୁଦ— ବାପା ଟଂକା ପଠେଇନାହାନ୍ତି ?

ପୂର୍ଣ୍ଣ— ପଠେଇଥିଲେ- ମୁଁ ଫେରେଇଦେଲି ।

କୁମୁଦ— ଏବେ ଯାଉଥିଲ କୁଆଡ଼େ ?

ପୂର୍ଣ୍ଣ— ସମସ୍ତଂକର ତ ମୃତ୍ୟୁଆଡ଼କୁ ଗତି—ମୋର ମଧ ସେଇଆଡ଼କୁ ।

କୁମୁଦ— କି କଥା କହୁଛ ! ଛି ଛି !

ପୂର୍ଣ୍ଣ— କୁମୁଦ, ଏ ଜୀବନରେ ଆଉ କି ଭବିଷ୍ୟତ ଅଛି କହିଲ— ମୁଁ ବଂଚିବି କାହିଁକି ? ଯୁବକ ନ ହେଉଣୁ ମୁଁ ହଠାତ୍ ଜରାଗ୍ରସ୍ତ ହୋଇପଡ଼ିଛି । ଭାଗ୍ୟ ପ୍ରତିକୂଳ ହୋଇ ମୋର ସମସ୍ତ ଗର୍ବ ଅହଂକାର ଚୂର୍ଣ୍ଣକରିଛି । କା'ଲାଗି ବଂଚିବି ? କାହିଁକି ? ଖାଲି ବଂଚି ରହିବାରେ କ'ଣ ଏତେ ସୁଖ ?

କୁମୁଦ— ମୁଁ ତର୍କକରିବିନି ତମ ସାଥିରେ । ଆସ ତମ ବସାକୁ ଯିବା— ସେଠୁ ତମର ଜିନିଷ ପତ୍ର ନେଇ ସିଧା ସିଧା କଲେଜ ହଷ୍ଟେଲକୁ ଯିବା ! ତମର ଖର୍ଚ୍ଚ ପତ୍ର କଥା ମୁଁ ବୁଝିବି, ତମର ପାଗଳାମି ମୁଁ ଛଡ଼େଇଦେଉଛି ଦେଖ ।

ପୂର୍ଣ୍ଣ— ନା, ନା—କୁମୁଦ.....

କୁମୁଦ— ମୁଁ କିଛି ଶୁଣିବିନି....ଆସ ତମେ । (ଭିଡ଼ିନେଇଯିବା) (ଯବନିକା)

ନଟୀ

ଅତି ଟାଣେ ଛିଁଡ଼ିଯାଏ ବୀଣା ତାର
ଚିର ଲାଗି ନିରବିବ ତା ଝଙ୍କାର ।
ମୃଦୁ ବୃନ୍ତ ପରେ ପୁଷ୍ପ ସିନା ଦୋଳେ
କର-ମର୍ଦ୍ଦନକୁ ସେ କି ସହିବାର ?
କାମିନୀ ଜୀବନ ଜଳଧାରା ସରି,
ମତି ନିଏ ଗତିପଥ ତା'ର ବରି,
କି ଲାଭେ ରୋଧିବ ବଙ୍କା ପଥ ତା'ର ?
ବସନ୍ତ ଆପଣେ ରୂପ ଢାଳି ଯାଏ,
ପିକ ଏକୁଟିଆ ବନେ ଗୀତ ଗାଏ,
ରୂପ ତ ଆପଣେ ଆସିବ ଗୋପନେ,
ବଳେ ବାଁଧିବାରେ କି ପୁରୁଷକାର ?

## [ ପଞ୍ଚମ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ କିଶୋରର ଗ୍ରାମ୍ୟ ଘର—ଗୋଟିଏ କକ୍ଷ—ନାନାପ୍ରକାର ପ୍ରାଚୀନ ଆସବାବ୍—ମାଧବୀ ସାଥିରେ ଆସିଥିବା କମଳୀ ଦାସୀର ତ୍ୱରିତ ଗତିରେ ପ୍ରବେଶ ।]

କମଳୀ— ଦେଈ, ଦେଈ—ଏଁ, ନାହାନ୍ତି ତ ! କୁଆଡ଼େ ଗଲେ ! (ଆଗକୁ ଅନାଇ)ଏ, ଏ ରାଧି—ଶୁଣ୍ ଶୁଣ୍, ଦେଈ କୁଆଡ଼େ..

(କିଶୋରୀ ଘରର ଦାସୀ ରାଧୀର ପ୍ରବେଶ)

ରାଧୀ— କଅଣ କିଲୋ ?

କମଳୀ— ଆଲୋ, ଦେଈ କୁଆଡ଼େ ଗଲେ ଦେଖିଛୁ ? ଏଇଠି ଥିଲେ ଇନେ !

ରାଧୀ— କୁଆଡ଼େ କ'ଣ ଉଡ଼ିଯାଇଥିବେ ? ଏଇ ଘରେ ଥିବେ ତ ! ଶାଶୂଙ୍କ ପାଖକୁ ଯାଇଥିବେ, ନ ହେଲେ ସାନବାବୁଙ୍କ ପାଖକୁ ଯାଇଥିବେ— କାଇଁକି ଏତେ ଖୋଜା ପଡ଼ିଛି ଯେ !

କମଳୀ— ଏଇ ପରା ଚିଠି (ଚିଠି ଦେଖାଇ)—ଘର ଚିଠିକି ଅନେଇବସିଥିଲେ—ମତେ ପଠେଇଥିଲେ; କହିଥିଲେ— ଦେଖିବୁ ଯା ମୋର ଚିଠିଫିଠି ଆସିଛି କି ନାଇଁ ବୋଲି ।

ରାଧୀ— କି ଚିଟାଉ ସବୁ ଆଉଚି ଲୋ ? ଦିନ୍ ତ ଚାଲିଛି ଭାଷା —କିଏ ଦଉଚି ? ବାପା-ବୋଉ ?

କାମଳୀ— ବାପା-ବୋଉ, ସାଂଗ-ସାଥୀ,—କଟକରେ କେତେ ତାଂକର ଚିନା ପରଚେ, କେତେ ଓକିଲ ଜମିଦାରଙ୍କ ଝିଅମାଇପେ ତାଙ୍କ ସାଂଗ,—ଏଠି କ'ଣ ତାଙ୍କ ମନ ଅଛିଲୋ, ଇ' ମଫସଲରେ ?

ରାଧୀ— ମଲାମୋର, ଇ'ଘରେ କ'ଣ ନାଇଁ ମ ? ଶଶୁର ଶାଶୁ ତ ଠିଆହୋଇଛନ୍ତି, ବୋହୂ ଯା' କହିବ ତା ଆଣିଦେବେ । ବଡ଼ହେଇକି ତ ବାପ ଷାଠିଏ ଟଙ୍କାର ମାଷ୍ଟର, ଚାକି କେତେ କହୁଛୁ ବା ଏଠିକି ଅଇଲାଖୁଣୁ ?

କମଳୀ— ଏଁ —ଆମେ ଏଠିକି ଆସିବାକୁ ମରିଯାଉଥିଲୁ ! ଆଲୋ, ଆମେ କଟ୍‌କୀ । କଥାରେ କହଁତି— ବୋହୂ ପଛେ କାଣୀ ହେଉ, ନାଁ କଟକିଆଣୀ—କଟକରେ ଚାରିପଇସା ମୂଲ ଲାଗୁଥିବ ଯିଏ ତା' ଢାଁଶାଟା ଯିମିତି, ଇ' ମଫସଲରେ ଜମିଦାର ମିଣେ ସିମିତି ହୋଇପାରିବ ? ମଲା ମୋର ଜମିଦାରଘର ! କେତେ ଜମିଦାର ଦେଇଁକି ନବାପାଇଁ ଧାଇଁଥିଲେ—ତାଙ୍କର ଗୋଟେ ଗୋଟେ କୋଠା—ଚାରିତଲା, ପାଁଚତଲା—ବିକିଦେଲେ ଇ' ଜମିଦାରୀ କିଣିନେବେ ଲୋ !

(ରାଧୀ ନିସ୍ତବ୍ଧ ହୋଇ ଠିଆହେଲା)

କମଳୀ— (କିଛିକ୍ଷଣ ପରେ) ତମେ ମଫସଲିଆଣୀ ସବୁ କଟକ କଥା କ'ଣ ଜାଣିବ ଲୋ ? ତମର ତ ମୁଣ୍ଡରୁ ମହଣ ଛାଡ଼ିନି—ତମେ ତ ଖାଇବା ଜାଣିନା, ପିଇବା ଜାଣିନା—ସଉକିନି ଜାଣିନା—ତମେ କ'ଣ ଆମ ଆଗରେ କଥା କହିବ ବା ? ଏଠୁ ଯେତେବଡ଼ ମର୍ଦ୍ଦଗଲେ ମିଶେ, କଟକରେ ଗୋଟେ ମାଇକିନା ତାକୁ ବଜାରରେ ବିକିଦେବନି ? ଦେଇଁକ ଭାଗ୍ୟ ଖରାପ—ମୋ ଭାଗ୍ୟ ଖରାପ..

ରାଧୀ— ଇ'ଘରର ଭାତ ଖାଇ ଇ'ଘରର ନିନ୍ଦା କରୁଛୁ, ହଇ ଲୋ ? ତତେ କ'ଣ ମଣିଷ ଆଖିରେ ଦିଶୁନାହାନ୍ତି କି ଲୋ ? କଟକରୁ ଆଇଚୁ ବୋଲି, ବାବୁଆଣୀ ସାଥିରେ ରହିଚୁ ବୋଲି ଏତେ ବଢ଼େଇ ନା ଆଉ କ'ଣ ? ଖାଲି ନୋଲକ ହଲେଇପକଉଚୁ, ହାତ ହଲେଇ ପକଉଚୁ—

କମଳୀ— କାଇଁକି କରିବିନି ମ, ତତେ ଡରିବି କି ? ତୁ ସେଦିନ ବୁଢ଼ୀମାଁଙ୍କୁ ମୋ ନାଁରେ କ'ଣ କହୁଥିଲୁ ପରା ? ହଇ ଲୋ ଘଇତାଖାଇ, ମୁଁ ବାହାରକୁ ଗଲାବେଳେ ପିକା ଖାଇଲି ତୋର କ'ଣ ଗଲା ଲୋ ? ବୁଢ଼ୀମା କ'ଣ କରି ପକେଇଲେ ଲୋ ? ହୁଁ—ତୁ ମତେ କ'ଣ କରି ଠଉରେଇଚୁ କି ଲୋ ?

ରାଧୀ— କ'ଣ ନବାବଟା ପରି କଥାଗୁରା କହିଯାଉଛୁ—ଆଉ ପଦେ କହିବୁଟି....

(ମାଧବୀର ପ୍ରବେଶ—ଦୁଇ ଦାସୀ ନୀରବରେ ଠିଆ ହୋଇଗଲେ ।)

ମାଧବୀ— କି ଲୋ, କାଇଁକି କଳିଲଗେଇଚ ? କଥା କ'ଣ ?

ରାଧୀ— ଦେଖ ସାଁତାଣି, ମତେ କିମିତି ବକୁଚି ଇଏ—

କମଳୀ– ଚିଠି ନିଅ ଦେଈ–

ମାଧବୀ– କାଇଁ....(ଦେଖି)–ରାଧି, ତୁ ଯା' ପରେ ସେକଥା ବୁଝିବା–

ରାଧୀ– ନାଇଁ ମଣିମା, ମୁଁ ଏବେ ଯାଉଚି ସିନା–ଏକଥା ବୁଝା ନ ହେଲେ ମୁଁ ଏ ଘରେ ରହିବିନାଇଁ । କଟକୀ ମାଇକିନାର ବହପ ବଢ଼ିଯାଉଚି... (ପ୍ରସ୍ଥାନ)

ମାଧବୀ– କିଲୋ, ତୁ ତାକୁ କ'ଣ କହିଥିଲୁ ? ତୁ କାହିଁକି ଇମିତି ଯା ତା' ସାଥିରେ କଳି ଲଗାଉଛୁ ? ମତେ ଦିଗ୍‌ଦାର ଲାଗିଲାଣି ।

କମଳୀ– ନାଇଁ ଦେଈ–ଦେଖ ତ ଏଗୁରାଙ୍କର ଆଚାର –କହୁଚି କି ମାଷ୍ଟର ହେଇ ତ ବାପ ଷାଠିଏ ଟଙ୍କା ଦରମା ପାଉଚି, ଏତେ ଚାକି କାଇଁକି ? ଏଗୁରାକ ମୁଁ ସହନ୍ତି ? ଏ ପ୍ରାଣ ଗଲେଭାରି....

ମାଧବୀ– କହିଲା, ଭଲକଲା– ମିଛ କହିଲା କ'ଣ ? ତୁ ଏସବୁ କଥାରେ ପାଟିଫିଟେଇଲେ ଫେର୍ ଦେଖିବୁ । ଚୁପ୍ କରି ରହିବୁ ତ ରହ , ନଇଲେ ବାପାଙ୍କ ପାଖକୁ ଚାଲିଯା । (ନୀରବରେ ପତ୍ର ଫିଟାଇ ପାଠ)

କମଳୀ– (କିଛିକ୍ଷଣ ପରେ ) ଦେଈ, କିଏ ଭାଷା ଦେଇଛି ?

ମାଧବୀ– କୃଷ୍ଣ ।

କମଳୀ– ସାନବାବୁ ? ତମେ ଆଇଲାବେଳେ ଦେଈ କେତେ କାନ୍ଦିଲେ ସାନବାବୁ– କାନ୍ଦୁଥାଁନ୍ତି, ଅପା ଅପା ହେଉଥାଁନ୍ତି, ରୁମାଲରେ ଆଖି ପୋଛୁଥାଁନ୍ତି, ପୁଣି କାନ୍ଦୁଥାଁନ୍ତି– ଏଠୁ ଗଲାବେଳେ ମିଶେ କେତେ କାନ୍ଦିଲେ ।

ମାଧବୀ– ଏଇ ଗୋଟିଏ ଚିଠି ଥିଲା ?

କମଳୀ– ବାବୁ ତ ମତେ ଏଇ ଗୋଟିକ ଦେଲେ । ମୁଁ ଯାଏ ଆଉ ପଚାରେ କାଳେ ଭୁଲ୍‌ରେ ରହିଯାଇଥିବ ।

ମାଧବୀ– ଗଲୁ–ବାପା କ'ଣ ଚିଠି ଦେଇନଥିବେ ?

କମଳୀ– ଆଚ୍ଛା, ଯାଉଚି । (ପ୍ରସ୍ଥାନ)

ମାଧବୀ– (କିଛିକ୍ଷଣ ଚିନ୍ତାକୁଳ ଭାବରେ ଠିଆହେବା ପରେ) ଓଃ, କେବେ ଏ ଦାବ-ଦାହର ଶେଷ ହେବ ? ହେ ଅନ୍ତର୍ଯ୍ୟାମୀ, ଅନ୍ତରର ସକଳ ପ୍ରାର୍ଥନା ଜାଣି ମଧ୍ୟ ଜାଣିଲନି ? ସକଳ ମୁହୂର୍ତ୍ତରେ ହୃଦୟର ଅନ୍ତଃସ୍ଥଳ ଭେଦକରି ଯେଉଁ ଅଗ୍ନିପ୍ରବାହ ବାହାରୁଛି ତାକୁ ଏବେ ସମ୍ଭାଳିବି କିପରି ? ହେ ଭଗବାନ୍ ! ଯାହା ପ୍ରାର୍ଥନା କଲି ତା' ଯଦି ନ ପାଇଲି ତେବେ ତାକୁ ସ୍ମୃତିପଟରୁ ଲିଭେଇ ଦେଲେ ତ ହୁଅନ୍ତା । ସେ ମର୍ମନ୍ତୁଦ ସ୍ମୃତି ପୁଣି ଉଠୁଛି କାହିଁକି ? ମୁଁ ସେସବୁ ସଂପୂର୍ଣ୍ଣ ଭୁଲିଯିବାକୁ ଚାହେ । ଯଦି ସମ୍ଭବ ହୁଅନ୍ତା ତେବେ ମନ-ଭୂମିରୁ ଏହି ସ୍ମୃତିକୁ ନିଜ ହାତରେ ନିଜେ ସମୂଳ ଉପାଡ଼ି ଏଇ ପାଦରେ ଦଳି ଦିଅନ୍ତି । ଏଇ କଠିନ ସଂସାରରେ ମଣିଷ କଠିନ ହେବା ଦରକାର । ହେ ନିଷ୍ଠୁର

ଦେବତା, ମତେ ତୁମରିପରି ନିଷ୍ଠୁର କର, ତୁମରି ହୃଦୟପରି ମୋ ହୃଦୟ ମଧ୍ୟ ପଥର କରିଦିଅ—ମୁଁ ତୁମକୁ ଅନ୍ତତଃ ସେତକଲାଗି ଧନ୍ୟବାଦ ଦେବି । ନ ହେଲେ ତ ଏ ଦ୍ୱିଧାରେ ପଡ଼ି ମୁଁ ପାଗଳ ହେଇଯିବି । ବାପା, ବୋଉ, କୃଷ୍ଣ, ତମକୁ ସବୁ ଦେଖିବି ପୁଣି କେବେ ? ଗରିବଘରର ସେ ସରଳ ସ୍ନେହ ମମତା ମୁଁ ପୁଣି କେବେ ପାଇବି ? ବାପା ଆସିବେ ବୋଲି କହିଥିଲେ, ଆସିଲେନି କାଇଁକି ? ସେ ମଧ୍ୟ କ'ଣ ନିଷ୍ଠୁର ହୋଇପଡ଼ିଲେ ? ମାଧବୀକି ନଦେଖିଲେ ଭାତ ଖାଉନଥିଲେ, ସେ କ'ଣ ଏକାବେଳକେ ପାସୋରି ଦେଲେ ? ମତେ ନେବେନି ଆଉ ? ବୋଉ....

(ସହସା କିଶୋର ପ୍ରବେଶ)

କିଶୋର— ଆଉ ଖଣ୍ଡେ ଚିଠି ତମର ନିଅ । ସେ ଚିଠି ଖଣ୍ଡ ପାଇଛ ?

ମାଧବୀ— (ଚିଠି ନେଇ) ହଁ ପାଇଛି— ଏଁ, ଏ ଚିଠିଟା ଖୋଲିଲା କିଏ ?

କିଶୋର— ମୁଁ କୌତୁକରେ ଖୋଲିଦେଇଛି—କିଏ ଦେଇଛି ଦେଖିବି ବୋଲି । ମୁଁ ପଢ଼ିନି କିନ୍ତୁ—କିଏ ଦେଇଛି ? ଖୋଲିଲି ମଧ୍ୟ ଏଇ କାରଣରୁ ଯେ ଆଡ୍ରେସ୍‌ଟା ମୋର ଜଣେ ସାଙ୍ଗର ଅକ୍ଷରପରି ଜଣାପଡ଼ିଲା । କିଏ ଦେଇଛି ?

ମାଧବୀ— ବାପା ଦେଇଛନ୍ତି ।

କିଶୋର— ରାଗିଲ ମାଧବୀ ?

ମାଧବୀ— (ପତ୍ରରେ ମୁହଁରଖି) ନାଁ—

କିଶୋର— ମାଧବୀ, ସେ ପତ୍ର-ପଢ଼ା ଥାଉ—(ପତ୍ର ଛଡାଇନେଇ) ଆସ ଟିକିଏ ଗପ କରିବା । ଟିକିଏ ଗୀତ ଗାଅ—ମୁଁ ଶୁଣେ ।

ମାଧବୀ— ଏ ଘରେ ବଡ଼ ଗରମ ହେଉଛି । ଗୀତ ବୋଲିବା ତ ଦୂରର କଥା, ଏଠି ଗପ କରିବା କିମିତି ?

କିଶୋର— ହଉ, ମୁଁ ବିଞ୍ଚିଦଉଛି (ବିଚଣାଟାଏ ଧରି) ତମେ ବସ । ହାର୍‌ମୋନିୟମ୍—ନାଁ, ସେତାରଟା ଧର ।

ମାଧବୀ— ନାଁ ନାଁ, ବାପା ବୋଉ ସମସ୍ତେ ଅଛନ୍ତି—ମତେ ଲାଜ ଲାଗୁଛି ବଡ଼ ।

କିଶୋର— ନାଁ । କେହି ଶୁଣିପାରିବେନି । ଆମେ ଏ ଘର ବନ୍ଦକରିଦେବା ।

ମାଧବୀ— ନା ନା, ଦିନରେ କବାଟ ବନ୍ଦକରିବ— ଲୋକେ କହିବେ କ'ଣ ? ମୁଁ ତା' କରିବାକୁ ଦେବିନି ।

କିଶୋର— ବଜେଇବନି ତେବେ ?

ମାଧବୀ— ପରେ ବଜାଇଲେ ହବନି ? ମୁଁ ତ ପୁଣି ଭଲ ବଜେଇଜାଣେନା—ଏତେ ଆଗ୍ରହ କାହିଁକି ?

କିଶୋର– ଛୋଟୀକି ଶ୍ରୀମତୀ କହିଲେ ଗୋଡ଼ ବୁଲେଇ ବୁଲେଇ ପକାଏ ପରା ?

(ମାଧବୀ ନୀରବରହିଲା)

କିଶୋର– ସେ ରୁମାଲଟା ବୁଣିଦେଲ ?

ମାଧବୀ– ହଁ, ଅଧା ହୋଇଛି ।

କିଶୋର– ଏତେ ଦିନ ଗଲା, ଅଧା ହୋଇଛି ଏ ଯାଏ ?

ମାଧବୀ– ଏଇ କେତେଦିନ ହେଲା ମୋ ମୁଣ୍ଡ କ'ଣ ହେଉଛି –ସେଥିପାଇଁ ସିଲେଇ କରି ପାରୁନି –ତେବେ ମୁଁ ଯଥାସାଧ କରୁଛି ତ !

କିଶୋର– କାଲି ଉପରଓଳି କୁଆଡ଼େ ଯାଇଥିଲ ?

ମାଧବୀ– ତାଂକ ଘରର ବୋହୂ ଝିଅ ସବୁ ଡକେଇନେଇଥିଲେ– ସେଠି ଥିଲି ।

କିଶୋର– ମୁଁ ଅପେକ୍ଷା କରିଥିଲି– ଜାଣିଥିଲ ?

ମାଧବୀ– ହଁ ଜାଣିଥିଲି, କିନ୍ତୁ ଆସନ୍ତି କିମିତି ? କ'ଣ କହି ଆସନ୍ତି ? ତା' ପରେ ସେଠି ତ ଗପ କରୁ ନ ଥିଲି– ତାଂକୁ ଗୋଟେ କାମ ଶିଖେଇଦଉଥିଲି । ସେ'ତ ଶେଷ ହୋଇ ନ ଥିଲା–ଅଧାରୁ ଆସନ୍ତି କେମିତି ?

କିଶୋର– ନାଁ ମାଧବି, ଏ ସବୁ ଖାଲି ମିଛ ଫିକର । ମୁଁ ଦେଖୁଛି ଆସିଲା ଦିନଠୁ ତମେ ମତେ ଯେପରି ବେଖାତିର କରିଚାଲିଛ ।

(ମାଧବୀ ନୀରବ ରହିଲା)

କିଶୋର– ଡାକିଲେ ପାଖକୁ ଆସୁନା–ଯାହା କହୁଛି ତାହା କରୁନା–କଥା କହିଲେ ଖାତିର ନାହିଁ ଯେପରି ।

ମାଧବୀ– କେବେହେଲେ ମୁଁ କାହାକୁ ବେଖାତିର କରିନି–ତମକୁ ବା କରନ୍ତି କାହିଁକି ? ମୁଁ ତ ତମ କଥା ଯଥାସାଧ ମାନିଚାଲୁଛି–ପାଳନକରୁଛି–ଆଉ କ'ଣ କରିବି ?

କିଶୋର– ନା, ଏ ସବୁ କେବଳ ଫାଁକା ଯୁକ୍ତି । ମୁଁ ଦେଖୁଛି, ତମର ଯଥେଷ୍ଟ ଅହଂକାର ଅଛି ରୂପ ଓ ଗୁଣ ଘେନି । ଆଉ ମୁଁ ମନେକରେ ସେଇଯୋଗୁ ତମକୁ ମଣିଷ ଦିଶୁନାହାନ୍ତି ।

ମାଧବୀ– ଏପରି କହିବା ପାଇଁ ମୁଁ କ'ଣ କରିଛି ? କୁ' କଥାରେ ମୋର ଅହଂକାର ପ୍ରକାଶ ପାଇଲା ?

କିଶୋର– କେବଳ ଅହଂକାର ନୁହେ –ତମର ଚରିତ୍ରରେ ମଧ୍ୟ ମୋର ସଂଦେହ ହେଉଛି । ତମେ ପରାସକ୍ତା...

ମାଧବୀ– ସେଇଥିପାଇଁ ଚିଠି ସବୁ ଖୋଲା ହେଉଛି ପରା ?

କିଶୋର– ସେଥିପାଇଁ କ'ଣ ଶାସ୍ତି ଦେବ ? ଯଦି ଏତେଦୂର ସ୍ୱାଧୀନତା ଭୋଗ କରିବାକୁ ଇଚ୍ଛା ଥିଲା ତେବେ ବିବାହ କଲ କାହିଁକି ?

ମାଧବୀ– ସ୍ୱାଧୀନ ହେବାର ଥିଲେ ମୁଁ ବିବାହ କରିଥାଁତି କାହିଁକି ? ମୋର ସେ ଇଚ୍ଛାକୁ ଚିରକାଳ ଲାଗି ସମାଧି ଦେଇଛି ଏବଂ ବିବାହ ବରଣକଲାଦିନୁ ମୁଁ ବିବାହିତା ହିନ୍ଦୁ ନାରୀର ସମସ୍ତ କର୍ତ୍ତବ୍ୟ ପାଳନ କରିବାକୁ ଚେଷ୍ଟାକରୁଛି ।

କିଶୋର— କରୁଛ ?

ମାଧବୀ— ହଁ କରୁଛି । ତମର ସଂଦେହ ନିତାନ୍ତ ଅମୂଳକ । ମୋର ପ୍ରତିବାଦର କ୍ଷମତା ନାହିଁ ବୋଲି ସିନା ତମେ ଏହା କହୁଛ ?

କିଶୋର— (ନିକଟକୁ ଯାଇ ଓ ହାତ ଧରି) ସ୍ନେହର ମାଧବୀ, ରାଗନା । ମୋର ଏ ଆଶଙ୍କା ଓ ସଂଦେହ ସ୍ନେହର ଚିହ୍ନ ବୋଲି ଗ୍ରହଣକର ।

ମାଧବୀ— କିନ୍ତୁ ଏ ପ୍ରକାର ସଂଦେହ ଅତ୍ୟନ୍ତ ଅପମାନଜନକ । ମୁଁ ସମସ୍ତ ମିଥ୍ୟାଚାରକୁ ଘୃଣାକରେ । ତମର ସଂଦେହ ସ୍ନେହର ଚିହ୍ନ ନୁହେଁ—ସ୍ନେହର ଅଭାବର ଚିହ୍ନ । ସ୍ନେହ ତ ବିଶ୍ୱାସ ଉପରେ ପ୍ରତିଷ୍ଠିତ । ତମେ ଯେ ବାହାରେ ଯାଇ କା' ସାଥିରେ ବସୁଛ ଉଠୁଛ, ସେ କଥାର ଖବର କ'ଣ ମୁଁ ନଉଛି ? ତମେ ନିତାନ୍ତ ଅପରିଚିତ ହେଲେ ମଧ, ସେଦିନ ମତେ ଦେଖିବାକୁ ତମକୁ ଆମ ଘରକୁ ସେ...କିପରି....

କିଶୋର— ସେ ? ସେ କିଏ ? ତାକୁ ଭୁଲିପାରୁନନାଁ ? ମୋର ସନ୍ଦେହ ଠିକ୍ । ତମେ ମିଥ୍ୟାଚାରୀ ମାଧବି ! (ମାଧବୀ ନୀରବ ରହିଲା)

କିଶୋର— ସାବଧାନ ହୁଅ ମାଧବୀ ! ତମ ସଂଗେ ଯୁକ୍ତି କରି ଫଳ ନାହିଁ ଦେଖୁଛି । ଏଠି ରହି ମଧ...(ଯିବାର ଉପକ୍ରମ)

ମାଧବୀ— (ଭିଡ଼ିଧରି) କାହିଁକି ଅକାରଣ ବିରକ୍ତହୋଇ ମତେ ଏପରି ସନ୍ଦେହ କହିଲ ? ବିବାହ ପୂର୍ବରୁ ମୋର ଅବସ୍ଥା ଜାଣି ସୁଦ୍ଧା ମତେ ତମେ ଆଣିଲ । ଆଣି କ'ଣ ତମେ ଏମିତି ହଟହଟା କରି ମାରିବ ? ମୁଁ ତମର କି ଅପରାଧ କରିଥିଲି ଯେ ଏମିତି ବାଦ ସାଧୁଛ ?

କିଶୋର— (ଫେରି କୁଣ୍ଢେଇଧରି) ତମେ କ'ଣ ମତେ ପ୍ରକୃତରେ ସ୍ନେହକର ମାଧବୀ ? ସେଦିନ ପ୍ରଥମେ ତମର ରୂପ ଦେଖି ମୁଁ ମୁଗ୍ଧ ହୋଇଗଲି ଏବଂ ଭାବିଲି ଯେ ସେ ରୂପ ଭୋଗ ନ କଲେ ଏ ଜୀବନ କିଛି ନୁହେଁ । ଭାଗ୍ୟକୁ ତମକୁ ପାଇଲି । ତମେ କ'ଣ ମୋର ହେବନି ସତେ ?

ମାଧବୀ— ଆମ ସମାଜରେ ବିବାହିତା ସ୍ତ୍ରୀର ଅବସ୍ଥା କ'ଣ ତମେ ଜାଣିନ ?

କିଶୋର— ତମେ କ'ଣ ସତରେ ତେବେ ମୋର, ମାଧବୀ ?

ମାଧବୀ— ସବୁ ସ୍ତ୍ରୀ ତାଙ୍କ ସ୍ୱାମୀଙ୍କର ଯେପରି ମୁଁ ସେଇପରି ।

କିଶୋର— ତା' ହେଲେ ତ ଭଲ ମାଧବୀ । ମୋର ଆଉ ସନ୍ଦେହର କାରଣ କାଇଁ ? ଚାଲ,— ତମପାଇଁ ଆଜି କଲିକତାରୁ ଦୁଇଟା ନୂଆ ଡାଏମଣ୍ଡସେଟ୍ କାନଫୁଲ ଆଉ ସାହେବ କମ୍ପାନୀରୁ ଆଉ ଜିନିଷ ସବୁ ମଗେଇ ଆଣିଛି—ଦେଖିବା ଚାଲ ।

ମାଧବୀ— ମୁଁ ପରା ତମକୁ କହିଛି ମୁଁ ଅଳଙ୍କାରକୁ ଭଲପାଏନା—ଆଉ ବିଦେଶୀ ଜିନିଷକୁ ଘୃଣା କରେ । ଘରେ ଥିଲାବେଳେ ମୁଁ ବରାବର ଦେଶୀ ଲୁଗାପଟା ବ୍ୟବହାର କରୁଥିଲି । ଏଠି ଏ ବିଦେଶୀ ଜିନିଷ ସବୁ ବ୍ୟବହାର କରିବାକୁ ମତେ ବଡ଼ ବିରକ୍ତ ଲାଗୁଛି ।

କିଶୋର— ଛି ମାଧବୀ, ସେ ସବୁ ମହଁଟୀ ଢଂଗ ଛାଡ଼ିବାକୁ ହେବ । ଏ ଦେହକୁ କ'ଣ ଖଦଡ଼ ? ଡାଏମ'ଣ୍ଡ ସେଟ୍ କାନଫୁଲ ଏ କାନକୁ ନ ହେଲେ ଆଉ କା' ପାଇଁ ? ଆସ— ଦୁଇଦିନ ଛୁଟି ଥିଲା—ରହୁ ରହୁ ଚାରି ଦିନ ରହିଗଲି କେବଳ ତମରି ପ୍ରଲୋଭନରେ । ଆଜି ଚାଲିଯିବି ଭାବିଛି—ଆସ—(ଟାଣିନେବା) (ଯବନିକା)

## (ଦ୍ୱିତୀୟ ଦୃଶ୍ୟ)

[ କଲେଜ ହଷ୍ଟେଲ୍‌ର ଗୋଟିଏ ରୁମ୍ । ବିଷଣ୍ଣମୁଖ ପୂର୍ଣ୍ଣ, କୋଳରେ ଖଣ୍ଡେ ବହି ଧରି ବସିଛି । କିନ୍ତୁ ତା'ର ଆଖି ସମ୍ମୁଖରେ ଗୋଟିଏ ଫଟୋ ଉପରେ—ମନେପଡ଼ିଲେ ବହିକି ଆଖି ଆଣୁଛି—କିନ୍ତୁ ବେଶି ସମୟ ନୁହେଁ—ପୁଣି ସେହି ଫଟୋ ଆଡ଼କୁ ଉଦାସୀନ ଦୃଷ୍ଟି । କିଛିକ୍ଷଣ ପରେ କୁମୁଦ କକ୍ଷ ମଧ୍ୟରେ ପ୍ରବେଶକଲା ଏବଂ ବଂଧୁକୁ କିଛିକ୍ଷଣ ଅନାଇ ରହିଲା । ପୂର୍ଣ୍ଣ ମଧ ତାକୁ କିଛିକ୍ଷଣ ଅନାଇ କହିବାକୁ ଆରମ୍ଭ କଲା—]

ପୂର୍ଣ୍ଣ— କୁମୁଦ, ପାର୍ସୀମାନଙ୍କର ଧର୍ମଗୁରୁ ଜରାଥୁଷ୍ଟ୍ର ସୃଷ୍ଟିର କଳ୍ପନା କିପରି କରିଛନ୍ତି ଜାଣିଛ ? ତାଙ୍କ କଳ୍ପନାରେ ଏ ସୃଷ୍ଟି ଦୁଇଟା ବିରାଟ ଶକ୍ତିର ରଣକ୍ଷେତ୍ର । ଦୁଇଟା ଶକ୍ତି —ଗୋଟିଏ ଭଗବାନ୍, ଗୋଟିଏ ସଇତାନ । ତାଙ୍କ ମତରେ ଏଇ ଦୁଇ ଶକ୍ତିର ସଂଗ୍ରାମ ଯୁଗ ଯୁଗ ଧରି ଚାଲିଛି ଏବଂ ପ୍ରତ୍ୟେକ ମୁହୂର୍ତ୍ତରେ ଭଗବାନ୍‌ଙ୍କର ଜୟହେଉଥିବାରୁ ଏ ସୃଷ୍ଟି ତିଷ୍ଠି ରହିଛି । କିନ୍ତୁ ମୁଁ ଭାବୁଛି, ଜରାଥୁଷ୍ଟ୍ର ଏ ଯୁଗରେ ଜନ୍ମହୋଇଥିଲେ କହିଥା'ନ୍ତେ ଯେ, ଭଗବାନ୍‌ଙ୍କର ପ୍ରତି ପାଦରେ ପରାଜୟ ହୋଇ ସଇତାନରହିଁ ଜୟହେ'ଉଛି । ଜୀବନର ପ୍ରତିକ୍ରିୟାରେ, ଜୀବନ-ସଂଗ୍ରାମର ପ୍ରତି ପଦରେ, ମିଥ୍ୟାଚାରର ଜୟ ଓ ସତ୍ୟ ନ୍ୟାୟର ଯେପରି ବିପର୍ଯ୍ୟୟ ଘଟୁଛି, ସେଥିରେ ଭଗବାନଙ୍କର ଅସ୍ତିତ୍ୱ କାଇଁ ?

କୁମୁଦ— ତମେ ବହି ପଢୁଛ ନା ପୁଣି ପାଗଳଙ୍କ ପରି ଏଣୁତେଣୁ ଭାବୁଛ ? ପରୀକ୍ଷାରେ ଏଥର ପାସ୍ କରିବ ତ ? ତିନି ମାସ ଚାଲିଗଲା—ତମର ତ କାଇଁ ଟିକିଏ ଭଲ ଲକ୍ଷଣ ଦେଖାଗଲା ନାଇଁ ?

ପୂର୍ଣ୍ଣ— ପରୀକ୍ଷା ତ ଅଛି— ଆଗେ ଏ ବିଷୟରେ ସମାଧାନ ହେଉ ନା, ତମର ମତ କ'ଣ ! କହିଲ ।

କୁମୁଦ— ବାଃରେ ! ଏ ସୃଷ୍ଟି ସଇତାନ କି ଭଗବାନ୍‌ଙ୍କର ତା'ର ସମାଧାନ ପ୍ରଥମେ ହେଲେ ଯାଇ ପରୀକ୍ଷା ପାଇଁ ପଢାହେବ, ନ ହେଲେ ନାଇଁ ! ଏ ବିଷୟ କ'ଣ ଏଡ଼େ ଗୁରୁତର ! ଏହାର ସମାଧାନ ବ୍ୟତିରେକେ ଭାତ ଜୀର୍ଣ୍ଣ ହେବନି କି ପାଠ ମନେରହିବନି ନା ?

ପୂର୍ଣ୍ଣ— ତୁମେ ବୁଝିପାରୁନା ! (ଠିଆହୋଇ ଉତ୍ତେଜିତ ଭାବରେ) ଧର କୁମୁଦ, ତମେ ଚାଷ କରିବାକୁ ଗଲ । ପ୍ରଥମେ ଦେଖିବ ଜମି କିପରି, ମଂଜି କିପରି, କି ଖତ ଦରକାର, ଖର୍ଚ୍ଚ କେତେ, ଶସ୍ୟର ଭବିଷ୍ୟତ କ'ଣ—ଏସବୁ ବିଚାର କରିବ ନାଇଁକି ? ଆମ୍ଭମାନଙ୍କର ଜନ୍ମ ସଂଗେ ଆମେ ଏକ ନୂତନ ସଂସାରରେ ପ୍ରବେଶକରୁ । ସଂସାରର ସଂଗ୍ରାମରେ

ଜୀବନପାତ କରିବା ଆଗରୁ ଆମର କ'ଣ ବୁଝିରଖିବା ଉଚିତ ନୁହେଁ, ଆମର ଏଠି କର୍ତ୍ତବ୍ୟ କ'ଣ, କିଏ ଏ ସଂସାରର କର୍ତ୍ତା, ଏ ସଂଗ୍ରାମର ପରିଣତି କ'ଣ ? ଏ ଯେଉଁ ବିରାଟ ମାନବ-ସଂଘ ଦେଖୁଛ, ଏମାନେ ପଶୁଠାରୁ କିଂଚିନ୍ମାତ୍ର ଉପରେ । ଏମାନେ ଆକୃତିରେ ମନୁଷ୍ୟ ସତ, କିନ୍ତୁ କାର୍ଯ୍ୟରେ ପଶୁଠାରୁ କ'ଣ ବିଶେଷ ଭିନ୍ନ ? ପଶୁ ପରି ଏମାନେ ବଢନ୍ତି, ଖାଦ୍ୟ ସଂଗ୍ରହ କରନ୍ତି, ବଂଶ ବୃଦ୍ଧି କରନ୍ତି, ଶେଷରେ ମରନ୍ତି । ସେମାନେ ବା ଅନ୍ୟମାନେ. କାହିଁକି ଏଠାକୁ ଆସିଲେ, କିଏ ତାଙ୍କୁ ପଠାଇଲା, ତାଙ୍କର ଏଠି କର୍ତ୍ତବ୍ୟ କ'ଣ, ଏ ସବୁ ପାଇଁ ପ୍ରଶ୍ନ କରିବାକୁ ତାଙ୍କ ମସ୍ତିଷ୍କରେ ସ୍ଥାନ ନ ଥାଏ । ମୁଁ କିନ୍ତୁ ଏସବୁ ପ୍ରଶ୍ନର ସମାଧାନ ଚାହେଁ; ନଚେତ୍ ଅନ୍ଧପରି ସମସ୍ତେ ଗୋଟାଏ କଥା କରୁଛନ୍ତି ବୋଲି ମୁଁ ତା' କରିବାକୁ ଯିବିନି । କାହିଁକି ପରୀକ୍ଷା ଦେବି ? କାହିଁକି ପାସ୍ କରିବି ?

କୁମୁଦ— ଜୀବନ ରକ୍ଷାଲାଗି ଆଜିକାଲି ପାସ୍ ନିତାନ୍ତ ଦରକାର ।

ପୂର୍ଣ୍ଣ— ଯେଉଁ ଜୀବନ ପାସ୍‌ଟା ଉପରେ ନିର୍ଭର କରେ, ସେ ଜୀବନ ରଖିବାର ତ ପ୍ରୟୋଜନ ନାହିଁ । ମୁଁ ବଞ୍ଚିବି ବା ମରିବି ତା' ମୋ ଉପରେ ସଂପୂର୍ଣ୍ଣ ନିର୍ଭରକରେ—ଆଉ ଦି'ଚାରି ଜଣ ଅଜ୍ଞାତ ଅପରିଚିତ ଲୋକ ଦୂରରେ ଥାଇ ମତେ ଆଦୌ ନ ଜାଣି, ମତେ ପାସ୍‌ଟା ବା ଫେଲ୍‌ଟାଏ କରେଇଦେଲେ, ମୋ ଜୀବନ କ'ଣ ସେଇ ଅନୁସାରେ ସଫଳ ବା ବିଫଳ ହୋଇଯିବ ? ଆଖିଆଗରେ ଏ ଯେଉଁ ଶତ ଶତ ଗ୍ରାଜୁଏଟ୍ ଦେଖୁଛ, ଏମାନଙ୍କ ଜୀବନରେ କି ଲୋଭନୀୟ ଆନନ୍ଦ ଅଛି ଯେ, ମୁଁ ପାସ୍‌ଟା ପାଇଁ ଏତେ ବ୍ୟଗ୍ର ହେବି କହିଲ ?

କୁମୁଦ— ତା' ସତ୍ତ୍ୱେ ଜୀବନରେ ଅନେକ ସଫଳତା ଅଛି । ତମେ ଏ ଫେଲ୍ କଳଙ୍କ ନେଇ ଚିରଦିନ ଲାଗି ସେଥିରୁ ବଞ୍ଚିତହେବ ।

ପୂର୍ଣ୍ଣ— ସେ ପ୍ରଲୋଭନ ମତେ ବାରମ୍ବାର କାହିଁକି ଦେଖାଉଛ ? ତମେ କ'ଣ ଜାଣିନ, ଏ ଜୀବନରେ ଆଉ ଆନନ୍ଦ ବା ସଫଳତା ଅସମ୍ଭବ କଥା ! ସବୁ ଆନନ୍ଦ, ସବୁ ଭବିଷ୍ୟତ ନିଃଶେଷିତ ହୋଇଯାଇଛି । ପ୍ରାବୃଟ ମେଘ ଧରଣୀ ପୃଷ୍ଠରେ ସକଳ ରସ ଢାଳିଦେଲା ପରି, ମୁଁ ଜଣକ ବକ୍ଷରେ ସକଳ ଆଶା ସକଳ ଆନନ୍ଦ ଢାଳିଦେଇଛି । ବର୍ତ୍ତମାନ ମୁଁ ଶରତମେଘ ପରି ରିକ୍ତ, ଶୂନ୍ୟ, ରସହୀନ ।

କୁମୁଦ— ତେବେ ତମର ଉଦ୍ଦେଶ୍ୟ କ'ଣ ଆଉ ? କି ଆଶା, ଆକାଙ୍‌କ୍ଷା ଭବିଷ୍ୟତ ପାଇଁ ?

ପୂର୍ଣ୍ଣ— (ଚିନ୍ତିତ ଭାବରେ) ସେଇ, ସେଇ କଥା ତ ମତେ, କୁମୁଦ, ଏବେ ଦିବାରାତ୍ରି ବ୍ୟଥିତ କରୁଛି । (ଛାତିରେ ହାତଛନ୍ଦି) କାହିଁକି ବଞ୍ଚିବି ? ବଞ୍ଚିବା ବା ମରିବା ମୋ ପକ୍ଷରେ ସମାନ ବର୍ତ୍ତମାନ । ଜୀବନ୍ତ ବୃକ୍ଷ ସିନା ଲୋକଙ୍କର ଦରକାରରେ ଆସେ—ତେଣୁ ତା'ର ବିନାଶ ଉଚିତ ନୁହେଁ । କିନ୍ତୁ ଶୁଷ୍କ ବୃକ୍ଷ କାହିଁକି ଅକାରଣ ସ୍ଥାନ ମାଡ଼ି ଠିଆରହିଥିବ ? ବରଂ ତାକୁ ଉତ୍‌ପାଟନ କଲେ ତା' ସ୍ଥାନରେ ନୂତନ ବନସ୍ପତି ମୁଣ୍ଡଟେକିପାରେ । ମୁଁ

ବର୍ତ୍ତମାନ ଶୁଷ୍କ, କୁମୁଦ । ଯେଉଁ ରସଧାରା ଅଦୃଶ୍ୟ ଭାବରେ ମତେ ପରିପୁଷ୍ଟ କରି ରଖିଥିଲା, ତାକୁ ବନ୍ଧପକାଇ ଅନ୍ୟ ଆଡ଼କୁ ନିଆଗଲା, ଫଳରେ ମୁଁ ଶୁଷ୍କ । ମୋ ନିଜର ଉତ୍ପାଟନାହିଁ ମୋର କର୍ତ୍ତବ୍ୟ ବୋଲି ମୁଁ ମନେକରେ । ବଞ୍ଚିରହିବାର କିଛି ଦରକାର ତ ମୁଁ ଦେଖୁନି ।

କୁମୁଦ— ପୂର୍ଣ୍ଣ ! ତୁମଠୁ ଆମେ କେତେ ଆଶା କରିଥିଲୁ । ତୁମପରି ଯୁବକ ଯଦି ଏପରି ନୈରାଶ୍ୟ ଓ ବୈରାଗ୍ୟର ବାଣୀ ଶୁଣେଇବେ ତେବେ ଅନ୍ୟମାନେ କି ଦମ୍ଭଧରି ଜାତିର ସେବା କରିବେ କହିଲ ?

ପୂର୍ଣ୍ଣ— (କାନ୍ଧରେ ହାତଦେଇ) କୁମୁଦ, ମୁଁ କି ସେକଥା ଭାବିନି ଭାଇ ? କେତେଥର ଭାବିଛି ମାନବର, ଜାତିର, ଦେଶର ସେବାରେ ଏ ଜୀବନକୁ ଢାଳିଦେଇ, ହୃଦୟର ଦାବାନଳକୁ ଶାନ୍ତକରିବି । କିନ୍ତୁ ଦେଖୁଛି ଅସମ୍ଭବ ତାହା । ଢୋଲ ଭିତରେ ମୂଷା ପୂରାଇ ତାକୁ ସିଲାଇ କରିବା ଯାହା, ହୃଦୟରେ ଭଗ୍ନ-ପ୍ରଣୟ ଘେନି ସଂସାରରେ ଚଳିବା ସେଇୟା । କିନ୍ତୁ ଅନ୍ୟମାନେ ସମସ୍ତେ ତ ମୋ'ପରି ହତଭାଗ୍ୟ ହେବେନି ? ସେମାନେ କାହିଁକି ନିରାଶ ହେବେ ?

କୁମୁଦ— ସାମାନ୍ୟ ବାଳିକାଟିଏ ଲାଗି ଜୀବନର ସବୁ ଭବିଷ୍ୟତ, ସବୁ କଳ୍ପନା ବଳିଦେଲ ? ସେ'ତ ବିବାହ କରି ନିଶ୍ଚିନ୍ତ ରହିଲା—ତମେ ତା' ଲାଗି ପାଗଳ ହେଉଛ କାହିଁକି ?

ପୂର୍ଣ୍ଣ— ବୁଝିନା କୁମୁଦ ! ପୁରୁଷର ସମସ୍ତ ଶକ୍ତି ଓ ସମସ୍ତ ବିଫଳତା ନାରୀ ହାତରେ । ଯେଉଁମାନେ ସେମାନଙ୍କ ବାହୁ ପାଶରୁ ଦୂରରେ ରହିପାରନ୍ତି ସେମାନେ ଧନ୍ୟ । କିନ୍ତୁ ଯେଉଁମାନେ ଥରେ ସେ ଭିତରକୁ ପଶିଲେ, ତେବେ ହୁଏ ତ ସେମାନଙ୍କ ମୁଣ୍ଡରେ ମୁକୁଟ ଉଠେ, ନ ହେଲେ ସମସ୍ତ ପୁରୁଷକାର ଧୂଳିସାତ୍ ହୁଏ । ମୋ ଭାଗ୍ୟରେ ଶେଷଟା ଘଟିଲା । ମୁଁ କିନ୍ତୁ ଅନ୍ୟଟି ପାଇବି ବୋଲି ଆଶାକରିଥିଲି । ଏ ବିପର୍ଯ୍ୟୟ ଲାଗି ମୁଁ ବା ସେ ଦାୟୀ ନୁହେଁ, ଦାୟୀ ଏକ ଅଦୃଷ୍ଟ ଶକ୍ତି । ମାଧବୀ କି ଭୁଲିଯାଇଥିବ ସବୁ ? ଅସମ୍ଭବ ! ନିଶ୍ଚିନ୍ତରେ ଥିବ ସିଏ ? ଅସମ୍ଭବ ! ତା' ସତ୍ୟବୋଲି ଜାଣିଲେ ମୁଁ ପାଗଳ ହୋଇଯିବି ବା ଏ ମିଥ୍ୟା ସଂସାରକୁ ଛାଡ଼ି ସତ୍ୟର ସନ୍ଧାନରେ ବିଶ୍ୱ ଭ୍ରମଣ କରିବି । ଏ ପର୍ଯ୍ୟନ୍ତ ତା'ରି ସ୍ନେହ ମୋ ଜୀବନର ଏକମାତ୍ର ସତ୍ୟ । ବାପା, ମା, ଭାଇ, ବନ୍ଧୁ, ସଂସାର, ଭଗବାନ୍, ସବୁ ମିଥ୍ୟା । ଏହି ଘୋର ମିଥ୍ୟା ଭିତରେ ଅତ୍ୟାଚାର, ଅବିଚାର, ଧର୍ମହୀନତା, ମୂର୍ଖତା, ପାଷଣ୍ଡତା, ବର୍ବରତା ଭିତରେ ମନୁଷ୍ୟ ଈଶ୍ୱରଙ୍କୁ ପୂଜା କରେ କାହିଁକି ? ଭଗବାନଙ୍କୁ ଡାକି ଡାକି ଜଗତରେ ଅବିଚାର କିଛି କମିଛି ? ତମେ ଈଶ୍ୱରଭକ୍ତ ପରା ?

ଥାଉ ଥାଉ, ସେ ପ୍ରଶ୍ନ ସବୁ ଥାଉ— ଏସବୁ କଥା ମନରେ ଉଠିଲେ ମୋର ଘୋର ଚିତ୍ତ-ଚାଞ୍ଚଲ୍ୟ ହେଉଛି—ଭାବୁଛି ମୁଁ ଯେପରି ପାଗଳ ହୋଇଯାଉଛି । ମତେ ଏସବୁ

ଆଲୋଚନାରୁ ଶାନ୍ତି ଦିଅ ଟିକିଏ । ତମେ ଯାଅ ଏବେ—ମୁଁ ଟିକିଏ ଶୋଇବି । ଏ ବ୍ୟର୍ଥଜୀବନ ପାଇଁ ତମର ଚିନ୍ତା କରିବା ଦରକାର ନାହିଁ, ଯାଅ !

କୁମୁଦ— ଆଚ୍ଛା, ଶୁଅ, ମୁଁ ଯାଉଛି । (ସ୍ୱଗତ) କିନ୍ତୁ ଶେଷରେ ଏଇ ପରିଣାମ ହେଲା ? ହାୟ ଭଗବାନ୍ ! (ଯିବାର ଉଦ୍ୟମ)

ପୂର୍ଣ୍ଣ— ଆଚ୍ଛା ଶୁଣିଲ କୁମୁଦ ! (କୁମୁଦ ଫେରିଲା) ମଧୁବାବୁଙ୍କ ପୁଅ କୃଷ୍ଣ ଫାଷ୍ଟ୍ ଇୟରରେ ନାଁ ଲେଖେଇଛି ପରା ? ତାକୁ ଚିହ୍ନିଛ ? ତାକୁ ଏଠିକି ଟିକିଏ ଡାକିଦେବ ?

କୁମୁଦ— କି କାମ ଅଛି ତା'ଠି ? ମୁଁ ତ ଆଜି ନା କାଲି ତା' ସାଥିରେ କଥାହୋଇଥିଲି । ପଚାରି ବୁଝିଲି, ତା' ଭଉଣୀ ଆଉ କିଶୋର ଗାଁରୁ ଆସି କାଲି କଟକରେ ପହଞ୍ଚିଛନ୍ତି । ଏଠି କେତେଦିନ ରହିବେ ।

ପୂର୍ଣ୍ଣ— (ଆଶ୍ଚର୍ଯ୍ୟରେ)ସେମାନେ ଆସିଛନ୍ତି ! ଆଚ୍ଛା କୃଷ୍ଣକୁ ପଠେଇଦେବ ତ !

(କୁମୁଦର ପ୍ରସ୍ଥାନ । ପୂର୍ଣ୍ଣ ମାଧବୀର ଫଟୋକୁ ଚାହିଁରହିବା—କୃଷ୍ଣର ପ୍ରବେଶ)

କୃଷ୍ଣ— ପୂର୍ଣ୍ଣ ଭାଇ !

ପୂର୍ଣ୍ଣ— (ଚିନ୍ତାରୁ ନିଜକୁ ଛିନ୍ନକରି) କିଏ, କୃଷ୍ଣ ଯେ ! କୁ'ଠି ଥିଲ କି ? ଏଡ଼େ ବେଗି ଚାଲି ଆସିଲ !

କୃଷ୍ଣ— ସେ'ଠି ଠିଆହୋଇଥିଲି । କୁମୁଦ ବାବୁଙ୍କ ସଙ୍ଗେ ହଠାତ୍ ଦେଖାହେଲାରୁ ପଠେଇ ଦେଲେ ।

ପୂର୍ଣ୍ଣ— ନ ହେଲେ କେବେ ଏଠିକି ଆସିନଥା'ନ୍ତ ପରା ?

କୃଷ୍ଣ— କାହିଁକି, ଆପଣ କ'ଣ ଆମର ଶତ୍ରୁ କି ?

ପୂର୍ଣ୍ଣ— ଶତ୍ରୁଠୁ ଆହୁରି ହୀନ ।

କୃଷ୍ଣ— ସେମିତି କାହିଁକି କହୁଛ ପୂର୍ଣ୍ଣଭାଇ ! ତମେ ଆମର କ'ଣ, ତମେ କ'ଣ ଜାଣିନା ? ଅପା କାଲି ଆସିଛି । ତାକୁ ଛାଡୁ ନ ଥିଲେ । ବାପା ଯାଇ ନେଇ ଆସିଲେ ।

ପୂର୍ଣ୍ଣ— ଅପା କିମିତି ଅଛି ?

କୃଷ୍ଣ— ବେଶ୍ ମୋଟା ହେଇଯାଇଛି ତ ।

ପୂର୍ଣ୍ଣ— ସତେ ? କିଶୋର ସାଥିରେ କିମିତି ପଡୁଛି ତା'ର ?

କୃଷ୍ଣ— କିମିତି ଆଉ କ'ଣ ? ଭଲପଡୁଛି ।

ପୂର୍ଣ୍ଣ— ସତେ ! କଳି ଲାଗନ୍ତିନି ?

କୃଷ୍ଣ— କାହିଁକି କଳି ଲାଗିବେ ? ଆଚ୍ଛା କଥା ପଚାରୁଛ !

ପୂର୍ଣ୍ଣ— ହଁ, ହଁ କାହିଁକି କଳି ଲାଗିବେ ? ମୋ କଥା ଅପା କିଛି ପଚାରୁନଥିଲା ?

କୃଷ୍ଣ— ନାଇଁ ତ !

ପୂର୍ଣ୍ଣ— କେବେହେଲେ ?

କୃଷ୍ଣ— ନାଁ, ମୋର ମନେପଡୁନି ତ ।

(ପୂର୍ଣ୍ଣ ବିମର୍ଷ ଓ ନୀରବ ରହିଲା)

କୃଷ୍ଣ— କାଇଁକି ଡାକିଥିଲେ ?

ପୂର୍ଣ୍ଣ— ଡାକିଥିଲି କଥା ହେବା ପାଇଁ—ତେବେ......ତେବେ ମୋ ପାଖରେ ଅପାଙ୍କର କେତେକ ଚିଠିପତ୍ର ଥିଲା, ସେଗୁଡ଼ାକ ନେଇ ଅପାଙ୍କୁ ଦେଇଦେବ । ସେ ସବୁ ମୋ ପାଖରେ ରହିବା ମୁଁ ସମୀଚୀନ ବୋଧକରୁନି ।

କୃଷ୍ଣ— ହଉ ଦିଅନ୍ତୁ । ଏ ଫଟୋଟା ? ରଖିଥିବେ ?

ପୂର୍ଣ୍ଣ— ସବୁ ନେଇଯାଅ । ସେ ସବୁ ଆଉ ରଖି କି ଲାଭ ?

(ଟ୍ରଂକ୍ ଖୋଲି ଚିଠିପତ୍ର ବାହାରକରିବା)

କୃଷ୍ଣ— ମଲା, ହଠାତ୍ ଆପଣଙ୍କର ଏ ଭାବ କାହିଁକି ?— ଏ ଅଭିମାନ ?

ପୂର୍ଣ୍ଣ— କିଛି ନୁହେଁ ସେ— ନିଅ !

(ଚିଠି ଇତ୍ୟାଦି ଦେବା ଓ ଫଟୋ ଦେବା)

କୃଷ୍ଣ— ଅପାକୁ ଆଉ କ'ଣ କହିବି ?

ପୂର୍ଣ୍ଣ— କିଛି ନାଇଁ— କହିବ କ'ଣ !

କୃଷ୍ଣ— ଆଚ୍ଛା, ଯାଉଛି । (ପ୍ରସ୍ଥାନ)

ପୂର୍ଣ୍ଣ— (ଚିନ୍ତିତ ଭାବରେ ଠିଆ ହୋଇ)ତା' ହେଲେ କୁମୁଦର କଥା ସତ୍ୟ ! ଯା' ପାଇଁ ସମସ୍ତ ଭବିଷ୍ୟତ, ସମସ୍ତ ଜୀବନ ମାଟି କଲି, ସେ ବିବାହ କରି ନିଶ୍ଚିନ୍ତ ! ଯାହାକୁ ଧ୍ରୁବ ସତ୍ୟ ବୋଲି ଭାବିଥିଲି, ସେ ଯେ ଘୋର ମିଥ୍ୟା ! ତା' ଲାଗି ଭଗବାନଙ୍କୁ ମଧ ଉପହାସ କରିଛି ! ତା' ଲାଗି ଜଗତକୁ ପରିତ୍ୟାଗ କରିଛି ! ତା' ନ ହେଲେକି ହିନ୍ଦୁ ନାରୀକୁ ନରକର ଦ୍ୱାର ବୋଲି ନିର୍ଦ୍ଦେଶ କରିଛି ? ଯେତେ ଅପମାନ ପାଇଥିଲି ତା' ଭିତରେ ଘୋରତମ ଅପମାନ ଏଇ ! ଏ'ଠି ଆଉ ମୁହଁଧରି ବଞ୍ଚିବି କିମିତି ? ମରେଁ ବା ପଳାଏ...... (ଯବନିକା)

## (ତୃତୀୟ ଦୃଶ୍ୟ)

[ମଧୁବାବୁଙ୍କ ଗୃହ । ଦାଣ୍ଡଆଡ଼ର ଗୋଟିଏ କକ୍ଷରେ ମାଧବୀ—ଗୋଟିଏ ଟେବୁଲ ଉପରେ ବହି, କାଗଜପତ୍ର ଇତ୍ୟାଦି ଥୁଆହୋଇଛି—ମାଧବୀ ସେ ସବୁ ଭିତରେ କ'ଣ ଖୋଜୁଛି ।]

ମାଧବୀ— (ଉଚ୍ଚସ୍ୱରରେ) କୃଷ୍ଣ !....ବୁଢ଼ା !

(ନେପଥ୍ୟରୁ ଶୁଣାଗଲା—''ଅପା,.....କ'ଣ ?''

ମାଧବୀ— ଆଇଲୁ ଏଣେ—(ମାଧବୀ ବ୍ୟସ୍ତ ହୋଇ ଦରାଣ୍ଡିବା—ନେପଥ୍ୟରୁ 'ଯାଉଛି' କହି କୃଷ୍ଣର ପ୍ରବେଶ ।)

କୃଷ୍ଣ— କ'ଣ ? କ'ଣ ଖୋଜିଲାଗିଛୁ ?

ମାଧବୀ— କିରେ ସେ ଚିଠିଗୁଡ଼ାକ ନେଲା କିଏ ? ମୁଁ ତ ଏଇ ବହି ଭିତରେ ଗୁଞ୍ଜି ଦେଇଥିଲି !

କୃଷ୍ଣ— ପୂର୍ଣ୍ଣ ଭାଇଙ୍କ ଚିଠି ନା ? ଏଇ କିଶୋରବାବୁ ତ ସେ ଘରେବସି ପଢୁଛନ୍ତି—ମୁଁ ଜାଣେ ତୋ'ଠୁଁ ସେ ନେଇଛନ୍ତି ବୋଲି ।

ମାଧବୀ— (ସାଶ୍ଚର୍ଯ୍ୟେ) କଣ ! ସେ ପଢୁଛନ୍ତି !

(କିଶୋରର ସହସା ପ୍ରବେଶ)

କିଶୋର— ହଁ ମୁଁ ପଢୁଥିଲି । ତମର ପ୍ରିୟ ପଦାର୍ଥଗୁଡ଼ିକ ନେଇଯାଅ ।

(ଚିଠି ତାଡ଼ାଟିଏ ଟେବୁଲ ଉପରେ ଥୋଇଦେବା)

କୃଷ୍ଣ— ମୁଁ ଯାଉଛି ଅପା—ଚିଠି ତ ପାଇଲୁ !

ମାଧବୀ— (ମୁହଁପୋତି) ହଉ ! (କୃଷ୍ଣର ପ୍ରସ୍ଥାନ)

କିଶୋର— ମାଧବି !

ମାଧବୀ— (ନୀରବ)

କିଶୋର— ମାଧବୀ ଆଜି ତମର ପରୀକ୍ଷାର ବେଳ ଆସିଛି ।

ମାଧବୀ— (ନୀରବ)

କିଶୋର— କଥା କହ ସତୀ ଶିରୋମଣି—ନୀରବ ରହୁଛ କାହିଁକି ?

ମାଧବୀ— ମୋର'ତ କହିବାର କିଛି ନାହିଁ ।

କିଶୋର— (ଦ୍ୱାର ବନ୍ଦକରି) ତମର କହିବାର ଦରକାର ନାହିଁ ସତୀ, ତମର ଏ ପତ୍ର ଗୁଡ଼ିକରେ ତମର ସତୀତ୍ୱ ଫୁଟିଉଠୁଛି ଯେ !

ମାଧବୀ— (ନୀରବ)

କିଶୋର— (ଉତ୍ତେଜିତ ଭାବରେ) ଭାବିଛ କି ଇମିତି ନୀରବ ରହିଲେ ରକ୍ଷାପାଇଯିବ ? କୌଣସିମତେ ନୁହେଁ । ଆଜି ଶେଷ ମୀମାଂସା କରିବାକୁ ହେବ । ଏ ଚିଠି ଅଇଲା କିପରି ?

ମାଧବୀ— (ନୀରବ)

କିଶୋର— ଲାଜ ନାହିଁ ତମର ? ଭାଇକି ଦୂତ କରି ପ୍ରେମିକଠୁ ଚିଠି ଆସୁଛି ଯାଉଛି ! କି ବ୍ୟଭିଚାର !

ମାଧବୀ— ମିଥ୍ୟା କଥା !

କିଶୋର— ସବୁ ମିଥ୍ୟା—କେବଳ ତମର ସତୀତ୍ୱହିଁ ସତ୍ୟ ! ନା ?

ମାଧବୀ— ସତୀତ୍ୱ ସତୀତ୍ୱ କହି ମତେ ଆଉ ପରିହାସ କରନି ବେଶି !

କିଶୋର— ଓଃ ବାଧୁଯାଉଛି ଯେ ! ସତ୍ୟ କଥା କହିଲେ ସମସ୍ତଙ୍କୁ ବାଧେ ଯେ ।

ମାଧବୀ— କିନ୍ତୁ ମିଥ୍ୟା କଥା ଅପମାନ ଦିଏ !

କିଶୋର– ଦ୍ୱିଚାରିଣୀର, ବେଶ୍ୟାର ଆଉ କି ଅପମାନ !

ମାଧବୀ– ମୁଁ ତାହା ନୁହେଁ–ସେଇଥିପାଇଁତ ଅପମାନ...ମୁଁ ଯାଏ....ତମ ପାଖେ ରହି ଏ ପ୍ରକାର ବର୍ବରତା ସହିବାକୁ ମୋର ଶକ୍ତି ନାହିଁ । (ଯିବାର ଉଦ୍ୟମ)

କିଶୋର– (ପଣନ୍ତ ଧରିପକାଇ) ଛିଡ଼ା ହୁଅ ! ଆଜି ଜବାବ ଦେବାକୁ ହେବ–ଏତେ ଦିନର ସନ୍ଦେହ ପରେ ଆଜି ଚୋର ଧରାପଡ଼ିଛି– ଉପଯୁକ୍ତ ଶାସ୍ତି ନ ଦେଲା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ । କହ, ଏ ଚିଠି ସବୁ କିପରି ଆସିଲା ?

ମାଧବୀ– ଛାଡ଼ ମତେ (ପଣନ୍ତ ଟାଣିନେବା)–ମୁଁ କୌଣସି ପାପ କରିନି ଯେ ତମକୁ ଡରି ପଳେଇବି । ଯାହା ପଚାରିବାର ପଚାର– ମୁଁ ଉତ୍ତର ଦେବି ।

କିଶୋର– ଚିଠି ଆଣିଲା କିଏ, କାହିଁକି ?

ମାଧବୀ– କୃଷ୍ଣ ଆଣିଲା...

କିଶୋର– କାହାଠୁ ?

ମାଧବୀ– ଯାହାକୁ ଦିଆଯାଇଥିଲା !

କିଶୋର– ତା' ସଙ୍ଗେ ଗୋପନ ପ୍ରଣୟ ଚଳେଇବାକୁ ଚାହ, ନା ?

ମାଧବୀ– କଦାପି ନୁହେଁ ! ମୁଁ କୌଣସି କଥା ଲୁଚାଇ କରିବାକୁ ଘୃଣାକରେ ।

କିଶୋର– କିନ୍ତୁ ତାକୁ ମନେ ମନେ ପୂଜା କରିବ ?

ମାଧବୀ– ଯାହା ସମ୍ଭବ ମନେକରୁଛ କର । ତୁମେ ଯଦି ପ୍ରକୃତ ପୁରୁଷ, ତେବେ ତମର ସ୍ତ୍ରୀକୁ ଏପରି ପ୍ରଶ୍ନ କରିବା ତମ ନିଜର ଅପମାନ ! ମୁଁ ଏସବୁ ପ୍ରଶ୍ନର ଉତ୍ତର ଦେବିନି– ଦେଇ ଲାଭ କିଛି ନାଇଁ ତମ ନିକଟରେ ।

କିଶୋର– (ମାଧବୀ କାନ୍ଧରେ ହାତ ପକାଇ) ଦେବାକୁ ହେବ !

ମାଧବୀ– କେଉଁ ନିୟମ ଅନୁସାରେ ମୁଁ ଦେବାକୁ ବାଧ ? ମତେ ଛାଡ଼ (ଘୁଞ୍ଚିଯିବା)

କିଶୋର– ଯେଉଁ ନିୟମ ଅନୁସାରେ ମୁଁ ତମର ସ୍ୱାମୀ !

ମାଧବୀ– ସ୍ୱାମୀତ୍ୱର ସୀମା ଅଛି !

କିଶୋର– ବେଶ୍ ଜବାବ ଦେଉଛ ତ ! ଆଚ୍ଛା ଏଇ ଚିଠି (ଟେବୁଲରୁ ଗୋଟାଇ) ମୁଁ ରଖିଲି– ଯାରି ବଳରେ ତମର ଗର୍ବ ଭାଙ୍ଗିବି । ତମ ସଙ୍ଗେ କଥା ହେବାକୁ ମୁଁ ଇଚ୍ଛାକରୁନି । ମୁଁ ଯାଏ–ତମେ ତମର ହୃଦୟର ଦେବତାକୁ ଯେତେ ଇଚ୍ଛା ସେତେ ପୂଜାକରୁଥାଅ । (ତ୍ୱରିତ୍ ଗତିରେ ପ୍ରସ୍ଥାନ)

ମାଧବୀ–(କିଶୋରର ଗତିକୁ ଲକ୍ଷ୍ୟ କରି) ଓଃ, ମୁଁ ତ ମରିଗଲି ଏ ଜଂଜାଳରେ ! କେଜାଣି ଭାଗ୍ୟରେ ମୋର ଆଉ କ'ଣ ରଖିଛି ବିଧାତା (ଲେଉଟି)ମୋ ଚିଠି ଯୋଗୁ ତ ଏ ହଟହଟା ଆରମ୍ଭ ହେଲାଣି–ତାଙ୍କ ଚିଠି ସବୁ ବାହାରିଲେ ପୁଣି କ'ଣ ହେବ କେଜାଣି ? ଯାଏ, ସେ ସବୁ ଗୋଟି ଗୋଟି କରି ପୋଡ଼ିଦିଏ । ସେ ସବୁ ରଖିଲେ ଏ ପ୍ରାଣକୁ ନିଆଁରେ ସନ୍ତୁଳିବାକୁ ହେବ । ମୁଁ ଜୀବନ୍ତ ଦହନ ସହିପାରିବିନି ଆଉ ।

(ବାକ୍ସ ଫିଟାଇ ଖୋଜି ଚିଠିସବୁ ବାହାରକରିବା ଓ ଗୋଟେଇ ଏକାଠି କରିବା) ଦିଆସିଲି କୁ'ଠି ଅଛି । (ଖୋଜି ଆଣି —ଚିଠି ଧରି) ପ୍ରିୟ ବସ୍ତୁ ମୋର, ଭାବିଥିଲି ମୋର ଚିତାଭସ୍ମ ଉପରେ ତମର ଭସ୍ମ ରଖି ପରମ ଶାନ୍ତି ପାଇଥା'ନ୍ତି । କିନ୍ତୁ ଜୀଇଁ ଥାଉ ଥାଉ ତମକୁ ଭସ୍ମ ନ କଲେ ମୋ ଜୀବନରେ ଆଉ ଶାନ୍ତି ନାହଁ । ତୁମକୁ ଭସ୍ମ କରିବା ସଂଗେ ସଂଗେ ଜୀବନର ପ୍ରଥମତମ ଓ ପ୍ରିୟତମ ସ୍ୱପ୍ନକୁ ଭସ୍ମକରି ତା' ଉପରେ ବିସ୍ମୃତିର ଯବନିକା ପକାଇବାକୁ ହେବ । ତା' ନ ହେଲେ ଶାନ୍ତି ନାହିଁ । ଦିଏଁ—ଅଗ୍ନି ସଂଯୋଜନ କରେଁ । .....ମା' ଲୋ, ହାତ ଯାଉନି ଯେ ! (ଚିଠି ଭିତରୁ ଗୋଟାକୁ ବାହାରକରି) ଏ ପତ୍ରଟି ପ୍ରଥମ ପାଇଥିଲି— ମନେଅଛି, ସେଦିନ ରାତିରେ ମୁଁ ଶୋଇପାରି ନଥିଲି ! (ଶୁଙ୍ଘି)ଓଃ, ସେଇ ଗଂଧ ଆଜିପର୍ଯ୍ୟନ୍ତ ଲାଗିରହିଛି ଯେ ! ଯାକୁ କ'ଣ ଭସ୍ମ କରିଦେବି ?....ନାଃ —ମାଧବି, ତୋର ହୃଦୟକୁ ପଥର କରିବାକୁ ହେବ, କାରଣ ଏ ସଂସାରଟା ଯେ ପଥରର......ଭସ୍ମ କରିବାକୁ ହେବ ଏ ସବୁ...... ଶୀଘ୍ର..... (ଡିଆସିଲି ମାରି ଚିଠିଗୁଡ଼ିକ ପୋଡ଼ିବା—ପୋଡା ଚିଠିକୁ ଅନାଇ) ଓଃ, ମୁଁ ଏ ଦୃଶ୍ୟ ସହିପାରିବିନି—ମନେହେଉଛି ମୁଁ ନିଜେ ଯେପରି ପୋଡ଼ି ହୋଇ ଯାଉଛି ! (ମୁଖ ଲେଉଟାଇବା—ଇତିମଧ୍ୟରେ ପୂର୍ଣ୍ଣ ଧୀରେ ଧୀରେ ଗୃହରେ ପ୍ରବେଶ କରିଛି । ମାଧବୀ ମୁହଁ ଲେଉଟାଇଲା ବେଳକୁ ସମ୍ମୁଖରେ ପୂର୍ଣ୍ଣ ।)

ମାଧବୀ— (ଆଶ୍ଚର୍ଯ୍ୟରେ) କ'ଣ....ତମେ !

ପୂର୍ଣ୍ଣ— ହଁ, ମୁଁ ଟିକିଏ ଦେଖିବାକୁ ଚାଲି ଆସିଲି । ଇଏ କ'ଣ ପୋଡ଼ିପକାଉଛ ମାଧବୀ ?

ମାଧବୀ— (ଅନୁଚ୍ଚ ସ୍ୱରରେ) ପ୍ରଶ୍ନ-ଉତ୍ତର କରିବାର ସ୍ଥାନ ଇଏ ନୁହେଁ । ତମେ ଯାଅ— ଚାଲିଯାଅ ଏଠୁ —ମୁଁ ଅନୁରୋଧ କରୁଛି ଚାଲିଯାଅ !

ପୂର୍ଣ୍ଣ— ମାଧବି, ମୁଁ ତ କୌଣସି ପାପକାର୍ଯ୍ୟ କରିବାକୁ ଆସିନି—ମୁଁ ଭୀରୁପରି ପଳେଇବି କାଇଁକି ? ତମେ ସିନା ଅପରାଧୀ !

ମାଧବୀ— ସେ ସମ୍ବନ୍ଧ ବୁଝିବାର ସ୍ଥାନ ଏ ନୁହେଁ । ତମେ ଚାଲିଯାଅ, ନଚେତ୍ ବିପଦରେ ପଡ଼ିବ ।

ପୂର୍ଣ୍ଣ— ମୁଁ ନିଜର କୌଣସି ବିପଦକୁ ଡରେନା, ତା' କ'ଣ ଜାଣନି ? ଆଉ ଜୀବନରେ ଏତେ ଅପମାନ ପାଇଲିଣି ଯେ, ଆଉ ଅଧିକା ଅପମାନ ମୋ ପାଇଁ ଜଗତରେ ଥାଇ ନ ପାରେ ।

ମାଧବୀ— କିନ୍ତୁ ମୁଁ ଯେ ଅପମାନ ପାଇବି ।

ପୂର୍ଣ୍ଣ— (ଆଶ୍ଚର୍ଯ୍ୟହୋଇ) ସତ କଥା ତ ! ମୋର ଏ କଥା ଆଦୌ ମନରେ ନ ଥିଲା । ମୁଁ ଆସିଲେ ତମର ଅପମାନ କ'ଣ ମାଧବୀ ? ସେହିଦିନର ଲୋକ ମୁଁ—ଯାହାକୁ ଉପଚାର ଦେଇ ଏଇ ଜାଗାରେ ଅଭ୍ୟର୍ଥନା କରୁଥିଲ ! ସେ କ'ଣ ଏଡ଼େ ନୀଚ, ହୀନ ହୋଇଗଲା

ଯେ, ସେ ଆସିଲେ ତମୁକୁ ଅପମାନ ଲାଗିଯାଉଛି ? ଆଚ୍ଛା ଆଚ୍ଛା, ତେବେ ଯାଉଛି । କେବଳ ତମୁକୁ ଥରେ ଦେଖିଯିବି ବୋଲି ଆସିଥିଲି....

(ଦ୍ୱାର ପର୍ଯ୍ୟନ୍ତ ଚାଲିଯିବା)

ମାଧବୀ— ଶୁଣ ! (ପୂର୍ଣ୍ଣ ଫେରିଆସିଲା)

ମାଧବୀ— ତମେ ଯେ ସେଇପରି ଉଦାସୀନ ଅଛ ! ଇମିତି ହେଲେ ଚଳିବ କିପରି ? ନିଜର ଶୁଭାଶୁଭ ଜାଣିପାରୁନା—ମାନ ଅପମାନ ବୁଝିପାରୁନା—ଲୋକେ କ'ଣ କହିବେ ? ଏଠିକି କି ବୁଦ୍ଧିରେ ଆସିଥିଲ, କହିଲ ?

ପୂର୍ଣ୍ଣ— ମାଧବି, ତମୁକୁ ଥରେ ଦେଖିଯିବାର ପ୍ରବଳ ଇଚ୍ଛା ହେଲା । ମୋର ହଠାତ୍ ଧାରଣା ହେଲା ଯେପରି ତମେ ମତେ ଏକାବେଳକେ ଭୁଲିଗଲଣି । ତାହା ମତେ ଏତେ ତିକ୍ତ କରିଦେଲା ଯେ, ତମ ଚିଠିଗୁଡ଼ିକୁ ଘୃଣାରେ ତମ ପାଖକୁ ଫେରାଇଦେଲି । ଭାବିଥିଲି ସମସ୍ତ ସମ୍ବନ୍ଧ ଛିନ୍ନକରି ତମୁକୁ ସମ୍ପୂର୍ଣ୍ଣରୂପେ ମନରୁ ପୋଛିଦେବି । କିନ୍ତୁ ତା' ଅସମ୍ଭବ ବୋଧହେଲା । ବୃଷ୍ଟିଜଳ ସିନା ଶୁଖିଯାଏ—ଯେଉଁ ଜଳ ପୃଥିବୀର ଅଭ୍ୟନ୍ତର ଭେଦ କରି ଆସିଥାଏ, ସେ ତ ସୂର୍ଯ୍ୟକରରେ ଶୁଖିଯିବାର ନୁହେଁ । ତୁମ ପ୍ରତି ମୋର ପ୍ରୀତି, ମୋ ଜୀବନର ଅନ୍ତସ୍ଥଳରୁ ବାହାରିଛି । ତମେ ସିନା ମତେ ଭୁଲିଗଲ ମୁଁ ତମୁକୁ ଭୁଲିବି କିପରି ? ଏଠାରୁ, ଏ ଜୀବନରୁ ବିଦାୟ ନେବା ପୂର୍ବରୁ ଥରେ ତମୁକୁ ଦେଖିବାକୁ ଆସିଲି । ତମେ ମତେ ଭୁଲିଗଲ ମାଧବି, ନା ? କିନ୍ତୁ କହିଥିଲ ଯେ କେବେ ଭୁଲି ଯିବନି ବୋଲି ! ସେ ଚିଠି ସବୁ ପାଇ ତମେ ମତେ ଥରେ ଡକେଇବ ବୋଲି ଭାବିଥିଲି । ଡାକିଲନି ତ, ମୁଁ ବଳେ ଆସଲି— କିଛି ଅପରାଧ କଲି ?

ମାଧବୀ— ମୁଁ ଭୁଲେ ବା ମନେରଖେ, ସେ ପ୍ରଶ୍ନ ଆଉ ଉଠେଇ ଲାଭ କ'ଣ ? ମନେରଖିଥିଲେ ମଧ ମୁଁ ତମୁକୁ ଡାକନ୍ତି କିପରି ? ମୁଁ ପରା ବିବାହିତା ବର୍ତ୍ତମାନ ? ବାହାରର ଲୋକ ସଂଗେ ମୋର ସଂପର୍କ ରଖିବା ଉଚିତ କି ?

ପୂର୍ଣ୍ଣ— ମୁଁ କ'ଣ ବାହାରର ଲୋକ ? ତମର ବାପା କ'ଣ ସେହିପରି ଭକ୍ତିଭାଜନ ଗୁରୁଦେବ ନୁହନ୍ତି ? ସାର୍ କାହାନ୍ତି ? ମୁଁ ତାଙ୍କୁ ଟିକିଏ ଦେଖାକରି ଯିବି ।

ମାଧବୀ— ମୁଁ ଅନୁରୋଧ କରୁଛି ଏସବୁ ପାଗଳାମି କରନା । ତମେ ନିଜର ଶୁଭାଶୁଭ ଜାଣୁନା— ଜଗତରେ ମଣିଷ ହେବ କିମିତି ?

ପୂର୍ଣ୍ଣ— ମୁଁ ତ ସେ ଉପାୟ ଜାଣେନା ମାଧବୀ !

ମାଧବୀ— ଶୁଣ, ସେ କଥା ସବୁ ଭୁଲିଯାଅ । ବିବାହକରି, ଘରଦ୍ୱାର କରି ଜଗତରେ ମଣିଷ ହୁଅ । ମତେ ଯଦି କେବେ ଭଲପାଇଥାଅ ତେବେ ତମୁକୁ ମୋର ଏ ଶେଷ ଅନୁରୋଧ ।

ପୂର୍ଣ୍ଣ— ଆଚ୍ଛା, ଦେଖିବି, ରଖିପାରିବି କି ନାଇଁ ତମ ଅନୁରୋଧ । କିନ୍ତୁ ନ ପାରିଲେ ? ଆଚ୍ଛା ମୁଁ ଯାଏ—ତମେ ବେଶ୍ ସୁଖୀ ଅଛ ମୁଁ ଦେଖୁଛି—ହେଲ୍‌ଥ ତ ବେଶ୍ ଉନ୍ନତି କରୁଛି । କିଶୋର କାହାନ୍ତି ? (କିଶୋରର ହଠାତ୍ ପ୍ରବେଶ)

ପୂର୍ଣ୍ଣ— ଆରେ ଏଇ ଯେ ! (ମାଧବୀ ସ୍ତମ୍ଭୀଭୂତ ହେଲା)

କିଶୋର— ଦକ୍ଷିଣା ପବନ ପଛେ ପଛେ ଆମ୍ବ ବଉଳ ପରି, ଚିଠି ପଛେ ପଛେ ପ୍ରଣୟୀ ଆସି ହାଜର !

ପୂର୍ଣ୍ଣ— କ'ଣ କହୁଛ କିଶୋର ? କା' କୁ ଲକ୍ଷ୍ୟ କରି ?

କିଶୋର— କହିବି ଆଉ କ'ଣ ? ତମପରି ଠକ-ସାଧୁ, ଆଉ ଏପରି ଠକ-ସତୀଙ୍କ କଥା— ଆଉ କ'ଣ କହିବି ?

ପୂର୍ଣ୍ଣ— କିଶୋର, ତମର ଏପରି କହିବା ଉଚିତ ହେଉନି—ବିଶେଷତଃ ମାଧବୀ ପରି ଅନୁରକ୍ତା ସ୍ତ୍ରୀକୁ— ମୋ' କଥା ସିନା ଭିନ୍ନ !

କିଶୋର— ଚାଲିଯାଅ ଏଠୁ ପ୍ରଥମେ—ପରେ ବକ୍ତୃତା କରିବ ।

ପୂର୍ଣ୍ଣ— ତମେ ଭୟଦେଖାଉଛ କାଇଁକି କିଶୋର ? ଆମେ ତ କୌଣସି ପାପ ବା ଅପରାଧ କରିନୁ ଯେ ଡରିଯିବୁ ।

କିଶୋର— ପ୍ରଥମେ ଯାଅ ଏଠୁ ମୁଁ କହୁଛି । ଆଉ କୁ' ଠି ଭକ୍ତ ମିଳିଲେନି ବୋଲି ଏଇ ସ୍ତ୍ରୀଟି ପାଖକୁ ତମ ଧର୍ମ ପ୍ରଚାର କରିବାକୁ ଚାଲିଆସିଲ ବୋଧହୁଏ ? ପାପ କରିବ କୁଆଡ଼େ ? ତମେ ଯେପରି ଯୁଧିଷ୍ଠିର, ଇଏ ସେମିତି ସାବିତ୍ରୀ ! ଯାଅ ତମେ—

ପୂର୍ଣ୍ଣ— (ଆଶ୍ଚର୍ଯ୍ୟେ) କିଶୋର, ତମେ ମାଧବୀକି ପୁଣି ଏମିତି କଥା କହୁଛ ?

କିଶୋର— ତମ ଓକିଲାତି ଦରକାର ନାହିଁ—ଯାଉଛ ନା ଧକ୍କା ଦେଇ ବାହାରକରିଦେବି ! (ନିକଟକୁ ଯାଇ ପୂର୍ଣ୍ଣ କାନ୍ଧରେ ହାତ ଦେବା)

ମାଧବୀ—(ପୂର୍ଣ୍ଣ ପାଖକୁ ଦଉଡ଼ିଯାଇ) ହାଁ, ଏ କି ଅସଭ୍ୟତା ? ତାଙ୍କ ଦେହରେ ହାତ ଦିଅନି, ଅନୁରୋଧ କରୁଛି—ସେ ନିରପରାଧ—

କିଶୋର— ତୁମରି ପରି ନିରପରାଧ !—ଯାଅ ...(ପୂର୍ଣ୍ଣକୁ ଠେଲିବା)

ମାଧବୀ— ହାଁ, ହାଁ...ହାତ....ଦିଅନା...ଆଘାତ କରନା...

କିଶୋର— ଯାଅ !...

(ପୂର୍ଣ୍ଣେ ଠେଲିହୋଇ ବାହାରକୁ ଉତ୍‌କ୍ଷିପ୍ତ ହେବା ଓ ମାଧବୀ ବୋଲି କ୍ଷୀଣସ୍ୱରରେ ଡାକିବା ।)

ମାଧବୀ— (ବାହାରକୁ ଅନାଇ) ମା' ଲୋ ! (ତଳେ ପଡ଼ିଯିବା)

କିଶୋର—(ଫେରି) ସେ ଅଭିନୟ ରଖିଥା—ଅଧିକ ପ୍ରମାଣ ଦରକାର ନାହିଁ । ତମେ ଯେଉଁ ଅପମାନ ମତେ ଦେଲଣି, ମୁଁ ତମକୁ, ତମ ବାପା-ମା'ଙ୍କୁ ଦାଣ୍ଡରେ ଠିଆ ନ କଲା ଯାଏଁ ଶାନ୍ତିପାଇବିନି । ସେଥିପାଇଁ ପ୍ରସ୍ତୁତ ରହ । (ତ୍ୱରିତ ଗତିରେ ପ୍ରସ୍ଥାନ)

(ଯବନିକା)

## (ଚତୁର୍ଥ ଦୃଶ୍ୟ)

[କଲେଜ ହଷ୍ଟେଲ୍ —ସମୟ ସକାଳ—ନେପଥ୍ୟେ ହାରମୋନିୟମ୍‌ର ଶବ୍ଦ, କୌଣସି ଛାତ୍ର ବୋଧହୁଏ ଅଭ୍ୟାସ କରୁଛି । କିଛିକ୍ଷଣ ବାଦ୍ୟତାନ ପରେ ଜଣେ ଛାତ୍ର ବ୍ରଶ୍ ମୁହଁରେ ମାରି ବାହାରକୁ ଆସିଲେ ଓ ହାରମୋନିୟମ୍‌ର ସ୍ୱର ସଂଗେ ସ୍ୱର ମିଳାଇ ଗୋଟିଏ ଗାନର ପ୍ରଥମ ଦୁଇଧାଡ଼ି ଗାଇଲେ ।–

ଆଜି କି ରଜନୀରେ ହୋଇବ ଦେଖା
ଲିଭିବ ହୃଦୟର ବିଷାଦରେଖା...

ଗୀତ ଗାଉ ଗାଉ ଡାକିବାକୁ ଲାଗିଲେ– ''ଏ ବିଶି, ବିଶିରେ, ଉଠିନୁ କିରେ—ଏଣିକି ଆ'ରେ—'' ଇତ୍ୟାଦି । ଡାକିସାରି ଦାନ୍ତଘଷା ହେଲା ଓ ଗୀତ ଚାଲିଲା । ଇତିମଧ୍ୟରେ ବିଶ୍ୱନାଥ ପହଁଚିଗଲେ—ତାଂକ ହାତରେ ମଧ୍ୟ ବ୍ରଶ୍ ]

ବିଶ୍ୱନାଥ– କିରେ ପ୍ରମୋଦ, ଭାରି ମନ୍‌ଖୁସ୍ ଅଛିରେ ତୋର ! କ'ଣ ଘଟିଛି କି ? କମଳା ତତେ ପୁ'ଣି କଥା କହିଲା କିରେ !

ପ୍ରମୋଦ– ନାଇଁ ବେ !....ଆରେ ଏ ହାରମୋନିୟମ୍ ବଜାଉଥିଲା କିଏ ? ରାଜୁ ? ବେଶ୍, ବଜେଇଲାଣି ତ ! ତୁ ଏତେବେଳଯାଏ ଶୋଇଁଥିଲୁ କାଇଁକି ?

ବିଶ୍ୱନାଥ– ଆରେ ଭାଇ କାଲି ତାସବିଡ଼ା ଧରି ବସିଗଲୁ ଯେ, ଖେଳୁ ଖେଳୁ ରାତି ଗୋଟେ । ନରେନ୍ ବୁଢ଼ା ଆମ ସାଥିରେ ମିଶି ନିଜେ ନିଜେ ଷ୍ଟୋଭ୍ ଜାଳି ଆମକୁ କପେ କପେ ଚା ଦେଇଗଲା—ତା'କୁ ପିଇ ତ ଖେଳୁଛୁ !

ପ୍ରମୋଦ୍– ଆରେ ମାଧବୀ ଉଦ୍ୟାନର ଖବର ଶୁଣିଲୁଣି ?

ବିଶ୍ୱନାଥ– କ'ଣ ରେ ! ଆଉ କ'ଣ ଘଟିଲା କି ?

ପ୍ରମୋଦ– ଆରେ କିଶୋର ଆଉ ତା' ସ୍ତ୍ରୀ କଟକ ଆସିଛଁତି । ଆସିଲାଦିନୁ ତା' ସ୍ତ୍ରୀ ଆଉ ପୂର୍ଣ୍ଣ ଭିତରେ କୁ'ଠି ଖାଲି ଚିଠିପତ୍ର ଚାଲିଥିଲା ।

ବିଶ୍ୱନାଥ– ସତେ ! ଚଠିପତ୍ର ନିଏ ଆଣେ କିଏ ମ ?

ପ୍ରମୋଦ– ସେଇ ଫାଷ୍ଟ୍‌ଇୟରର୍ ଛନଛନିଆ ଟୋକା—ତା' ନାଁ କୃଷ୍ଣ ନା କ'ଣ—କିଶୋରର ଶଳା ।

ବିଶ୍ୱନାଥ– ଭଲ ଦୂତ ତା' ହେଲେ ! ତା' ପରେ ?

ପ୍ରମୋଦ– ସେ ଗାର୍ଲ କୁ'ଠି ପୂର୍ଣ୍ଣକୁ ତା' ଘରକୁ ଡାକିପଠେଇଲା । ପୂର୍ଣ୍ଣ କୁଆଡ଼େ କାଲି ଲୁଚି ଲୁଚି କିଶୋର ନ ଥିବାବେଳେ ସେ ଗାର୍ଲ ସଂଗେ ଦେଖାକଲା ।

ବିଶ୍ୱନାଥ– (ମୁହଁ ଧୋଉ ଧୋଉ) ରହ ଭାଇ ରହ; ବଡ ମଜା କଥା—ମୁଁ ସାରିନିଏ ଏ କାମଟା ।

ପ୍ରମୋଦ– ହଉ ମୁଁ ବି ସାରିନିଏ–

(ମୁହଁ ଧୋଇବା—ମୁଁହ ପୋଛି ପୋଛି ପୁଣି କଥା)

ବିଶ୍ୱନାଥ— ତା' ପରେ ?

ପ୍ରମୋଦ— ତା' ପରେ କୁ'ଠି ପୂର୍ଣ୍ଣ ସେ ଗାର୍ଲ୍‌କୁ କୀସ୍ ଦେଉଥିଲାବେଳେ....

ବିଶ୍ୱନାଥ— କୀସ୍...ବାଃ, ହଁ, କୀସ୍ ଦେଉଥିଲାବେଳେ କ'ଣ ହେଲା ?

ପ୍ରମୋଦ— କୀସ୍ ଦେଉଥିଲାବେଳେ କିଶୋର ଆସି ପହଁଚିଗଲା ।

ବିଶ୍ୱନାଥ— ଇଏ ତ ବଢ଼ିଆ ରୋମାନ୍‌ସ—ଆମକୁ ହେଲେ ମିଳନ୍ତା ! ସେଇଠୁ ?

ପ୍ରମୋଦ— କିଶୋର କୁ'ଠି ସାଂଗେ ସାଂଗେ ପୂର୍ଣ୍ଣକୁ ଟାଁକେ ଛେଚିଲା ।

ବିଶ୍ୱନାଥ— ସତେ ! ହଁ, ଏବେ ଭାସିଗଲା କ'ଣ ? ଗୋଲାପ ତୋଳି ହାତରେ କଣ୍ଟା ଫୋଡ଼ି ହେଲେ କ୍ଷତି କ'ଣ ବା ?

ପ୍ରମୋଦ— ଆଉରି ମଜା ଅଛି ବେ, ଶୁଣ୍ । କିଶୋର ଯେତେବେଳେ ମାରିବାକୁ ବସିଲା, ସେ ଗାର୍ଲ କୁ'ଠି ପୂର୍ଣ୍ଣକୁ କୁଣ୍ଢେଇ ଧରି କହିଲା— ମତେ ମାର ପଛେ ତାଂକ ଦେହରେ ହାତ ଦିଅ ନା ।

ବିଶ୍ୱନାଥ— ବାଃ, ବାଃ, ପୂର୍ଣ୍ଣବାବୁ ! ହଇରେ, କିଶୋର ୱାଇଫଟା ଇମିତି ସତେ !

ପ୍ରମୋଦ— ଯାଛାତାଇ ଭାଇ ! ବିଭା ପୂର୍ବରୁ ତା'ର ବହୁତ ଲଭର୍ ଥିଲେ ନା— ପୂର୍ଣ୍ଣ ସିନା ଭାବୁଥାଏ ସେଇ ଏକାଙ୍ଗଚକ୍ରବର୍ତ୍ତୀ ! ଫୁଲ୍ !

ବିଶ୍ୱନାଥ— ଏ କୁ' ଦିନର ଘଟଣା ମ ! ତୁ ଶୁଣିଲୁ କା'ଠୁ ?

ପ୍ରମୋଦ— କଥା ରହୁଛି ? କାଆଲି ଏ ଘଟଣା ଘଟିଛି । କୁଞ୍ଜ ତ କିଶୋରର ଇଣ୍ଟିମେଟ୍ । ସେ କାଲି ସଞ୍ଜବେଳେ ଟାଉନ୍‌କୁ ଯାଉଥିଲା । ନଈକୂଳରେ କିଶୋରକୁ ଏକା ବସିଥିବାର ଦେଖି ତା' ପାଖକୁ ଯାଇ ଏସବୁ କଥା ଶୁଣିଆସିଲା— କିଶୋର କୁଆଡ଼େ ଡାଇଭର୍ସ-ସୁଟ୍ ଆଣିବ ବୋଲି ଭାବୁଛି ।

ବିଶ୍ୱନାଥ— ଆଣିବାର କଥା ! ମୁଁ ତ ସାଙ୍ଗେ ସାଙ୍ଗେ ସୁଟ୍ କରି ଦେଇଥାଁତି ! ଓଃ, ମଡ଼ର୍ଣ୍ଣ ଗାର୍ଲଗୁଡ଼ାକ ଇମିତି ହେଲେଣି ସତେ !

ପ୍ରମୋଦ— କହନା ସେ କଥା ଭାଇ । ବାପା କାଶୀବାବୁ ଓକିଲ ଝିଅ ସଂଗେ ମୋର ବିଭା ଘରର ଯୋଗାଡ଼ ଲଗେଇଛନ୍ତି—ସେ ଟୋକି ଗାର୍ଲ ସ୍କୁଲରେ ପଢେ । ମୁଁ ନିଶ୍ଚେ ମନା କରିଦେବି—ଭାଇ, ଏଇଥିରୁ ଗୋଟେ ଗୋଟେ ଆଣିବା ଯାହା, ପ୍ରଷ୍ଟିଚ୍ୟୁଟ୍ ରଖିବା ସେଇଯା....ଆରେ ହେ...ଅନେଇଲୁ, ସେଇ ଟୋକା ତ ! ସେଇ କୃଷ୍ଣ ସକାଳୁ କୁଆଡ଼େ ଦଉଡ଼ିଛି—ଆଉ କ'ଣ ପୁଣି ଘଟିଲା କି ?

ବିଶ୍ୱନାଥ— ହଁ ତ ସେଇ—ପୂର୍ଣ୍ଣ କୁ'ଠି ?

ପ୍ରମୋଦ— ପୂର୍ଣ୍ଣ, ତା' ଖଂଜାରେ କବାଟ ବୁଜି ଶୋଇଛି । କାଲି ସେ ବଜାରରୁ ଫେରିଲା ବେଳେ ମୁଁ ଦେଖିଛି—ମୁହଁ ପୋତି ପୋତି ଯାଉଥିଲା—ମୁଁ କିଛି ପଚାରିଲିନି...ତା' ଲାଜ ତାକୁ ଖାଉଛି ।

ବିଶ୍ୱନାଥ— ଏ ଟୋକା ବୋଧହୁଏ ପୂର୍ଣ୍ଣକୁ ଡାକିବାକୁ ଆସିଛି । ଗୋଟେ ଘାଣ୍ଟ-ଚକଟ ଲାଗିବ ଜଣାପଡ଼ିଲାଣି—ମଜାର କଥା ହେବ—ଯାଠୁ ଖବର ବୁଝୁ ତ !

(କୃଷ୍ଣର ପ୍ରବେଶ)

ପ୍ରମୋଦ— (କୃଷ୍ଣ ଚାଲିଯାଉଥିଲାବେଳେ) କୁଆଡ଼େ ଅଇଲେ ଏଡ଼େ ସକାଳୁ ? ପୂର୍ଣ୍ଣ ପାଖକୁ ?

କୃଷ୍ଣ— ହଁ, ପୂର୍ଣ୍ଣବାବୁ ରୁମ୍‌ରେ ଥିବେ ତ ?

ବିଶ୍ୱନାଥ— ହଁ ଥିବେ । ରୁମ ସେଭେଣ୍ଟି ଫୋର୍—ସେଣେ—

ପ୍ରମୋଦ— କି କାମ ? କ'ଣ ଜରୁର୍ ?

କୃଷ୍ଣ— ହଁ, ଖୁବ୍ ଜରୁର୍ !

ପ୍ରମୋଦ— ତେବେ ଆପଣ ଏ'ଠି ଥାଁନ୍ତୁ—ମୁଁ ଡାକିଦଉଛି ତାକୁ ।

କୃଷ୍ଣ— ନାଁ, ମୁଁ ନିଜେ ତାଂକ ପାଖକୁ ଯିବି ।

ପ୍ରମୋଦ— ସେ ଏଇକ୍ଷଣି ଶୋଇଥିବ—ତାକୁ ଉଠେଇବା ଆପଣଙ୍କ ହାତରେ ହବନାହିଁ । ଆପଣ ଥାଆନ୍ତୁ...(ପ୍ରସ୍ଥାନ)

ବିଶ୍ୱନାଥ— ପୂର୍ଣ୍ଣବାବୁ ଆପଣଙ୍କର କଅଣ ହୁଅନ୍ତି ?

କୃଷ୍ଣ— (ମୁହଁପୋତି) କିଛି ନୁହେଁ ।

ବିଶ୍ୱନାଥ— ତେବେ ଆସିଛନ୍ତି କାହିଁକି ? ଚିହ୍ନା ?

କୃଷ୍ଣ— ହଁ ।

(କୁମୁଦର ପ୍ରବେଶ)

କୁମୁଦ— କି, ତମେ ଯେ ! ଶୁଖିଲା ଦେଖାଯାଉଛ କାହିଁକି ? ଏଡ଼େ ସକାଳୁ ଏଠି ?

କୃଷ୍ଣ— ପୂର୍ଣ୍ଣ ବାବୁଙ୍କୁ ବାପା ଡକେଇଚନ୍ତି ।

କୁମୁଦ— ଅପାହେରିକା ଏଠି ଅଛନ୍ତି ତ ? (କୃଷ୍ଣ ନୀରବ ରହିଲା)

କୁମୁଦ— ଅଛନ୍ତି ବୋଧହୁଏ ? କିଶୋର ?

(କୃଷ୍ଣ ନୀରବ—ପୂର୍ଣ୍ଣ ଓ ପ୍ରମୋଦର ପ୍ରବେଶ)

ପୂର୍ଣ୍ଣ— କିଏ କୃଷ୍ଣ, ସକାଳୁ କଅଣ କାମ ?

କୃଷ୍ଣ— ବାପା ଏଇ ଚିଠିଟା ଦେଇଛନ୍ତି—ଆପଣ ଆସନ୍ତୁ ଯିବେ ।

(ଚିଠି ପ୍ରଦାନ—ପୂର୍ଣ୍ଣ ଚିଠି ଖୋଲି ପଢ଼ିଲାଗିଲା-ସମସ୍ତେ ଉଦ୍‌ଗ୍ରୀବ ହୋଇ ତାହା ଆଡ଼କୁ ଅନେଇ ରହିଲେ—ପ୍ରମୋଦ ଅଯାଚିତ ଭାବରେ ପୂର୍ଣ୍ଣ କାଂଧ ପଛରୁ ଚିଠି ପଢ଼ିବାର ଚେଷ୍ଟା କରିବା—ବିଶ୍ୱନାଥ ମଧ୍ୟ ।)

ପୂର୍ଣ୍ଣ— କୃଷ୍ଣ, ଏ କଅଣ ସତ୍ୟ ?

କୃଷ୍ଣ— ହଁ...(କ୍ରନ୍ଦନୋଦ୍ୟତ)

କୁମୁଦ— କଥା କଅଣ ?

ବିଶ୍ୱନାଥ— ଆରେ, ପିଲାଟି କାନ୍ଦିଲା କାହିଁକି !

ପୂର୍ଣ୍ଣ— କୁମୁଦ, ମାଧବୀ ଆତ୍ମହତ୍ୟା କରିଛି—ଏଇ ତା'ର ପତ୍ର ।

କୁମୁଦ— କଅଣ !

ପ୍ରମୋଦ— ସତେ !

ବିଶ୍ୱନାଥ— ଏଁ !

ପୂର୍ଣ୍ଣ— (କୃଷ୍ଣଆଡ଼କୁ ଯାଇ) ଭାଇଟି ମୋର, କାନ୍ଦନାଁ !

ପ୍ରମୋଦ— ଭଣ୍ଡ ପୂର୍ଣ୍ଣ, ଏ ସଂବାଦ ସଙ୍ଗେ ତମର ସୁଇସାଇଡ୍ ହୋଇଥିଲେ ଆମେ ସୁଖୀ ହୋଇଥା'ନ୍ତୁ । ସାଧୁଲୋକପରି ସାନ୍ତ୍ୱନା ଦଉଛ କ'ଣ ? ଆମେ ସବୁ କଥା ଜାଣୁ ! ତମରି ଯୋଗୁଁ ଗୋଟେ ଗାର୍ଲ ପ୍ରାଣହରେଇଲା ।

ପୂର୍ଣ୍ଣ— ମୋ ଯୋଗୁ ? ହେଲା ଏବେ— ମୁଁ ପ୍ରାୟଶ୍ଚିତ୍ତଲାଗି ପ୍ରସ୍ତୁତ ଅଛି !

ପ୍ରମୋଦ—ତମରି ଯୋଗୁ ! ବିଭାହୋଇଗଲା ପରେ ତା' ସଂଗେ ତମେ କି ରସିକତାରେ ପ୍ରଣୟ କରୁଥିଲ !

ପୂର୍ଣ୍ଣ— ପ୍ରମୋଦ, ସାବଧାନ ହୋଇ କଥା କହ—ସେ (କୃଷ୍ଣଆଡ଼କୁ ଦେଖାଇ) ଅଛନ୍ତି ପରା ! ଆଚ୍ଛା କୃଷ୍ଣ, ତମେ ଯାଅ—ମୁଁ ଯାଉଛି ପଛରେ । (ରୋରୁଦ୍ୟମାନ କୃଷ୍ଣର ପ୍ରସ୍ଥାନ) ପ୍ରମୋଦ, ତମେ ମତେ ଏଥର ଯାହା ଇଚ୍ଛା ତାହା ବକିପାର । ତମେ ଭୁଲ ଶୁଣିଛ ବୋଧହୁଏ—ମୁଁ ପ୍ରଣୟ କରିବାକୁ ଯାଇ ନ ଥିଲି ।

ପ୍ରମୋଦ— ଭୁଲଶୁଣିଛି ? କିଶୋର ହାତରୁ ଟାଁକେ ମାଡ଼ ଖାଇ ଆସି ଲାଜ ନାହିଁ ଆଉରି, କଥା କହୁଛ ? କେତେ ଦିନ ଆଉ ଭଣ୍ଡତପସ୍ୱୀ ସାଜିବ ?

ପୂର୍ଣ୍ଣ— ପ୍ରମୋଦ, ମୁଁ କେବେହେଲେ ନିଜକୁ ସାଧୁ ବୋଲି ପରିଚୟ ଦେଇନି— ତମେ ସେ ପ୍ରକାର ଦୋଷାରୋପ କରୁଛ କାହିଁକି ? ଏ ଦୁଃଖବେଳେ ତମ ସଂଗେ କି ଯୁକ୍ତି କରିବି ଭାଇ ? ତମ ଇଚ୍ଛାନୁସାରେ ତମେ ମତେ ବକିପାର—ବକ । ମାଧବୀର ମୃତ୍ୟୁର କାରଣ ବୋଲି କହୁଛ ମତେ ? ମୁଁ ହୋଇପାରେ । କି ପ୍ରାୟଶ୍ଚିତ୍ତ କରିବି କହିଲ ଭାଇ ! କୁମୁଦ, ଯିବି ମଧୁବାବୁଙ୍କ ଘରକୁ ? କାଇଁକି ଯିବି ? ମାଧବୀର ଜୀବନହୀନ ଦେହ ଦେଖିବି କିପରି ? ଆଣ ସେ ପତ୍ର, ତାକୁ ଭସ୍ମ କରେ ! ଓଃ....

(ତାଳୁରେ ହାତଦେବା)

ପ୍ରମୋଦ— ଆଚ୍ଛା, ସେ ଚିଠି ପଢ଼ିଲ, କ'ଣ ଲେଖାଥାଇପାରେ— କୁମୁଦ ପଢ ନା...

କୁମୁଦ— ଶୁଣ ପ୍ରମୋଦ—ମୋର ବଂଧୁ ଓ କୃଷ୍ଣ-ଭଉଣୀ ନାଁରେ ତମେ ଓ ତମର ସାଂଗମାନେ ନାନାପ୍ରକାର କୁତ୍ସାରଟନା କରିଥାଅ । ପରନିନ୍ଦା ତମର ଦୈନନ୍ଦିନ କର୍ମ୍ମ । କିନ୍ତୁ ଗୋଟିଏ

ବାଳିକାର ଏଇ ପତ୍ର ତମର ଜଘନ୍ୟ ଅଭ୍ୟାସର ତୀବ୍ର ପ୍ରତିବାଦ ହେଉ । ଶୁଣ କ'ଣ ଲେଖାହୋଇଛି—ଏହାର ପ୍ରତ୍ୟେକ ଅକ୍ଷର ଶରପରି ତମ ମସ୍ତିଷ୍କରେ ବିଦ୍ଧହୋଇ ତମର ଚେତନା ଆଣୁ । ଶୁଣ—(ଚିଠି ପଢ଼ିଲେ)

''ପ୍ରିୟ ବଂଧୁ,

ତମ ସାଂଗରେ ବିବାହ ପ୍ରସ୍ତାବ ହେଲାଦିନୁ ମୋର ଗୋଟିଏ ଇଚ୍ଛା ଥିଲା— ତମ ପଦତଳେ ମୁଣ୍ଡରଖି ମୁଁ କିପରି ମରିଥା'ନ୍ତି । ବିବାହ ତ ହେଲାନି । ତମ ପଦତଳେ ମୁଣ୍ଡ ନ ଦେଲେ ମଧ ତମ ଆଗରୁ ମଲି—ଏହାହିଁ ମୋର ସୌଭାଗ୍ୟ । ଆଜି ଆଖିରେ ତମପ୍ରତି ବର୍ବର ବ୍ୟବହାର ଦେଖିଲି—ମୋ ପ୍ରତି ଯେଉଁ ବ୍ୟବହାର ତା' ତମେ ଦେଖିନା କେବେ । ବିବାହ ପୂର୍ବରୁ ତମେଇ ମୋର ଦେବତା ଥିଲ— ସେ କଥା କ'ଣ ନୂଆ କରି କହିବି ? ମୋର ସ୍ୱାମୀ ସେ ପ୍ରସ୍ତାବ ଭାଙ୍ଗି ମତେ ନେଲେ । ବିବାହ ଦିନୁ ପତ୍ନୀର ଯାହା କର୍ତ୍ତବ୍ୟ ମୁଁ ପ୍ରାଣପଣେ କରିଛି ! କିନ୍ତୁ ତାଙ୍କର ବଦ୍ଧମୂଳ ଧାରଣା ଯେ ମୁଁ ତମ ସାଥିରେ ଗୋପନପ୍ରଣୟ କରୁଛି । ବାପାଙ୍କର ଓ ତମର ସମ୍ମାନ ରକ୍ଷା ଲାଗିହିଁ ବିବାହ ବରଣକଲି ଓ ହୃଦୟର ସ୍ୱାଭାବିକ ଅନୁରାଗ ଉପରେ ପଥର ଲଦି ହିନ୍ଦୁନାରୀର କର୍ତ୍ତବ୍ୟ କରିବାକୁ ଲାଗିଲି । କିନ୍ତୁ ଦେଖିଲି ଯେ ନିସ୍ତାର ନାହିଁ । ଆଜିର ଘଟଣା ପରେ ମୋର ଓ ତମର କଳଂକ ବଢ଼ିବ ସିନା କମିବ ନାହିଁ ଦେଖି, ଏହି ଅନ୍ୟାୟ ଓ ମିଥ୍ୟାର ଶେଷ କରିବା ପାଇଁ ମୁଁ ମୃତ୍ୟୁକୁ ବରଣକରୁଛି । ମୋର ଆଗରେ ଶଶୁରଘରର ବିଭାଘରିଆ ପାଟ ମୋଡ଼ା ହୋଇ ଥୁଆହୋଇଛି—ଯେଉଁଥିରେ ଏ ଜୀବନର ଦୁଃଖ ଆରମ୍ଭ ସେଇଥିରେ ମୋର ଦୁଃଖର ଅବସାନ ହେଉ । ମୋର ଅନୁରୋଧ ତମେ ଘରଦ୍ୱାର କରି ପରସେବା, ପରୋପକାରରେ ଜୀବନପାତ କରିବ । ତା' କଲେହିଁ ମୁଁ ପରପାରରେ ସୁଖୀ ହେବି । ମୁଁ ବାପା ଓ ମୋର ସ୍ୱାମୀଙ୍କ ପାଖକୁ ଅଲଗା ପତ୍ରରେ ସମସ୍ତ କଥା ଖୋଲି କହିଛି । ବିଦାୟ —ଆର ପାଖରେ ଅପେକ୍ଷା କରିଥିବି....

ତମର ମାଧବୀ''

(ଇତି ମଧରେ ଅନେକ ପିଲା ଜମାହୋଇ ନୀରବରେ ଚିଠିପାଠ ଶୁଣୁଥିଲେ)

କୁମୁଦ— ଶୁଣିଲ ସବୁ ? ଏଇ ବାଳିକାର ବୁଦ୍ଧି ଓ ହୃଦୟ ତମମାନଙ୍କଠି ଥିଲେ ଏ ଦେଶର ଅବସ୍ଥା ଏପରି ହୋଇନଥାନ୍ତା ।

(ସମାଗତ ଛାତ୍ରମାନଙ୍କ ମଧରେ ଗୋଟିଏ କୋଳାହଳର ଗୁଂଜନ—'କଥା କ'ଣ ?'ଆତ୍ମହତ୍ୟା !' 'କିପରି' ? 'ପଟାସିୟମ୍ ସାଇନାଇଡ୍ ?' 'ଆରେ ନା, ଲୁଗା ଲଗାଇ !' 'ଆହା' 'ଚୁ ଚୁ'—ଇତ୍ୟାଦି ରବ)

ପୂର୍ଣ୍ଣ—କୁମୁଦ, ଥାଉ ଏ ସବୁ ! ବର୍ତ୍ତମାନ ଚାଲ ଶୀଘ୍ର ମଧୁବାବୁଙ୍କ ଘରକୁ । ନ ଗଲେ ହେବ କିପରି ? ତାଙ୍କୁ ନାନା ଭାବରେ ସାହାଯ୍ୟ କରିବାକୁ ହେବ । ବଡ଼ ଦୁଃଖ ତାଙ୍କର ସତେ । ଦୁଃଖରେ ମୁହ୍ୟମାନ ହେଇଯାଇଥିବେ ସେ—ବଡ଼ ଭାବପ୍ରବଣ ଲୋକ ! ଚାଲ—ମରାଳ ମୃଣାଳକୁ ଯେ କେବଳ ଛିନ୍ନ କରେ ତା' ନୁହେଁ, ତନ୍ତୁକୁ ଭିନ୍ନକରି ବିସଖଣ୍ଡ ଘେନି

ପଳାୟନ କରେ ମଧ୍ୟ । ମୋର ଜୀବନ ଦ୍ୱିଖଣ୍ଡିତ ହୋଇଥିଲା-କିନ୍ତୁ ତନ୍ତୁ ଲାଗିରହିଥିଲା । ଏବେ ସେ ତନ୍ତୁଟିକ ମଧ୍ୟ ଛିନ୍ନ ହେଲା । ଆସ...

କୁମୁଦ ଓ ପୂର୍ଣ୍ଣର ପ୍ରସ୍ଥାନ—(ପୁନର୍ବାର କୋଳାହଳ—'ହଇରେ ଏମିତି କଥା ତ ଶୁଣା ନଥିଲା' । 'ଉପନ୍ୟାସ ପରି ଲାଗୁଛି' 'ଏକ୍‌ଟା ଥ୍ରୀଲ୍' 'ପୂର୍ଣ୍ଣ ଭାଗ୍ୟବାନ୍' 'କିଶୋରଟା ବର୍ବର'...ଇତ୍ୟାଦି ରବ ଓ 'କଥା କ'ଣ ବିଶ୍ୱନାଥ' ପ୍ରଭୃତି ଜିଜ୍ଞାସା ଏବଂ 'ଚାଲ' ପ୍ରେୟାର୍ ରୁମ୍‌ରେ ଶୁଣିବ ଇତ୍ୟାଦି ଉତ୍ତର ମଧ୍ୟରେ ଅଧିକାଂଶଙ୍କ ପ୍ରସ୍ଥାନ—ଶେଷରେ କେବଳ ବିଶ୍ୱନାଥ ଓ ପ୍ରମୋଦ ରହିଲେ ।)

ବିଶ୍ୱନାଥ—ବାଃ, କିମିତି ଗାର୍ଲଟାଏ ସେ ! ପୂର୍ଣ୍ଣବାବୁ ବାସ୍ତବିକ୍ ଭାଗ୍ୟବାନ୍ । ଆଜିକାଲିକା ଗାର୍ଲ ଭିତରେ ପୁଣି ଏମିତି କ୍ୟାରାକ୍‌ଟାର ଥାଁତି ! ତୁ ଗୋଟେ କା'ଠୁ କଦର୍ଯ୍ୟ କଥା ଶୁଣି ତା' ନାଁରେ କହୁଥିଲୁ ବେ ? ଏ ଗୁରାକ ଡାହା ମିଛ !

ପ୍ରମୋଦ—ଆରେ କୁଂଜ ମତେ କହିଲା—ମୁଁ ଜାଣେ କ'ଣ ?

ବିଶ୍ୱନାଥ—ପରନିନ୍ଦା ବାସ୍ତବିକ ଏଇପରି ପ୍ରଚାର ହୁଏ । ଯାଃ, ଇମିତି ଗାର୍ଲଟା ବିରୁଦ୍ଧରେ ଏଗୁଡ଼ାକ କହିଲୁ !

(ପ୍ରସ୍ଥାନୋଦ୍ୟମ)

ପ୍ରମୋଦ—ଯା' ବା, କେତେ ସତୀ ଦେଖିଛି । ତୁ ଏ ଗାର୍ଲଂକ ସଂଗେ ମିଶିନୁ ବୋଲି ତତେ ଭାରି ଗୋଟାଏ ଲାଗୁଛି ! ମୁଁ ସେଗୁଡ଼ାଁକ ନାଡ଼ି ଚିପିଚି ବେ ! ହଉ ମୁଁ ଯାଏ, ସେ କୁଂଜ ହୁଣ୍ଡାଟାକୁ ପଚାରେ..(ପ୍ରସ୍ଥାନ) (ଯବନିକା)

## (ପଞ୍ଚମ ଦୃଶ୍ୟ)

[ମଧୁବାବୁଙ୍କ ଘର—ଶୂନ୍ୟ ନିର୍ଜନ କକ୍ଷରେ ମଧୁବାବୁ ଚିନ୍ତାମଗ୍ନ ହୋଇ ଆସୀନ । କିଛିକ୍ଷଣ ପରେ ବାହାରୁ 'ସାର୍' 'ସାର୍' ଧ୍ୱନି । ମଧୁବାବୁ ତା' ଶୁଣି ମୁଣ୍ଡ ଟେକିଲେ ଓ ଉତ୍ତରଦେଲେ ।]

ମଧୁବାବୁ— ଆସ ପୂର୍ଣ୍ଣ ! ଆସ !

(ନୀରବତା—କିଛିକ୍ଷଣ ପରେ ପୂର୍ଣ୍ଣ ଓ କୁମୁଦର ପ୍ରବେଶ)

ମଧୁବାବୁ— (ମୁଣ୍ଡପୋତି)ଶେଷକରିଦେଲ ?

ପୂର୍ଣ୍ଣ— (ଉଦାସୀନ ଭାବରେ) ହଁ, ସବୁ ଶେଷ !

ମଧୁବାବୁ— (ଅଶ୍ରୁବ୍ୟାକୁଳ କଣ୍ଠରେ) ବାପା ପୂର୍ଣ୍ଣ, ସତେ ଶେଷକରି ଆସିଛ ସବୁ ? ମୋର କିନ୍ତୁ ମନେହେଉନି ଯେ ବାୟାଣୀ ମୋର ଚାଲିଗଲା । ମନେହେଉଛି ସେ ଫେରିଆସିବ, ବାପା ବାପା ଡାକି ଏ ଦଗଧ ପ୍ରାଣକୁ ଶୀତଳ କରିବ—ଭାଇ ଭଉଣୀଙ୍କୁ ସ୍ନେହକରିବ—

ଏ ଘରକୁ ଆଲୁଅ କରିବ । ସେ ବୋଧହୁଏ କା' ଘରକୁ ଯାଇଛି—ଫେରିଆସିବ ସେ ନିଶ୍ଚୟ । ବାପାକୁ ଛାଡ଼ି ସେ ତ ରହିପାରେନି—ସେ କ'ଣ ଏଡ଼େ ନିଷ୍ଠୁର ହେବ ? ଦାଣ୍ଡର କୁଷ୍ଠରୋଗୀଟାଏ, ଭିଖାରିଟାଏ ଦେଖିଲେ ଯେ କାନ୍ଦି କାନ୍ଦି ଭାତ ଖାଏନି, ସେ କ'ଣ ତା' ବାପାର କାନ୍ଦ ଶୁଣିବନି—ନିଶ୍ଚୟ ଶୁଣିବ । ମା' ମୋର କୁଆଡ଼େ ଗଲୁ ? ଟିକିଏ ହେଲେ ପଛକୁ ଚାହିଁଲୁନି ? ବାପା-ବୋଉର ଛାତିରେ ଛୁରି ମାରି କୁଆଡ଼େ ଗଲୁ ମା'ମୋର ? ବାପା ପୂର୍ଣ୍ଣ, ମୋ ମା'କୁ ତମେ କୁଆଡ଼େ ନେଲ ?

(ପୂର୍ଣ୍ଣ ଉପରକୁ ଆଉଜି କାନ୍ଦିବା)

ପୂର୍ଣ୍ଣ— କୁମୁଦ, ୟାଂକୁ କି ପ୍ରବୋଧ, କି ସାନ୍ତ୍ୱନା ଦେବା ? ଏ ତ ପାଗଳ !

କୁମୁଦ—ବାସ୍ତବିକ ଯେ ! (ମଧୁବାବୁଙ୍କୁ) ଘରେ ଆଉ ଲୋକେ ସବୁ କାହାନ୍ତି ?

ଆପଣ ଆଜି ସ୍କୁଲକୁ ଯିବେ ତ ?

ମଧୁବାବୁ— (ପୂର୍ଣ୍ଣ ଉପରୁ ଉଠି) ସେମାନେ ସବୁ ଗାଧୋଇ ଯାଇଛନ୍ତି । ସ୍କୁଲକୁ ଯିବି—ଯିବି ଯେ—ଖାଇବାକୁ ଦେବ କିଏ ? ମାଧବୀ ନ ପରଶିଲେ ମତେ ଖାଇବାକୁ ଇଚ୍ଛା ହୁଏନା ଯେ ! ମା'ଲୋ, ମତେ ତୁ ଉପାସ ରଖେଇବୁ ? ତୋ ମନରେ ଏଇୟା ଥିଲା ? ମା' ମୋର ! (ଆକୁଳ କ୍ରନ୍ଦନ)

କୁମୁଦ— ଆପଣ ବୁଝିବାଶୁଝିବା ଲୋକ ହୋଇ ଯଦି ଏପରି ହେବେ, ତେବେ ଅନ୍ୟଙ୍କୁ କ'ଣ କହିବା କହିଲେ ? ଆପଣପରା ଗୀତା ପଢ଼ନ୍ତି ପ୍ରତିଦିନ— ଏଇ କ'ଣ ତା'ର ଫଳ ? ଛି ! (ଲୁହ ପୋଛିବା)

ମଧୁବାବୁ— ଏ ମନ କି ମାନେ ଯେତେ ହେଲେ !...(ଲୁହ ପୋଛି ପୋଛି)

ଆଚ୍ଛା ହଉ, ତମେ ସବୁ ବସ—ବସ ପୂର୍ଣ୍ଣ !

କୁମୁଦ— ବସିବୁ ଆଉ କାହିଁକି ? ଆମେ ଯିବୁ ଏଥର.....।

ମଧୁବାବୁ— ଆଚ୍ଛା, ଯାଆନ୍ତୁ । ମତେ ଯେପରି ସାହାଯ୍ୟ କଲେ ତା' ମୁଁ ଜନ୍ମେ ଜନ୍ମେ ମନେ ରଖିଥିବି ।

ପୂର୍ଣ୍ଣ— (ମଧୁବାବୁଙ୍କ ପାଖକୁ ଯାଇ) ସାର୍, ମୋତେ ଆପଣଙ୍କ ପଦଧୂଳି ଦିଅନ୍ତୁ (ହାତ ବଢ଼େଇବା)

ମଧୁବାବୁ— କଥା କ'ଣ ପୂର୍ଣ୍ଣ ? ତମେ କ'ଣ କୁଆଡ଼େ ଯାଉଛ ? ଗାଁକୁ ?

ପୂର୍ଣ୍ଣ— ନାଁ, ଗାଁକୁ ନୁହେଁ କି କେଉଁଠିକି ନୁହେଁ । ମୁଁ ବର୍ତ୍ତମାନ ନଷ୍ଟନୀଡ଼ ପକ୍ଷୀ—ମୋର ସବୁ ନଷ୍ଟହୋଇଛି । ବର୍ତ୍ତମାନ ଯେଉଁଠାକୁ ଇଚ୍ଛା ସେଠାକୁ ଯିବି ।

ମଧୁବାବୁ— ଉଦ୍ଦେଶ୍ୟ ? ପରୀକ୍ଷା ଦେବ ନାହିଁ ? ପାସ୍ କରିବ ନାହିଁ ?

ପୂର୍ଣ୍ଣ– ସେ ସବୁରେ ମୋର ପ୍ରୟୋଜନ କ'ଣ ? ଜୀବନରେ ଯେଉଁ ଏକମାତ୍ର ବନ୍ଧନ ଥିଲା ତା' ଛିନ୍ନ ହେଇଛି । ଝଡ଼ ମୁହଁରେ ଶାଖାଚ୍ୟୁତ ଶୁଷ୍କପତ୍ରପରି ମୁଁ ବର୍ତ୍ତମାନ ଅନିର୍ଦ୍ଦିଷ୍ଟ ଭାବରେ ଘୂରିବି–କ୍ଷତି କ'ଣ ?

ମଧୁବାବୁ– ତମ ଇଚ୍ଛା ! ମୁଁ ତମକୁ କ'ଣ ବୁଝେଇବି ? ବୁଝେଇବାର ଅଧିକାର ବିଧାତା ତ କାଟିନେଲା ।

କୁମୁଦ– ପୂର୍ଣ୍ଣ, ଏଗୁଡ଼ା କ'ଣ କହୁଛ ! ମାଧବୀର ଶେଷ ଅନୁରୋଧ ରକ୍ଷାକର ।

ପୂର୍ଣ୍ଣ– ଅସମ୍ଭବ ମୋ ପକ୍ଷରେ । ରକ୍ତମାଂସର ଦେହ ଯାହା ସହିପାରେ ତା'ର ସୀମା ଅଛି । ମାଧବୀ ତ ପାରିଲା ନାହିଁ, ମୁଁ ପାରିବି ! ଶ୍ମଶାନର ସେହି ଚିତାଗ୍ନିରେ ମୋର ସମଗ୍ର କୃତାର୍ଥତାକୁ ମୁଁ ପୋଡ଼ିଦେଇ ଆସିଛି । ଓଃ, କି ଦୃଶ୍ୟ ସେ ! ସେ ସ୍ମୃତି ଧରି ମନୁଷ୍ୟ ମେଳରେ କାମକରିବା ବା ବଞ୍ଚିରହିବା ଅସମ୍ଭବ । ଶେଷରେ ଗୋଟିଏ ଅନୁରୋଧ କରୁଛି ସାର୍–ଏଇ ମୁଁ ମାଧବୀର ଚିତାଭସ୍ମ ଆଣିଛି । ଏଥିରୁ କେତେକ ଆପଣଙ୍କ ଶଶୁରଙ୍କୁ ଓ କେତେକ କିଶୋରକୁ ଉପହାରଦେବେ । ଏଥିରେ ସେମାନଙ୍କର କିଛି ଶିକ୍ଷାହେଇପାରେ (ଭସ୍ମ ସ୍ଥାପନ) । କିଶୋର କାହିଁ ?

(ସହସା କିଶୋରର ପ୍ରବେଶ)

କିଶୋର– କ'ଣରେ ବର୍ବର ? ଶୁଣିଛି ମୁଁ ତୋର ସମସ୍ତ ଭଣ୍ଡତା । ମତେ ଭସ୍ମ ଉପହାର ଦେବୁ ?

ପୂର୍ଣ୍ଣ– କିଶୋର, ମାଧବୀର ସେ ପତ୍ର ତୁମକୁ କ'ଣ କିଛି ଶିକ୍ଷାଦେଇନି ?

କିଶୋର– ଏଇ ଶିକ୍ଷା ଦେଇଛି ଯେ, ଲୋକେ ଅପରାଧ କରି ତାକୁ ଉଚ୍ଚ ଆର୍ଦଶର ଅନୁରଂଜନ ଦେଇ ଜଗତକୁ ଭୁଲେଇବାକୁ ଚେଷ୍ଟାକରନ୍ତି ଓ ତା' ପ୍ରମାଣ କରିବାକୁ ଆତ୍ମହତ୍ୟା କରନ୍ତି ବା ଗୃହତ୍ୟାଗ କରନ୍ତି । ଭୀଷଣ ଭଣ୍ଡତା ଚାରିଆଡ଼େ !

ମଧୁବାବୁ– କିଶୋରବାବୁ, ମୋର ପ୍ରାଣ-ପିତୁଳାର ମୃତ୍ୟୁ ପରେ ମଧ ତା' ପ୍ରତି ଏପରି ନିଷ୍ଠୁର ଦୋଷାରୋପ କରୁଛ ! ସେ ଯେ ପାପ କ'ଣ, ମିଥ୍ୟାଚାର କ'ଣ ଜାଣି ନ ଥିଲା । ହଉ, ଯାହା କହିବାର କହିଯା–ମୁଁ ତ ନିରାଶ୍ରୟ ବର୍ତ୍ତମାନ୍ !

କିଶୋର– ବେଶ୍ ବକ୍ତୃତା ଦେଇପାରନ୍ତି ସମସ୍ତେ ।

ପୂର୍ଣ୍ଣ– ତମର ସଦ୍‌ବୁଦ୍ଧି ହେଉ କିଶୋର ।

କୁମୁଦ– ଏ ଦୁଃଖରେ ପଥର ତରଳିବାର କଥା–ତମେ କି ପାଷଣ୍ଡ କିଶୋର !

ପୂର୍ଣ୍ଣ– ରହ ଭାଇ କୁମୁଦ, ରହ ଭାଇ କିଶୋର । ମତେ କ୍ଷମାକରିବୁ । ପଦଧୂଳି ଦିଅନ୍ତୁ ସାର୍, ମୁଁ ଯାଏଁ । ଭାଗ୍ୟରେ ଥିଲେ ହୁଏତ ଆପଣଙ୍କୁ ଦେଖିପାରେ । ନହେଲେ

ବୋଧହୁଏ ମୋ ସମ୍ବନ୍ଧରେ ଆପଣମାନେ କିଛି ଆଉ ଶୁଣିବେନି....(ଧୀରେ ଧୀରେ ବାହାରିଯିବା—ମଧୁବାବୁ ପ୍ରଭୃତି ତା'ରିଆଡ଼କୁ ସ୍ଥିର ଦୃଷ୍ଟିରେ ଅନାଇରହିବା)

ମଧୁବାବୁ— (ବ୍ୟାକୁଳହୋଇ) ମା' ମୋର, କେତେ ଜୀବନକୁ ଆଲୋକିତ କରି ରଖିଥିଲୁ । ତୁ ଚାଲିଗଲୁ—ଏତେଗୁଡ଼ିଏ ଜୀବନ ଅଂଧକାର ହୋଇଗଲା । ପୂର୍ଣ୍ଣ ବର୍ତ୍ତମାନ ବିଶ୍ୱ-ଦାଣ୍ଡର ଭିକାରି । ତୋ' ମା' ଶୀଘ୍ର ତୋ'ର ଅନୁସରଣ କରିବ । ଆଉ ମୋର ଏ ଜୀବନ ଆଜିଠାରୁ ଏକ ଦୀର୍ଘ ବିଳାପ ମାତ୍ର । ବାବୁମାନେ, ଆପଣମାନେ ଯା'ନ୍ତୁ—ମୁଁ ବିକଳ କ୍ରନ୍ଦନରେହିଁ ମୋ ମା'ର ପୂଜାକରେ....ମା ବାୟାଣୀ ମୋର....କୁଆଡ଼େ ଗଲୁରେ..... !

(ଯବନିକା)

———

## ବାରବାଟୀ

### ପ୍ରଥମ ସଂସ୍କରଣର ଭୂମିକା

ଉତ୍କଳର ଗୌରବମୟ ଅତୀତର କେତେକାଂଶକୁ ନାଟକାକାରରେ ସଜେଇ ଥୋଇବାର ବାସନା ଲେଖକର ମନରେ ବହୁବର୍ଷ ହେଲା ଜାଗ୍ରତ ରହିଛି । କ୍ରମେକ୍ରମେ ଲେଖକର କଳ୍ପନା ବାରବାଟୀକୁ କେନ୍ଦ୍ରକରିହିଁ ଗଢ଼ିଉଠିଛି; କାରଣ, ଷୋଡ଼ଶ ଶତାବ୍ଦୀରେ ଉତ୍କଳର ଅଧଃପତନ ପର୍ଯ୍ୟନ୍ତ ଚାରିଶତ ବର୍ଷ ଧରି ବାରବାଟୀର ଇତିହାସହିଁ ଉତ୍କଳର ଇତିହାସ ।

ଗଙ୍ଗରାଜାମାନେ ଉତ୍କଳର ଯେଉଁ ବିଭବ ଆରମ୍ଭ କରିଦେଇ ଗଲେ, ସୂର୍ଯ୍ୟବଂଶୀୟ ରାଜାମାନଙ୍କ ଅଧୀନରେ ତାହା ଚୂଳାରୋହଣ କଲା ଏବଂ ଭୋଇ-ବଂଶୀୟମାନଙ୍କ ହାତରେ ତାହା ଧୂଳିସାତ୍ ହେଲା । ଏହି ଅବସ୍ଥା-ତ୍ରୟକୁ ଆଶ୍ରୟ କରି ଲେଖକ 'ବାରବାଟୀ'ର ତିନିଭାଗ ରଚନା କରିବ ବୋଲି କଳ୍ପନାରେ ରଖିଛି । ବର୍ତ୍ତମାନ ଭାଗ ବାରବାଟୀର ଉଦୟକାଳର ଚିତ୍ର ମାତ୍ର ।

ଉତ୍କଳର ଇତିହାସ ଗୌରବମୟ ବୋଲି ଦେଉଳମାନଙ୍କର ପଥର ବା ତମ୍ବାପଟା କହନ୍ତି । କିନ୍ତୁ ଏମାନଙ୍କର କହିବା ଏତେ ଲୁପ୍ତ, ଏତେ ରହସ୍ୟମୟ ଯେ ତାକୁ ନେଇ ଐତିହାସିକ ନାଟକ ଲେଖିବା, ବାରିବିନ୍ଦୁକୁ ମୁକ୍ତା କରିବାର ଚେଷ୍ଟା କରିବାପରି ଦୁଃସାହସିକତାରହିଁ ପରିଚୟ ଦେବ । ହଲିନ୍‌ଶେଡ୍‌ଙ୍କ କ୍ରନିକଲ୍ ବା ପ୍ଲୁଟାର୍କଙ୍କ 'ଜୀବନୀମାଳା' ନ ଥିଲେ ସେକ୍‌ସପିଅର 'ବ୍ରିଟ୍ରିଶ୍ ଓ ରୋମାନ୍' ଇତିହାସକୁ ଅବଲମ୍ବନ କରି ଯେଉଁ ଉତ୍କୃଷ୍ଟ ନାଟକମାନ ସୃଷ୍ଟି କରିଯାଇଅଛନ୍ତି ତାହା ଅସମ୍ଭବ ହୋଇଥା'ନ୍ତା ।

ବାଧହୋଇ ତେଣୁ, ଅଧିକାଂଶଭାବରେ ଏ ନାଟକର ଗଳ୍ପାଂଶକୁ କାଳ୍ପନିକ କରିବାକୁ ହୋଇଅଛି । କିନ୍ତୁ ଗଳ୍ପର ମେରୁଦଣ୍ଡଟା ଅର୍ଥାତ୍ ମୋଟ କଥାଟା ଯେ ଆଦୌ ଅଳୀକ ନୁହେଁ, ପାଠକ ତାହା ଶ୍ରୀ କୃପାସିନ୍ଧୁ ମିଶ୍ରଙ୍କ 'ଉତ୍କଳ ଇତିହାସ'ର ପୃଷ୍ଠା ଆଲୋଡ଼ନ କରି ଦେଖି ପାରିବେ ।

ଆଉଗୋଟିଏ କଥା । ଏହି ନାଟକବର୍ଣ୍ଣିତ କାଳରେ ମୁସଲମାନମାନେ ପ୍ରଥମକରି ଓଡ଼ିଶା ଆକ୍ରମଣ କରିଥିଲେ । ଆଜି ହିନ୍ଦୁ ଓ ମୁସଲମାନ ଏକ ଭାରତମାତାର ଦୁଇ ପୁଅ– ତେଣୁ ଦୁଇଭାଇ । କିନ୍ତୁ ଛଅଶହ ବର୍ଷ ତଳେ ଯେତେବେଳେ ପ୍ରଥମକରି ହିନ୍ଦୁ ମୁସଲମାନମାନଙ୍କୁ ଓ ମୁସଲମାନମାନେ ହିନ୍ଦୁଙ୍କୁ ଭେଟିଥିବେ, ସେତେବେଳେ ପରସ୍ପର ପ୍ରତି ପରସ୍ପରର କି ପ୍ରତିକ୍ରିୟା ଆସିଥାଇପାରେ ? ନାଟକ ଲେଖକଭାବରେ ମୋର ତାହା

କର୍ତ୍ତବ୍ୟ ଜାଣି ନାଟକର ଚରିତ୍ରମାନଙ୍କ ମୁହଁରେ କେତେକ କଥା କୁହାଇଛି ଯାହା ମୁଁ ନିଜେ ପସନ୍ଦ କରେ ନାହିଁ । କିନ୍ତୁ ଚିତ୍ରଣ ସ୍ୱାଭାବିକ ନ ହେଲେ ତାହା ସାହିତ୍ୟ ହୋଇପାରିବନାହିଁ । ତେଣୁ ହିନ୍ଦୁ ଓ ମୁସଲମାନ, ଉଭୟ ଦଳର ପାଠକମାନେ ନିଜନିଜକୁ ଛଅ ଶହ ବର୍ଷ ତଳର ସେ କାଳର ଅବସ୍ଥାରେ ରଖିବାକୁ ଚେଷ୍ଟା କରି ଲେଖକକୁ କ୍ଷମାଦେବେ । ଇତି ।

**ମାୟାଧର ମାନସିଂହ**

## ଦ୍ୱିତୀୟ ସଂସ୍କରଣର ଭୂମିକା

ଏଇ ନାଟକଟି ଛାପାହେବା ପୂର୍ବରୁ ଆଠଗଡ଼ ଓ ଆଠମଲ୍ଲିକରେ ଅଭିନୀତ ହୋଇଥିଲା ଏବଂ ଲେଖକ ସେଇ ସେଇ ଅଭିନୟ ଦେଖିବା ପରେ ନାଟକର ବହୁ ପରିବର୍ତ୍ତନ କରିଥିଲା । ପ୍ରଥମ ସଂସ୍କରଣରେହିଁ ଏଇ କଥାଟା ଲେଖକର କହିଦେବାର ଉଚିତ ଥିଲା । ଆଉରି ମଧ ଉଚିତ ଥିଲା ଯେ ଆଠଗଡ଼ ଓ ଆଠମଲ୍ଲିକର ଅଭିନେତାମାନଙ୍କ ପ୍ରତି ପ୍ରକାଶ୍ୟ କୃତଜ୍ଞତା ଜଣାଇବା । ସେ ପ୍ରମାଦପାଇଁ ମୁଁ ଦୁଃଖିତ ଓ ଲଜ୍ଜିତ ।

'ବାରବାଟୀ' ତିନିଖଣ୍ଡ ନାଟକରେ ଆତ୍ମପ୍ରକାଶ କରିବାର କଳ୍ପନା ଥିଲା । ପ୍ରଥମ ଖଣ୍ଡର ଦ୍ୱିତୀୟ ସଂସ୍କରଣ ହେଲା । କିନ୍ତୁ ଅନ୍ୟ ଦୁଇଟିର ପରିକଳ୍ପନା ହୋଇ ନାହିଁ । କେତେକ ପାଠକ ପଚାରିଛନ୍ତି । ମୋର ଏବେ ବି ଆଶା ଅଛି ଯେ ଅନ୍ତତଃ ଶେଷ ଖଣ୍ଡିକ ଦିନେ ଶେଷ କରିବି । ଇତି ।

**ମାୟାଧର ମାନସିଂହ**

ସମ୍ବଲପୁର, ୧-୧୧-୫୧

ଆଠମଲ୍ଲିକେଶ,

ରାଜା ଶ୍ରୀ କିଶୋରଚନ୍ଦ୍ର ଦେଓ ସାମନ୍ତ କରକମଳେଷୁ

ପୂର୍ବ ଗଡ଼ଜାତମାନଙ୍କର ଶିକ୍ଷାପରାମର୍ଶଦାତା ଭାବରେ ମୁଁ ବହୁ ରାଜା ମହାରାଜାଙ୍କୁ ଭେଟିଲି । କିନ୍ତୁ ନିଜର ମାତୃଭୂମି ଓ ମାତୃଭାଷା ପ୍ରତି ଅନାବିଳ ଓ ଗଭୀର ଶ୍ରଦ୍ଧା କେବଳ ଆପଣଙ୍କଠାରେ ଦେଖିଲି ।

ବାରବାଟୀ-ଦୁର୍ଗ ଯେଉଁ ପ୍ରାଚୀନ ଐତିହାସିକ ଉତ୍କଳର ପ୍ରତୀକ, ତା'ର ପଦଚିହ୍ନ ଏ ପର୍ଯ୍ୟନ୍ତ ଓଡ଼ିଶାର ଗଡ଼ଜାତମାନଙ୍କରୁ ପୋଛି ହୋଇ ଯାଇ ନାହିଁ । ଓଡ଼ିଆମାନଙ୍କର ପୂର୍ବ- ଯଶର ଅଧିକାଂଶ ଭାଗ ଗଡ଼ଜାତର ଐତିହାସିକ ରାଜବଂଶମାନଙ୍କରହିଁ ପ୍ରାପ୍ୟ; ସେହିପରି ଏକ ରାଜବଂଶର ଆପଣ ଅଳଙ୍କାରସ୍ୱରୂପ । ଆପଣଙ୍କ ରାଜତ୍ୱ କାଳରେ କ୍ଷୁଦ୍ର ଆଠମଲ୍ଲିକର ଅଭୂତପୂର୍ବ ଉନ୍ନତି କେବଳ ହୋଇ ନାହିଁ, ସମଗ୍ର ଉତ୍କଳର ବହୁ ଦୀନଦୁଃଖୀ ଓ ଅଭାବଗ୍ରସ୍ତ ସାହିତ୍ୟିକ ବହୁବର୍ଷଧରି ଆପଣଙ୍କ ଦରବାରରୁ ପୂର୍ଣ୍ଣହସ୍ତରେ ଫେରୁଛନ୍ତି ।

ଆପଣଙ୍କଠାରେ ଏହିପରି ପ୍ରାଚୀନ ଓ ଇଦାନୀନ୍ତନ ଉତ୍କଳର ମନୋହର ମିଶ୍ରଣ ଘଟିଥିବାରୁ, 'ବାରବାଟୀ'ର ଲେଖକ ଆପଣଙ୍କ ନାମରେ ତା'ର ଏହି ଜାତୀୟଇତିହାସମୂଳକ ନାଟକଟି ଉତ୍ସର୍ଗ କରି ଆନନ୍ଦ ଲାଭକରୁଛି । ଇତି ।

ଆପଣଙ୍କର

ମାୟାଧର ମାନସିଂହ

## ନାଟ୍ୟୋଲ୍ଲିଖିତ ଚରିତ୍ରଗଣ

ଅନଙ୍ଗଭୀମଦେବ, ଯୁବରାଜ ନରସିଂହ, ଗୋବିନ୍ଦ ପାଟଯୋଶୀ (ପ୍ରଧାନମନ୍ତ୍ରୀ), ସଦସ୍ୟ ବଳରାମ ମିଶ୍ର, ପୁରୋହିତ, ଗୌଡ଼ । ହରିହରପୁର, ସମ୍ବଲପୁର, ଘୁମୁସର, ଅନୁଗୋଳ ଓ ବାଣପୁରର ରାଜାଗଣ । ଜଳେଶ୍ୱର ଦୁର୍ଗର ସାମନ୍ତ, ଦଳବେହେରା, ରେମୁଣା ଦଳାଇ, ଜୟପୁରର ଶବରରାଜା, ବଙ୍ଗଦେଶୀ ଯାତ୍ରୀଯୁଗଳ, ଦୁର୍ଗବନ୍ଦୀ, କତିପୟ ଓଡ଼ିଆ ପାଇକ, ଖୁଣ୍ଟିଆ ଓ ଜନତା ।

ମୁସଲମାନ— ବକ୍ତିଆର ଖିଲଜି, ସେନାପତି ସିରାଜ, ଦୁଇଜଣ ଅଧସ୍ତନ ସେନାପତି, ଦୂତ, ସୈନିକମାନେ ଓ ମୌଲବୀ ।

ନାରୀ—ଉତ୍କଳର ପଟ୍ଟମହିଷୀ, ସଖୀଗଣ, କଳାବତୀଗଣ, ମାଳବ ରାଜଜେମା କାଞ୍ଚନପ୍ରଭା ।

## [ ପ୍ରଥମ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ଦୁଇଟି ବଙ୍ଗଦେଶୀ ବ୍ରାହ୍ମଣ ଯାତ୍ରୀ । ବାରବାଟୀ ଦୁର୍ଗର ସିଂହଦ୍ୱାର । ପ୍ରହରୀ ବଲ୍ଲମ-ହସ୍ତରେ ପଦଚାରଣ କରୁଛି ।]

ପ୍ରହରୀ— କିଏ ତୁମେ ? କି ଚାହଁ ?

ପ୍ରଥମ ଯାତ୍ରୀ— ଆମ୍ଭେମାନେ ବଙ୍ଗଦେଶରୁ ଆସିଛୁ । ମହାରାଜାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଚାହୁଁ ।

ପ୍ରହରୀ— ବର୍ତ୍ତମାନ ମହାରାଜାଙ୍କର ଦେବାର୍ଚ୍ଚନ ସମୟ । ଏଇକ୍ଷଣି କାହାରିକୁ ଯିବାର ନିୟମ ନାହିଁ । କିଛି ସମୟ ଗଲେ ପ୍ରଧାନମନ୍ତ୍ରୀ ଓ ଭିତିରିଆମାନେ ଆସିବାକୁ ଆରମ୍ଭ କରିବେ । ସେତିକିବେଳେ ତୁମର ପ୍ରାର୍ଥନା ତୁମେ ଜଣାଇବ । ବଙ୍ଗଦେଶରୁ ତ ଅନେକ ଲୋକ ଛାମୁଙ୍କୁ ଦେଖାକରି ପାଟକୁଣ୍ଡଳ ନେଇ ଫେରୁଛନ୍ତି । ସେଦିନ ନଦୀୟାର ଜଣେ ପଣ୍ଡିତ, କି ଗୋଟେ ଶାଢୀ ଆଉ ଯାଜପୁରରେ ସାତବାଟୀ ଭୂମି ଦାନ ପାଇ ହାତୀରେ ବସି ବାହାରିଗଲେ । ତମେ କ'ଣ ସେଇୟା ଶୁଣି ଧାଇଁଛ ନା କ'ଣ ?

ଦ୍ୱିତୀୟ ଯାତ୍ରୀ— ନାଁ, ନାଁ, ଆମେ ଅନ୍ୟ କାମରେ ଆସିଛୁ ।

ପ୍ରହରୀ— କ'ଣ ତୀର୍ଥଯାତ୍ରା କରି ? ପୁରୀ ଯିବ ? ତେବେ ଏଠିକି କାହିଁକି ଆସିଲ ? ସିଧା ସିଧା ହରିହର ଘାଟରୁ ଚାଲି ଚାଲି ଯାଇଥା'ନ୍ତ ବଣିଆ ସାହିକି । ସେଠି ଚଟୀ ଅଛି-ରାଂଧିବ ବାଢ଼ିବ, ଖାଇବ, ପୁଣି ଜଗନ୍ନାଥ ସଡ଼କରେ ଗୋଟିଏ ଗୋଟିଏ ଚାଲିବ । ଖର୍ବ ଖର୍ବ ଲୋକ ଯାଉଛନ୍ତି । ତମେ ବାଟ ଭୁଲିଗଲ କିମିତି ?

ପ୍ରଥମ ଯାତ୍ରୀ— ନାଁ ଆମେ ବାଟ ଭୁଲିନାହୁଁ । ଆମେ ତୀର୍ଥ କରିବାକୁ ମଧ ଆସିନାହୁଁ । ଆମେ ମହାରାଜାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଆସିଛୁଁ ।

ପ୍ରହରୀ— ମହାରାଜାଙ୍କୁ—ତା'-ନାଁ-କ'ଣ, ଶାଗ ମାଛ କରି ପାଇଛ ନା କ'ଣ ? ଏଇ ଗଡ଼ର ପ୍ରତିଷ୍ଠା ଉତ୍ସବ ଆଉ ପାଞ୍ଚଦିନ ଗଲେ ହେବ । ସେଥିପାଇଁ ସାରା ରାଜ୍ୟର ରାଜାମାନେ ଏଠି ଆସି ପହଞ୍ଚିବେ । ତା'-ନାଁ-କ'ଣ, ତା' ସରୁ ସରୁ ମହାରାଜା ପୁଣି ପୁରୀ ଯିବେ । ସେଠି ତା'— ନାଁ-କ'ଣ, ନୂଆ ମନ୍ଦିର ବାରବର୍ଷ ପରେ ଶେଷହେଉଛି, ତା'ର ପ୍ରତିଷ୍ଠା ହେବ । ସେ ସରୁସରୁ ମହାରାଜା ଯିବେ, ତା'-ନାଁ-କ'ଣ, ଦକ୍ଷିଣକୁ । ମହାରାଜାଙ୍କୁ ତ ଖାଇବା ଶୋଇବାକୁ ଅବସର ନାହିଁ— ତମ ଆମ ସଙ୍ଗେ ଖୁସିଗପ କରିବାପାଇଁ ବେଳ କାହିଁ ?

ଦ୍ୱିତୀୟ ଯାତ୍ରୀ— ଭାଇ, ଆମେ ଖୁସିଗପ କରିବାଲାଗି ଆସିନାହୁଁ ହୋ ! ଆମେ ଏକ ବଡ଼ କାମରେ ଆସିଛୁ । ଆମ ବଙ୍ଗଦେଶ ବର୍ତ୍ତମାନ ମୁସଲମାନମାନେ ଅଧିକାର କରିଯିବାରୁ ଆମର ରାଜା ଲକ୍ଷ୍ମଣସେନ ଓଡ଼ିଶାରେ ଆଶ୍ରୟ ନେବାପାଇଁ ପଳାଇଆସିଛନ୍ତି । ସେ ବର୍ତ୍ତମାନ ଧାମନଗରରେ । ଏଇ ସଂବାଦ ଦେବାପାଇଁ ଆମ୍ଭେମାନେ ଆଗେ ଆଗେ ଚାଲିଆସିଛୁ ।

ପ୍ରହରୀ— ଓଃ ସେ କଥା ବୋଲ ! ତା'ହେଲେ ମହାରାଜାଙ୍କ ସାକ୍ଷାତ୍ ଅଳ୍ପକେ ପାଇଯିବ । ବଂଧୁ ରାଜାଙ୍କୁ, ତା'- ନାଁ-କ'ଣ, ସହାୟ ହେବାକୁ ମହାରାଜାଙ୍କୁ କହିବାକୁ ହେବନି । ସେ ଶୁଣିଲାକ୍ଷଣି ଅଣ୍ଟାଭିଡ଼ି ବାହାରିବେ । କ'ଣ ତମେ କହିଲ 'ମୁସଲମାନ' ! ସେ କି ଜାତି ? ଏମିତି ଜାତି ଆମ ଏଠି ଶୁଣା ନ ଥିଲା । ଆମରି ଚାରିବର୍ଣ୍ଣ ଛତିଶି ପାଟକ ଭିତରେ ତ ? କେଉଁ ଦେଶର ଲୋକ ହୋ ସେ ?

ପ୍ରଥମ ଯାତ୍ରୀ— ନାହିଁ ଭାଇ, ସେମାନେ ଏକାବେଳକେ ଭିନ୍ନ ମନିଷ । ତାଙ୍କ କଥା, ତାଙ୍କ ଧର୍ମ, ତାଙ୍କ ବ୍ୟବହାର ସବୁ ଭିନ୍ନ । ଏ ଜମ୍ବୁଦ୍ୱୀପର ଲୋକ ସେମାନେ ନୁହନ୍ତି । ସେଣୁ ଉତ୍ତର ଦେଶଆଡୁ କେଉଁଠୁ ମାଡ଼ିଆସୁଛନ୍ତି । ଆମେ ଯାହାକରୁ ସେମାନେ ତା'ର ଠିକ୍ ଓଲଟା କରୁଛନ୍ତି । ଆମ ଦିଅଁ ଦେବତାଙ୍କୁ ସେ ମାନନ୍ତିନାହିଁ, ଗୋମାଂସ ଖାଆନ୍ତି, କଦବା ଗାଧାନ୍ତି; ବୁଢ଼ା ଟୋକା ସମସ୍ତଙ୍କର ଦାଢ଼ି ଏଡ଼େ ଏଡ଼େ—ଏକ ଅସୁର ଜାତି ବୋଲ । ଯାହା ପୁରାଣରେ ପଢ଼ିଥିଲୁ ସେଇଯା ଆଖିରେ ଦେଖିଲୁ ।

ପ୍ରହରୀ— ଆମ ପୁରାଣରେ ଯେଉଁ ମ୍ଳେଚ୍ଛମାନଙ୍କ କଥା ଲେଖାଅଛି ସେମାନେ କ'ଣ ସେଇଯା କି ହୋ ? ନାଁ କ'ଣ ? ସେୟା ବୋଲ !

ଦୁଇଯାତ୍ରୀ— ଠିକ୍ ଠିକ୍, ସେଇ ମ୍ଳେଚ୍ଛ କି ମ୍ଳେଚ୍ଛ !

ପ୍ରହରୀ— ମ୍ଳେଚ୍ଛଙ୍କ ପ୍ରାଦୁର୍ଭାବ ହେଲେ କଲ୍‌କୀ ଅବତାର ଆସିବେନି ? ପୁରାଣ କ'ଣ ମିଛ ହୋଇଯିବ ? ଦିଅଁ ଦେବତା, ଗୋରୁ ବ୍ରାହ୍ମଣ, ଯା'କୁ ଅପମାନ କଲେ ଏ ସୃଷ୍ଟି ରହିବ ? ଚିନ୍ତା ନାହିଁ, ଚିନ୍ତା ନାହିଁ— ଏଇ, ଏଇ , ଆମର ପ୍ରଧାନମନ୍ତ୍ରୀ ଯାଉଛନ୍ତି—ଯାଅ, ଯାଅ, ତାଙ୍କ ପିଛା ଧର !

ପ୍ରଥମଯାତ୍ରୀ— ଆସ ଦାଦା, ଆସ ଶୀଘ୍ର ! (ପ୍ରସ୍ଥାନ)

ପ୍ରହରୀ— (ପଦଚାରଣ କରୁ କରୁ) ମୋସଲ୍‌ମାନ ! ମୁଷଳବାନ !

(ପଟ୍ଟପତନ)

## (ଦ୍ୱିତୀୟ ଦୃଶ୍ୟ)

[ବାରବାଟୀ ଦୁର୍ଗାଭ୍ୟନ୍ତରସ୍ଥ ପ୍ରାଙ୍ଗଣ । ଅପରାହ୍ନ । ମହାରାଜ ଅନଙ୍ଗଭୀମଦେବଙ୍କ ସଭାର ବିଦୂଷକ ଶ୍ରୀ ବଳରାମ ସଦସ୍ୟ ଯଷ୍ଟିହସ୍ତରେ ଧୀରେ ଧୀରେ ପଦଚାଳନା କରୁଛନ୍ତି ।

ପଛରେ ରାଜଦ୍ୱାରୀ । ସଦସ୍ୟେ ଅନଙ୍ଗଭୀମଙ୍କ ବାଲ୍ୟ-ସହପାଠୀ ଥିଲେ, ତେଣୁ ଅନ୍ତରଙ୍ଗ ମିତ୍ର । ପୃଥୁଳକାୟ, ସଦା କ୍ଷୁଧିତ, ବିଜ୍ଞ ଓ ଅନପକାରୀ ।]

ଦ୍ୱାରୀ– ସଦସ୍ୟ ଆପଣେ, ଆଉ ଡେରିକରନ୍ତୁନି, ମହାରାଜ ଅନେଇ ବସିଛନ୍ତି ଆପଣଙ୍କ ଲାଗି ।

ସଦସ୍ୟ– ନାଇଁହୋ, ଥରେ ତ କହିଲି ଯିବିନି ବୋଲି– ଅକାରଣେ ଆଉ ବିରକ୍ତ କରୁଛ କିଆଁ ? ତମ ମହାରାଜା ତମକୁ ବଡ଼ ମତେ ନୁହେଁ । କାମ କରି କରି ମନିଷର ହାତଗୋଡ଼ ଚୂନା ହେବାକୁ ବସିଲାଣି, ଫେର୍ କ'ଣ ନା ମହାରାଜା ଡାକୁଛନ୍ତି ! ତାଙ୍କ ଦେହରେ ବିଧାତା ସିଂହର ବଳ ଦେଇଛିବୋଲି କ'ଣ ବିଧାତା ସମସ୍ତଙ୍କ ପ୍ରତି ସେଇ ଅନୁଗ୍ରହ କରିଛି ? ମୁଁ ତ ତାଙ୍କୁ ପୁଣି ପିଲାଦିନୁ ଦେଖିଆସୁଛି ? ତାଙ୍କର ହାତ, କି ଗୋଡ଼, କି ମନ, କି ବୁଦ୍ଧି ଥିର ହୋଇ ରହେନା । ପାଠ ପଢ଼ିଲାବେଳେ ଯାହା ଯୁବକବେଳେ ସେୟା, ଏବେ ପିଲାଝିଲା ହୋଇ ବୁଢ଼ା ହେବାକୁ ବସିଲେଣି ଏବେ ବି ସେୟା । ଟୋକାବେଳେ ଦୁଷ୍ଟାମିରେ ଶିରୋମଣି ଥିଲେ । ଏବେ ବୁଢ଼ା ବୟସରେ ଧର୍ମଯୁଧିଷ୍ଠିର ସାଜିଛନ୍ତି ! ଭେଣ୍ଡିଆ ବୟସରେ ଦିନ ନାହିଁ ରାତି ନାହିଁ ଅଗ୍ନାଅଗ୍ନି ବନସ୍ତରେ ଖାଲି ପାରିଧି । ମୋ କଥା ନ ମାନି ସେଥର ସଞ୍ଜବେଳଟାରେ ବେଣ୍ଟପାଇଁ ବାହାରିଲେ । ବୈତରଣୀ ନଦୀ ପାର ହୋଇଛନ୍ତି କି ନାହିଁ, ବଣ ବାଟରେ ଗେରୁଆ ଲୁଗା ପିନ୍ଧି ବ୍ରାହ୍ମଣ ଟୋକାଟା ପଳେଇଯାଉଥିଲା; ତାକୁ ହରିଣ ବୋଲି ମାରିପକାଇଲେ । ସେଇଠୁ ଛାଡ଼ିଲେ ପାରିଧି; ଆଉ ଏବେ ଚାଲିଛି ସେ ପାପର ପ୍ରାୟଶ୍ଚିତ୍ତ । ରଖ ବାବା ତମର ପାପପୁଣ୍ୟ ତମଠି । ଜଣେ ବ୍ରାହ୍ମଣପାଇଁ ଧର୍ମ କରୁକରୁ ଏଣେ ଆଉ ଗୋଟିଏ ବ୍ରାହ୍ମଣ ଯେ ମରିବାକୁ ବସିଲାଣି, ସେ କଥା ମନରେ ପଶୁନି । ବାଲେଶ୍ୱରଠୁ ବଡ଼ଖେମୁଣ୍ଡି, ଏଣେ ସମୁଦ୍ର କୂଳରୁ ସୋନପୁରଯାଏଁ ଖାଲି ଆସ, ଯା' । ଏଠି ଦେଉଳ, ସେଠି ପୋଖରୀ, ସେଠି ଘାଟ, ଏଠି ବାମ୍ପୀ—ଏଇୟା ଖାଲି ଚାଲିଛି । ମନିଷ ଯାଙ୍କ ସଙ୍ଗରେ ରହି ଦଣ୍ଡେ କେଉଁଠି ଥିରହୋଇ ରହିପାରିଲାନିହୋ । ଖାଇବା ଗଣ୍ଡାକର ତ ଠିକଣା ନାହିଁ, ଯୁ' ଗଣ୍ଡିକ ପେଟରେ ବା ପଡ଼ିଲା ସେତକ ଜୀର୍ଣ୍ଣ ହେବାର ଯୁ' ନାହିଁ । ମୁଁ —ନାଁ, ମୁଁ ଆଉ ଏ ଗଡ଼ରେ ରହିବିନି କି ତାଙ୍କ ପାଖକୁ ଯିବିନି । ମୋ କଥାରେ ସେ ତ ନାହାନ୍ତି, ସେ ଗୋବିନ୍ଦ ପଟ୍ଟଯୋଶୀ, ଈଶାନ ପଟ୍ଟନାୟକ, ଦାମୋଦର ବଡ଼ପଣ୍ଡାଙ୍କୁ ଡାକୁନାହାନ୍ତି— ମୁଁ କିଆଁ ଯିବି ? ନା—ତୁ ଯା' ମହାରାଜଙ୍କୁ ଏଇ କଥା......

(ମହାରାଜା ଅନଙ୍ଗଭୀମଦେବଙ୍କ ପ୍ରବେଶ । ଦ୍ୱାରୀର ପ୍ରଣାମ ଓ ଦଣ୍ଡାୟମାନ । ମନ୍ତ୍ରୀ ଗୋବିନ୍ଦ ପଟ୍ଟଯୋଶୀ ତାଙ୍କ ପଛରେ ।)

ଅନଙ୍ଗ– (ସସ୍ମିତେ) କି ସଦସ୍ୟେ, କାହା ଉପରେ ଏତେ ବିରକ୍ତ ? ବୋଧହୁଏ ମୋରି ଉପରେ !

ସଦସ୍ୟ– ନାଇଁ ମହାରାଜ, ମୁଁ ଏ ଦ୍ୱାରୀକୁ ଗୋଟିଏ ଗପ କହୁଥିଲି ।

ଅନଙ୍ଗ— (ସସ୍ମିତେ) ଆମେ ସେ ଗପ ଶୁଣିବାକୁ କ'ଣ ଉପଯୁକ୍ତ ?

ସଦସ୍ୟ— (ମିଥ୍ୟା ବିନୟ ଓ ସମ୍ଭ୍ରମ ଦେଖାଇ) ହେଁ, ହେଁ, ଛାମୁ ସେପରି କହିବା ହେଉଛନ୍ତି କିଆଁ ? ଗପଟି ନିତାନ୍ତ ଛୋଟ । କହୁଛି ଶୁଣନ୍ତୁ । ଗୋଟେ ଛୋଟ ଗାଡ଼ିଆରେ ଗୋଟେ କଇଁଚ ଥିଲା । ଗାଡ଼ିଆ ବନ୍ଧରେ ଗୋଟିଏ ହରିଣ ଚରୁଥିଲା । ହରିଣଠୁ ବଣରେ ଥିବା ବଡ଼-ବଡ଼ ପୋଖରୀର ଖବର ପାଇ କଇଁଚ ହରିଣ ସାଥିରେ ସେଠାକୁ ଯିବାକୁ ବସିଲା । ତା'କୁ ତା' ଭାଇବଂଧୁମାନେ ବହୁତ ମନାକଲେ, ସେ କିନ୍ତୁ ମାନିଲାନି, ଗଲା । ହରିଣମୁଣ୍ଡ ଉପରେ ବସି କୋଡ଼ିଏ ପହଣ୍ଡ ଯାଇଛି କି ନାହିଁ ଆଗରେ ଦିଶିଲା ଶଅର । ହରିଣ ମାରିଲା ଏକ ଛେପା, ଗଲା ବଣ ଭିତରେ ପଶି । କଇଁଚ ପଡ଼ିଲା ତଳେ ଲଥିକିନି । ଶଅର ଘରେ ସେଦିନ ହେଲା କଇଁଚ ମାଂସ ଭୋଜି । ଆଜ୍ଞା, କ୍ଷିପ୍ରସଙ୍ଗେ ମନ୍ଥରର ବଂଧୁତା ମୂର୍ଖତା ନୁହଁ କି ? ସେଥିପାଇଁ ପରା ଗୀତାରେ କହୁଛି (ନସ୍ୟ ସେବନ କରିକରି) ''ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ।''

ପଟ୍ଟଯୋଶୀ— ସଦସ୍ୟେ, ଏ'ତ ଖାଲି ଗପ ନୁହେଁ, ଏ ଗୋଟାଏ ରୂପକପରି ଜଣାଯାଉଛି । ନିଶ୍ଚୟ କାହାକୁ ଲକ୍ଷ୍ୟ କରାହୋଇଛି !

ସଦସ୍ୟ— ପଟ୍ଟଯୋଶୀଏ, ତମେ ଯେଉଁ ଲେଖନୀରେ ଲେଖ ସେ'ଟା ଯଦି ସେନାପତିଙ୍କ ଖଣ୍ଡାଠାରୁ ବଡ଼ ଅସ୍ତ୍ର ହୋଇପାରେ, ତେବେ ଏ ଗପ ରୂପକ ନ ହେବ କାହିଁକି ?

ଅନଙ୍ଗ— ତେବେ ସଦସ୍ୟେ ମତେ ବୋଧହେଉଛି ରୂପକଟା ତମ ମୋ ଭିତରେ ? ମୁଁ ହରିଣ, ତମେ କଚ୍ଛପ—ଉପମା ମନ୍ଦ ହୋଇନାହିଁ । ତେବେ ବିପଦବେଳେ ଏ ହରିଣ, କଚ୍ଛପକୁ ଛାଡ଼ି ପଳେଇବ ବୋଲି ଆଶଙ୍କା କଲ କାହିଁକି, ସଦସ୍ୟେ ?

ସଦସ୍ୟ— ହରିଣ ରହୁ ବା ପଳାଉ, କିନ୍ତୁ କଚ୍ଛପର ମୃତ୍ୟୁ ନିଃସଂଶୟ । କ୍ଷିପ୍ର ଜୀବ ସଂଗେ ମନ୍ଥରର, ଜଳଜୀବ ସଂଗେ ସ୍ଥଳଜୀବର ଭାଗ୍ୟ ଏକ ହେବ କିପରି ?

ଅନଙ୍ଗ— ପଟ୍ଟଯୋଶୀଏ, ଏ ଭିତରେ ସଦସ୍ୟଙ୍କୁ ପ୍ରକୃତରେ ବହୁତ ଖଟିବାକୁ ପଡ଼ିଛି । ବିଶେଷତଃ ବାଜପେୟୀଙ୍କ ସଂଗେ ଶ୍ରୀକ୍ଷେତ୍ର ଓ ବାରବାଟୀ ବହୁବାର ଧାଁଦଉଡ଼ କରିବାରେ ସେ ନିଶ୍ଚୟ ବାଧକା ହୋଇଯାଇଥିବେ । ଏ ଦୁର୍ଗ ପ୍ରତିଷ୍ଠା ପର୍ଯ୍ୟନ୍ତ ଆଉ ସଦସ୍ୟଙ୍କୁ କିଛି କାମ ଦିଅନାହିଁ, ପଟ୍ଟଯୋଶୀଏ ! ଆଉ ତମେ କ'ଣ ସଦସ୍ୟେ, ଜାଣ ନାହିଁ ଯେ, ଉତ୍କଳ ସାମ୍ରାଜ୍ୟର ମୁକୁଟ ଯା'ର ମୁଣ୍ଡରେ, ତା'ର ଆଖିରେ ନିଦ ନାହିଁ କି ତା' ଗୋଡ଼ରେ କ୍ଲାନ୍ତି ନାହିଁ ? ରାଜସିଂହାସନ ତୁଳିତଳ୍ପ ନୁହେଁ, ସେ ଏକପ୍ରକାର କୁଶଶଯ୍ୟା । ରାଜ୍ୟଶାସନ ଓ ରାଜ୍ୟପାଳନ ରାଜାର କଠୋର ତପଃସାଧନା । ନୀଳାଚଳନାଥଙ୍କୁ କୋଟି କୋଟି ଦଣ୍ଡବତ— ଅନଙ୍ଗଭୀମ ସଦସ୍ୟଙ୍କ ପରି ନର୍ମସଚିବ ଓ ପଟ୍ଟଯୋଶୀ, ବଡ଼ପଣ୍ଡା ଓ ବାଜପେୟୀଙ୍କ ପରି କର୍ମସଚିବମାନଙ୍କୁ ପାଇ ଏହି କଠିନ ରାଜନ୍ୟ-ଯଜ୍ଞ ସୁଚାରୁରୂପେ ନିର୍ବାହ କରି ଆସୁଅଛି । ଭବିଷ୍ୟତ ବିଧାତା ହାତରେ— କିନ୍ତୁ ବଙ୍ଗଦେଶରୁ ଯେଉଁ ସନ୍ଦେଶ ଆସିଛି.....

ସଦସ୍ୟ— ଏଁ ଏଁ, ବଙ୍ଗଦେଶରୁ ସନ୍ଦେଶ ! ଆଜି ତେବେ ଭାଗ୍ୟର ଦିନ ! ବଙ୍ଗଦେଶରୁ ସନ୍ଦେଶ ! ମିଷ୍ଟାନ୍ନ ରଚନାରେ ବଙ୍ଗଦେଶୀର ସମାନ ନାହିଁ, ତା' ପଟ୍ଟଯୋଶୀଏ ଆମକୁ ମାନିବାକୁହିଁ ହେବ । ସେଥର ପାତ୍ରଶୀଏ, ତୁମେ ଜମିନଲିବାରେ ଲାଗିଥିଲ ବୋଲି ଆମ ସାଥିରେ ଗଲନି; ଗଡ଼ ମନ୍ଦାରଣରେ ଆମେ ପନ୍ଦର ଦିନ କଟାଇଲୁ । ମୁଁ କ'ଣ ଆଉ ଅନ୍ନ ଦେଖିଛି ? ବଙ୍ଗଦେଶୀ ଗୁଡ଼ିଆ ସନ୍ଦେଶ ଓ ସୀତାଭୋଗ ଦୁଇଓଳି ଦୁଇ ଥାଳିରେ ଆଣେ ଓ ପୁଣି ତହିଁ ଆରଦିନକୁ ବରାଦ ନେଇଯାଏ । ସେହିଠି ମୋର ଏ ପେଟ ବଢ଼ିବାକୁ ଆରମ୍ଭକଲା । ବହୁଦିନ ଗଲାଣି କିନ୍ତୁ ସେ ସୀତାଭୋଗ କି ସେ ସନ୍ଦେଶ ମନରୁ ଛାଡ଼ିନି ।

ଅନଙ୍ଗ— ସଦସ୍ୟେ, କିନ୍ତୁ ଏଥର ଯେଉଁ ସନ୍ଦେଶ ଆସଛି ସେ ବଡ଼ ଲୁଣିଆ ।

ସଦସ୍ୟ— ଲୁଣିଆ ସନ୍ଦେଶ ! ସେ ପୁଣି କ'ଣ ? ଲୁଣ ସିନା ଓଡ଼ିଶାରେ ମରେ, ଗୌଡ଼ଦେଶ ଯେ ଖାଲି ମିଠାର ଦେଶ ।

ଅନଙ୍ଗ— ସଦସ୍ୟେ, ସେ ଖାଇବା ସନ୍ଦେଶ ନୁହେଁ, ସେ ଶୁଣିବା ସନ୍ଦେଶ । ଗୌଡ଼ର ରାଜା ଲକ୍ଷ୍ମଣସେନଙ୍କ ଦୂତ ବର୍ତ୍ତମାନ କହିଗଲା ସେ ସାରା ଆର୍ଯ୍ୟାବର୍ତ୍ତ ସହିତ ଗୌଡ଼ରାଜ୍ୟ ବର୍ତ୍ତମାନ ମୁସଲମାନ କବଳିତ । ଲକ୍ଷ୍ମଣସେନ ନିଜେ ଉତ୍କଳରେ ଆଶ୍ରୟ ନେବା ପାଇଁ ଉପଗତ । ଖୁବ୍ ସମ୍ଭବତଃ ମୁସଲମାନ ଉତ୍କଳ ଆଡ଼କୁ ଅଭିଯାନ କରିପାରେ । ଆମ ସମସ୍ତଙ୍କର କାମ ଓ ଚିନ୍ତା ବହୁଗୁଣ ବଢ଼ିଗଲା । ଯବନର ସମରନିୟମ ଅତ୍ୟନ୍ତ କୁଟିଳ । ଏହି କୁଟିଳତା ଯୋଗେହିଁ ଥାନେଶ୍ୱର ଯୁଦ୍ଧରେ, ପାଞ୍ଚବର୍ଷ ତଳେ ମହାମହିମ ପୃଥ୍ୱୀରାଜ ସ୍ୱୀୟ ମସ୍ତକ ସଙ୍ଗେ ଭାରତବର୍ଷର ସ୍ୱାଧୀନତା ହରାଇଲେ । କାପୁରୁଷ ଜୟଚନ୍ଦ୍ର ପ୍ରାଣରେ ଅଛି କି ନାହିଁ, ଜଣାପଡ଼ି ନାହିଁ । କିନ୍ତୁ ଆମ୍ଭମାନଙ୍କୁ ବର୍ତ୍ତମାନ ଅହୋରାତ୍ର ଜାଗ୍ରତ ରହିବାକୁ ପଡ଼ିବ— ନା କ'ଣ ପଟ୍ଟଯୋଶୀଏ ?

ସଦସ୍ୟ— ଆସୁ ହେ ଯବନ ! ଆସୁ ! ଭୟ କାହିଁକି ? ଉତ୍କଳେଶ୍ୱର ପୁଣି ଶତ୍ରୁକୁ ଡରିବେ ! ତା' ହେଲେ ତ ହାତୀ, ବିଲୁଆ ସମାନ ହୋଇଯିବେ ! ଏ ପଇତା ଓ ଏ ଠେଙ୍ଗାକୁ ଯବନ ସମ୍ଭାଳୁ, ଆମ ଖଣ୍ଡାଇତଙ୍କ ଖଣ୍ଡା ତ ଦୂରର କଥା । ଏ ପଇତାରେ ତାକୁ ଓଟାରି ଓଟାରି, ଆଉ ଏ ଠେଙ୍ଗାରେ ପାହାରେ ପାହାରେ ଦେଇ, ତାକୁ ମାଙ୍କଡ଼ନଚା ନ ନଚେଇଲେ ମୋ ନାଁ ବଳରାମ ବାହିନୀପତି ନୁହେଁ !

ପଟ୍ଟଯୋଶୀ— (ସଦସ୍ୟଙ୍କ ପେଟ ଆଉଁସି) କିନ୍ତୁ ସାବଧାନ ସଦସ୍ୟେ, ମୁସଲମାନର ଚର୍ବିଖିଆ ପେଟ ଓ ତୁମର ଘିଅଛେନାଖିଆ ପେଟ ଯଦି ଠେସାଠେସୀ ହୋଇଯାଏ ତେବେ ଯୁଦ୍ଧ କରିବା ଆଗରୁଇ ତମର ତଳଦ୍ୱପ୍ରାପ୍ତି ଓ ପଂଚତ୍ୱପ୍ରାପ୍ତି ବି ହୋଇଯାଇ ପାରେ । (ସମସ୍ତଙ୍କର ହସି ହସି ପ୍ରସ୍ଥାନ)

(ଯବନିକା)

## (ତୃତୀୟ ଦୃଶ୍ୟ)

[ବାରବାଟୀ ଦୁର୍ଗର ଅଭ୍ୟନ୍ତର—ଉତ୍କଳର ପଟ୍ଟମହିଷୀ ଦଣ୍ଡାୟମାନା । ଦୁଇଟି ତରୁଣୀସଖୀ ଦୁଇ ପାଖରେ ବ୍ୟଜନ ଓ ଚାମର ଚାଳନା କରୁଅଛନ୍ତି । ଟିକିଏ ଦୂରରେ ଆଉ ଜଣେ ଫୁଲ ଗୁନ୍ଥିବାରେ ରତା । ତା'ର ବିପରୀତଦିଗରେ ଆଉ ଜଣେ ତାମ୍ବୁଳ ରଚନା-ନିରତା ।]

ଚାମରଧାରିଣୀ— ମଣିମା, କଳାବତୀଗଣ ନୃତ୍ୟଗୀତ କରିବା ନିମିତ୍ତ ବାହାରେ ଅପେକ୍ଷା କରିଛନ୍ତି, ଆସିବାକୁ କହିବି ?

ମହିଷୀ— ହଉ କହ ! (ଚାମରଧାରିଣୀର ପ୍ରସ୍ଥାନ) ଲୋ ରେବା, ପଟ୍ଟଯୋଶୀଙ୍କୁ ଖବର ପଠାଇଥିଲୁ ?

ରେବା— (ଗୁଆ କାଟୁକାଟୁ) ମଣିମା, ସେ ଏହିକ୍ଷଣି ଆସିବେ ବୋଲି ଖବର ପଠାଇଛନ୍ତି । ବାରବାଟୀ ଦୁର୍ଗର ପ୍ରତିଷ୍ଠା ଉତ୍ସବ ପାଇଁ କୋଡ଼ି କୋଡ଼ି ରାଜା ଜମାହେଲେଣି । ବିଡ଼ାନାସୀଠାରୁ ରାଣୀହାଟଯାଏ ଡେରା ଧାଡ଼ି ଧାଡ଼ି ହୋଇ ପଡ଼ିଗଲାଣି । ମହାନଦୀଠାରୁ କାଠଯୋଡ଼ିଯାଏଁ ସମଗ୍ର ଜାଗା ଲୋକାରଣ୍ୟ । ପଟ୍ଟଯୋଶୀଏ ସବୁ କଥା ବୁଝୁଛନ୍ତି । ତାଙ୍କର ଦେଖା ମିଳିବା କାଠିକର ପାଠ । ସମସ୍ତେ କାମରେ ଲାଗିଛନ୍ତି— ଏମିତିକି ଆମ ସଦସ୍ୟେ ମଧ୍ୟ ।

ମହିଷୀ— ସଦସ୍ୟେ କି କାମ କରୁଛନ୍ତି ? ତାଙ୍କ ପାଇଁ ଆରିଶାପିଠା ପଠେଇ ଦେଇଛୁ ତ ? ମୋ ତିଆରି ଆରିଶାପିଠା ଓ ଆଚାର ସଦସ୍ୟେ ସବୁବେଳେ ମାଗନ୍ତି ।

ରେବା— (ଚୂନ ଦେଉ ଦେଉ) ଆଜ୍ଞା, ପଠେଇଦେଇଛି ! ତାକୁ ଖାଇ ବୋଧହୁଏ ସଦସ୍ୟେ ଭୋଳ । ସେ ଖାଲି ଏକ ଠେଙ୍ଗା ଉଞ୍ଚେଇ, ପେଟ ହଲେଇ ହଲେଇ 'ଘୁଞ୍ଚିଯାଅ', 'ବସିଯାଅ', 'ପାଟି କରନାହିଁ' କହି କହି ବେଶି ପାଟି, ବେଶି ଗହଳ କରୁଛନ୍ତି । ସମସ୍ତେ ତାଙ୍କ ପେଟ ଓ ପାଟିପାଇଁ ଜମାହେଉଛନ୍ତି । ଲୋକଗହଳିରେ ସେ ବଡ଼ଦାଣ୍ଡର ଷଣ୍ଢ ପରି ବୁଲୁଛନ୍ତି । ଏଇ ତ ତାଙ୍କର କାମ ।

ମହିଷୀ— ଯୁବରାଜଙ୍କର ଫେରିବାର କୌଣସି ଖବର ଶୁଣିଲୁ ? ଏ ସମସ୍ତ ଉତ୍ସବ ମୋତେ ଶୂନ୍ୟ ବୋଧହେଉଛି, ରେବା ! ମୋର ମନ, ହୁଏତ ନୀଳାଚଳନାଥଙ୍କ ଠେଇଁ, ନୋହିଲେ ଯୁବରାଜଙ୍କଠି । ସେ ନ ଆସିଲେ ଉତ୍ସବ ପଣ୍ଡହୋଇଯିବ ସିନା । ସେନାପତିଙ୍କୁ ନ ପଠେଇ ମହାରାଜ ବିଦ୍ରୋହ ଦମନ ପାଇଁ ଯୁବରାଜଙ୍କୁ ଯେଉଁଦିନ ଖେମୁଣ୍ଡିମାଳକୁ ପଠେଇଲେ, ମୁଁ ସେଦିନ ମନାକଲି । କହିଲି, ତାମ୍ରଲିପ୍ତିରୁ ସମୁଦ୍ର ଯାତ୍ରା କରି ସେ କ୍ଳାନ୍ତ ହୋଇ ଆସିଛି ।, ସେ କିଛିଦିନ ଘରେ ରହୁ । ମୋ କଥା ନ ହେଲା । ବାପ ପରି ପୁଅ ବି ଦୁର୍ଦ୍ଦାନ୍ତ । କାହାରି ହାତଗୋଡ଼ ଥିର ରହେ ନାହିଁ । ନୀଳାଚଳନାଥ ଗୋଟିକରୁ ତ ଦୁଇଟି ଦେଇନାହାନ୍ତି ଏ ପାପିନୀକୁ । ସେ ଯଦି

ସବୁବେଳେ ଆଖି ଉଢାଳରେ ବିପଦ ଆପଦ ଭିତରେ କାଳ କାଟେ ଏ ପୋଡ଼ାପ୍ରାଣ କେତେ ସମ୍ଭାଳିବ ? (ରୋଦନ)

ରେବା– ମଣିମା, ଅଧୀର ହୁଅନ୍ତୁ ନାହିଁ ! ଯୁବରାଜ ନିଶ୍ଚୟ କୁଶଳରେ ଫେରିଆସିବେ । ବହୁଦିନୁ ଦୂତ ଗଲାଣି । ଯୁବରାଜ ତ ଯା-ତା-ଘରର ପିଲା ନୁହନ୍ତି, ସେ ତ ସିଂହର ଛୁଆ; ସାରା ବଣ ସେ ଖେଦିବେ– ଏଥିରେ ଆଶ୍ଚର୍ଯ୍ୟ କଅଣ ମଣିମା ! ତମ ବୟସରେ ତମେ ମଣିମାଙ୍କ ସଂଗେ ଘୋଡ଼ାରେ ଚଢ଼ି ଅନୁଗୁଳ ଜଙ୍ଗଲରେ ବାଘ ଶିକାର କରିବା କ'ଣ ଭୁଲିଗଲ ? ଏବେ ବୟସ ଗଡ଼ି ମା ହେଇଛ ବୋଲି କ'ଣ ନିଜ ରକ୍ତ ଭୁଲିଯିବ ?

ମହିଷୀ– ରେବା ! ସବୁ ବୁଝୁଛି ଲୋ; ତଥାପି ମାଆର ମନ ସମ୍ଭାଳେ କେତେକେ ? କ୍ଷତ୍ରିୟ କ'ଣ ମନୁଷ୍ୟ ନୁହେଁ– ପଥର ?

(ଧୀରେ ଧୀରେ ସଙ୍ଗୀତ ତାନ । ପରେ ନର୍ତ୍ତକୀମାନଙ୍କର ପ୍ରବେଶ ଓ ଗୀତ ଗାଇ ଗାଇ ନୃତ୍ୟ ।)

**ଗୀତ**

ଜୟ, ଉତ୍କଳ ପାଟରାଣୀ
ତମେ ମରତର ଇନ୍ଦ୍ରାଣୀ
ସୋହାଗିନୀ, ଶୋଭାରାଣୀ । (ଘୋଷା)

ଦେଶେ ଦେଶେ ତମ ଲାଗି ଲାଗେ ଯୋଗାଡ଼
ସିଂହଳ ଯୋଗାଏ ଶୁଭ୍ର ମୁକୁତା ହାର
ତେଲିଙ୍ଗାନା ମଣ୍ଡେ ଗଣ୍ଡ ହୀରା ରସାଣି ।
କେରଳ ଚନ୍ଦନ ଦେଇ କରେ ବନ୍ଦନ
ଅଳାଇଚେ ବାଲିଦ୍ୱୀପ ପୂଜେ ଚରଣ
କାଞ୍ଚିରୁ କାଞ୍ଚୁଲି ଆସେ ମାନସ ଜାଣି ।୨।
ଅନୁଚିନ୍ତା ଛାଡ଼ ମନୁଁ ମହାମହିଷୀ
ନୀଳାଚଳେ ଅଛି ପ୍ରଭୁ ଚିର ଆଶିଷି
ସର୍ବଶୁଭ ହେବ ତବ ହେ ସୁଲକ୍ଷଣୀ ।୩।

(ପଟ୍ଟପତନ)

## (ଚତୁର୍ଥ ଦୃଶ୍ୟ)

[ବାରବାଟୀର ସଭାଗୃହ । ମହାରାଜା ଅନଙ୍ଗଭୀମ ପାତ୍ରମନ୍ତ୍ରୀ ପରିବେଷ୍ଟିତ ହୋଇ ସମୁଚିତ ବେଶରେ ସିଂହାସନୋପବିଷ୍ଟ । ପରିଚାରକଗଣ ଚାମର ଓ ବ୍ୟଜନଚାଳନରେ

ରତ । ଧୂପଗନ୍ଧରେ ସଭାଗୃହ ପୂରିତ । ସଭାର ଏକ ପାର୍ଶ୍ୱରେ ସ୍ୱର୍ଣ୍ଣଦଣ୍ଡଧାରୀ ଖୁଣ୍ଟିଆ ଓ ଅନ୍ୟ ପାର୍ଶ୍ୱରେ ଦୌବାରିକ ।]

ପ୍ରଧାନମନ୍ତ୍ରୀ— ଦୌବାରିକ, ପ୍ରଥମେ ଗୌଡ଼ରାଜାଙ୍କୁ ଆଣି ପରେ ନିୟମାନୁଯାୟୀ ଅନ୍ୟ
  ସାମନ୍ତ ନୃପତିମାନଙ୍କୁ ପଥ ଦେଖାଇ ଆଣ !

ଦୌବାରିକ— ଯେ ଆଜ୍ଞା !

ଖୁଣ୍ଟିଆ— ଯା ଉର୍ବର ଦେଶମାଟି, ସୁଜଳା ସୁଫଳା,
  ଗଙ୍ଗା-ବ୍ରହ୍ମପୁତ୍ର-ଜଳେ ନିତ୍ୟ-ଅଭିଷିକ୍ତା,
  ଯା' ମୁକୁଟ ହିମାଚଳ, ପଦ ମହୋଦଧି,
  ବୀରଶ୍ରୀ ଲକ୍ଷ୍ମଣସେନ ସେ ଦେଶ-ରାଜନ,
  ଗଜପତି ଦର୍ଶନାଶେ ଉଭା ଶ୍ରୀ ଛାମୁରେ ।
  (ଲକ୍ଷ୍ମଣସେନଙ୍କର ପ୍ରବେଶ ଓ ଗଜପତିଙ୍କୁ ଅଭିବାଦନ)

ଅନଙ୍ଗ— (ଉଠି) ଆସନ୍ତୁ ଗଉଡ଼ନୃପ, ସ୍ୱାଗତ ଆପଣ !
  ପବିତ୍ର ଉତ୍କଳ-ଧାମେ, —ଦୁଆର ଏହାର
  ଚିରମୁକ୍ତ ଅତିଥିଙ୍କ ସତ୍‌କାର ଲାଗି ।
  ଦୀନ ଗୃହେ ମମ
  ଆପଣଙ୍କ ଯୋଗ୍ୟାତିଥ୍ୟ ପାରିବି ଯୋଗାଇ,
  ଏ ଦୁରାଶା ନାହିଁ ମୋର, ଯାହା କିଛି ଅଛି
  ସବୁ କିନ୍ତୁ ଆପଣଙ୍କ । ରହିବେ ଏ ଦୁର୍ଗେ,
  ଅଥବା ଶ୍ରୀନୀଳାଚଳେ—ଯହିଁ ଇଚ୍ଛା ତବ,
  କରିବି ତା' ଆୟୋଜନ ।
  ପୁଣ୍ୟ ଆର୍ଯ୍ୟାବର୍ତ୍ତେ
  ଶୁଣିଛି ଯବନ ଅତି ହେଲାଣି ଦୁର୍ଦ୍ଧର୍ଷ;
  ବାସନା ତାହାର,
  ଏ ଭୂମେ ବୈଦିକଧର୍ମ କରିଣ ନିପାତ
  ପୋତିବ ତା ଧର୍ମଧ୍ୱଜା । ଜଗନ୍ନାଥଙ୍କର
  ସୁଦୀନ ସେବକରୂପେ କର୍ତ୍ତବ୍ୟ ଆମ୍ଭର
  ଶାସ୍ତି ଦେବା ବିଧର୍ମୀରେ । ତେଣୁ ଗୌଡ଼ରାଜ,
  ତୁମ୍ଭ ଶତ୍ରୁ, ଆମ୍ଭ ଶତ୍ରୁ । ନିଶ୍ଚିନ୍ତରେ ରହି,
  ଶ୍ରୀକ୍ଷେତ୍ରେ କରନ୍ତୁ ପୂଜା ନୀଳାଦ୍ରିନାଥର;
  ଗୌଡ଼ ଜୟ ପ୍ରତିହିଂସା ଦେବି ମୁଁ ଯବନେ !

ଲକ୍ଷ୍ମଣସେନ— ମହାରାଜ ଉତ୍କଳେଶ,
କେମନ୍ତେ ମୁଁ ଭାବ ମୋର ଭାଷେ ପ୍ରକାଶିବି
ନାହିଁ ଜାଣିପାରେ ଆଜି । ବିତାଡ଼ିତ ଦେଶୁଁ
ଯବନର ଅତ୍ୟାଚାରେ; ତଥାପି ମୋ ପ୍ରାଣେ
ଅସୀମ ଆନନ୍ଦ ଆସେ ଦେଖି ଏ ପବିତ୍ର
ଉତ୍କଳ ସାମ୍ରାଜ୍ୟ, ମୁକ୍ତ ଯବନ ପରଶୁଁ ।
ଭାଗୀରଥୀ କୂଳୁଁ ମୁହିଁ ଦେଖି ଯେ ଆସିଲି
ମହାନଦୀ କୂଳଯାଏଁ ମହାଦୁର୍ଗମାଳ,
ଦୃପ୍ତ ସେନାପତି ସମ ଏକ ପରେ ଏକ
ଶତ୍ରୁକୁ ଅପେକ୍ଷାକରି ସତର୍କ ସର୍ବଦା,
ନୁହେଁ ତାହା ଅଗୋଚର ଯବନ ଶ୍ରବଣେ,
ତେଣୁ ସେ ଏ ଦୁର୍ଗାରଣ୍ୟେ ଭୀତ ପଶିବାକୁ ।
ମହାପ୍ରଭୁ ଜଗନ୍ନାଥ, ନାଥ ଏ ଦେଶର,
ତେଣୁ ଏ ଉତ୍କଳ
ଧନେ, ମାନେ, କୀର୍ତ୍ତି-ଯଶେ ଅତୁଳ ଭାରତେ ।
ମନ୍ଦିର-ମୁକୁଟ ଦେଶ, ଦୁର୍ଗ-କଣ୍ଟକିତ,
ଦୁର୍ଦ୍ଧର୍ଷ କୃଷକ ସେନା, ତୁଷ୍ଟ ପ୍ରଜାକୁଳ,
ଦେବେ ପ୍ରାଣ ଇଙ୍ଗିତରେ ଗଜପତି ପାଇଁ ।
ଜଗନ୍ନାଥ ଆଶିଷରେ ଏ ମହା ବିଭବ
ରହୁ ଚିର ଏ ଉତ୍କଳେ । ତା' ହେଲେ ଯବନ,
ନ ମାଡ଼ିବ କେବେହେଲେ ଏ ପାବନ ମାଟି ।
ବୃଦ୍ଧ ମୁହିଁ, ଶୁକ୍ଳ କେଶ, ତୁମ୍ଭେ ଗଜପତି
ପୁତ୍ରସମ ମୋ ଚକ୍ଷୁରେ । ଏହି ଆଶୀର୍ବାଦ,
ଏ ପ୍ରାର୍ଥନା, ଏ କାମନା ପ୍ରେରି ମୋ ଅନ୍ତରୁ
ଘେନୁଛି ତୁମ୍ଭର ତୁଙ୍ଗ ଆତିଥ୍ୟ ଏ ଭୂମେ ।
ଅନଙ୍ଗ-ପୁତ୍ରସମ ସେ ଆଶିଷ କଲି ମୁଁ ଗ୍ରହଣ ।
ନିବସନ୍ତୁ ପାଶେ ମମ (ବସାଇବା)
ସାମନ୍ତ ରାଜନେ,
ଆସନ୍ତୁ ଏଥର, ମନ୍ତ୍ରୀ !
ଖୁଣ୍ଟିଆ— ଉତ୍ତର ଉତ୍କଳେ ରାଜ୍ୟ-ପ୍ରଧାନ-ସାମନ୍ତ,
ସାନ୍ତାଳ ସୈନିକେ ଯା'ର ସୁସଜ୍ଜିତ ସଦା

ଦୁର୍ଭେଦ୍ୟ ପ୍ରାଚୀର ରୂପେ ଉତ୍କଳ ରାଜ୍ୟର
ମେଘାସନ ମେଘାକୁଳ ଅରଣ୍ୟେ ଯାହାର
ବ୍ୟାଘ୍ର-ହସ୍ତୀ-ବିଦାରଣ କ୍ରୀଡ଼ା-କଉତୁକ,
ଯା' ପ୍ରତାପେ ତାମ୍ରଲିପ୍ତି ମହା ପୋତାଶ୍ରୟ
ଜଳଦସ୍ୟୁ ଅତ୍ୟାଚାରୁ ହୋଇ ଚିରମୁକ୍ତ
ହୋଇଛି ସକଳ-ଦେଶ-ସାଧବଙ୍କ ପୀଠ;
ସେହି ସେ ମୟୂରଧ୍ୱଜ ହରିପୁର ରାଜା
ଦୂର ଭଞ୍ଜଭୂମି ଛାଡ଼ି ଆସିଛନ୍ତି ଆଜି
ଗଜ ଦାନେ ଗଜପତି ଦରଶନ ଆଶେ ।

(ହରିପୁର ରାଜାଙ୍କ ପ୍ରବେଶ)

ଅନଙ୍ଗ— ଆସନ୍ତୁ ସାମନ୍ତ-ମଣି ହରିପୁର ନୃପ !
ଆପଣ ପ୍ରେରିତ
ଦ୍ୱିରଦ-ରଦ-ପଲଙ୍କ, ମୟୂର ବ୍ୟଜନ
ପାଇଅଛି ସମ୍ବର୍ଦ୍ଧନା ମହାରାଣୀଙ୍କର
ଆଶାକରେ ସବୁ ଶୁଭ ରାଜ୍ୟେ ଆପଣଙ୍କ ।
ଶୁଣିବେଣି କିନ୍ତୁ ନିମ୍ନେ ଭାଗୀରଥୀ କୂଳେ
ଯବନଙ୍କ ସମାବେଶ । ସୀମାନ୍ତ-ସାମନ୍ତ
ଆପଣ ରହିବେ ଏବେ ଚିର ଜାଗରୂକ ।
ଅଥବା କୁଟିଳ-ଗତି ଯବନ ଏ ଭୂମେ
କୌଶଳେ ପଶିବ ଘରେ ପଶେ ଯେହ୍ନେ ମୂଷା ।

ହରିପୁର— ଜାଣିଥା'ନ୍ତୁ ମହାରାଜା, ଯବନ-ଉରଗ
ଭକ୍ଷିବାକୁ ଉତ୍‌କଣ୍ଠ ମୋ ସହସ୍ର ମୟୂର ।
ଭଞ୍ଜରାଜ ଥାଉଁ ଥାଉଁ ଉତ୍କଳ ସୀମାନ୍ତେ
କିଏ ସେ କରିବ ଛାମୁ-ଗରବ-ଭଞ୍ଜନ ?

ସକଳେ— ସାଧୁ, ସାଧୁ ! (ତାଳି ଦାନ)

(ମୟୂରଭଂଜ ସାମନ୍ତଂକ ଉପବେଶନ)

ଖୁଣ୍ଟିଆ— ଋଷିକୁଲ୍ୟା-ଗୋଦାବରୀ-ନୀର ବିଧଉତ,
ପାଶେ ସିନ୍ଧୁ, ପାଶେ ତୁଙ୍ଗ ମହେନ୍ଦ୍ର ଯାହାର
ପରିଖା ପ୍ରାଚୀରରୂପେ ସୃଜିଅଛି ବିଧି,
ଭୟ-ହୀନ କନ୍ଧସେନା ରାଜ୍ୟରକ୍ଷୀ ଯାର,
ଉତ୍କଳ ଦକ୍ଷିଣ-ସୀମା-ଦ୍ୱାର-ରକ୍ଷୀ ସମ

ଗଜପତି-ଜ୍ଞାତି, ରାଜା କଳିଙ୍ଗ ବିଶର,
ଦକ୍ଷିଣୁ ଗଞ୍ଜାମଦୁର୍ଗୁଁ ଆସିଛନ୍ତି ଆଜି
ସମ୍ରାଟଙ୍କ ପଦତଳେ ଦେବାକୁ ସମ୍ମାନ !

(ଗଂଜାମରାଜାଙ୍କ ପ୍ରବେଶ)

ଅନଙ୍ଗ— କୁଶଳ ତ ସବୁ ରାଜ୍ୟେ ?

ଗଂଜାମ— ସମସ୍ତ କୁଶଳ ! (ଗଂଜାମ ସାମନ୍ତଂକର ଉପବେଶନ)

ଖୁଣ୍ଟିଆ— ଯା ଭୂମି-କନ୍ଦରା ସବୁ ହୁଏ ଆଲୋକିତ
ହୀରକ ଜ୍ୟୋତିରେ; ମହାନଦୀ ଦୁର୍ନିବାର
ତରୁଣୀ ସମାନ, ଯହିଁ ଉପଳ ସଂକୁଳ
ବିଷମ ଶଯ୍ୟାରେ ଆସେ କ୍ଷିପ୍ରସ୍ରୋତେ ଧାଇଁ,
ଅନେକ ସାମନ୍ତ-ସମର୍ଥିତ ଯା' ଆସନ
ହୀରାଖଣ୍ଡ ଅଧିପତି, କୋଶଳବଂଶଜ,
ଆସିଛନ୍ତି ଗଜପତି ଛାମୁ ଦରଶନେ !

(ହୀରାଖଣ୍ଡଙ୍କର, ପ୍ରବେଶ)

ଅନଙ୍ଗ— ଆସନ୍ତୁ ସମ୍ବଲପତି, ବଳ ଓ ସମ୍ବଳ
ଉତ୍କଳର ପଶ୍ଚିମରେ । କୁଶଳ ତ ସବୁ ?

ହୀରାଖଣ୍ଡ— ସମସ୍ତ କୁଶଳ ! (ଉପବେଶନ)

ଖୁଣ୍ଟିଆ— ଅନୁଗୋଳ, ଅନୁବ୍ରତେ ଅଶ୍ୱ ଯାହାଙ୍କର
ଧାମଇ ଦନ୍ତାଳି-ମୁଖେ ଶ୍ୱାପଦ ପଶ୍ଚାତେ,
ଯୁବରାଜ ବଂଧୁବର ମଧ୍ୟମ ଉତ୍କଳେ
ଯା' ଉଜ୍ଜ୍ୱଳ ତରବାରି ରଖିଛି ଶଂକିତ
ପାର୍ବତ୍ୟ ତସ୍କରଜନେ, କରି ନିରାପଦ
ପରଜାଙ୍କ ଧନ ଜନ; ମହାନଦୀ ଯା'ର
ଉଚିତ ପରିଖା ପାଇଁ ହୋଇ ସଙ୍କୁଚିତ
ସୃଜିଅଛି ନକ୍ରଚକ୍ରମୟ ଭୀମ ଗଣ୍ଡ,
ଭୀଷଣ, ସୁନ୍ଦର, ସାତକୋଶିଆ ପ୍ରସିଦ୍ଧ,
ସେହି ଅନୁଗୋଳରାଜ ଆସିଛନ୍ତି ଆଜି
ଶ୍ରୀଛାମୁଙ୍କ ଦରଶନ ଆଶେ ଏ ସଭାରେ !

(ଅନୁଗୋଳଙ୍କର ପ୍ରବେଶ)

ଅନଙ୍ଗ— ଆସନ୍ତୁ ଅନୁଗୋଳରାଜ !
ତବ ପିତା ସଂଗେ

ତରୁଣ ବୟସେ କରିବାର ନକ୍ରହତ୍ୟା
ସାତକୋଶୀ ଗଣ୍ଡେ, ପୁଣି କୂଳର ପର୍ବତେ
କ୍ଷେପି କ୍ଷେପି ମାରିବାର ବ୍ୟାଘ୍ର, ଦନ୍ତାବଳ—
ସବୁ ମୋର ମନେପଡ଼େ । କୁଶଳ ତ ସବୁ ?

ଅନୁଗୋଳ— ସମସ୍ତ କୁଶଳ ! (ଉପବେଶନ)

(ସହସା ଏକ ଭୃତ୍ୟର ପ୍ରବେଶ)

ଭୃତ୍ୟ— ମହାରାଜ !
ତୁରନ୍ତ ଉଦନ୍ତ ମୋର ଥିବାରୁ ଜଣାଣ
ସଭାକାର୍ଯ୍ୟେ ଛାମୁଙ୍କର ଦେଉଅଛି ବାଧା ।

ଅନଙ୍ଗ— କହିବାର ଅଛି ଯାହା କହ ନିର୍ଭୟରେ !

ଭୃତ୍ୟ— ମାଳବଦେଶରୁ ଆମ୍ଭ ରାଜପୁରୋହିତ,
ଦକ୍ଷିଣରୁ ଯୁବରାଜ ଫେରିଛନ୍ତି ଏବେ ।

ଅନଙ୍ଗ— କି ଭାଗ୍ୟ ! ଯାଅ, ଯୁବରାଜଙ୍କୁ କହ, ପ୍ରଥମେ ମା'ଙ୍କ ସଂଗେ ଦେଖାକରିବେ ! ଆଉ, ପୁରୋହିତଙ୍କୁ ଶୀଘ୍ର ଏଠାକୁ ଘେନିଆସ । ମାଳବଦେଶର ସଂବାଦ ଜାଣିବାକୁ ମୁଁ ଅତ୍ୟନ୍ତ ଉତ୍କଣ୍ଠିତ ।

ଭୃତ୍ୟ— ଯେ ଆଜ୍ଞା ମହାରାଜ ! (ପ୍ରସ୍ଥାନ)

ଅନଙ୍ଗ— (ଲକ୍ଷ୍ମଣସେନଙ୍କୁ ଅନାଇଁ) ଉତ୍କଳ ପରି ମାଳବ ମଧ୍ୟ ଏ ଯାବତ୍ ଯବନମୁକ୍ତ । ମୋର ପିଲାଦିନେ ମାଳବରାଜା ନୀଳାଚଳ ଦର୍ଶନ ଲାଗି ଆସିଥିଲେ । ନୀଳାଚଳରେ ଜଗନ୍ନାଥ-ସ୍ଥାପନା ତ ମାଳବ ରାଜବଂଶର କୀର୍ତ୍ତି । ମାଳବ ରାଜଧାନୀ ଉଜ୍ଜୟିନୀ କାଳିଦାସଙ୍କ ପ୍ରିୟ ନଗରୀ । ରାଜବାଳାମାନଙ୍କର ରୂପଲାବଣ୍ୟ ଓ ରାଜପୁରୁଷମାନଙ୍କର ଗୌରବର୍ଣ୍ଣ ଓ ଶାଳପ୍ରାଂଶୁ ଆକୃତି ଦେଖି କାଳିଦାସଙ୍କ ନାୟକ ନାୟିକା ସବୁ ମନେପଡ଼ିଲେ । ସେହି ସ୍ଥାନର ଲୋକଙ୍କୁ ଦେଖି ମହାକବି କାବ୍ୟ ରଚନା କରିଥିବା ଖୁବ୍ ସମ୍ଭବ । ଏଇଯେ ପଣ୍ଡିତ ଆସିଲେ । (ପୁରୋହିତଙ୍କର ପ୍ରବେଶ) କି ସଂବାଦ ପଣ୍ଡିତ ଆପଣେ ? ସବୁ ଶୁଭ ତ ?

ପୁରୋହିତ— (ଆଶୀର୍ବାଦାନନ୍ତର) ସମସ୍ତ କୁଶଳ ! ପରେ ପୁଙ୍ଖାନୁପୁଙ୍ଖ ରୂପେ ମୋର ଯାତ୍ରା ବର୍ଣ୍ଣନା କରିବି । ବର୍ତ୍ତମାନ ଏ ସଭାସ୍ଥଳରେ ଏତିକି ପ୍ରକାଶ କଲେ ଯଥେଷ୍ଟ ହେବ ଯେ ମାଳବରାଜ ଯୁବରାଜଙ୍କୁ କନ୍ୟା ପ୍ରଦାନ ପାଇଁ ମୋ ସଙ୍ଗରେ ତାଙ୍କର ସ୍ୱକୁଳପୁରୋହିତ ହସ୍ତରେ ଶ୍ରୀଫଳ ପ୍ରେରଣ କରିଅଛନ୍ତି ।

ସମସ୍ତେ— ସାଧୁ, ସାଧୁ !

ସଦସ୍ୟ— (ଉଠପଡ଼ି) ବାଃ ବାଃ, ବିଶିଆ ଭାଇନା, ଗୋଟାଏ କାମ କଲୁ ଜାଣି ଏତେଦିନେ । ତୁ ଇ ଭିତରେ କାହିଁ ମାଳବ ଯାଇ ଯୁବରାଜଙ୍କ ପାଇଁ ଜେମାଠିକ୍ କରି ଆସିଛୁ ?

କୁଣ୍ଡଳ, କଙ୍କଣ, ପାଟଯଥା ତ ଢେର୍ ପାଇଥିବୁ । କାହ୍ କାହ୍ ଭାଇନା, ସମସ୍ତ ଦେଖିବା ! କାଲିକାର ବିଶିଆଭାଇନା ଆମ ସାଥିରେ କେରାଣ୍ଡି ଧରୁଥିଲୁ.......

ଅନଙ୍ଗ— ଥାଉ ଥାଉ ସଦସ୍ୟେ, ସେ କାମ ପାଇଁ ଏ ସ୍ଥାନ ନୁହେଁ, ତମର ଏତକ ଯା' ଜ୍ଞାନ ହେଲାନି, ବସ ନିଜ ଜାଗାରେ !

(ସଦସ୍ୟ ଓ ପୁରୋହିତଙ୍କର ଉପବେଶନ)

ଶୁଣ ହେ ସାମନ୍ତ ନୃପ, ଜାଣିଛ ତ ସର୍ବେ
ଉତ୍ତର ସୀମାନ୍ତେ ନବ ଯବନ ବିପଦ ?
ସଜ୍ଜିତ ରହିବ ଆଜିଠାରୁ ଅହୋରାତ୍ର
ସାମ୍ରାଜ୍ୟର ରକ୍ଷାଲାଗି । ପାଳୁଥିବ ଏଣେ
ନିଜ ନିଜ ରାଜ୍ୟଖଣ୍ଡ, ପିତା ଯେହ୍ନେ ପାଳେ
ନିଜ ସନ୍ତତିରେ, ହୃଦୟର ରସ ଦେଇ ।
ବିରାଟ ଉତ୍କଳ ରାଜ୍ୟ ନଳି ମୁଁ ଯତନେ
ଭିନ୍ନ ଭିନ୍ନ କରିଅଛି ଦେଶର ସମ୍ପଦ;
ଧର୍ମଲାଗି, ପ୍ରଜାଲାଗି, ଉତ୍ସୃଷ୍ଟ ଯେ ବିତ୍ତ
କେବେହେଲେ ନିଜ ସୁଖେ ନାହିଁ ଲଗାଇବ ।
ପ୍ରଜାସୁଖ-କଣ୍ଟା ଯଦି ହୁଏ କେ ସାମନ୍ତ
ଜାଣିଲାକ୍ଷଣି ମୁଁ ତାଙ୍କୁ କରିବି ବିଚ୍ୟୁତ
ପଇତୃକ ସିଂହାସନୁ !
କାଲି ପ୍ରଭାତରୁ
କରିବା ଏଠାରୁ ଯାତ୍ରା ପବିତ୍ର ଶ୍ରୀକ୍ଷେତ୍ରେ,
ବିଶ୍ୱକର୍ମା ବାଜପେୟୀ ରଚିଛନ୍ତି ଯହିଁ
ଉତ୍ତୁଙ୍ଗ ମନ୍ଦିର ପ୍ରଭୁପାଇଁ ମୋ ଆଦେଶେ ।
ହୋଇବ ପ୍ରତିଷ୍ଠା ତା'ର । ଧର୍ମ-ଦୁର୍ଗ ସେହୁ,
କର୍ମ-ଦୁର୍ଗ ବାରବାଟୀ । ଦୁଇ ଏହି ଦୁର୍ଗେ
ଯେତେଦିନ ଓଡ଼ିଆଏ ଥିବେ ରଖି ମନେ,
ସାମଞ୍ଜସ୍ୟ ରଖି ଉଭୟରେ,
ସେତେଦିନ ଏ ସାମ୍ରାଜ୍ୟ ରହିବ ଅକ୍ଷୁଣ୍ଣ;
ଯବନ ବା ଅନ୍ୟ ଶତ୍ରୁ ନ ପାରିବେ ପଶି
ପବିତ୍ର ଉତ୍କଳ-ଭୂମେ ।
ସଭା ହେଉ ଭଙ୍ଗ
ଯାଅ ମନ୍ତ୍ରୀବର, କର ସମସ୍ତଙ୍କ ଚର୍ଚ୍ଚା ।

(ପଟପତନ)

## [ ଦ୍ୱିତୀୟ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ଶ୍ରୀକ୍ଷେତ୍ର । ନବମନ୍ଦିର ପ୍ରତିଷ୍ଠା ଉପଲକ୍ଷେ ସିଂହଦ୍ୱାର ସମ୍ମୁଖରେ ଯଜ୍ଞାୟୋଜନ । ମହାରାଜ ଅନଙ୍ଗଭୀମଦେବ, ପାତ୍ରମନ୍ତ୍ରୀ, ସାମନ୍ତଗଣ ଏବଂ ପୁରୋଧାଗଣ ସମାସୀନ । ଟିକିଏ ଦୂରରେ ଜନତାର କିୟଦଂଶ ଦେଖାଯାଉଛି; ସେଥି ମଧ୍ୟରେ ଜୟପୁରାଞ୍ଚଳର ଶବରରାଜ ଉପସ୍ଥିତ ।]

ପଟ୍ଟପୁରୋହିତ— ପୂର୍ଣ୍ଣାହୁତି ଦଣ୍ଡ ଏବେ ହେଲା ଉପସ୍ଥିତ ।
ଶ୍ରୀକ୍ଷେତ୍ରେ ଏ ଶ୍ରୀମନ୍ଦିର ସଂସ୍ଥାପିବା ପାଇଁ,
ଉତ୍କଳର ଗଜପତି ନୃପତି-ସାଧନା
ପଞ୍ଚଦଶ ବର୍ଷ ତପେ ହେଲା ଆଜି ପୂର୍ଣ୍ଣ ।
ଉତ୍କଳର ସର୍ବପ୍ରାନ୍ତୁ ରାଜା, ମହାରାଜା,
ଦଳାଇ, ଖଣ୍ଡାଧିପତି, ବିଶୋଇ, ସାମନ୍ତ
ଦଳବଳ ଘେନି ସର୍ବେ ଉପସ୍ଥିତ ଆଜି ।
ଉପସ୍ଥିତ ପୁଣି ଦେଖ ରାଜଭକ୍ତ ପ୍ରଜା,
ବାଳ, ବୃଦ୍ଧ, ନାରୀ, ନର ସର୍ବପ୍ରଦେଶରୁ ।
ପୂରିଅଛି ବଡ଼ଦାଣ୍ଡ ତାଙ୍କ ଗହଳରେ ।
ଲୋକନାଥ ଘାଟ ପାଶୁଁ ଚକ୍ରତୀର୍ଥ ଯାଏଁ
ସମଗ୍ର ସିକତା ଭୂମି ନରାରଣ୍ୟ ଏବେ ।
ଉଠୁଅଛି କ୍ଷଣେ କ୍ଷଣେ ଅନ୍ତରୀକ୍ଷ ଭେଦି
''ଜୟ ଶ୍ରୀ ଅନଙ୍ଗଭୀମ ମହାରାଜ ଜୟ,
ଦୀର୍ଘଜୀବୀ କରିଥା'ନ୍ତୁ ତାଙ୍କୁ ଜଗନ୍ନାଥ !''
ସେ ଜନସମୁଦ୍ର ଏବେ ରହି ନିସ୍ତରଙ୍ଗ
ଅପେକ୍ଷିଛି ଗଜପତି-ଚନ୍ଦ୍ର ଦରଶନେ
ଉଠନ୍ତୁ ଶ୍ରୀ ମହାରାଜ, ଦେଇ ଦରଶନ
କରନ୍ତୁ ଅୟୁତ ପ୍ରିୟ ପ୍ରଜା-ପ୍ରାଣ ଶାନ୍ତ ।
ପୂର୍ଣ୍ଣାହୁତି ପରେ ସର୍ବେ ପଶିବା ମନ୍ଦିରେ,
ଉଦ୍‌ଗ୍ରୀବ ଜନତା ପଡ଼ିରହି ବାହାରରେ
କରିବେ କେବଳ ଅକାରଣ ଗଣ୍ଡଗୋଳ ।
ଏତେ ଦେଶୁଁ ଏତେ ବାଟ ଆସିଛନ୍ତି ଧାଇଁ,
ନଈ, ନାଳ, ବଣ, ଗିରି, କାନନ, ପ୍ରାନ୍ତର

ତେଇଁ ଶତ ଶତ କ୍ରୋଶ ପଥ ଅତିକ୍ରମି—
ଛାମୁଙ୍କ ଶ୍ରୀମୁଖ ବାକ୍ୟ ନ କରି ଶ୍ରବଣ
ଫେରିଗଲେ ହେବ ତାଙ୍କ ଘୋର ମନସ୍ତାପ ।

ଅନଙ୍ଗ— ଆଜି ଏ ପୁଣ୍ୟାହେ, ଏହି ପୁଣ୍ୟ ମୁହୂର୍ତ୍ତରେ
ଛାତି ମୋର ହୋଇଆସେ ଭାବେ ଅଭିଷିକ୍ତ,
ସ୍ମରି ଏ ଅଧମ ପ୍ରତି ଦେବ-ଅନୁଗ୍ରହ ।
କହିବି ବା କିଛି ପଛେ—ନ କହିଲେ କିଛି
ପ୍ରାଣପ୍ରିୟ ପ୍ରଜାଗଣ ହୋଇବେ ବ୍ୟଥିତ ।
* ପାତ୍ରୁଷୀ ଆପଣେ, ତୁମେ କିନ୍ତୁ ଉଠ ଆଗେ
କହ ପ୍ରଜାବର୍ଗେ,
ତାଙ୍କରି ସଂପଦ ବ୍ୟୟି ପ୍ରଭୁ-ଦାସ ମୁହିଁ
ତାଙ୍କ ଲାଗି ନିର୍ମିଅଛି ଏ ମହା ଦେଉଳ ।
ଏ କୀର୍ତ୍ତିରେ ଯଦି କିଛି ଥାଏ ଅହଂକାର
ସବୁ ମୋର ପ୍ରଜାଙ୍କର, ମୋର କିଛି ନାହିଁ ।
ମୋର ଅହଂକାର ଖାଲି ପ୍ରଭୁ ପରସାଦ ।

ମନ୍ତ୍ରୀ— ଯଥାଆଜ୍ଞା ମହାରାଜ !
ଆଜ୍ଞା ପାଳି କିନ୍ତୁ
ଉଠିବି, କହିବି ସିନା,
ବିପୁଳ ଜନତା
ମୋ ବଚନେ କି ସେ ଶାନ୍ତ ହେବେ କେବେହେଲେ ?
ବଇଶାଖ-ତପ୍ତଧରା, ଜଳଦ ଗର୍ଜନେ
ହେବ ସିନା ପୁଲକିତ ?
ହଉ ତେବେ ଉଠେଁ । (ମନ୍ତ୍ରୀ ଉଠିଲେ)

ଜନତା— ଶୁଣ, ଶୁଣ, ମନ୍ତ୍ରୀ କହୁଛନ୍ତି !

ମନ୍ତ୍ରୀ— ଶୁଣ ସର୍ବେ,
ଗୋଳମାଳ ନ କର, ହେ ଭାଇ !

ଜନତା— ଶାନ୍ତ ହୁଅ ସର୍ବଜନେ, ମନ୍ତ୍ରୀ କହୁଛନ୍ତି !

ମନ୍ତ୍ରୀ— ଶୁଣ ସର୍ବ ପ୍ରଜାବର୍ଗ, ଶୁଣ ଦଳାଇଏ,
ଶୁଣ ଖଣ୍ଡ-ଅଧିପତି ସକଳ ପ୍ରାନ୍ତର;

---

* ପାତ୍ରୁଷୀ—ପଢ଼ ଜ୍ୟୋତିଷୀ ଶବ୍ଦର ଓଡ଼ିଆ ଅପଭ୍ରଂଶ । ଓଡ଼ିଶାର ରାଜା-ଜମିଦାରଙ୍କ ଦରବାରରେ ଜଣେ ପାତ୍ରୁଷୀ ନିଶ୍ଚୟ ଥିଲେ ।

ପୂର୍ଣ୍ଣାହୁତି ହେବ ଆଉ ଅଳ୍ପକ୍ଷଣ ପରେ
ଫେରିବେ ଆପଣେ ସବୁ ଯେ ଯାହା ଆସ୍ଥାନେ,
ନ ହେଉଣୁ ପ୍ରାତଃ କାଲି । ଫେରିବା ପୂର୍ବରୁ
ଶୁଣିଯାଅ କିଛି କଥା ଦେଉଳ ପ୍ରସଙ୍ଗେ ।
ଏ ଯେଉଁ ଦେଉଳ,
ଅଭ୍ର ଭେଦି ଦେଖୁଅଛ ଠିଆ ସମ୍ମୁଖରେ,
ବହୁକ୍ରୋଶ ଧରି ଯା'ର ଚକ୍ର ସଙ୍କେତନ
କୋଟି କୋଟି ଭକ୍ତ-ପ୍ରାଣେ ହେବ ଧ୍ରୁବତାରା,
ହୋଇଛି ପନ୍ଦର ଲକ୍ଷ ମାଢ଼ ସ୍ୱର୍ଣ୍ଣ ବ୍ୟୟ
ଲାଗିଛି ପନ୍ଦରବର୍ଷ ହେବାକୁ ସମ୍ପୂର୍ଣ୍ଣ ।
ପୁଣି ଏହି ଦେବତାଙ୍କୁ ଦେଉଳର ନାଥ
ଅଥବା ପୂଜାରୀ-ନାଥ ନ କରି କେବଳ,
କରିବାକୁ ପ୍ରକୃତରେ ପ୍ରଭୁ 'ଜଗନ୍ନାଥ',
ଛାମୁଙ୍କର ଆଜ୍ଞାବଳେ ହୋଇଅଛି ଗଢ଼ା
ବେଢ଼ା ମଧ୍ୟେ ସର୍ବ ଦେବ-ଦେବୀଙ୍କ ଆସ୍ଥାନ;
ଯେହ୍ନେ ସର୍ବ ଉପାସକେ, ସକଳ ଭକତେ
ଦେବେ ସ୍ୱ ସ୍ୱ ଦେବତାଙ୍କୁ ପୂଜା ହୃଦୟର,
ଜଗନ୍ନାଥ ପଦ ପ୍ରାନ୍ତେ । ବହୁ ଆତ୍ମଲାଗି
ସିନା ପ୍ରଭୁ, ନୁହନ୍ତିକି ପ୍ରକୃତରେ ଏକ ?—
ଏହି ମହାଭାବ
ଛାମୁଙ୍କ ଆଜ୍ଞାରେ ଏଥି ହୋଇଛି ପ୍ରକାଶ
ଏକମାତ୍ର ଏହିଠାବେ, ଏ ଭାରତ ଧାମେ ।
ଗଜପତି ନିର୍ଦ୍ଦେଶରେ ହେବ ଏ ଶ୍ରୀକ୍ଷେତ୍ର
ସର୍ବ-ଧର୍ମ-ସମନ୍ୱୟ-ପୀଠ ମହାପୁଣ୍ୟ,
ଭେଦାଭେଦ ଭୁଲି ଏଥି, ସୌର, ଗାଣପତ୍ୟ,
ଶାକ୍ତ, ଶୈବ, ବଇଷ୍ଣବ, ବେଦାନ୍ତୀ, ଚାର୍ବାକୀ
ସକଳେ ପୂଜିବେ ଇଷ୍ଟେ ଆପଣା ବିଶ୍ୱାସେ ।
ତେଣୁ ଏ....(ଜୟପୁରର ଶବର ଦଳପତି ବାଧାଦେଲେ)

ଶବରାଧିପତି— କିନ୍ତୁ ହେ ଗୋସାଇଁ,
ପତିତପାବନ ଯେଉଁ ଦେବଙ୍କର ନାମ,
ମନ୍ଦିରେ ତାଙ୍କର କାହିଁ ପତିତର ସ୍ଥାନ ?

ନୀଳାଚଳ ଥିଲା ଯେବେ ଘୋର ବନାକୀର୍ଣ୍ଣ
ହରିଣ ଶିକାରୀ ବଣ୍ୟ ଶବରଙ୍କ ଛଡ଼ା
ନଥିଲେ ପରଜା ଏଥି; ଆମରି ଶବରେ
ବେଳାଭୂମେ ନିପତିତ ଦାରୁବ୍ରହ୍ମେ ପାଇ
କୁଟୀରେ ପୂଜିଲେ ତାଙ୍କୁ ବନ୍ୟ ଫୁଲ ପୁଷ୍ପେ ।
ତା' ପରେ ଆସିଲେ ରାଜା ମାଳବ ଦେଶରୁ
ଇନ୍ଦ୍ରଦ୍ୟୁମ୍ନ ନାମଧାରୀ, ମନ୍ଦିର ଯେ ତୋଳି
ଥାପିଲେ ପ୍ରଭୁଙ୍କୁ ଆଣି ନୀଳାଚଳ ଶିଖେ ।
ସେହି ସେ ମନ୍ଦିର ଆଜି ଉଠିଛି ଆକାଶେ,
ସେହି ଦେବ ହୋଇଛନ୍ତି ଜଗତର ନାଥ,
ପ୍ରଥମ ପୂଜକ ଆମେ ଶବରାଳି, କିନ୍ତୁ
ଚ୍ୟୁତ ହୋଇଅଛୁଁ ପ୍ରଭୁ-ପାଦ ଦରଶନୁଁ ।
ଏ କି ପ୍ରଭୁ ହେଲା ନ୍ୟାୟ ? ଦୂର ଜୟପୁରୁ
ଦୁଇମାସ ପଥ ଚାଲି ଆସିଛି ମୁଁ ଏଥି;
ସଂଗେ ଛନ୍ତି ଶତ ଶତ ପ୍ରଜା ପୁଣି ମୋର;
ପୁଣି ଛନ୍ତି ହାଡ଼ି, ପାଣ, ବାଉରି, କଣ୍ଡରା
ଲକ୍ଷ ଲକ୍ଷ ରାଜଭକ୍ତ ପ୍ରଜା ଛାମୁଙ୍କର
ଉତ୍କଳର ନାନା ଖଣ୍ଡୁଁ । ପତିତପାବନେ
ନ ଦେଖି, ନ ପୂଜି, ଏହି ପତିତ ଜନତା
ଶ୍ରୀକ୍ଷେତ୍ରୁଁ ଫେରିବେ ଯଦି, ଯୁଧିଷ୍ଠିରଙ୍କର
ରାଜସୂୟ ଯଜ୍ଞେ ଯାହା କହିଥିଲା ମୂଷା,
କହି ତାହା ବ୍ୟଥିତରେ ଯିବେ ସିନା ଫେରି ?

ପୁରୋହିତ— ଶୁଣିଲେ ତ ମହାରାଜ ? ଶବର ମୁଖରେ
କହୁଅଛି ଯାହା ସେ ତ ଅତି ବିଜ୍ଞ କଥା ।
ଜଗତର ନାଥ ଯେହୁ କେମନ୍ତେ ତାହାଙ୍କୁ
କୋଟି କୋଟି ଜଗଜ୍ଜନ-ନୟନ ପଥରୁ
ରଖିବା ଘୋଡାଇ ଲୌହ, ପଥର ଉଢାଳେ ?
ହୁଏ ତ ଅସ୍ପୃଶ୍ୟଯାକ ଛାମୁଙ୍କ ଆଜ୍ଞାରେ
ହୋଇଯା'ନ୍ତୁ ସ୍ପୃଶ୍ୟ ଏବେ; ନତୁବା ନୂତନ
ବ୍ୟବସ୍ଥା ହେଉ, ଯା ବଳେ ଏ ପତିତ ଜନେ
ଦୂରୁଁ ହେଲେ ଲଭିବେ ବା ପ୍ରଭୁ-ଦରଶନ ।

ଶବରାଧିପତି— ଶୁଣନ୍ତୁ ଗୋସାଇଁ, ଆମେ ଜାଣି ତ ପତିତ,
ପୂର୍ବ ଜନ୍ମ ପାପ ଫଳେ ଅମେଧ ସେବୁଛୁଁ,
ଗୋମାଂସ ଭକ୍ଷୁଛୁ, ସୁରାପିଇ ମତ୍ତଭୋଳେ ।
ଜାଣି ଜାଣି ଆମ ସ୍ପର୍ଶେ କିପାଁ ଦେବ-ପୀଠ,
ବ୍ରାହ୍ମଣର ଉପବୀତ କରିବୁଁ ଅଶୁଚି ?
କରି ବା କାହିଁକି ପୁଣି ବଢ଼ାଇବୁଁ ପାପ ?
କରନ୍ତୁ ବ୍ୟବସ୍ଥା କିଛି—ଦାରୁବ୍ରହ୍ମଙ୍କର
ପ୍ରତିମୂର୍ତ୍ତି, ଦୂରୁଁ ଏହି ବଡ଼ଦାଣ୍ଡ ଧୂଳି
ମାଥେ ଦେଇ ଦରଶନ ଲଭିବୁଁ ପତିତେ ।
ସେହି ହେଲେ ହେଲା ଜାଣି ଯଥେଷ୍ଟ ଆମ୍ଭର ।

ଅନଙ୍ଗ— (ଉଠିପଡ଼ି) ସାଧୁ ତୁ ଶବର-ରାଜ, ତୋହରି ବାସନା
ପୂରିବାକୁ କରେ ଆଜ୍ଞା,—ଏହି ସିଂହଦ୍ୱାରେ
ପ୍ରଭୁଙ୍କର ମୂର୍ତ୍ତି ସମ ଆଉ ଏକ ମୂର୍ତ୍ତି
ହୋଇବେ ସ୍ଥାପିତ; ଯାକୁ କରି ଦରଶନ
ଅସ୍ପୃଶ୍ୟ, ପତିତ ସବୁ ପ୍ରଭୁ ଦରଶନ
ଫଳ ପାଇ ହେବେ ଧନ୍ୟ । ତାଙ୍କ ଲାଗି ପୁଣି
ସେହି ମୂର୍ତ୍ତି ବୋଲାଇବେ 'ପତିତପାବନ' ।

(ଜନତାର ଘନ ଘନ କରତାଳି ଓ 'ଜୟ ଗଜପତିଙ୍କର ଜୟ', 'ମହାରାଜ ଅନଙ୍ଗଭୀମଦେବଙ୍କର ଜୟ'ଆଦି ଧ୍ୱନି— ଗୋଳମାଳ ଶାନ୍ତ ହେଲା ପରେ—)

ଶୁଣ ପ୍ରିୟ ପ୍ରଜାଗଣ, ଅଜ୍ଞାନରେ ଖାଲି
କର ତୁମ୍ଭେ ଜୟଧ୍ୱନି ଏ ଅଧମ ନାମେ ।
ପ୍ରଭୁ ଜଗନ୍ନାଥଙ୍କର ଦାସାନୁଦାସ ମୁଁ,
ଅତି ଅକିଞ୍ଚିତ୍କର; ତାଙ୍କରି ଆଦେଶେ
ତାଙ୍କ ଅନୁଗ୍ରହେ ଖାଲି ଏ ମହା ମନ୍ଦିର
ହୋଇଅଛି ଠିଆ ଆଗେ । ଶକ୍ତି ମୋ ଛାରର
କାହିଁ ଥିଲା କରିବି ଏ ମନ୍ଦିର ଗଠନ ?
ସବୁ ପୁଣି ତୁମ୍ଭ ଦାନ, ପ୍ରିୟ ପ୍ରଜାବର୍ଗ !
ସୂର୍ଯ୍ୟ ଯେହ୍ନେ ବାଷ୍ପରୂପେ ନେଇ ବସୁଧାରୁ
ମେଘରୂପେ ବସୁଧାକୁ ଫେରାଏ ତ ଜଳ,
ମୁହିଁ ସେହିରୂପେ ତୁମ ଧନ, କର ରୂପେ
ନେଇ, ଦେଉଅଛି ପୁଣି ଫେରାଇ ତୁମ୍ଭରେ,
ପୁଷ୍କରିଣୀ, ଘାଟ, ଗ୍ରାମ, ଦେଉଳ ନିର୍ମାଣି ।

ପ୍ରଭୁଙ୍କର ଦାସ ମୁଁ ତ, ଦାସ ପୁଣି ତବ;
ଆଶୀର୍ବାଦ କର ମୋର ପ୍ରିୟ ପ୍ରଜାଗଣ,
ଏକ ହସ୍ତେ ପ୍ରଭୁଙ୍କର, ଅନ୍ୟ ହସ୍ତେ ତବ
ସେବାକରି ଏ ଜୀବନ-ଅବଶେଷତକ
ଯାଉ ଚାଲି, ଯାଇଅଛି ଯେହ୍ନେ ଏ ଯାବତ୍ ।

(ଘନ ଘନ କରତାଳି– 'ଜୟ ମହାରାଜ ଅନଙ୍ଗଭୀମଦେବଙ୍କର ଜୟ' ଧ୍ୱନି ମଧ୍ୟରେ ପଟପତନ ।)

## (ଦ୍ୱିତୀୟ ଦୃଶ୍ୟ)

[ପୁରୀ ବଡ଼ଦାଣ୍ଡ । ସମୟ ଦିବାଲୋକ । ଉତ୍ସବ-ମତ୍ତ ଜନତା ଭିତରେ ଭିନ୍ନଭିନ୍ନ ନୃତ୍ୟ ଓ କ୍ରୀଡ଼ା । ପ୍ରଥମେ ଶବର ଶବରୁଣୀମାନଙ୍କର ନାଚି ନାଚି ପ୍ରବେଶ ।]

### ଗୀତ

ନାଳେ ନାଳେ ଗଲା ଗାଈ ଲୋ,
ନାଳେ ନାଳେ ଗଲା ଗାଈ
ବିଲେ ବିଲେ ଫୁଟେ ସୋରିଷ ଫୁଲ ଲୋ
ମୋ ପରାଣ ମିତ କାହିଁ ?

ପାହାଡ଼ ଉପରେ ଘର ଲୋ,
ପାହାଡ଼ ଉପରେ ଘର
ମତେ ଛାଡ଼ି ନାଥ ଦୂରେ ନାହିଁ ଯିବ
ଧରିଥାଏଁ ତବ କର,
(ସଦା) ଧରିଥାଏଁ ତବ କର ।

ସମୁଦର ଗରଜଇ, ମହାପ୍ରଭୁ,
ସମୁଦର ଗରଜଇ,
ଦେଶେ ଦେଶେ ଜିଣି ଗଜପତି ରାଜା
ବସି ଭୋଗୁଥାଅ ମହୀ ! (ପ୍ରସ୍ଥାନ)

ଜନତାରୁ ଦୁଇ ତିନିଜଣ– ଆରେ ଖଞ୍ଜଣିଆ ଆଇଲାରେ । ମନେହେଉଛି ଏଇଟା କେନ୍ଦ୍ରାପଡ଼ିଆ ।

(ଖଞ୍ଜଣିବାଦକର ବଜାଇ ବଜାଇ ପ୍ରବେଶ)

### ଗୀତ

ଜଗନ୍ନାଥ ହେ,
ଶୁଣ ଅରକ୍ଷ ଡାକ,
ଜଗନ୍ନାଥ ହେ । (ଘୋଷା)

ଲକ୍ଷେ ଯୋଜନରୁ ଆର୍ତ୍ତେ ଡାକିଲା କରୀ
ଚକ୍ର ପେଶି ନକ୍ର ନାଶି ରଖିଲ ହରି,
ପ୍ରହ୍ଲାଦ ଡାକ ଶୁଣି
କଲ କଶିପୁ ନାଶ,
ଇନ୍ଦ୍ର ପଦବୀ ତାକୁ
ଦେଲ ହେ ପୀତବାସ;
ପାପୀ ଅଜାମିଳକୁ
ଦେଲ ପାଦ ପଙ୍କଜ
ମୃଗିଣୀ ନିସ୍ତାରିଲ, ମୃଗିଣୀ ନିସ୍ତାରିଲ,
ମାରିଣ କ୍ରୂର ବ୍ୟାଧ,
ମୁଁ କିପାଁ ପଡ଼ିଅଛି
ମୁଁ କିପାଁ ପଡ଼ିଅଛି ଅନାଥ,
ହେ ଜଗନ୍ନାଥ,
ଶୁଣ ଅରକ୍ଷ ଡାକ । (ପ୍ରସ୍ଥାନ)

ଜନତାରୁ ଜଣେ— ହଇରେ ନେନ୍ଦ୍ରାଭାଇ, ଆମଗାଁ କୁଶୁନିଆଠୁଁ ଇଏ କ'ଣ ଅଧିକଟା ବଜାଉଛି କିରେ ? ଖାଲି ନାଁ କେନ୍ଦ୍ରାପଡ଼ିଆ !

ଆଉ ଜଣେ— ଚୁପ୍‌କର ! ତୁ ପୁଣି ଗୋଟେ ହେଇଗଲୁଣି ଭଲମନ୍ଦ ବିଚାରକରିବାକୁ । ଯା' ଆଗରେ କୁଶୁନିଆଁ !

ପ୍ରଥମ ବ୍ୟକ୍ତି— ଏ ସଂସାରରେ ତୁଇ ଏକା ସବୁ ଜାଣୁଛୁ— ଆଉ ସମସ୍ତେ ମୂର୍ଖ ପରା ! (କେନ୍ଦ୍ରାଧ୍ୱନି)

ତୃତୀୟ ବ୍ୟକ୍ତି— ଏ ଭାଇ, ଏ ଭାଇ, କଳି କରନା ଭଲା; ଗୋଟାକୁ ଗୋଟା ଦେଖି ଯା' ଖାଲି । ଏଇ କେନ୍ଦ୍ରାବାଲା ଜଣେ ଆସୁଛି !

(କେନ୍ଦ୍ରାବାଲାର ପ୍ରବେଶ ଓ ଗୀତ)

ଧନ ମୋ ମାନିନୀ,
କିପରି କାଟୁଥିବ ଏ ବରଷା ରଜନୀ । (ଘୋଷା)
କୋମଳାଙ୍ଗୀ ଯଉବନୀ ଷୋଡ଼ଶ ବୟସୀ
ବିରହ ଲୋତକ ଶେଯେ ପଡୁଥିବ ଖସି,
ଖସୁଥିବ ଶତହ୍ରଦା ସଂଗତେ ଅଶନି ।
କଣ୍ଠ କରିଥିଲି ଯାହା ନ ପାରିଲି ରଖି
ବାଟ ଚାହିଁ ଦିନ ଗଣୁଥିବ ମୋ ସୁମୁଖୀ,
ରାଗୁଥିବ ହିୟା ମୋର ପଥର କି ମଣି । (ପ୍ରସ୍ଥାନ)

ଜନତା– ବଢ଼ିଆ ସ୍ୱର ଅଛି ! ଏ ଚାଲ, ଚାଲ, ଭାଇ, ସିଂହଦ୍ୱାର ଆଗରେ ଦକ୍ଷିଣୀ ନାଟ ସେଣେ ଆରମ୍ଭ ହୋଇଗଲାଣି । (ପ୍ରସ୍ଥାନ)

## (ତୃତୀୟ ଦୃଶ୍ୟ)

[ବାରବାଟୀର ଏକ କକ୍ଷ । ଯୁବରାଜ ନରସିଂହଦେବ ଓ ଅନୁଗୋଳର ତରୁଣ ରାଜାଙ୍କର ପ୍ରବେଶ । ଯୁବରାଜଙ୍କ ଉଷ୍ଣୀଷରୁ ଗୋଟିଏ ଦୀର୍ଘ ବାଘ ଲାଙ୍ଗୁଡ଼ ଲମ୍ବିତ ।]

ଅନୁଗୋଳ– ଜେନାମଣି, ଆପଣଙ୍କୁ ଆଜିଠୁଁ ଲୋକେ ଲାଙ୍ଗୁଳା, ଲାଙ୍ଗୁଡ଼ିଆ, କେତେ ବି ଲଙ୍ଗଳା ନରସିଂହଦେବ ଡାକିଲେଣି । କେବଳ ମୁଷ୍ଟିଯୁଦ୍ଧରେ ଦଶପଲ୍ଲା ଜଙ୍ଗଲରେ ଯେ ଏତେବଡ଼ ବାଘଟା ମାରିଦେଲ, ଏଇଟା ଅବଶ୍ୟ ଭାରି ବୀରତ୍ୱର କଥା । କିନ୍ତୁ ସବୁବେଳେ ତା'ର ଲାଙ୍ଗୁଡ଼ଟା ମୁଣ୍ଡରେ ମାରି ବୁଲିବାରେ ବ୍ୟାପାର ବଡ଼ ହାସ୍ୟକର ହୋଇଉଠୁଛି ।

ନରସିଂହ–ସେଦିନ ମାମା ମୋ ମୁଣ୍ଡରେ ଏ ଉଷ୍ଣୀଷ ବାନ୍ଧିଦେଇ ସେଥିରେ ଏ ବାଘପୁଚ୍ଛକୁ ଝୁଲାଇଦେଲେ ଏବଂ ପରମ ଆନନ୍ଦରେ ମୋର କପାଳରେ ଚୁମ୍ବନଦେଲେ । ମାଆଙ୍କର ଏ ଉପହାର ମୋତେ ଛାଡ଼ିବାକୁ ମନହେଉନାହିଁ । କ୍ଷତି ବା କ'ଣ ? ଲୋକେ ଯାହା କହିବାର କହନ୍ତୁ । ଆଜି ଥଟ୍ଟା କରୁଛନ୍ତି, କିନ୍ତୁ ମୁଁ ଗାଦିରେ ବସେଁ ।

ଅନୁଗୋଳ–ଛି, ଜେନାମଣି ! ପ୍ରଜାମାନଙ୍କର ସମ୍ବନ୍ଧରେ ଏପରି କହିବା ତୁମ ମୁହଁରେ ଶୋଭା ପାଉନି । କାଳିଦାସଙ୍କ ରଘୁବଂଶ-ରାଜାମାନଙ୍କ ରାଜମହିମାହିଁ ଗଙ୍ଗବଂଶର ଆଦର୍ଶ । ଏ ଦେଶରେ କେଶରୀମାନେ ଅତୁଳ କୀର୍ତ୍ତି ରଖିଯାଇଅଛନ୍ତି । କିନ୍ତୁ ଗଙ୍ଗବଂଶର କୀର୍ତ୍ତି କେଶରୀ ସ୍ମୃତିକୁ ଲୋକମନରୁ ଏକାବେଳକେ ପୋଛିଦେଇଛି । ବିଶେଷତଃ ମହାରାଜ ଅନଙ୍ଗଭୀମ ଯେପରି ପ୍ରଜାରଞ୍ଜନବ୍ରତ ପାଳନକଲେ, ସେଥିଲାଗି ଉତ୍କଳ ଓ ଗଙ୍ଗବଂଶ ଉଭୟେ ଧନ୍ୟ । ଦୁଃଖର କଥା, ମହାରାଜାଙ୍କ ଚରିତକୁ କାବ୍ୟ କରିବାପାଇଁ ଏପର୍ଯ୍ୟନ୍ତ କୌଣସି କାଳିଦାସ ଜୁଟିଲେ ନାହିଁ । ବିଶ୍ୱନାଥ କେବଳ ଅଳଙ୍କାର ଆଲୋଚନାରେ ରହିଲେ । ମୁଁ ତାଙ୍କୁ କେତେଥର ଏ କଥା କହିଲିଣି, କିନ୍ତୁ କରିବେ କରିବେ ବୋଲି ସେ ଆସି ବୁଢ଼ାହେଲେ । ତଥାପି ମହାରାଜ ଏଇ ବାରବାଟୀ ଦୁର୍ଗ ଓ ଶ୍ରୀମନ୍ଦିର ନିର୍ମାଣକରି, ସମଗ୍ର ସାମ୍ରାଜ୍ୟକୁ ନଳ କରି ଓ ନ୍ୟାୟପର ଭାବରେ କରଧାର୍ଯ୍ୟକରି, ରାଜ୍ୟମୟ ଘାଟ, ପୋଖରୀ, ଗ୍ରାମ, ଦେଉଳ ସ୍ଥାପନ କରି, ପୁଣି ସମଗ୍ର ସାମ୍ରାଜ୍ୟରେ ସାମନ୍ତ ନୃପତି ସୃଷ୍ଟିକରି ଯେଉଁ ଯଶ ରଖିଗଲେ, ତାହା ମରିବାର ବା ଲୋକସ୍ମୃତିରୁ ଲିଭି ଯିବାର ନୁହେଁ । ଏପରି ରାଜା ଉତ୍କଳର ଆକାଶରେ କେଭେଁ ହେଲେ ଉଦିତ ହୋଇ ନ ଥିଲେ ଏବଂ ଆଜିର ଯବନପ୍ରପୀଡ଼ିତ ଆର୍ଯ୍ୟାବର୍ତ୍ତରେ ଯାଙ୍କପରି ଦ୍ୱିତୀୟ ସ୍ୱାଧୀନରାଜା ଥିବେ କି ନାହିଁ ସନ୍ଦେହ । ଜେନାମଣି, ଆପଣ ବାବାଙ୍କର ଉପଯୁକ୍ତ ଦାୟାଦ ନ ହେଲେ ବଂଶର କଳଙ୍କ ସଂଗେ ସାମ୍ରାଜ୍ୟର ଦୁର୍ଗତିକି ଆଣିବେ କେବଳ । ଆପଣଙ୍କର ଶ୍ରେଷ୍ଠ

ଦାୟ ହେଉଛି ପବିତ୍ର ପ୍ରଜାରଞ୍ଜନ ଧର୍ମ । ମହାରାଜ ଅନଙ୍ଗଭୀମ ବାଘ ଲାଙ୍ଗୁଡ଼ରେ ଶାସନକରି ଆଦର୍ଶ ଗଙ୍ଗରାଜା ହୋଇନାହାନ୍ତି ।

(ବଳରାମ ସଦସ୍ୟଙ୍କର ହଠାତ୍ ନସ୍ୟ ସେବନ କରୁ କରୁ ପ୍ରବେଶ ।)

ସଦସ୍ୟ—କି ଯୁବକ ନୃପତିଗଣ, କି ବିଚାର ପଡ଼ିଛି ? ବୁଢ଼ାମାନଙ୍କୁ ହଟେଇବ ନା ? ଶ୍ରୀକ୍ଷେତ୍ରରୁ ଫେରିଲାବେଳେ ମହାରାଜ ତୁମମାନଙ୍କୁ କହିଲେ, " ଆସ ଆସ, ମୋ ସାଥିରେ ହାତୀରେ ବସ ।" କଥାଟା ଭାରି ଅପମାନ ଲାଗିଗଲା ଯେ, ଦିହେଁଯାକ କହିପକାଇଲ "ନା, ନା, ମିଶ୍ରେ ବସନ୍ତୁ— ଆମେ ଟୋକାସବୁ ଘୋଡ଼ାରେ ଯିବୁ ।" ଆହେ ବାବୁ, ମିଶ୍ରେ ବି ତମପରି ଦିନେ ଟୋକା ଥିଲେ ହେ ! ସେ ବି ଚଢୁଥିଲେ ଘୋଡ଼ା ! ଆଉ ତମପରି ତାଙ୍କୁ ବି ଚାହିଁରହୁଥିଲେ ଟୋକୀମାନେ । ମିଶ୍ରଙ୍କ ପକ୍ଷରେ ଏଗୁଡ଼ାକ କିଛି ନୂତନ ନୁହେଁ, ବାବାମାନେ !

ଅନୁଗୋଳ— ମିଶ୍ର ଆପଣେ, ତମେପରା ଏବେ ଦ୍ୱିତୀୟପକ୍ଷ ଆଣିଛ ? ତମକୁ ଆମେ ବୁଢ଼ା ବୋଲି ତାଚ୍ଛଲ୍ୟ କରିବୁଁ ?

ସଦସ୍ୟ—ହଁ, ହଁ, ଯା ! ତମେ ଟୋକାଦଳ ମହାରାଜଙ୍କୁ ମତେଇ, ମୋ ବେକରେ ଗୋଟାଏ ବାନ୍ଧିଦେଲ, ପୁଣି ଥଟ୍ଟା କରୁଛ ? ହଉ, ସେମିତି ହେଲେ କହିଦେବିଟି, ମହାରାଜାଙ୍କୁ କହିଦେବି ! ନିଶ୍ଚେ କହିଦେବି !

ନରସିଂହ— (ବ୍ୟଗ୍ର ହୋଇ) କ'ଣ ସଦସ୍ୟେ, କ'ଣ କହିବ ?

ସଦସ୍ୟ— ସେଦିନ... ଶ୍ରୀକ୍ଷେତ୍ରରେ ...ସଭା ମଣ୍ଡପରେ...ମନେପଡୁନି ? ..କିଆଁ ପଡ଼ିବ ? ମୁଁ ଜାଣେ ଯେ —ଆଜିକାଲିକା ଟୋକା ଜାଣିସିଆଣିଆ !

ଅନୁଗୋଳ— ସଦସ୍ୟେ, ଆମର ତ କିଛିହେଲେ ମନେପଡୁନି ।

ସଦସ୍ୟ—ମନେ ନାଇଁ ? ମନେପକା । ନାଚହେଉଥିଲା—ତମେ ଦିହେଁଯାକ କା'କୁ ଚାହିଁଥିଲ ?

ନରସିଂହ— ଆମେ ତ ସଦସ୍ୟେ ନାଚ ଦେଖିବାକୁ ଯାଇଥିଲୁ— ନାଚ ଦେଖୁଥିଲୁ । ଆଉ କ'ଣ ଆଖିବୁଜି ବସିଥା'ନ୍ତୁ ?

ସଦସ୍ୟ— ହଁ, ହଁ, ଭଲଲୋକ ସାଜୁଛ, ନାଁ ? ମତେ ଥଟ୍ଟା କରୁଛ ପରା, ଯାଉଛି, ସବୁ ମହାରାଜାଙ୍କୁ କହିବି । ଏଇ ଗଲି .....(ଯିବାର ଉଦ୍ୟମ)

ଅନୁଗୋଳ— (ଧାଇଁଯାଇ ଧରି) ସଦସ୍ୟେ, ତମ ହାତ ଧରୁଛି, ମହାରାଜାଙ୍କୁ ତମେ ଆମ ନାଁରେ, କିଛି ହେଲେ କହନି !

ସଦସ୍ୟ— (ଦୃଢ଼ଭାବରେ) ତା' ହେଲେ ତମେ ମାନ, ମୁଁ ଯାହା କହୁଥିଲି ।

ନରସିଂହ— ଆଚ୍ଛା ! କ'ଣ କହୁଥିଲଟି ?

(ଅନୁଗୋଳକୁ ହାତମାରି ଇଙ୍ଗିତ ଦେବା)

ସଦସ୍ୟ— ନାଚବେଳେ ।

ଉଭୟେ— ନାଚବେଳେ ।

ସଦସ୍ୟ— ଦେବଦାସୀକୁ ।

ଉଭୟେ— ଦେବଦାସୀକୁ ।

ସଦସ୍ୟ— ଅନାଇଥିଲୁଁ ।

ଉଭୟେ— ଅନାଇଥିଲୁଁ ।

ସଦସ୍ୟ— ମାନିଲି ?

ଉଭୟେ— ହଁ, ମାନିଲୁଁ ।

ସଦସ୍ୟ— ମହାରାଜାଙ୍କୁ ଏଇକଥା କହିବି ?

ଉଭୟେ— ହଉ, ଯା, କହ !

ସଦସ୍ୟ— (ସ୍ୱଗତ) ବାବାରେ, ଏ କି ପରିବର୍ତ୍ତନ ! ବର୍ତ୍ତମାନ ମୁହଁ ବଦଳେଇବାକୁ ହେବ, ଦେଖୁଛି । ଏ ଟୋକାଙ୍କୁ ଆଉ ପାରିହେଉନି !

ଅନୁଗୋଳ— କି ସଦସ୍ୟେ, କ'ଣ ଭାବୁଛ ଆଉ ? ଯାଅ, କହ !

ସଦସ୍ୟ— ହଇହେ ଯୁବରାଜ, ତମେ କ'ଣ ମତେ ଚିହ୍ନିନା ? ବଳରାମ ସଦସ୍ୟ କ'ଣ ଅନଙ୍ଗଭୀମଦେବର କାନକୁହା ଗୁପ୍ତଚର ? ଆମର ଯା' ତା' ନାଁରେ କହିବାର କି ଦରକାର, ଭାଇ ? କେବେ ଶୁଣିଛ କାହା ନାଁରେ ମହାରାଜାଙ୍କୁ କହିବାର ? ଏ ବ୍ରାହ୍ମଣର ଜାତକରେ ତା' ନାହିଁ । ତମ ଟୋକାଗୁଡ଼ାଙ୍କୁ ଟିକିଏ ଧମକାଇ କଉତୁକ କରୁଥିଲି ନା ! ହଉ, ହଉ, ଦେଖିଲି ତମମାନଙ୍କୁ ଆଉ ପାରିହେବନି । ଏବେ ନୂଆ କଥା ପକେଇବା । ଶୁଣିଛ ନା, ମାଳବ ଦେଶରୁ ଲୋକ ଆସିବାର ? ବିଭାଘର ତ ନିକଟରେ ହୋଇଯିବ ।

ଅନୁଗୋଳ— ଅତି ଆନନ୍ଦର କଥା, ସଦସ୍ୟେ ! କ'ଣ କହୁଛ ଜେନାମଣି ?

ସଦସ୍ୟ— କାଳିଦାସଙ୍କ ସ୍ୱପ୍ନପୁରୀ ଉଜ୍ଜୟିନୀର ସୁନ୍ଦରୀଶ୍ରେଷ୍ଠାଙ୍କୁ ସେ ଯେତେବେଳେ ପାଇବାକୁ ଯାଉଛନ୍ତି, ତାଙ୍କୁ ଆଉ ପଚାରୁଛ କ'ଣ ? ଦେବତାମାନଙ୍କର ତ ଲାଳ ବୋହିବାର କଥା । କିନ୍ତୁ ବାବା, ଅନଙ୍ଗଭୀମଦେବଙ୍କର ପୁତ୍ରରୂପେ ଏ ବିଶାଳ ସାମ୍ରାଜ୍ୟର ଉପଯୁକ୍ତ ହୁଅ, ଏହାହିଁ ଆମର ଏକାନ୍ତ କାମନା । କ'ଣ କହୁଛ, ଅନୁଗୋଳ ?

ଅନୁଗୋଳ—ତମେ ଆସିବା ପୂର୍ବରୁ ମୁଁ ତାଙ୍କୁ ଠିକ୍ ଏଇୟା କହୁଥିଲି ।

ସଦସ୍ୟ—ସେ କେବଳ ତମରି କଥା ତ ମାନିବେ । ତମେଇ ତାଙ୍କୁ ବୁଝେଇପାରିବ ।

ନରସିଂହ—(ଉତ୍ତେଜିତହୋଇ) ସମସ୍ତେ ସେହି କଥା କହିଲେ ! ମୁଁ କ'ଣ ଦୁଗ୍ଧପୋଷ୍ୟ ଶିଶୁ, ଚାଟଶାଳୀର ଖଡ଼ିଛୁଆଁ ପିଲା ଯେ ମତେ ଯିଏ ମନ ସିଏ ଉପଦେଶ ଦେବାରେ ଲାଗିବେ ! ଦେଖ ସଦସ୍ୟେ, ମୁଁ କେବଳ ବାବାଙ୍କ ସାମ୍ରାଜ୍ୟ ପାଇ ସନ୍ତୁଷ୍ଟ ହେବି ନାହିଁ । ମୋ ସାମ୍ରାଜ୍ୟ ତାଂକ ସାମ୍ରାଜ୍ୟର ସୀମାକୁ ଶ୍ରାବଣମାସର ପାଣି ଚୁଆର ବନ୍ଧ ଡ଼େଇଁଲା ପରି ଡେଇଁ ବହିଯିବ । ମୁଁ ଯେଉଁ ଦେଉଳ ତୋଳିବି ତା' ତୁଳନାରେ ତାଂକ ଦେଉଳକୁ ଲୋକେ ଅନେଇବେନି । ମୁଁ ଏହା କରିବିଇ କରିବି । ମନେରଖ ମୁଁ ଅନଙ୍ଗଭୀମଦେବଂକ ପୁତ୍ର । ବାବାଙ୍କୁ କହ, ବିବାହର ସମସ୍ତ ଆୟୋଜନ ବନ୍ଦରହୁ । ମୁଁ ମୋର ଅଧୀନସ୍ଥ ବାହିନୀକୁ ଧରି ବାହାରିଲି ତେଲିଙ୍ଗାନା ଆକ୍ରମଣରେ । ବାବା ଯାହା ବାକୀ ରଖିଛନ୍ତି,

ତାହା ସାରିବ; ତେବେ ଯାଇ କୌଣସି ରାଜକନ୍ୟାର କର ଧାରଣ କରିବି । ଅନୁଗୋଳ, ମୋ ସଙ୍ଗରେ ଯିବ ତ ଆସ ! (ପ୍ରସ୍ଥାନ)

ସଦସ୍ୟ— ବଡ଼ ଏକମୁହାଁଟା ! ଯାହା ମନରେ ଉଠିଛି ତାହା କରିବଇ କରିବ । ଯାଅ ଅନୁଗୋଳ, ତା ପଛ ଧର ! ମୁଁ ଏଣେ ମହାରାଜାଙ୍କୁ ଏ ଖବର ଦେବାକୁ ଯାଏ । ଆଚ୍ଛା ସାରୁ ଖୋଳୁଖୋଳୁ ମହାଦେବ ବାହାରିଲା ହୋ ! (ଉଭୟେ ଦୁଇଦିଗେ ନିଷ୍କ୍ରାନ୍ତ)

## (ଚତୁର୍ଥ ଦୃଶ୍ୟ)

[ଲକ୍ଷ୍ମଣାବତୀରେ ବକ୍ତିଆର୍ ଖିଲିଜିଙ୍କ ଶିବିର ।]

ସିରାଜ୍— କହନ୍ତୁ ଖୋଦାବନ୍ଦ୍ !

ବକ୍ତିଆର— ପିଞ୍ଜରା ରହିଛି— କିନ୍ତୁ ପକ୍ଷୀ ଯେ ଉଡ଼ିଗଲା ।

ସିରାଜ୍— ହଁ, ସେ ପିଞ୍ଜରାରେ ପୁଣି ପଶିବାକୁ ଚେଷ୍ଟାକରିପାରେ ।

ବକ୍ତିଆର— ତାହା ହେଲେ କ'ଣ କରାଯିବ ?

ସିରାଜ୍— ବାଣୁଆ ପଠାଇ ତାକୁ ମାରି ବା ଧରି ଆଣିବାକୁ ହେବ । ସେହି ବାଣରେ ଅନ୍ୟ ପକ୍ଷୀ ମଲେ ବି ଉତ୍ତମ କଥା ।

ବକ୍ତିଆର— ସେଟା ସେତେ ସହଜ କଥା ନୁହେଁ ସିରାଜ ଖାଁ । ଏପର୍ଯ୍ୟନ୍ତ ଆମେ ଛୋଟ ଛୋଟ ହିନ୍ଦୁରାଜ୍ୟକୁ ଅଲଗା ଅଲଗା ଆକ୍ରମଣ କରିବାରୁ, ଆଉ ସେମାନଙ୍କ ଭିତରେ ଏକତା ଓ ସାହାଯ୍ୟ ନ ଥିବାରୁ, ଗୋଟାକ ପରେ ଗୋଟାଏ ଜୟକରିଗଲୁଁ । କିନ୍ତୁ ଲକ୍ଷ୍ମଣସେନ ଯେଉଁ ଦେଶରେ ଆଶ୍ରୟ ନେବାକୁ ପଳାଇଗଲେ, ସେ ରାଜ୍ୟ—ନୁହେଁ ଛୋଟ ଆକାରରେ ବା ନୁହେଁ ଦୁର୍ବଳ ଶକ୍ତିରେ । ଛୋଟ ବଡ଼ ପଥର ସବୁ ଜାକିହୋଇ ଯେପରି ପ୍ରକାଣ୍ଡ ପାହାଡ଼ ଦୃଢ଼ତାର ସହିତ ଠିଆହୋଇଥାଏ, ପ୍ରକୃତିର ଶକ୍ତି ସମୂହକୁ ତାଚ୍ଛଲ୍ୟକରି, ବହୁ ସାମନ୍ତ ପରିବେଷ୍ଟିତ ଉତ୍କଳ-ରାଜ ସେହିପରି ଦୁର୍ଜ୍ଜୟ !

ସିରାଜ— ମୁସଲମାନ୍ କାହାକୁ ଦୁର୍ଜ୍ଜୟ ମନେକରେନା, ଖୋଦାବନ୍ଦ୍ । ତା' ହୋଇଥିଲେ ଆଲମ୍ବ୍ରାଠାରୁ ଆସାମ ପର୍ଯ୍ୟନ୍ତ ସମଗ୍ର ପୃଥିବୀର ଅର୍ଦ୍ଧେକରେ ଆଜି ଚନ୍ଦ୍ରଲାଞ୍ଛିତ ପତାକା ଉଡୁନଥାନ୍ତା । ଇସଲାମ୍‌ର ସିପାହି ସ୍ୱୟଂ ଆଲ୍ଲା । ସ୍ୱୟଂ ରସୁଲ୍ ଏହାର ରକ୍ଷକ । ମୁସଲମାନ୍ ତେଣୁ ନିର୍ଭୀକ୍ । ତା' ପରେ, କାଫେର୍ ବିରୁଦ୍ଧରେ ଠିଆହେବାଇ ତ ଜେହାଦ୍ । ଏଥିରେ ମଲେ ମୁସଲମାନ ହେବ ସହିଦ୍ । ମାରିଲେ ପାଇବ ଆଲ୍ଲାର ଆଶୀର୍ବାଦ । ପୁଣି ଦେଖନ୍ତୁ, ଉତ୍କଳ, ସାରା ହିନ୍ଦୁସ୍ଥାନର କାଫେର୍‌ମାନଙ୍କର ମକ୍କା । ସେଠି ଜଗନ୍ନାଥର ଦେଉଳ ଅଛି । ମାମୁଦ, ସୋମନାଥ ଓ ନଗରକୋଟ୍‌ରେ ଏବଂ ମହମ୍ମଦ ଘୋରୀ, ମଥୁରାରେ ଯାହା କରି ଇସଲାମ୍‌ର ବିଜୟ କାଫେର୍ ଦେବତାର ମୁଣ୍ଡ ଉପରେ ଠିଆହୋଇ ଘୋଷଣାକଲେ, ଖୋଦାବନ୍ଦ୍, ଜଗନ୍ନାଥର ଦେବତାକୁ ଭସ୍ମ କରି, ବ୍ରାହ୍ମଣମାନଙ୍କୁ କତଲକରି, ମନ୍ଦିରକୁ ଧୂଳିସାତ୍ କରି, ମନ୍ଦିରର ଧନରତ୍ନ ଲୁଣ୍ଠନ

କରି ଆମ୍ଭେ ସେହି ମାନ୍ ପାଇବା । ଇସ୍‌ଲାମ୍‌ର ମାନ୍ ରଖିବା ପାଇଁ ଆମ୍ଭମାନଙ୍କୁ ଉତ୍କଳ ନିଶ୍ଚୟ ଚଢ଼ାଉ କରିବାକୁ ହେବ ।

ବକ୍ତିଆର— ପ୍ରକୃତରେ ଉତ୍କଳ ହିନ୍ଦୁମାନଂକର ମକ୍‌କା । ଆମେ ତ ଏ ଦେଶକୁ ରାଜା ହେବା ପାଇଁ ଆସିନାହୁଁ, ଆମେ ଆସିଛୁଁ କାଫେର୍ ଧ୍ୱଂସକରି ଇସ୍‌ଲାମ୍ ଥାପନା କରିବାକୁ । ନ ହେଲେ କାବୁଲିସ୍ତାନର ଥଣ୍ଡା ହାଓ୍ୱା, ସେଓ, ନାସପାତି, ଅଙ୍ଗୁର ଓ ସିରାଜି-ସରବତ୍ ଛାଡ଼ି, ଏ ଧୂଳିମୟ ଗରମି ଦେଶରେ ଘାଣ୍ଟିହେଉଥା'ନ୍ତୁ କାହିଁକି ? ଇସଲାମ୍ ପାଇଁ ଆମ ସମସ୍ତଙ୍କର ଜାନ୍ ଆମେ ଦେଇଛେଁ । ଆଉ, ସାରା ହିନ୍ଦୁସ୍ଥାନକୁ ଜିଣି ଯଦି ଜଗନ୍ନାଥଙ୍କୁ ଛାଡ଼ିଯାଉଁ ତେବେ କଲିଜାଟା ଛାଡ଼ି ଜାନୁଆରର ଅନ୍ୟ ମାଂସ ଖାଇବା ଭଳି ହେବ । ନା, ସିରାଜ, ତମେ ଠିକ୍ କହୁଛ । ଉତ୍କଳ ଆକ୍ରମଣ ମୁସଲମାନ୍‌ର ଏକ ପ୍ରଧାନ ଜେହାଦ୍ । ଯାଅ, ଏହାହିଁ ଫଉଜରେ ପ୍ରଚାରକର ଏବଂ କାଲି ଯାତ୍ରା ପାଇଁ ସମସ୍ତ ବନ୍ଦୋବସ୍ତ କର । (ପ୍ରସ୍ଥାନ)

## (ପଞ୍ଚମ ଦୃଶ୍ୟ)

[ବାରବାଟୀର କକ୍ଷାନ୍ତର]

ଅନଙ୍ଗ—ତୁମେ କେତେଦୂରଯାଏଁ ଯାଇଥିଲ ପାତ୍ରୁଷୀଏ ?

ପଟ୍ଟଯୋଶୀ—ମୁଁ ଭୁବନେଶ୍ୱର ପର୍ଯ୍ୟନ୍ତ ଗଲି । ଈଶାନ ପଟ୍ଟନାୟକଙ୍କୁ ସବୁ କଥା ବୁଝାଇ କହିଛି । ଯୁବରାଜଙ୍କୁ ମଧ ସାବଧାନତାର ସହିତ ସବୁ କରିବାକୁ କହିଲି । ଯୁବରାଜ ବାବା ଓ ମାମାଙ୍କୁ ଭୂମିଷ୍ଠ ପ୍ରଣାମ ମୋ ହାତରେ ଦେଇ ବିଦାୟନେଲେ । ତାଂକର ଅଶ୍ୱଖୁରୋତ୍‌ଥିତ ଧୂଳି ନ ଦିଶିଲା ପର୍ଯ୍ୟନ୍ତ ମୁଁ ତାଙ୍କୁ ଅନାଇଥାଏଁ । ଶେଷରେ ସେ ତରବାରି ହଲାଇ ହଲାଇ ଅଦୃଶ୍ୟ ହୋଇଗଲେ । ସାଙ୍ଗରେ ଅନୁଗୋଳ ତ ଥା'ନ୍ତି । ତା' ଛଡ଼ା, ବଉଦ, ବାଣପୁର, ଗଞ୍ଜାମର ସାମନ୍ତଗଣ ଦେଶଜୟ-ଯଶରେ ଭାଗୀ ହେବାପାଇଁ ବାଟରେ ମିଶିବାକୁ ସମ୍ବାଦ ପଠାଇଛନ୍ତି ।

ଅନଙ୍ଗ— କୁଆଡ଼େ ଅଭିଯାନ କରିବେ କହିଛନ୍ତି କିଛି ?

ପଟ୍ଟଯୋଶୀ— ରାଜମହେନ୍ଦ୍ରୀଠାରେ ସମଗ୍ର ବାହିନୀ ସମବେତ ହେଲାପରେ, ସାମନ୍ତ ଓ ଦଳପତିମାନଙ୍କ ପରାମର୍ଶରେ ଯାହା ହେଲେ କରିବେ । କିନ୍ତୁ ମୋର ମନେହେଉଛି ତାଂକର ଇଚ୍ଛା ତେଲିଙ୍ଗାନାର ରାଜଧାନୀ ବାରଙ୍ଗଲ୍ ପ୍ରଥମେ ଅଧିକାର କରି ପରେ ଚାଲୁକ୍ୟ ରାଜ୍ୟର ପ୍ରସିଦ୍ଧ ଦୁର୍ଗ କୁଲବର୍ଗ ଆକ୍ରମଣ କରିବେ ।

ଅନଙ୍ଗ—ଭଲକଥା ! ପ୍ରଥମ ବୟସରେ ମୋର ବି ଏକାନ୍ତ କାମନା ଥିଲା ସମଗ୍ର ତେଲିଙ୍ଗାନାକୁ ଉତ୍କଳ ସଂଗେ ମିଶାଇଦେବାକୁ । ଗୋଲକୁଣ୍ଡାର ହୀରକଖଣି ଏହି ତେଲିଙ୍ଗାନାରେ । କିନ୍ତୁ ପଟ୍ଟଯୋଶୀଏ, ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ମତେ ଏସବୁ ଆଉ ଭଲ ଲାଗୁ ନାହିଁ । ଏକ ଦୁର୍ଦ୍ଧର୍ଷ, ଦୁର୍ଜ୍ଜେୟ ଶତ୍ରୁ ଆର୍ଯ୍ୟାବର୍ତ୍ତରେ ରାଜ୍ୟ ପରେ ରାଜ୍ୟ ନେଇ ଯାଉଥିଲାବେଳେ, ଆମେ ପରସ୍ପରକୁ ହାଣ-କାଟ କରିବା ବିଜ୍ଞତାର କାର୍ଯ୍ୟ ନୁହେଁ ।

ରାଜ୍ୟ ସିନା ଖଣ୍ଡ ଖଣ୍ଡ, ଧର୍ମ ତ ଏକ ! ଆମେ କ୍ଷତ୍ରିୟ ରାଜନ୍ୟବୃନ୍ଦ ସମସ୍ତେ ଏକତ୍ର ହେଲେ ସିନା ଧର୍ମରକ୍ଷା ହୁଅନ୍ତା । ଆମେ ଯଦି ଆପେ ଆପେ ମରାମରି ହେବା, ତେବେ ଧୂର୍ତ୍ତ ବିଦେଶୀ ସମସ୍ତଙ୍କୁ ଦୁର୍ବଳ ଦେଖି ଗୋଟି ଗୋଟି କରି ଚିପିଦେବ । ପୃଥ୍ୱୀରାଜ-ଜୟଚନ୍ଦ୍ର କଳିରୁ କ'ଣ ଆମର କିଛି ଶିଖିବାର ନାହିଁ ?

ପଞ୍ଚଯୋଶୀ—ରାଜପୁତମାନଙ୍କ ଅହଙ୍କାରରୁହିଁ ମୁସଲମାନ ଆର୍ଯ୍ୟାବର୍ତ୍ତରେ ପଶିପାରିଲା । ରାଠୋର ଓ ଚୌହାନମାନେ ଉଡ୍ର ଓ ଚାଲୁକ୍ୟମାନଙ୍କୁ ତାଚ୍ଛଲ୍ୟ କରନ୍ତି । ଥାନେଶ୍ୱର ବା ତିରୋରୀ ଯୁଦ୍ଧକୁ ବଙ୍ଗ, ଉତ୍କଳ ଓ ସମଗ୍ର ଦାକ୍ଷିଣାତ୍ୟର କୌଣସି ରାଜାଙ୍କୁ ନିମନ୍ତ୍ରଣ କରାଯାଇନଥିଲା । ଉଡ୍ର ପଦାତିକ ଓ ଚାଲୁକ୍ୟ ଅଶ୍ୱାରୋହୀ ମିଶିଥିଲେ ଯବନ ସିନ୍ଧୁ ନଦୀର ଏପଟକୁ ପାଦ ଦେଇପାରି ନ ଥା'ନ୍ତା । କିଏ କ'ଣ କରିବ ? ପୃଥ୍ୱୀରାଜ ନିଜ ଜାତୀୟ ଅହଙ୍କାରର ଫଳ ପାଇଲେ । ଏଣେ ଚାଲୁକ୍ୟ ଓ ତେଲିଙ୍ଗାନାର ରାଜାମାନେ ମଧ୍ୟ ଉଡ୍ରମାନଙ୍କୁ ବେଖାତିରକରନ୍ତି । ତରୁଣ ଯୁବରାଜ ସେହି ତାଚ୍ଛଲ୍ୟର ପ୍ରତିଶୋଧ ନେବାକୁ ଯାଇଛନ୍ତି ମାତ୍ର । କ୍ଷାତ୍ର ଯଶ ତ ଖଣ୍ଡାୟତର ଶିରୋଭୂଷଣ । ନବ ବିଜୟର ଯଶକୀର୍ତ୍ତି, ନବନିର୍ମିତ ବାରବାଟୀର ପ୍ରଥମ ବନ୍ଦନ ହେବ, ମହାରାଜା !

ଅନଙ୍ଗ—(ଚିନ୍ତାକୁଳ ଭାବରେ) ଯଶ ! କୀର୍ତ୍ତି ! ମନୁଷ୍ୟ ଯଶ ଚାହେଁ । ରାଜା କୀର୍ତ୍ତି ରଖିବାକୁ ଚାହେଁ । ସେଥିପାଇଁ ନରରକ୍ତରେ ପୃଥିବୀ ରଂଜିତ କରିବାକୁ ହୁଏ, ଶତ ଶତ ନାରୀଙ୍କୁ ବିଧବା, ସହସ୍ର ସହସ୍ର ବାଳକବାଳିକାମାନଙ୍କୁ ପିତୃମାତୃହୀନ କରିବାକୁ ହୁଏ । ଏଇ ହେଲା କ୍ଷତ୍ରିୟର ଯଶ, ନୁହେଁ ମନ୍ତ୍ରୀ ? ଅନଙ୍ଗଭୀମଦେବ ଗୋଟିଏ ଦୁର୍ଗ ଓ ଗୋଟିଏ ମନ୍ଦିର ତୋଳାଇଛି ବୋଲି ଲୋକେ ତା'ର କୀର୍ତ୍ତି ଗାନକରୁଛନ୍ତି । ଛୋଟ ଉଇ କି ବିରାଟ ହୁଙ୍କା ତିଆର ନ କରେ । ତା' ତୁଳନାରେ ମଣିଷର ଏ ଶିଳ୍ପକୀର୍ତ୍ତି କି ଅକିଞ୍ଚିତ୍‌କର ? ମଣିଷ ସତେ ବଡ଼ ଅହଙ୍କାରୀ, ମନ୍ତ୍ରୀ, ନୁହେଁ ? ଅଢ଼େଇଦିନର ଜୀବନ । ପୃଥିବୀର ରଙ୍ଗମଞ୍ଚରେ ଆମେ ଯାଉଛୁ ନାଚ କରିବାକୁ....

ଚର—(ସସବ୍ୟସ୍ତେ ପ୍ରବେଶକରି) ମହାରାଜ, ମୁସଲମାନ ଉତ୍କଳ ଆକ୍ରମଣ କରିଛି । ଭାଗୀରଥୀ ପାରହୋଇ ମୁସଲମାନ ବର୍ତ୍ତମାନ ଜଳେଶ୍ୱରଆଡ଼କୁ ଧାବମାନ । ହରିହରପୁର ସାମନ୍ତ ମୁସଲମାନର ପ୍ରତିରୋଧ କରିବା ସଂଗେ ସଂଗେ ଛାମୁଙ୍କ ନିକଟକୁ ମୋଦ୍ୱାରା ଏହି ଖବର ପଠାଇଛନ୍ତି ।

ଅନଙ୍ଗ—(ଉତ୍ତେଜିତହୋଇ) ପାତ୍ରୁଷୀଏ, ଯାଅ, ଚତୁର୍ଦ୍ଦିଗକୁ ତୁରନ୍ତ ସମ୍ବାଦ ପଠାଅ । ଏଣେ ଆମର ସ୍ଥାୟୀ ବାହିନୀକୁ ଆଜି ଦିନଭିତରେ ସଜ୍ଜିତ ହେବାକୁ ଆଦେଶଦିଅ । ଆମ୍ଭେମାନେ କାଲି ପ୍ରତ୍ୟୁଷରୁହିଁ ଯାତ୍ରା କରିବା ।

ଚର—ଛାମୁଙ୍କ ନିକଟକୁ ହରିହରପୁର ସାମନ୍ତ ଏଇ ପତ୍ର ଦେଇଅଛନ୍ତି । (ପତ୍ରଦାନ)

ଅନଙ୍ଗ— ନିଅ ମନ୍ତ୍ରୀ, ଏହି ପତ୍ର ପାଠକରି ତା' ଅନୁସାରେ ଆୟୋଜନ କର । ଚାରିଆଡ଼େ ଢେଙ୍କୁରା ଦେଇଦିଅ ଯେ, ଯେ ଯେଉଁ ଅବସ୍ଥାରେ ଅଛ ମୁସଲମାନ ସଂଗେ ଲଢ଼ିବା ପାଇଁ ଜଳେଶ୍ୱର ଯିବାକୁ ପ୍ରସ୍ତୁତ ହୋଇ ଆସ । ଯାଅ ।

(ପଟପତନ)

## (ଷଷ୍ଠ ଦୃଶ୍ୟ)

[ଦାକ୍ଷିଣାତ୍ୟରେ ଉତ୍କଳ ଶିବିର । ସମୟ ସଂଧ୍ୟା । ଯୁବରାଜ ନରସିଂହ ଓ ସାମନ୍ତରାଜାଗଣ !]

ନରସିଂହ— ହଯୋ ଅନୁଗୋଳ, ବାଣପୁରଙ୍କୁ କହ, ସେ ଏଠାରୁ ଫେରିଯାଆନ୍ତୁ । ମୁଁ ଯେତେ କହିଲେ ସେ ତ ଶୁଣୁ ନାହାନ୍ତି । ତମେ ଟିକିଏ କହ ନା ।

ଅନୁଗୋଳ— ମୁଁ ବି ତାଙ୍କୁ କହିଲି । ଏଇ ତ ତାଙ୍କ ଶିବିରରୁ ଫେରୁଛି ମୁଁ । ଫେରିବା କଥା ପକେଇଲେ ସେ ଗର୍ଜିଉଠୁଛନ୍ତି । ତାଙ୍କର କଥାରୁ ଜଣାପଡୁଛି, ଆମେ ଯେପରି ତାଙ୍କୁ ହିଂସା କରି ଏପରି କରାଉଛୁଁ ।

ନରସିଂହ— ମୁଁ ପୁଣି ଆଜି ଆଉ ଥରେ ତାଙ୍କୁ କହେଁ । ଅବଶ୍ୟ ତେଲିଙ୍ଗାନାରେ ବୃଦ୍ଧ ବାଣପୁର ନ ଥିଲେ ଆମ ଅବସ୍ଥା ନିଶ୍ଚୟ ସଂଘାତିକ ହୋଇଥା'ନ୍ତା । ବାଣପୁର ଓ ଘୁମୁସରର କନ୍ଧ ପାଇକମାନେ ଆମର ମାନ ରକ୍ଷା କଲେ । କିନ୍ତୁ ସେ ବର୍ତ୍ତମାନ ରୋଗାକ୍ରାନ୍ତ । ବାରଙ୍ଗଲ ତ ଆଉରି ଅନେକ ବାଟ । ବାବାଙ୍କର ସେ ବିଶ୍ୱସ୍ତ ବଂଧୁ । ଯଦି କିଛି କ'ଣ ଘଟେ ତାଙ୍କୁ, ବାବା କହିବେ ଆମକୁ କ'ଣ ?

ଘୁମୁସର— ବୁଢ଼ା ବେଶ୍ ଥିଲେ । କୋଣ୍ଡାଭିଦୁରେ ସେହି ଶରଟା ଯେ ତାଙ୍କ ବାଁ କାନ୍ଧ କାଟି ଦେଇଗଲା, ସେ ଘାଆଟା ତ ଆଉ ଶୁଖୁନି । ତା'ରି ଫଳରେ ଜର ଲାଗିରହିଛି ।

ନରସିଂହ— ଦଶପଲ୍ଲାଙ୍କୁ ଦେଖୁନି ଯେ ! ଲାଜ ହେଇଯାଇଛି କି ତାଙ୍କୁ ? ତାଙ୍କଠୁଁ ଯାହା ଆଶା କରୁଥିଲି କିନ୍ତୁ ତା' ପାଉନି । କଥାଟି ଚିକ୍କଣ କରି କହିଜାଣନ୍ତି କେବଳ; କିନ୍ତୁ କାମ ବେଳକୁ ମାଙ୍କଡ଼ଚିତ୍ । ସେଦିନ ଶତ୍ରୁପକ୍ଷର ସାମାନ୍ୟ ମାଡ଼ଟା ସମ୍ଭାଳିପାରିଲେନି । ପଛକୁ ଆଠମଲ୍ଲିକ ଥିଲେ ବୋଲି ସିନା । ଆଠମଲ୍ଲିକଙ୍କର ଏତେ ଗୁଣ ଅଛି ବୋଲି ମତେ ଜଣା ନ ଥିଲା । ସେ ବଡ଼ ଚୁପ୍‌ଚାପ୍ । କି ସୁନ୍ଦର କବିତା ସେ ରଚନା କରୁଛନ୍ତି, ଶୁଣିଛ ଘୁମୁସର ? ବାବାଙ୍କୁ ଗଲେ ଏକଥା ନିଶ୍ଚେ କହିବି । ବାବାଙ୍କର କବିପ୍ରତି ସମ୍ମାନ କିପରି ଜାଣ ତ ସମସ୍ତେ ? (ଦୂରରୁ ଗୀତଧ୍ୱନି) ଦୁଇ ଦିନ ହେଲା ମୁଁ ଏଇ ଗୀତଟା ବରାବର ଶୁଣୁଛି । କିଏ ସେ ଗାଉଛି ? ବଡ଼ କରୁଣ ଅଥଚ ମଧୁର । ଏଇ ଯେ ସେ ଲୋକଟା ଏଣେ ବୋଲି ବୋଲି ଆସୁଛି । ସେ ଆସୁ । ତାକୁ ବାଧାଦିଅନି !

(ଜଣେ ଓଡ଼ିଆ ପାଇକର ଗୀତ ଗାଇ ଗାଇ ପ୍ରବେଶ)

ଦୂର ପରବାସେ ପିଣ୍ଡ ଛାଡ଼ି ଗଲୁ
  ଜନନୀ ପୁଛିଲେ କହିବି କିସ,
ଭାଇ ଭାଗ୍ୟରଥୀ
କାଟି ହୁଏ ଛାତି
  ହଅନ୍ତା କି ମୋର ଆହାର, ବିଷ !

ଫେରିବି ମୁଁ ଗ୍ରାମେ,
କି ସୁଖ ଏ ପ୍ରାଣେ,
ଏକା ଦେଖି ପଚାରିବେ ଗ୍ରାମଜନେ,
ଭାଗ୍ୟରଥୀ କାହିଁ ?
ଫେରିବ କି ନାହିଁ
ସୁଖ ଲାଗିଲା କି ସେ ପରବାସ ?
ଧେନୁ ଗୋଠେ ଆଉ ଯିବି କାହା ସାଥେ,
କଟା ଧାନ ବାନ୍ଧି ଦେବି କା'ର ମାଥେ,
ଜୋଛନା ରାତିରେ
ଚିଲିକା ପବନ
କରିବ କାହାର ଚିତ୍ତ ଉଲ୍ଲାସ ?
କୁଡ଼ିଆରେ ମାଆ ଚାହିଁଥିବ ପରା
ରଣୁ ଫେରିବ ତା ରଙ୍କୁଣୀପସରା,
ମନେ କି ପଡ଼ିବ ନାହିଁ ଭାଇ ମୋର
ଶୋଲେରି ପାହାଡ଼, ମାଆ ଲୁହଧାର,
ତୋର ପାଉଁଶରେ
କଲି ତରପଣ,
ଦେଇ ମୋର ଯେତେ ଲୋତକ, ଶ୍ୱାସ ।

ନରସିଂହ— କିଏ ତୁମ୍ଭେ ପାଇକ ? ଘର କେଉଁଠି ? କାହିଁକି ଏପରି ବିକଳ ଭାବରେ କାନ୍ଦୁଛ ?

ପାଇକ— ମୋର ଘର ବାଣପୁରରେ । ଦୁଇ ଭାଇ ଲଢେଇକି ଆସିଥିଲୁଁ । ସାନ ଚାଲିଗଲା, ମୁଁ ନ ଗଲି କିଆଁ ? ଘରକୁ ଫେରିଲେ ବୋଉ ପଚାରିଲେ କି କଥା କହି ତାକୁ ବୋଧ ଦେବି ? ସେ ତାକୁ ବେଶି ଭଲପାଉଥିଲା । ମୋର ହୃଦୟ ଆଉ ଥୟ ରହୁନି ତା'କଥା ଭାବି ଭାବି ।

ନରସିଂହ— ବଡ଼ କରୁଣ ଘଟଣା । ଅନୁଗୋଳ, ତମେ ଏହାର ନାମଧାମ ଲେଖିରଖ । ପାଇକ, ତମେ ବାଣପୁର ଭ୍ରମରାଙ୍କ ମେଳରେ ଅଛ ତ ? ଆଜିଠାରୁ ଆମରି ଶିବିରରେ ରହିବ । ଫେରିବା ବାଟରେ ତମ ମାଆଙ୍କୁ ମୁଁ ସବୁ କଥା କହିବି ।,ତୁମକୁ କିଛି କହିବାକୁ ପଡ଼ିବନି । ଦୁଃଖକରନା !

ପାଇକ— ମହାପ୍ରଭୁ ! ଏ ଭାଗ୍ୟ ପୁଣି ମୋର ହେବ ! (ସାଷ୍ଟାଙ୍ଗ ପ୍ରଣାମ)

ନରସିଂହ— ଉଠ, ଉଠ ! (ପାଇକ ଉଠିବା) ଆଠମଲ୍ଲିକ ଏ ଘଟଣାକୁ ନେଇ ଏକ କାବ୍ୟ ଲେଖି ପକାଇବେ ବୋଧହୁଏ— ନା କ'ଣ ଅନୁଗୋଳ ? ତାଙ୍କ ପ୍ରାଣ ଏଡ଼େ କୋମଳ— ସେ ପୁଣି ଶିକାର କରନ୍ତି କିପରି ଅନୁଗୋଳ ?

ବଉଦ— ଶିକାରରେ ବି କ'ଣ ଆଠମଲ୍ଲିକଙ୍କର ସେତେ ଶ୍ରଦ୍ଧା ? ଛାମୁ ସମ୍ରାଟ ହେଲେ ତାଙ୍କୁ ସଭାପଣ୍ଡିତ କରି ରଖିଲେ ଠିକ୍ ହୁଅନ୍ତା ! (ସମସ୍ତଙ୍କର ହାସ୍ୟ)

ନରସିଂହ— ଆସ ସମସ୍ତେ ବାଣପୁରଙ୍କ ଶିବିରକୁ ଯିବା । ସେଇଠି ବସି କାଲିର ଅଭିଯାନର ବିଚାର କରିବା । (ସମସ୍ତେ ନିଷ୍କ୍ରାନ୍ତ)

(ପଟପତନ)

## (ସପ୍ତମ ଦୃଶ୍ୟ)

[ଉଜ୍ଜୟିନୀ ରାଜପ୍ରାସାଦର ଏକ କକ୍ଷ ।]

ମାଳବିକା—ଶୁଣିଛୁ କୁଞ୍ଜରିକା, ଆଜି ନୃସିଂହନାଥଙ୍କଠାରେ 'ନୃସିଂହ ପ୍ରଣୟ' ନାଟକ ଅଭିନୀତ ହେବ । ସ୍ୱୟଂ ନାଟ୍ୟାଚାର୍ଯ୍ୟ ଉଦ୍‌ବାଳକ ନୃସିଂହ ଓ କଳାବତୀ ଲକ୍ଷ୍ମୀ ହେବେ । ତୁ ଯିବୁ ତ ? ଭର୍ତ୍ତୃଦାରିକେ, ମୁଁ ରାଣୀ-ମା'ଙ୍କୁ କହିରଖିଛି— ତୁମେ ଯିବ ତ ?

କାଞ୍ଚନପ୍ରଭା— କୁଞ୍ଜରିକା ଓ ମାଳବିକା, ତୁମେ ସବୁ ମିଳିମିଶି ମୋ ହାଡ଼ମାଂସ ଖାଇବ ନା କ'ଣ ? ମତେ ଯଦି ଦିବାରାତ୍ରି ଥଟ୍ଟାକର, ତେବେ ଦେଖୁଛି ମତେ ଉଜ୍ଜୟିନୀ ଛାଡ଼ି ପଳେଇଯିବାକୁ ହେବ !

ମାଳବିକା— ହଁ, ଛାଡ଼ି ପଳେଇ ନ ଗଲେ ପ୍ରକୃତରେ ରକ୍ଷାନାହିଁ— ବିଶେଷତଃ ଉତ୍କଳକୁ । କିନ୍ତୁ ତମେ ପଳେଇଗଲେ ଆମେ ଗୋଡ଼ାଇ ଜାଣୁ ଯେ— କୁଆଡ଼େ ଯିବ ?

କାଞ୍ଚନପ୍ରଭା— ତମେ ସବୁ କ'ଣ ମଣିଷର ଦୁଃଖକୁ ନେଇ ଥଟ୍ଟା କରିବ ?

କୁଞ୍ଜରିକା— ମଲା, ମାଳବ ରାଜଜେମାର ପୁଣି ଦୁଃଖ ! ଉତ୍କଳର ଯୁବରାଜ ଦେଶ ଜୟ କରି ଯାଇଥିବାରୁ ବିବାହ ବନ୍ଦରହିଯାଇଛି— ଏଇ ପୁଣି ଦୁଃଖ ? ବୀର ତ ଯୁଦ୍ଧ ଜିଣି ଆସିବ । ନରସିଂହ କାଞ୍ଚନପ୍ରଭା ତ ଦିନେ ଏକାଠି ହେବେ । ଦୁଃଖ କ'ଣ ଆଉ ?

କାଞ୍ଚନପ୍ରଭା— ତମର ଆଉ ଅନ୍ୟ ଭାବନା କ'ଣ ଥାଇପାରେ ? ଗାଙ୍ଗେଇ ପକ୍ଷୀର କେବଳ ମାଛ ଚିନ୍ତା । ଦୁରାଚାରୀ ଯବନ ଆସି ଦୁଆରେ ଧକ୍‌କା ମାଇଲା ପରି ଆଜି ଦୂତ ଜଣାଇଛି ଯେ କାଳିଞ୍ଜର ଦୁର୍ଗ ମୁସଲମାନ କବଳିତ; ସମଗ୍ର ଚାନ୍ଦେଲ ରାଜ୍ୟ ବର୍ତ୍ତମାନ ଭୂଲୁଣ୍ଠିତ । ମୁଁ ମହାରାଜ ବିକ୍ରମାଦିତ୍ୟଙ୍କ ବଂଶଜା । ମୋର ରକ୍ତ କ୍ଷତ୍ରିୟ ରକ୍ତ । ମୋର ଦୁଃଖ ଏହା ନୁହେଁ ଯେ ମୋର ବିବାହ ବନ୍ଦହୋଇଯାଇଛି— ମୋର ଦୁଃଖ ଏହି ଯେ ଆଜି ସମଗ୍ର ଆର୍ଯ୍ୟାବର୍ତ୍ତରେ କେହି ହେଲେ ବୀର ନାହିଁ ଯେ କି ଶତ୍ରୁର ପ୍ରତିରୋଧ କରିପାରିବ । ହାୟ ପୃଥ୍ୱୀରାଜ, ତମ ସଙ୍ଗେ ସଙ୍ଗେ କି ଭାରତବର୍ଷର କ୍ଷତ୍ରିୟ ଶୌର୍ଯ୍ୟ ଚିରଦିନ ପାଇଁ ଅସ୍ତମିତ ହେଲା ?

ମାଳବିକା— ମଲା, ଯବନ ଛାଡ଼ି ଯମ ଏ ଦେଶର ରାଜା ହେଲେ ମିଶେ ମଣିଷ ଟିକିଏ ଗୀତ ଗାଇବନି, ଟିକିଏ ହସ ଖେଳ କରିବନି ନା' କ'ଣ ?

କୁଞ୍ଜରିକା— ଛି ମାଳବିକା, ଥଟ୍ଟାତାମସା ରଖ୍ ଏକ୍ଷଣି ! ଜେମା, ଆମେ ଏସବୁଜାଣିନଥିଲୁ । ଆମକୁ କ୍ଷମାକର । ଭାରତବର୍ଷ ବୀରଶୂନ୍ୟ ହେବ କିପରି ? ଯୁବରାଜ ନରସିଂହ

ଯବନକୁ ଶାସ୍ତି ଦେଇ ନିଶ୍ଚେ ତୁମର କ୍ରୋଧ ଦିନେ ଶାନ୍ତକରିବେ । ଢେମା, ଆସ ! ତେଣେ ରାଣୀମା' ଫୁଲଧରି ଆମକୁ ଅପେକ୍ଷା କରି ବସିଥିବେ— ଆସ । (ପ୍ରସ୍ଥାନ)

## (ଅଷ୍ଟମ ଦୃଶ୍ୟ)

[ବାରଙ୍ଗଲ ଦୁର୍ଗର ବହିର୍ଭାଗ— ଜ୍ୱରାକ୍ରାନ୍ତ ବୃଦ୍ଧ ବାଣପୁର ସାମନ୍ତଙ୍କର ଛୋଟେଇ ଛୋଟେଇ ପ୍ରବେଶ । ପଛରେ ଓଡ଼ିଆ ପାଇକ ।]

ବାଣପୁର— ମୁଁ ଶୋଇରହିବି ? ଏତେ ବାଟ ଆସିଲି, ଏତେ କଷ୍ଟ ଦେହରେ ମାରିଲି, ଆଉ ଏହି ଶେଷ ମୁହୂର୍ତ୍ତରେ ଶୋଇରହିବି ! ଶୋଇବାର ହୋଇଥିଲେ ଘର ଛାଡ଼ିଥା'ନ୍ତି କାହିଁକି ? ମୋ ପିଲାମାନେ ରଣଚଣ୍ଡୀ ଆଗରେ ଅକାତରେ ସହସ୍ର ସହସ୍ର ମୁଣ୍ଡ ବଳି ଦେଉଥିବାବେଳେ, ବାଣପୁରର ଭ୍ରମରା କୁଡ଼ିଆରେ ଶୋଇରହିଥିବ ? ଏହା ସମ୍ରାଟ ଶୁଣିଲେ ଭାବିବେ କ'ଣ ? ମୁଁ ବା ଶାନ୍ତିରେ ମରିବି କିପରି ? ଯୁଦ୍ଧ କରି କରି ମରିବାରେ ଖଣ୍ଡାୟତର କି ସୁଖ, ତାହା କ'ଣ ତୋତେ ଅଜଣା, ପାଇକ ? ମତେ ଅଟକାନା...

ପାଇକ—ଆଜ୍ଞା, ଯୁବରାଜଙ୍କର ଯାହା ଆଦେଶ । କେବଳ ମତେ ନୁହେଁ, ଆମ ସମସ୍ତଙ୍କୁ ଆଜ୍ଞା ହୋଇଛି ଯେ ଭ୍ରମରାଙ୍କୁ ଶୁଆଇରଖ, ତାଙ୍କୁ କୁଆଡ଼େ ଛାଡ଼ିଦେବନି । ଆପଣ ତ କଥା ମାନୁ ନାହାନ୍ତି; ଯୁବରାଜ ଆମ ଉପରେ ବୃଥା ରାଗ ହେବେ ସିନା !

ବାଣପୁର— ମୁଁ ଯୁବରାଜଙ୍କୁ ସବୁ କହିବି । ତମ ଉପରେ କିଛି ଦୋଷ ଲାଗିବନି (ବୁଲୁବୁଲୁ) ହଇରେ ପାଇକ, ଏଠି କିନ୍ତୁ ଯେ ସବୁ ଶୁନ୍‌ଶାନ୍ । କୁଆଡ଼େ ଗଲେ ସବୁ ? ହୋହା କୁଆଡ଼େ ଶୁଭୁଛି କହିଲୁ, ସେଇଆଡ଼କୁ ମୁଁ ଯିବି ।

(ତରତରରେ ଜଣେ ଉତ୍କଳୀୟର ପ୍ରବେଶ ।)

ଉତ୍କଳୀୟ— ଦୁର୍ଗଦ୍ୱାର ଭାଙ୍ଗିପଡ଼ିଲା, ଦୁର୍ଗଦ୍ୱାର ଭାଙ୍ଗିପଡ଼ିଲା ! ଆମ ସୈନ୍ୟ ଦୁର୍ଗ ଭିତରେ ପଶିଲେ, ଦୁର୍ଗ ଭିତରେ ପଶିଲେ ! (ତରତରରେ ପ୍ରସ୍ଥାନ)

ବାଣପୁର— ଏ, ଏ, ପାଇକ, ଶୁଣ୍ ଶୁଣ୍...ଏଇଟା କେଉଁଆଡ଼ର ଭୂତଟା କିରେ ? ତାକୁ କ'ଣ ମଣିଷ ଦିଶୁନାହାନ୍ତି ?

ପାଇକ— ଆଜ୍ଞା ସେଇଟା ତଳମାଳିଆଟା, ଭଦ୍ରତା ଜାଣିବ କ'ଣ ? ଥୟଧରନ୍ତୁ । ଏଇ ଆଉ ଦଳେ ପୁଣି ମାଡ଼ିଆସୁଛନ୍ତି ।

(ଅନୁଗୋଳ ଓ ଗଞ୍ଜାମର ସାମନ୍ତ ଓ କେତେକ ପାଇକଂକର ପ୍ରବେଶ ।)

ଅନୁଗୋଳ—ମଉସା, ଆପଣ ଏଠି ! ଚାଲନ୍ତୁ, ଆପଣଙ୍କ ଶିବିରରେ ପହଞ୍ଚାଇଦେବୁ । ସେଇଠି ବସି ଶୁଣିବେ ସବୁକଥା । (ହାତ ଧରୁ ଧରୁ) ଏ କ'ଣ ! ଆପଣଂକ ଦେହରେ ଖଇଫୁଟୁଛି; ଆପଣ ଥରୁଛନ୍ତି ! ଯୁବରାଜ କ'ଣ କହିବେ ଆମକୁ ସବୁ !

ବାଣପୁର— ଅନୁଗୋଳ, ଯଦି ମରିବାର କଥା ତେବେ ବାଣପୁର ଭ୍ରମରାର ମୃତ୍ୟୁ କୁଡ଼ିଆରେ ରୋଗଶଯ୍ୟାରେ ହେବା ଅପେକ୍ଷା, ଏଇ ରଣଭୂଇଁରେ ହେବା ଶ୍ରେୟସ୍କର ଓ ସୁଖକର

ନୁହେଁ କି ? ମଉସାକୁ ଅପମାନ ଦେବାକୁ ଚାହ ତା'ର ଶେଷ ନିଶ୍ୱାସବେଳେ, ଅନୁଗୋଳ ? କହ, କ'ଣ କହିବାର ଅଛି କହ, ମୁଁ ଆଗ ଶୁଣେ—ଏକ ମାସ ହେଲା ଅପେକ୍ଷା କଲିଣି ଯାହା ଶୁଣିବାକୁ— ସେଥିପାଇଁ ମୁଁ ଯେ ମରୁନି !

ଅନୁଗୋଳ—ତେବେ ଶୁଣନ୍ତୁ,ପ୍ରସିଦ୍ଧ ବାରଙ୍ଗଲ ଦୁର୍ଗ ବର୍ତ୍ତମାନ ବିଜିତ ଓ ଓଡ଼ିଶା ଗଜପତିଂକ ଗଜଲାଞ୍ଛିତ ପତାକା ତା' ଉପରେ ଉଡ୍ଡୀୟମାନ ।

ବାଣପୁର— ଜୟ ଜଗନ୍ନାଥ ! ଜୟ ଜଗନ୍ନାଥ ! ଜୟ ମା' ଭଗବତୀ ! ଜୟ ମା' ଭଗବତୀ ! ନରସିଂହଦେବ କାହାନ୍ତି ? କାହାନ୍ତି ଆମର ଯୁବରାଜ ? ଏତେଦିନେ ସେ ଅନଙ୍ଗଭୀମଦେବଂକର ପୁତ୍ର ହେଲେ ବୋଲି ଜାଣ । ମରିବା ପୂର୍ବରୁ ଆଶୀର୍ବାଦ ଦେଇ ମରିବି । କାହାନ୍ତି ସେ ?

ଗଞ୍ଜାମ— ଯୁବରାଜ ଦୁଇଦିନ ହେଲା ଆହାର ଦେଖିନାହାନ୍ତି କି ଶୋଇନାହାନ୍ତି— କେବଳ ଅଶ୍ୱପୃଷ୍ଠରେ ରହି ଏଇକ୍ଷଣି ଏଠି, ଏଇକ୍ଷଣି ସେଠି ହୋଇ ଶ୍ରାନ୍ତକ୍ଳାନ୍ତ ସୈନିକମାନଙ୍କୁ ଉତ୍ସାହ ଓ ଦଳେଇ ଦଳବେହେରାମାନଙ୍କୁ ପରାମର୍ଶ ଦେଉଥାନ୍ତି । ତା' ନ ହୋଇଥିଲେ ଏ ଦୁର୍ଗର ପତନ ଏତେ ଶୀଘ୍ର ଘଟିପାରି ନ ଥା'ନ୍ତା ।

(ନେପଥ୍ୟେ— ଜୟ ଗଜପତିଙ୍କର ଜୟ ! ଜୟ ନରସିଂହଦେବଂଙ୍କର ଜୟ ! ଏଇ ଯେ ଯୁବରାଜ ଆସିଲେଣି ।)

(ନରସିଂହଦେବ ଓ କେତେକ ପାଇକଂକର ପ୍ରବେଶ ।)

ନରସିଂହ— ଭ୍ରମରେ, ଆପଣ ଏଠି ! ଦେହ କିପରି ଅଛି ?

ବାଣପୁର—(କମ୍ପି କମ୍ପି) ଯୁବରାଜ ! ଯୁବରାଜ ! (ହାତଟେକି ଆଶୀର୍ବାଦ କରୁ କରୁ ଟଳି ପଡ଼ିବା)

ଅନୁଗୋଳ— (ଧରିପକାଇ) ଯୁବରାଜ, ବୁଢ଼ାଙ୍କର ଅଙ୍ଗ ଯେ ଥଣ୍ଡା ହୋଇ ଆସୁଛି । ମଉସା.....ମଉସା.....

ନରସିଂହ—ଭାବାବେଗ ବୋଧହୁଏ ସମ୍ଭାଳି ପାରିଲେ ନାହିଁ । ଧର, ଧର,ତାଙ୍କୁ ନେଇଯାଅ କୁଟୀରକୁ । ଭ୍ରମରାଂକର ମୃତ୍ୟୁ ଲୋଭନୀୟ । ତାଂକର ଚିତା ଜଳିବ ଗଜପତିଂକ ବିଜୟ ପତାକା ତଳେ । ଚାଲ, ଚାଲ !

(ପଟପତନ)

## [ ତୃତୀୟ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ଜଳେଶ୍ୱର ଦୁର୍ଗର ଅଭ୍ୟନ୍ତର— ହରିପୁର ସାମନ୍ତ ବିକ୍ରମ ଭଞ୍ଜ, ଜଳେଶ୍ୱର ଦୁର୍ଗାଧିପତି ଶ୍ରୀମନ୍ତ ରାୟ, ଦଳବେହେରା ଓ ପ୍ରଧାନ ପାଇକଗଣ ।]

ଦଳବେହେରା—ଏକ ମାସରୁ ବେଶି ହେଲାଣି, ଶତ୍ରୁ ହୁଗୁଳି କୂଳରୁ ଆମ ଉତ୍କଳସୈନ୍ୟମାନଙ୍କୁ ଘଉଡ଼େଇ ଆଣି ମୂଷାକୁ ଗାତରେ ବନ୍ଦକଲାପରି ଏହି ଦୁର୍ଗଶ୍ରେଣୀ ଭିତରେ ଅଟକେଇ ରଖିଛି । ଜଳେଶ୍ୱର, ଭୋଗରାଇ, ପର୍ବଦା, ବାନସନ୍ଧ, ବାଳକସି, ବଗଡ଼ି, ସବଙ୍ଗୀ, ନାରାୟଣଗଡ଼ ଆଦି ଆଖପାଖରେ ଯେତେ ଦୁର୍ଗ ଥିଲା, ସବୁଥିରେ ଉତ୍କଳୀୟ ସୈନ୍ୟମାନେ ଆଶ୍ରୟ ନେଇ ଶତ୍ରୁକୁ ବି ଅଟକାଇ ରଖିଛନ୍ତି । ଅବରୋଧର କାଳ ମାସକୁ ବଳିଗଲାଣି । ସବୁ ଦୁର୍ଗରୁ ଆତଙ୍କର ସମ୍ବାଦ ଆସୁଛି । ସବୁଠି ଖାଦ୍ୟର ଅଭାବ । ପୁଣି ସବୁ ଦୁର୍ଗରେ ବହୁ ସଂଖ୍ୟାରେ ନାରୀ ଓ ଶିଶୁ ରହିଯାଇ ସୈନିକମାନଙ୍କର ଆତଙ୍କ ବଢ଼ାଉଛନ୍ତି । ଏବେ କ'ଣ କରିବା ? କେତେକାଳ ମାଟି କାମୁଡ଼ି ଏଠି ପଡ଼ିରହିବା ? ନାରୀ ଓ ଶିଶୁମାନଙ୍କର କି ଗତି ହେବ ? ନଚେତ୍ ଚାଲ ଏଠୁ ଖସି, ଅନ୍ୟଆଡ଼େ ପଳାଇ ଯିବାର ଚେଷ୍ଟାକରିବା । ଶତ୍ରୁ ଯଦି ସନ୍ଧାନ ପାଇ ପଛରୁ ଗୋଡ଼ାଏ ତେବେ ବାଟଯାକ ଦଳ ଦଳ ରହି ତାଙ୍କୁ ଅଟକାଇବାକୁ ହେବ । ଏମିତି କରୁ କରୁ ଯେତେଦିନ ଯିବ ।

ଜଳେଶ୍ୱର ସାମନ୍ତ— ଦଳବେହେରାଏ, ଖାଦ୍ୟାଭାବ ବିଷୟରେ ଯାହା କହିଲେ ତାହା ସତ୍ୟ । ଦୁର୍ଗାଧିପତିରୂପେ ଏ ଦୋଷ ମୁଁ ମୁଣ୍ଡାଉଛି । କିନ୍ତୁ ଶତ୍ରୁ ଅତର୍କିତଭାବରେ ଆକ୍ରମଣ କରିବାରୁ ପ୍ରଚୁର ପରିମାଣରେ ଖାଦ୍ୟଦ୍ରବ୍ୟ ସଂଚୟ କରିପାରିଲୁ ନାହିଁ ବା ପିଲାପିଲିମାନଙ୍କୁ ଦୂର ଜାଗାକୁ ପଠାଇ ପାରିଲୁ ନାହିଁ । ଏବେ ଖାଦ୍ୟ ଯାହା ଅଛି ତାହା ସପ୍ତାହେ ମାତ୍ର ଯିବ । ହୁଏତ ସମ୍ରାଟବାହିନୀ ଏ ଭିତରେ ଆସିପାରେ । ତେଣୁ ଆତଙ୍କିତ ହେବାର କାରଣ ବେଶି ନାହିଁ ବୋଲି ମୋର ବିଶ୍ୱାସ ।

ଦଳବେହେରା—ରାୟ ଆପଣେ, ଖଣ୍ଡାୟତ ପିଲାର ଯମକୁ ତ ଭୟ ନାହିଁ, ଆନ ଭୟ କ'ଣ ଥିଲା ? ଭୟ ଖାଲି ଏ ନୂଆ ଶତ୍ରୁର ପ୍ରକୃତି । ସାତ୍‌ଦିନ ଭିତରେ ସାହାଯ୍ୟ ନ ଆସିଲେ ଓ ଶତ୍ରୁ ଯଦି ପଳାଇବା ବାଟ ବନ୍ଦକରିଦିଏ ତେବେ କ'ଣ କରିବା ବିଚାରକର । ଆମେ ଯଦି ଏ ଦୁର୍ଗକୁ ଶତ୍ରୁ ହସ୍ତରେ ଅର୍ପଣ କରୁ ତେବେ ଦେବମନ୍ଦିର ସବୁ ଗୋ-ରକ୍ତରେ ପିଚ୍ଛିଳ ହେବ ଏବଂ ଦୁର୍ଗ-ଦାଣ୍ଡ ଯୁବତୀମାନଙ୍କ ଚିତ୍କାରରେ ବିଭୀଷିକାମୟ ହେବ । ଆମେ ତ ହାଣଖାଇବା, ଯଦିବା ବଞ୍ଚୁ ତେବେ କିଏ ଜାଣେ ଆମର ଜାତି, ଧର୍ମ ସଂଗେ ସଂଗେ ନଷ୍ଟ ନ ହେବ ?

ଜଳେଶ୍ୱର ସାମନ୍ତ— ଏ କଥା ନିଶ୍ଚୟ ବିଚାରିବାର ବିଷୟ । ଆମ ଆଗରେ ଏବେ ତିନିଟା ରାସ୍ତା ମେଲା ଅଛି । ଏକରେ, ଦୁର୍ଗ ଭିତରୁ ବାହାରି ଶତ୍ରୁ ସଙ୍ଗେ ଲଢ଼ାଇକରି ଗୋଟି ଗୋଟି ହୋଇ ସମସ୍ତେ ମରିବା । କାରଣ ବାରବାଟୀ ଦୁର୍ଗରୁ ସାହାଯ୍ୟ ବ୍ୟତିରେକେ ଆମର ଜିଣିବାର କୌଣସି ଆଶା ନାହିଁ । ଦୁଇରେ, ବେଳହୁଁ ଏ ଦୁର୍ଗରୁ ଖସିଯାଇ ପରବର୍ତ୍ତୀ ଦୁର୍ଗ ଶ୍ରେଣୀରେ ଆଶ୍ରୟନେବା । ନଚେତ୍ ଦୁର୍ଗକୁ ଶତ୍ରୁ ହସ୍ତରେ ଅର୍ପଣ କରି ସନ୍ଧି ଭିକ୍ଷାକରିବା । କହନ୍ତୁ ତ ମହାରାଜ, ଏ ସଂକଟବେଳେ କ'ଣ କରିବା ?

ବିକ୍ରମ— ମୁସଲମାନ ଆକ୍ରମଣରୁ ଉତ୍କଳର ଉତ୍ତର ସୀମା ରକ୍ଷାକରିବାପାଇଁ ଗଜପତି ସମ୍ରାଟଙ୍କ ଆଗରେ ମୁଁ ପ୍ରତିଜ୍ଞା କରି ଆସିଛି । ସେ ପ୍ରତିଜ୍ଞା ମୁଁ ମୋର ରକ୍ତଦେଇ ରକ୍ଷା

କରିବି । ଯବନ ଯେ ହୁଗୁଳି କୂଳରୁ ସ୍ୱର୍ଣ୍ଣରେଖାଯାଏଁ ମାଡ଼ିଆସିଲାଣି, ତାହା ଶୁଣିଲେ ଓ ଦେଖିଲେ ସମ୍ରାଟ୍ ଭୀଷଣ ବ୍ୟଥିତ ହେବେ । ଯାହା ତ ହେବାର ହେଲାଣି, ଏବେ ମୋ ରାଜ୍ୟ ସୀମାରୁ ଦକ୍ଷିଣକୁ ଆଉ ହାତେ ମୁଁ ଶତ୍ରୁକୁ ଛାଡ଼ିଦେବାକୁ ପ୍ରସ୍ତୁତ ନୁହେଁ । ସମୁଦ୍ର କୂଳରୁ ଶିମୂଳିପାଳ ପାହାଡ଼ଯାଏଁ ମୁଁ ସବୁ ଦୁର୍ଗରେ ଆଦେଶ ଦେଇଛି, ''ଶେଷ ପାଇକ ବଞ୍ଚିଥିବାଯାଏଁ ଦୁର୍ଗର ମାନ ରଖିବ । ଯେତେବେଳେ ଜାଣିବ ଯେ ଦୁର୍ଗ ଆଉ କୌଣସିମତେ ରକ୍ଷା କରିହେବ ନାହିଁ, ସେତେବେଳେ ସମସ୍ତ ସ୍ତ୍ରୀଲୋକ ନିଆଁ ଜାଳି ଜହର-ବ୍ରତ ପାଳନ କରିବେ । ବିଦେଶୀର ଧର୍ଷଣଠାରୁ ସେ ଜୀବନ୍ତ ଦହନ ଶତଗୁଣରେ ଶ୍ରେୟସ୍କର । ଯିଏ ଜହରକୁ ଯିବେନାହିଁ, ତାଙ୍କୁ ନିଜ ହସ୍ତରେ ସାମାନ୍ୟ ମମତା ନ ରଖି ହତ୍ୟାକରିବ । ବିଧର୍ମୀର ଘୃଣ୍ୟ ଶେଯରେ ଶୟନସୁଖଠାରୁ ସେ ମୃତ୍ୟୁ ଅତି ଭଲ । ବାଳକ ଶିଶୁମାନଙ୍କୁ ମଧ ନିର୍ମମ ଅକୁଣ୍ଠିତ ଭାବରେ ହତ୍ୟାକରିବ । ବିଧର୍ମୀ ହୋଇ ବଂଚିବାଠାରୁ ସେ ମୃତ୍ୟୁ ଢେର ଭଲ ।'' ମୋର ଏ ଆଜ୍ଞା କ'ଣ ମନେନାହିଁ ? ସେ ଆଜ୍ଞା ଏ ଦୁର୍ଗରେ ମଧ ଅକ୍ଷରେ ଅକ୍ଷରେ ପ୍ରତିପାଳିତ ହେବ । ଏ ଦୁର୍ଗରେ କେବଳ ଖାଦ୍ୟାଭାବ ଘଟିନାହିଁ ବା ଏ ଦୁର୍ଗରେ କେବଳ ନାରୀ ଓ ଶିଶୁ ନାହାନ୍ତି; ସବୁ ଦୁର୍ଗରେ ଏକ ଓ ସମାନ ସଙ୍କଟ । ତେଣୁ ସବୁ ଦୁର୍ଗରେ ଏବଂ ବିଧ ପ୍ରତିକାର ହେବ । ଯବନ ଯଦି ଜିଣେ, ତେବେ ଉତ୍କ ସୈନିକର ଶବ ଉପରେ ଓ ଓଡ଼ିଆ ନାରୀର ଭସ୍ମ ଉପରେ ପାଦ ପକେଇ ପକେଇ ଯିବ । ଦୁର୍ଗ ପରେ ଦୁର୍ଗରେ ଏହି ବୀଭତ୍ସ ଲୀଳା ଦେଖି ଦେଖି ଯବନ କେତେ ବାଟ ଯାଉଛି ଯାଉ । ସିଂହ ତ ବଣରେ ଅଛି— ବଣର କେଉଁ କେଉଁ କୋଣରେ ବଳିଆକୁକୁର ଉତ୍ପାତ କରିପାରେ, କିନ୍ତୁ ସିଂହ ଯେତେବେଳେ ଗର୍ଜନ କରିଉଠିବ, ସେତେବେଳେ ବଳିଆ ପଳାଇଯିବାକୁ କେତେ ସମୟ ଲାଗିବ ? ଦୁଇ ଦିନ ଭିତରେ ସମ୍ରାଟଙ୍କ ସୈନ୍ୟ ନିଶ୍ଚୟ ଏଠି ଉପସ୍ଥିତ ହେବେ । ଯବନ ତଡ଼ାଖାଇ ହୁଗୁଳି ଆରପଟକୁ ପଳେଇବାକୁ ବାଟ ପାଇବ ନାହିଁ । କିନ୍ତୁ ଇତିମଧରେ କୌଣସି ପ୍ରକାର ଆତଂକକୁ ଭ୍ରୂକ୍ଷେପ ନ କରି ପ୍ରତ୍ୟେକ ପାଇକ ନିଜ ନିଜ ସ୍ଥାନରେ ଠିଆ ହୋଇ ରୁହ ଏବଂ ମନକୁ ଟାଣକରି ରଖ ଯେ, ଯେତେବେଳେ ଦରକାର ପଡ଼ିବ ଯବନ ହାତରୁ ରକ୍ଷା କରିବା ପାଇଁ ନିଜ ହାତରେ ନିଜର ସ୍ତ୍ରୀ, କନ୍ୟା, ପୁଅ, ଭଉଣୀଙ୍କୁ ହତ୍ୟା କରିବ । ଯାହା ଖାଦ୍ୟ ଅଛି ତାହା ପ୍ରଥମେ ଶିଶୁଙ୍କୁ ଦିଅ; ତା' ପରେ ନାରୀମାନଙ୍କୁ ଓ ସବା ଶେଷରେ ପାଇକମାନଙ୍କୁ ଦିଅ । ଏଥିରେ ସମସ୍ତେ ସମ୍ମତ ତ ?

ସକଳେ— ସମସ୍ତେ ସମ୍ମତ !

ବିକ୍ରମ— ଏକ ବାକ୍ୟରେ କହ—

ପ୍ରତି ହାତ ଭୂମି ପାଇଁ ଲଢ଼ିବୁ ଅରିରେ,
ରାଜା ଆଉ ଧର୍ମଲାଗି ଦେବୁ ଏ ପରାଣ ।

ସକଳେ— ପ୍ରତି ହାତ ଭୂମି ପାଇଁ ଲଢ଼ିବୁ ଅରିରେ,
ରାଜା ଆଉ ଧର୍ମଲାଗି ଦେବୁ ଏ ପରାଣ ।

—ଜୟ ଜଗନ୍ନାଥଙ୍କର ଜୟ !
ଜୟ ମହାରାଜା ଅନଙ୍ଗଭୀମଦେବଙ୍କର ଜୟ !
ଜୟ ଉତ୍କଳର ଜୟ ! (ପଟପତନ)

## (ଦ୍ୱିତୀୟ ଦୃଶ୍ୟ)

[ଜଳେଶ୍ୱର ଦୁର୍ଗର ବହିର୍ଭାଗ । ମୁସଲମାନ ଶିବିର ।]

ପ୍ରଥମ ମୁସଲମାନ ସୈନିକ—(ମନ ଆନନ୍ଦରେ ଗାଇ ଗାଇ ପ୍ରବେଶ)
ଖୋଦା ମେହେର୍ ବାନ୍
ମୁସଲମାନକୋ ଛୋଡ୍‌ଦିଆ
ସାରା ହିନ୍ଦୁସ୍ଥାନ ।
ଖୋଦା ମେହେର୍ ବାନ୍ ।

ଦ୍ୱିତୀୟ ମୁସଲମାନ ସୈନିକ— (ଗାଇ ଗାଇ ପ୍ରବେଶ)
ଦୁନିଆ ମେ ସେରା ଏ ଦେଶ୍
ଜମିନ୍, ଅଉରତ୍; ଯଓହର୍ ବେଶ୍,
କରିବା ମଉଜ୍, ସାରା ଫଉଜ୍,
ହିନ୍ଦୁ ଯାଉ ଜାହାନ୍ନାମ୍ ।

ଏକତ୍ର—ଖୋଦା ମେହେରବାନ୍...ଇତ୍ୟାଦି ।

ତୃତୀୟ ମୁସଲମାନ ସୈନିକ—(ଗାଇ ଗାଇ ପ୍ରବେଶ)
ମସ୍‌ଜିଦ୍ ଉଠୁ ଗାଁଏଁ ଗାଁଏଁ
ଆଲ୍ଲାକା ନାମ୍ ମୁହେଁ ମୁହେଁ
ପେଟ୍‌ବାଲା ବରାମନ୍* ସବ୍
ପଢ଼ିବେ କୋରାନ୍ ।

ଏକତ୍ର— ଖୋଦା ମେହେର ବାନ୍...ଇତ୍ୟାଦି ।

ଚତୁର୍ଥ ମୁସଲମାନ ସୈନିକ—(ଗାଇ ଗାଇ ପ୍ରବେଶ)
କାଫେର୍ ସବ୍ କତଲ୍‌କର୍
ଦେଉଲ୍ ସବୁ ତୋଡ୍‌କର୍
ରଖେଙ୍ଗା ଇସ୍‌ଲାମ୍ ।

ଏକତ୍ର— ଖୋଦା ମେହେର୍‌ବାନ୍.... ଇତ୍ୟାଦି ।

(ଜଣେ ମୁସଲମାନ ମୌଲବୀର ପ୍ରବେଶ । କିଞ୍ଚିତ କ୍ରୁଦ୍ଧହୋଇ)

ମୌଲବୀ–ନମାଜ୍ ବଖତ୍‌ରେ ତମେ ସବୁ ଏସା ହଲ୍ଲା କରୁଛ ! ନିଜେ କରିବନି କି ଆର୍ କିସ୍‌କୋ କରେଇଦବନି । ଦେଖୁଛି ତୁମ୍‌ଲୋକ୍ ହିନ୍ଦୁସ୍ଥାନକୁ ଆସି ହିନ୍ଦୁ ବନିବା ଉପରେ ।

ପ୍ରଥମ ସୈନିକ– ମୌଲବୀ ସାହେବ୍, ଆମେ ସମସ୍ତେ ନମାଜ କରିଛୁ । ଏ ଲଢ଼େଇ ତ ଆଲ୍ଲାଙ୍କର । ତାଙ୍କରି ସିପାହି ହୋଇ ତାଙ୍କ ନାମ ଆମେ ଭୁଲିଯିବୁ ?

ଦ୍ୱିତୀୟ ସୈନିକ– ଜାଫର ଆମ ଭିତରେ ଶାୟେର୍ (୧) । ସେ ଏକ ନୟା ଗାନା କରି ହାମ୍‌ଲୋଗକୋ ଶିକେଇଚି । ଆଜି ଛୁଟି ଥିବାରୁ ଦିଲ୍ ଖୁସିରେ ଟିକିଏ ବୋଲାବୋଲି ହେଉଛୁ । ଆପ୍ ନମାଜ କରୁଥିବାର ହାମ୍‌କୁ ମାଲୁମ୍ ନ ଥିଲା । ମାପ୍ କରିୟେଗା ।

ମୌଲବୀ– ଗାନା ଆଚ୍ଛା ହୁଆ । ମୁଁ ଶୁଣିଛି । ଜାଫର କାହାଁ ହୈ ? ଆନେସେ ମେରା ପାଶ୍ ଭେଜି ଦେବ । ଏ ଜାଗା ତମକୁ କୈସା ଲାଗତା ?

ତୃତୀୟ ସୈନିକ– ମୌଲବୀ ସାହେବ, ସତ୍ କହୋ ତୋ, ହାମାରା ଆଫଗାନୀସ୍ତାନ୍ ଜନ୍ନତ୍ (୨) ହୈ । ଓ ଥଣ୍ଡୀ ହାୱା, ଆଙ୍ଗୁର, ନାସ୍‌ପାତି, ସରବତ୍, ଇହାଁ କାହାଁ ମିଲେଗା ? ଗର୍ମି ଆଉ ଧୂଲାମେ ଆଦମୀ ଛଟ୍‌ପଟ୍ ହୋ ଯାତା ହୈ । ଜାଫରକୁ ଏ ଦେଶ୍ ଜନ୍ନତ ହୈ କ୍ୟୋଁ କି ଓ ଏକ ହିନ୍ଦୁସ୍ଥାନୀକା ମୋହବତ୍ ମେ (୩) ପଡ଼ିଯାଇଛି ।

ମୌଲବୀ– ସତେ ନା ! (ହସି ହସି) ପାୟା କାହାଁ ସେ ?

ଚତୁର୍ଥ ସୈନିକ– ଏ ଦେଶରେ ତ ଔରତ୍ ଲୋଗୋଁକୋ ପର୍ଦ୍ଦା ନେହିଁ, ହାମାରା ଦେଶ୍‌କା ଐସା । ହର୍ ଜାଗା ମେଁ ହମଲୋଗ୍ ଉନ ସେ ମିଲ୍‌ତେ ହୈ । ଜାଫରିକା କାଲିଜା କିସ୍‌କେଲିୟେ ପାନି ହୋ ଯାତା ହୈ ଓ ବୋଲତା ନେହିଁ । ଛିପାତା ହୈ ।

ମୌଲବୀ– ଇହାଁକା ଅଉରତ୍ ଦେଖନେକା ଲାୟକ । ସ୍ରେଫ ଅସଭ୍ୟ ବରାମନ୍ ଧରମକୁ ଛାଡ଼ିଦେଲେ ଇହାଁ ସବୁକୁଛ ଆଚ୍ଛା ହୈ । ବଙ୍ଗାଲ ମେଁ ହାମେତ ଦେଖିଲେ ସ୍ୱାମୀ ମରଯାନେକା ବାଦ୍ ଇସକୀ ଔରତ୍‌କୋ ଆଗ୍‌ମେ ଜଲାଦିଆ । ହାମ୍ ବହୁତ୍ ବାର ଆଲ୍ଲାସେ ଦୁଆ (୪) କିଆ କି, ଉସ୍ ଔରତ୍ ଜନ୍ନତମେ ଯାୟେ । ଇହାଁ ତୋ ଉସ୍‌ସେଭି ଅଜୁବ୍ ବାତ୍ ଦେଖା । ଏକ୍ ଗଛକା ନିଚେ ଏକ ପଥର ହାୟ । ଉସ୍‌ମେ ସିନ୍ଦୂର ଲଗା ହୁଆ । ଓହି ହିନ୍ଦୁକା ଖୋଦା ହୈ । ଉସ୍‌କୋ ଆଗେ ଜାନୋୟରକୋ କତଲ କିଆ ଯାତା ହୈ । ଇସ୍ ଦେଶ୍ ଜାହାନ୍ନାମ୍ (୫) ସିବା ଆଉର୍ କ୍ୟା ହୋ ସକତା ହୈ । ଯୋ କୁଛ ଧରମ୍ କି କିତାପ୍ ହୈ, ଉସ୍‌କୁ ସ୍ରେଫ ବରାମନ୍‌ହି ପଢ଼େଙ୍ଗେ– ଆଓର ସବ୍‌କୋଇ ମୂରଖ ।

ବହୁତ୍‌ସେ ଆଦମୀ ଗାଁ କେ ବାହାର ଗଛକା ନୀଚେ ପଡ଼େ ରହେଁ ହୈ । ଶୁନ୍‌ତେ ହେଁ ଇନ୍‌ଲୋଗକୋ କୋଇ ଛୁଁତା ବି ନେହିଁ । ଇନ୍‌ଲୋକ୍‌କା ପରଛାଇ ପଡ଼୍‌ନେସେ

---

*ବ୍ରାହ୍ମଣ- ମୁସଲମାନ୍ ତୁଣ୍ଡରେ ବରାମନ୍ କରାଯାଇଛି । (୧) ଶାୟେର୍–କବି (୨) ଜନ୍ନତ–ସ୍ୱର୍ଗ (୩) ମୋହବତ୍–ପ୍ରେମ ।
(୪) ଦୁଆ–ପ୍ରାର୍ଥନା (୫) ଜାହାନ୍ନାମ୍–ନର୍କ ।

ଉଛେ ଛାତ୍‌କୋ ଗୋସଲ୍ କରନା ପଡ଼ତା ହୈ । ତୋବା, ତୋବା,.... ଇସ୍ ଦେଶ୍‌ମେ ଇସଲାମ୍ ଫୈଲାନା (୬) ଖୋଦାକା ବରାଦ୍ । ଐସାବି ଏକ୍ ଦିନ ଥା ଯାବକେ ହାମ୍ ଲୋଗଭି କାଠ ଆଓର ପଥରକୋ ପୂଜା କରତେଥେ । ହାମ୍‌ଲୋଗ୍‌କା ଚୁଟି, ମତାବଲୀ (୭) କା ହାତମେ ଥା । ହାମ୍‌ଲୋଗୋ ବି ବଚ୍ଚୋକୋ କତଲ କରତେଥେ । ରସୁଲ ସେ ସବୁ ନିକାଶ୍ କରି ହାମଲୋଗୋକୋ ଆଦମୀ ବନାଦିୟେ । ଆଜ୍ ଆଲ୍ଲା ଓର ଆଦ୍‌ମୀ କେ ବିଚ୍‌ମେ କୋଇ ଫରକ୍ ନେହିଁ ହୈ । ଆଦମୀ ଓର ଆଦମୀକା ବିଚ୍‌ମେ ଭି ଫରକ ଉଠ୍ ଗୟା । ମର୍ଦ୍ଦ ଔର୍ ଅଉରତ ଭି ସମାନ । ସାରା ହିନ୍ଦୁସ୍ଥାନ ମେ ରସୁଲକେ ଧରମ ପ୍ରଚାର ହୋନେସେ କ୍ୟା ଆଛା ନେହିଁ ହୋତା ! ଦେଖାଯାୟେ । ସବ୍ ଖୋଦାକା ମର୍ଜିମେ । ବୋଲୋ ଆଲ୍ଲା ହୋ ଆକବର !

ସମସ୍ତେ— ଆଲ୍ଲା ହୋ ଆକବର, ଆଲ୍ଲା ହୋ ଆକବର । (ଧ୍ୱନି କରୁ କରୁ ପଟପତନ)

## (ତୃତୀୟ ଦୃଶ୍ୟ)

[ବାରବାଟୀ ପ୍ରାଙ୍ଗଣ । ମନ୍ତ୍ରୀ ଓ ରାଜପୁରୋହିତଙ୍କ ପ୍ରବେଶ ।]

ମନ୍ତ୍ରୀ— କୌଣସିଆଡୁ କିଛି ଖବର ଆସିଲା ନାହିଁ- ନାହିଁ ଯୁବରାଜଙ୍କଠାରୁ; ନାହିଁ ମହାରାଜଙ୍କଠାରୁ । ପାଟମହାଦେଈ ତ ବ୍ୟସ୍ତ, ମୁଁ ମଧ ବିନିଦ୍ର ଯାମିନୀ ଯାପନ କରୁଅଛି । ପୁରୋହିତେ, ପିତା ପୁତ୍ର ତ ଅଧେ ଅଧେ ହସ୍ତୀ, ଅଶ୍ୱ, ପାଇକ ଧରି ଜଣେ ଦକ୍ଷିଣକୁ ଜଣେ ଉତ୍ତରକୁ ଚାଲିଗଲେ । ମୁଁ ଏକୁଟିଆ ରହିଲି ଏ ବିରାଟ ଦୁର୍ଗ ରକ୍ଷା କରିବାକୁ । ସେମାନେ ନ ଫେରିଲାଯାଏଁ ମୋ ଦେହରେ ରକ୍ତ ନାହିଁ ।

ପୁରୋହିତ— କିନ୍ତୁ ମୋର ମନେହେଉଛି ମାଳବ ଦେଶରୁ ଲୋକବାକ ଆସିଛନ୍ତି । ମୁଁ ଆଜି ସକାଳେ ନଦୀରେ ସ୍ନାନ କରି ଫେରିଲାବେଳେ ସେହି ଦେଶୀୟ ଦୁଇ ତିନୋଟି ଲୋକ ନଈ ବନ୍ଧେ ବନ୍ଧେ ଫେରୁଥିବାର ଦେଖିବାକୁ ପାଇଲି । ସେମାନେ ବୋଧହୁଏ ଜାଣିଛନ୍ତି ମହାରାଜା ବା ଯୁବରାଜ ନାହାନ୍ତି, ତେଣୁ ଦୁର୍ଗକୁ ଆସୁନାହାନ୍ତି ।

ମନ୍ତ୍ରୀ— ମୁଁ ତ ସେ ସମ୍ପର୍କରେ କିଛିହିଁ ଜାଣେନା । ପୁଣି ମାଳବରୁ ଏ ସମୟରେ ଲୋକ ବା ଆସିବେ କାହିଁକି ? ଆମର ତ ଖବର ପଠାଯାଇଛି ଯେ ଯୁବରାଜ କୁଳବର୍ଗରୁ ନ ଫେରିଲାଯାଏ ବିବାହ ବନ୍ଦ ।

ପୁରୋହିତ—କିନ୍ତୁ ଏଇ ଦେଖ ମନ୍ତ୍ରୀ ମହାଶୟ, ଏଇ ଯେ ସେହି ଦେଶର ଲୋକ ଆସୁଛି । ବୋଧହୁଏ ତୁମ ସଂଗେ କିଛି କଥାବର୍ତ୍ତା ହେବାକୁ ଆସୁଛନ୍ତି ।

ମାଳବ ଦୂତ— (ପ୍ରବେଶକରି) ମୁଁ କି ଉତ୍କଳମନ୍ତ୍ରୀଙ୍କ ସମ୍ମୁଖରେ ?

ମନ୍ତ୍ରୀ—ହଁ, ମୁଁ ଇ ମନ୍ତ୍ରୀ । ଆସିବାର ଉଦ୍ଦେଶ୍ୟ ?

ମାଳବ ଦୂତ— ମାଳବ ଦେଶ ବର୍ତ୍ତମାନ ମୁସଲମାନଙ୍କଦ୍ୱାରା ଆକ୍ରାନ୍ତ । ତେଣୁ ରାଜନନ୍ଦିନୀଙ୍କ ଅନିଚ୍ଛାସତ୍ତ୍ୱେ, କନିଷ୍ଠ ରାଜକୁମାରଙ୍କ ସହ, ମାଳବରାଜା ତାଙ୍କର ବାଗ୍‌ଦତ୍ତା ଜ୍ୟେଷ୍ଠା

---

(୬) ଫୈଲାନା—ପ୍ରଚାର (୭) ମତାବଲୀ—ମହନ୍ତ

କୁମାରୀଙ୍କୁ ଉତ୍କଳକୁ ପଠାଇଦେଇଛନ୍ତି । ଆମ୍ଭେମାନେ ଉଜ୍ଜୟିନୀରୁ ବାହାରି ଚେଦି ଓ କୋଶଳ ରାଜ୍ୟର ଘୋର ବନ ଭେଦକରି ସମ୍ବଲପୁରଠାରେ ମହାନଦୀରେ ନୌକା ଧରିଲୁ । ପ୍ରାୟ ଦୁଇମାସ ହେଲା ଦେଶ ଛାଡ଼ିଛୁ । ମହାନଦୀରେ ଭାସି ଭାସି ଶେଷରେ ବାଙ୍କି ଦୁର୍ଗରେ ଆମର ଲୋକବାକ ଆଶ୍ରୟ ନେଇଅଛନ୍ତି । ଆମ୍ଭମାନଙ୍କର ପରିଚୟ ପାଇ ଦୁର୍ଗେଶ୍ୱର ପରମ ସମ୍ମାନରେ ଆମ୍ଭମାନଙ୍କର ସମ୍ବର୍ଦ୍ଧନା କରିଛନ୍ତି । ରାଜନନ୍ଦିନୀ ବାଙ୍କି ରାଣୀଙ୍କର ପ୍ରାଣସମା କନ୍ୟାରୂପେ ଅନ୍ତଃପୁରରେ ଅବସ୍ଥାନ କରୁଅଛନ୍ତି । ମୁଁ କେବଳ ରାଜଧାନୀରେ ଏ ଖବର ଦେବାପାଇଁ ପ୍ରେରିତ ହୋଇଅଛି । ମାଳବ ରାଜାଙ୍କର ଅନୁରୋଧ, ଯୁବରାଜ କୁଳବର୍ଗରୁ ଫେରିଲେ, ବାରବାଟୀ ଦୁର୍ଗରେ ବିବାହୋତ୍ସବ ଅନୁଷ୍ଠିତ ହେବ ।

ମନ୍ତ୍ରୀ—ରାଜନନ୍ଦିନୀ ଓ ଅନୁଚରମାନଙ୍କର ଶରୀର କୁଶଳ ତ ?

ଦୂତ— ହଁ ଆଜ୍ଞା !

ମନ୍ତ୍ରୀ—ତା' ହେଲେ ପୁରୋହିତ ଆପଣେ, ଆପଣ ଅଦ୍ୟ ଅପରାହ୍ଣରେହିଁ ବାଙ୍କି ଯାତ୍ରା କରନ୍ତୁ । ସଯତ୍ନରେ ମାଳବୀୟମାନଙ୍କୁ ସଙ୍ଗରେ ଘେନି ଆସିବେ । ଏ ସମ୍ବାଦ ଶୁଣିଲେ ପାଟମହାଦେଈ ତୁମକୁ ଉଠେଇ ବସେଇ ଦେବେନି । ତୁମେ ଶୀଘ୍ର ପ୍ରସ୍ତୁତ ହୁଅ ! ଏଇ, ପୁଣି ଆମ ଦୁର୍ଗଦୂତ ଆସିଲାଣି ଯେ ! (ଉତ୍କଳୀୟ ଦୂତର ପ୍ରବେଶ)

ଉତ୍କଳ ଦୂତ—ମନ୍ତ୍ରୀ ମହାରାଜ, ଯୁବରାଜ ବୀରଙ୍ଗଲ ଓ କୁଳବର୍ଗକୁ ପଦାନତ କରି ସଗୌରବେ ଫେରିଆସିଛନ୍ତି । ସେ ବର୍ତ୍ତମାନ ଭୁବନେଶ୍ୱରଠାରେ । ବିଶେଷ ବିବରଣୀ ଏହି ପତ୍ରରୁ ପାଇବେ ।

ପୁରୋହିତ— କି ସୌଭାଗ୍ୟ ! କି ଶୁଭ ସମ୍ବାଦ ! ଏଣେ ମାଳବ ରାଜନନ୍ଦିନୀ ଆସିଲାବେଳକୁ, ତେଣୁ ଯୁବରାଜ ବିଜୟମୁକୁଟ ମୁଣ୍ଡରେ ଘେନି ଉପସ୍ଥିତ ! ବାରବାଟୀ ଦୁର୍ଗର କି ଭାଗ୍ୟ ! ମୁଁ ଯାଏଁ ମନ୍ତ୍ରୀ, ଏ ଶୁଭ ସମ୍ବାଦ ପାଟମହାଦେଈଙ୍କି ତୁରନ୍ତ ନ କହି ରହିବା ଉଚିତ ହେବନି ।

ମନ୍ତ୍ରୀ— ଚାଲ ସମସ୍ତେ ଯେଝା କାମରେ ଯିବା । ଆସ ଦୂତଦ୍ୱୟ ! (ନିଷ୍କ୍ରାନ୍ତ)

## (ଚତୁର୍ଥ ଦୃଶ୍ୟ)

[ଜଳେଶ୍ୱର ଦୁର୍ଗର ଅଭ୍ୟନ୍ତର । ହରିପୁରର ରାଜା ଓ ଜଳେଶ୍ୱରର ସାମନ୍ତ ।]

ହରିପୁର—ମୁସଲମାନ ସୈନ୍ୟ ପଳାଇଲେଣି ବୋଲି କହୁଛ ! କିପରି ? କେବଳ ଏଇଠାରୁ ନା ଅନ୍ୟ ଦୁର୍ଗମାନଙ୍କର ସମ୍ବାଦ ମଧ୍ୟ ଏଇପରି ?

ଜଳେଶ୍ୱର ସାମନ୍ତ—ମହାରାଜ, ମୋର ମନେହେଉଛି ସମ୍ରାଟବାହିନୀ ଅନ୍ୟ ପଥରେ ଶତ୍ରୁକୁ ଆକ୍ରାନ୍ତ କରିବାକୁ ଶତ୍ରୁ ଅନନ୍ୟୋପାୟ ହୋଇ ଏଠାରୁ ବାଟେ ବାଟେ ପଳାଇଗଲାଣି । ଉଦ୍‌ବିଗ୍ନ ହୁଅନ୍ତୁ ନାହିଁ । ମୁଁ ଶୀଘ୍ର ସଠିକ୍ ସମ୍ବାଦ ସଂଗ୍ରହ କରୁଛି । (ଦୌବାରିକର ପ୍ରବେଶ)

ଦୌବାରିକ—ମହାରାଜ, ରେମୁଣାର ଏକ ପାଇକ ପତ୍ରହସ୍ତରେ ଆସି ସାକ୍ଷାତ୍‌କାର ମାଗୁଛନ୍ତି ।

ହରିପୁର—ଶୀଘ୍ର ତାଙ୍କୁ ନେଇଆସ ! (ଦୌବାରିକର ପ୍ରସ୍ଥାନ) ମହାରାଜ ବୋଧହୁଏ ରେମୁଣା ବାଟେ ଚାଲିଗଲେଣି ! ହୁଏତ ଫେରିବା ପଥରେ ଏଇଠି ଆଶ୍ରୟନେବେ । ଏଇ ଯେ ନିଜେ ଦଳାଇଏ ! କି ଖବର ?

ରେମୁଣା ଦଳାଇ— ଗଜପତି ସମ୍ରାଟଙ୍କ ଆଦେଶରେ ଏଇ ଖବର ଦେବାକୁ ଆସିଛି ଯେ ସବୁ ଦୁର୍ଗର ଆଖପାଖରୁ ମୁସଲମାନମାନେ ବର୍ତ୍ତମାନ ଉଗ୍ର ସୈନ୍ୟମାନଙ୍କଦ୍ୱାରା ବିତାଡ଼ିତ ହୋଇ ବୈଶାଖ ଝଡ଼ରେ ଶୁଖିଲା ପତ୍ରପରି ପଳାୟିତ । ଉତ୍କଳର ସୈନ୍ୟମାନେ, ଶତ୍ରୁ ଶେଷନିଶ୍ୱାସ ନ ଛାଡ଼ିଲାଯାଏଁ, କୌଣସିଠାରେ ଛିଡ଼ା ହେବେ ନାହିଁ । ନିଜେ ସମ୍ରାଟ ସେମାନଙ୍କର ଅଗ୍ରଣୀ । ଚମ୍ପତି, ବେବର୍ତ୍ତା ଓ ବିଶୋଇମାନେ ରୂପନାରାୟଣ ଆରପଟେ ମହାରାଜଙ୍କୁ ଫେରିଆସିବାକୁ ବହୁତ କହିଲେ । କିନ୍ତୁ ମହାରାଜା ବିଶ୍ରାମ ନେବାକୁ ସମ୍ପୂର୍ଣ୍ଣ ଅନିଚ୍ଛା ପ୍ରକାଶ କଲେ । ତାଙ୍କ ପଛରେ ବିରାଟ ଉତ୍କଳ ଥାଟ, ସାରା ଭୂଖଣ୍ଡକୁ ଧୂଳିମୟ କରି ଧାଇଁଛି । ତାଙ୍କର ଫେରୁ ଫେରୁ ବିଳମ୍ବ ହେବ ଭାବି ସମ୍ରାଟ୍ ମତେ ପଛରୁ ଡାକି କହିଲେ, ''ଦଳେଇଏ, ତମେ ଜଳେଶ୍ୱରକୁ ଫେରିଯାଅ ! ଦୁର୍ଗଦ୍ୱାର ଖୋଲାଅ ଓ ଅବରୁଦ୍ଧ ଦୁର୍ଗବାସୀଙ୍କ ପାଇଁ ଖାଦ୍ୟର ଯୋଗାଡ଼ କର ! ସେମାନଙ୍କୁ କହ ଯେ ମୁଁ ଫେରନ୍ତା ଜଳେଶ୍ୱରରେ ରହିବି ।'' ଏହା କହି ଘୋଡ଼ା ଝପଟାଇଦେଲେ । ମୁଁ ଏକନିଃଶ୍ୱାସରେ ଏ ସମ୍ବାଦ ଦେବାପାଇଁ ଧାଇଁଛି । ଦେଖୁଛି ଦୁର୍ଗଦ୍ୱାର ଆଗରୁ ଖୋଲିଗଲାଣି— କେବଳ ଦୁର୍ଗବାସୀଙ୍କୁ ଏ ସମ୍ବାଦ ଦିଅନ୍ତୁ !

ଜଳେଶ୍ୱର—ଦଳାଇଏ, ଲୋକେ ଯେବେ ଜାଣିବେ ଯେ ଗଜପତିଙ୍କ ନିକଟରୁ ଲୋକ ଆସିଛନ୍ତି, ସେମାନେ ସବୁ କାମ ଛାଡ଼ି ତୁମକୁ ଘେରିଯିବେ । ତୁମକୁ ଚାଲିବାକୁ ସୁଦ୍ଧା ଦେବେନି । ତେଣୁ ତୁମେ ଆଗେ ବିଶ୍ରାମକର— ତା' ପରେ ସବୁ କଥା । ମୁଁ ତେଣେ ଦେଖେଁ ସୈନ୍ୟମାନେ ଯେପରି ବୃଥା ଗଣ୍ଡଗୋଳ ନ କରନ୍ତି ।

(ଦୁଇ ଦିଗରେ ଦୁଇଦଳ ନିଷ୍କ୍ରାନ୍ତ)

## (ପଞ୍ଚମ ଦୃଶ୍ୟ)

[ବାରବାଟୀର ଏକ କକ୍ଷ]

କାଞ୍ଚନପ୍ରଭା— ତା' ପରେ କ'ଣ ହେଲା ?

ନରସିଂହ— କୁଲବର୍ଗ ଦୁର୍ଗର ଶକ୍ତି କ୍ରମଶଃ କ୍ଷୀଣ ହୋଇ ଆସିଲା ଏବଂ କର୍ଣ୍ଣାଟବାହିନୀ ତୃତୀୟ ଦିନରେ ଅସ୍ତ୍ରତ୍ୟାଗ କରି ପଳାୟନକଲେ । କିନ୍ତୁ ହସ୍ତୀ, ଅଶ୍ୱ ଓ ଧନରତ୍ନାଦି କେବଳ ଉପଢୌକନରୂପେ ଗ୍ରହଣକରି କର୍ଣ୍ଣାଟ ରାଜାଙ୍କୁ ତାଙ୍କର ଦୁର୍ଗ ଫେରାଇଦେଇ ମଞ୍ଜିରା ନଦୀ ଅତିକ୍ରମ କରି ବାରଙ୍ଗଲ ଦୁର୍ଗଆଡ଼କୁ ଫେରିଲୁଁ । ବାରଙ୍ଗଲ ଦୁର୍ଗ ଅତି

ପୁରାତନ ଓ ବହୁକ୍ରୋଶବ୍ୟାପୀ । ଉଚ୍ଚ ପ୍ରସ୍ତର-ପ୍ରାଚୀର ଓ ସୁଗଭୀର ପରିଖା ଦ୍ୱାରା ସୁରକ୍ଷିତ । ତା'ର ଏକମାତ୍ର ଦ୍ୱାର ଲୌହ ଓ ବଜ୍ରପରି କଠିନ । କି ପ୍ରକାରେ ଆକ୍ରମଣ କରିବୁ ଭାବି ଭାବି ମୁଁ ଉତ୍ତୁଙ୍ଗ, ଗଜବାହୀ ଅସଂଖ୍ୟ ରଥ ରଚନାପାଇଁ ଆଦେଶ ଦେଲି । ସେହି ରଥମାନଙ୍କର ଉଚ୍ଚମଞ୍ଚାରେ ବିଚକ୍ଷଣ ଧନୁର୍ଦ୍ଧରମାନଙ୍କୁ ରଖାଇଦେଲି ଏବଂ ସେମାନେ ସ୍ୱ ସ୍ୱ ରଥକୁ ଦୁର୍ଗର ଚାରିପଟେ ଘୂରାଇ ଘୂରାଇ ତୀକ୍ଷ୍ଣ ଶର ପ୍ରେରଣ କରି ଦୁର୍ଗ ପ୍ରାଚୀରସ୍ଥ ଦଳ ଦଳ ପ୍ରହରୀଙ୍କୁ ନିପାତ କରିବାକୁ ଲାଗିଲେ । ତା' ପରେ ସେମାନେ ଦୁର୍ଗର ଚାରିପଟୁ ଅସଂଖ୍ୟ ଆଗ୍ନେୟ ହୁଳା ଦୁର୍ଗ ଭିତରକୁ ଛାଡ଼ିବାକୁ ଲାଗିଲେ, ଯା' ଫଳରେ ଦୁର୍ଗ ଭିତରେ ଭୀଷଣ ଅଗ୍ନିକାଣ୍ଡ ଘଟିଲା । ଏଣେ ଦନ୍ତାବଳମାନଙ୍କଦ୍ୱାରା ଦୁର୍ଗଦ୍ୱାର ବାରମ୍ବାର ପିଟାହେଉଥାଏ । ପନ୍ଦର ଦିନରେ ତାହା ଦୋହଲିବାକୁ ଆରମ୍ଭ କଲା । କ୍ରମେ କ୍ରମେ ଶର, ଅଗ୍ନିକାଣ୍ଡ ଓ ଅନାହାର ଫଳରେ ବାରଙ୍ଗଲପତି ଏକ ମାସରେ ଦୁର୍ଗ ଛାଡ଼ିଦେଇ ସନ୍ଧି ପ୍ରସ୍ତାବ କଲେ । କାକତୀୟ ଅହଂକାରକୁ ସମୂଳେ ନଷ୍ଟକରି, କୃଷ୍ଣା ଓ ଗୋଦାବରୀ ମଧ୍ୟସ୍ଥ ସକଳ ଭୂଖଣ୍ଡକୁ ସଂତ୍ରାସିତ କରି, ତୁମର ଆଗମନର ସମ୍ବାଦ ଶୁଣି ମୁଁ ତରତରରେ ଫେରୁଛି ।

କାଞ୍ଚନପ୍ରଭା— ଶୁଣ ଯୁବରାଜ, ମୁଁ ଅତି ଅକିଞ୍ଚନ । ମୋର ମନକୁ ଆସୁ ନାହିଁ ଯେ ରୂପ ବା ଗୁଣ କେଉଁଥିରେ ହେଲେ ତୁମ୍ଭର ପୂଜାପାଇଁ ମୁଁ ଯୋଗ୍ୟା । ତୁମ୍ଭେ ବିରାଟ ଉତ୍କଳ ସାମ୍ରାଜ୍ୟର ଭବିଷ୍ୟତ୍ ସମ୍ରାଟ୍ । ତୁମ୍ଭେ ବିଖ୍ୟାତ ଗାଙ୍ଗେୟ ବଂଶର କୁଳଚୂଡ଼ାମଣି । ତୁମ୍ଭର ପାଦତଳେ ଯଦି ଦାସୀ ହେବାର ଅଧିକାର ପାଏ, ସେଇ ମୋର ବଡ଼ ଭାଗ୍ୟ । ଯୌବରାଜ୍ୟରେ ଯେଉଁ ଯଶ ଘରକୁ ଆଣିଛ, ସମ୍ରାଟ ସିଂହାସନରେ ତାହା ଶତଗୁଣିତ ହେଉ, ଏହାହିଁ ମୋର ଅନ୍ତରର ପ୍ରାର୍ଥନା ! କିନ୍ତୁ ଅନୁମତି ହେଲେ ତୁମ୍ଭର ବିଚାରପାଇଁ ଗୋଟିଏ ପ୍ରସଙ୍ଗ ପକାନ୍ତି ।

ନରସିଂହ— ଶୀଘ୍ର କହ !

କାଞ୍ଚନପ୍ରଭା—ପଠାଣ ଏବେ ମାଳବରେ ପଶିଛି, ଜାଣିଛ ତ ?

ନରସିଂହ— ଶୁଣିଲି ମୁଁ କାଲିମାତ୍ର, ତୁମ୍ଭ ଦୂତଠାରୁ ।

କାଞ୍ଚନପ୍ରଭା—କାଳିଦାସ ଓ ବିକ୍ରମାଦିତ୍ୟଙ୍କର ପ୍ରସିଦ୍ଧ ନଗରୀ, ମୋର ପ୍ରିୟ ଉଜ୍ଜୟିନୀ, ଯବନହସ୍ତରେ ଲୁଣ୍ଠିତ ହେଉଥିବ । ଯେଉଁଠି ମହାକବି କାଳିଦାସ ସିପ୍ରାନଦୀରେ ପ୍ରାତଃସ୍ନାନ କରି ଶିବ ଆରାଧନା କରୁଥିଲେ, ସେହି ମହାକାଳ ମନ୍ଦିର ଯବନର ବିଧର୍ମୀ ହସ୍ତରେ ଚୂର୍ଣ୍ଣୀଭୂତ ହେବ । ବାପା ମା ଓ ଅନ୍ୟାନ୍ୟ ଜ୍ଞାତିଜନଙ୍କର ଦଶା ଯେ କ'ଣ ହେବ ଏ ସବୁ ଭାବି ଭାବି ମୁଁ ବଡ଼ ଅସ୍ଥିର, ଯୁବରାଜ ! (ଲୋତକତ୍ୟାଗ)

ନରସିଂହ—ସ୍ଥିରହୁଅ, କାଞ୍ଚନପ୍ରଭା ! ଆଜିଠାରୁ ଜାଣିରଖ ଯେ ତୁମର ଲୋତକ ମୋର ରକ୍ତ । ମତେ ଅକାରଣେ ବ୍ୟଥା ଦିଅ ନାହିଁ । କି ପ୍ରତିକାର ଚାହ କହ !

କାଞ୍ଚନପ୍ରଭା— ତେବେ ପ୍ରତିକାର କର ! ମାଳବର ଗ୍ଲାନିକୁ ଉତ୍କଳର ଅପମାନ ବୋଲି ଧର । ବିଧର୍ମୀଶତ୍ରୁ ଯେତେବେଳେ ଦ୍ୱାରଦେଶରେ ଠିଆହେଲାଣି, ସେତେବେଳେ ନିଜ

ଲୋକଙ୍କ ସଂଗେ କଳି ଦ୍ୱନ୍ଦ ସୁନ୍ଦର ଦିଶୁ ନାହିଁ । କାକତୀୟମାନଙ୍କୁ ଦମନକରି ଆମ୍ଭେମାନେ କି ଯଶ ପାଇବା, ଯଦି ଦିନେ ଦୁହେଁ ଯବନର ଦାସ ହେବା ? ଯେ ସାଧାରଣ ଶତ୍ରୁ ତା'ରି ପଛରେ ସମସ୍ତେ ମିଳିତ ହୋଇ ଧାଅଁ ଓ ତାକୁ ଏ ଦେଶରୁ ବହିଷ୍କାର କର । ମହାକାଳ ନିଶ୍ଚୟ ମୋର ପ୍ରାର୍ଥନା ଶୁଣିବେ । ତୁମ୍ଭର ବିଜୟ ସୁନିଶ୍ଚିତ । ବାପା ଯାଇଛନ୍ତି, ତୁମେ ବି ଯାଅ, ଯେତେବେଳଯାଏଁ ତୁମ୍ଭର ଖଡ୍‌ଗ ଯବନର ଉଜ୍ଜୟିନୀ ଲୁଣ୍ଠନର ପ୍ରାୟଶ୍ଚିତ୍ତ ନ କରିଛି, ସେତେବେଳେଯାଏ ମୋର ମନରେ ଶାନ୍ତି ନାହିଁ ତ୍ରାଣ ।

ନରସିଂହ— ମୋର କପାଳରେ ସିନ୍ଦୂର ଟିକା ଲେଖିଦିଅ ! ମୁଁ ଏହିକ୍ଷଣି ବାହାରିଲି ।

କାଞ୍ଚନପ୍ରଭା—ଦେବି ଆନନ୍ଦିତେ । (ନିଜ କପାଳରୁ ସିନ୍ଦୂର କାଢି ନରସିଂହଙ୍କ ମୁଣ୍ଡରେ ଦେବା)

ନରସିଂହ— ଗଲି ମୁହିଁ । ଫେରିଆସି ତୁମ କପାଳରେ ଶତ୍ରୁ ରକ୍ତର ଟିକା ଦେବି । ତା' ପରେ ବିବାହ । (ନିଷ୍କ୍ରାନ୍ତ)

## (ଷଷ୍ଠ ଦୃଶ୍ୟ)

[ଜଳେଶ୍ୱର ଦୁର୍ଗର ଅଭ୍ୟନ୍ତର । ମହରାଜ ଅନଙ୍ଗଭୀମଦେବ, ହରିପୁର ଓ ଜଳେଶ୍ୱର ଦୁର୍ଗର ଖଣ୍ଡାଏତ ।]

ଅନଙ୍ଗଭୀମଦେବ— ଏତେ ତରତରରେ ବାରବାଟୀ ଛାଡ଼ିବାକୁ ହେଲା ଯେ ସାଥିରେ ଗୌଡ଼ରାଜ ଲକ୍ଷ୍ମଣସେନଙ୍କୁ ଆଣିପାରିଲି ନାହିଁ । ଭାବିଥିଲି, ସମଗ୍ର ଗୌଡ଼ରୁ ମୁସଲମାନମାନଙ୍କୁ ବିତାଡ଼ିତ କରି ପରେ ଲକ୍ଷ୍ମଣସେନଙ୍କୁ ଡକାଇନେଇଥା'ନ୍ତି । କିନ୍ତୁ ଗଡ଼ ମନ୍ଦାରଣଠାରେ ମାଳବ ରାଜକନ୍ୟା ବାରବାଟୀରେ ପହଞ୍ଚିବାର ସମ୍ବାଦ ପାଇ ମୋର ସମସ୍ତ ପ୍ରସ୍ତାବ ଓଲଟିଗଲା । ମୁଁ ପୁଣି ତରତରରେ ଫେରିଲି ।

ହରିପୁର— ଆପଣଙ୍କ ବାକୀ କାମ ଯୁବରାଜ ପୂରା କରି ଆସିବେ । ଶୁଣୁଛୁଁ, ସେ ସାଥିରେ ଲକ୍ଷ୍ମଣସେନଙ୍କୁ ନେଇ ଯାଇଛନ୍ତି । ସେ ତ ଧାମରାଠାରୁ ବୋଇତରେ ଯାତ୍ରା କଲେ, ତେଣୁ ତାଙ୍କ ସଂଗେ ଆମର ସାକ୍ଷାତ୍ ହୋଇନାହିଁ ।

ଅନଙ୍ଗ—ବଡ଼ ଏକବାଗିଆ ! ଯୁବରାଜ ଯାହା ମନରେ କରିବ ବୋଲି ଠିକ୍ କଲା ସେ କରିବଇ କରିବ । ବାରଙ୍ଗଲ ଓ କୁଲବର୍ଗ ସେ ଯେପରି ଜୟ କରି ଆସିଲା, ତାହା ତ ସହଜରେ ବିଶ୍ୱାସହେଉନି ।

ଜଳେଶ୍ୱର— ଆଜ୍ଞା, ସିଂହର ଛୁଆ ସିଂହ ନ ହୋଇ କ'ଣ ବିରାଡ଼ି ହେବ ?

ଅନଙ୍ଗ— କିନ୍ତୁ ଜଳେଶ୍ୱର, ଆଜିହିଁ ଏକ ଦୂତ ପଠାଅ ବଙ୍ଗଦେଶକୁ ! ଯୁବରାଜ ସେଠାରେ କାମ ସାରି ଶୀଘ୍ର ଯେପରି ବାରବାଟୀକୁ ଫେରେ । ମୋର ଆଶଙ୍କା ହେଉଛି ସେ ହୁଏତ ମଗଧ ଡେଇଁ ମାଳବ ପର୍ଯ୍ୟନ୍ତ ଦୌଡ଼ିପାରେ; କିନ୍ତୁ ଏଣେ ବିବାହ କାର୍ଯ୍ୟଟା ଶୀଘ୍ର ହୋଇଯିବା ନିତାନ୍ତ ଉଚିତ ନୁହେଁ କି ?

ଜଳେଶ୍ୱର ଓ ହରିପୁର— ନିଶ୍ଚୟ, ନିଶ୍ଚୟ ! ଆମ୍ଭେମାନେ ସମସ୍ତେ ଏ ଶୁଭକର୍ମକୁ ଅନାଇ ରହିଛୁ ।

ଅନଙ୍ଗ— ବାରବାଟୀ ଫେରିବା ମାତ୍ରେ ଅବଶ୍ୟ ମାଳବରାଜାଙ୍କ ନିକଟକୁ ଦୂତ ପ୍ରେରିତ ହେବ । ଭାରତବର୍ଷରେ ମୁସଲମାନ ଏକ ନୂତନ ଉପଦ୍ରବ ହୋଇ ଦେଖାଦେଲେଣି । ରାଜ୍ୟ ପରେ ରାଜ୍ୟ ସେମାନେ ଲୁଟି କରି ନେଇଯାଉଛନ୍ତି । ଓଡ଼ିଶାର ନିରାପତ୍ତା ତମରିମାନଙ୍କ ଉପରେ ନିର୍ଭର କରେ । ହରିପୁର ଓ ଜଳେଶ୍ୱର, ତୁମେ ଦୁହେଁ ଓଡ଼ିଶାର ଉତ୍ତରଦ୍ୱାର ସ୍ୱରୂପ ।

ଜଳେଶ୍ୱର ଓ ହରିପୁର— ଶତ୍ରୁ ଆମର ମୃତ ଦେହ ଉପରେହିଁ ଏ ଦ୍ୱାର ଅତିକ୍ରମ କରିବ ମହାରାଜ !

ଅନଙ୍ଗ— ଉତ୍ତମ, ଉତ୍ତମ ! ଜାଗ୍ରତ ରହ ହରିପୁର, ଜାଗ୍ରତ ରହ ଜଳେଶ୍ୱର ।

ଜଳେଶ୍ୱର— ଛାମୁଙ୍କ ଦର୍ଶନପାଇଁ ଛାମୁଙ୍କର ସହସ୍ର ସହସ୍ର ରାଜ-ଭକ୍ତ ପ୍ରଜା ବାହାରେ ଜମା ହୋଇଛନ୍ତି । ଛାମୁ ବିଜେ ହେବାକୁ ଆଜ୍ଞାହେଉ ।

ଅନଙ୍ଗ— ଚାଲ, ଚାଲ । (ସମସ୍ତେ ନିଷ୍କ୍ରାନ୍ତ)

## (ସପ୍ତମ ଦୃଶ୍ୟ)

[ଜଳେଶ୍ୱର ଦୁର୍ଗର ଦୁଇଜଣ ଓଡ଼ିଆ ସୈନିକର ଏକଆଡ଼ୁ ପ୍ରବେଶ ।]

ପ୍ରଥମ ସୈନିକ— ଭାଇ ! ବସ ଟିକିଏ । ସାରା ଗଡ଼ ଭିତରେ ସୋରିଷ ପକାଇବାକୁ ଜାଗା ନାହିଁ । ଆଣ୍ତ ବଟୁଆ ।

ଦ୍ୱିତୀୟ ସୈନିକ— ଏତେ ଲୋକ ! ସବୁ ଗଡ଼ରେ ଏଇୟା ହୋଇଥିବଟି ? ହାତୀଘର ତ ବାଉଁଶବଣ; ମହାରାଜ ଯୁଆଡ଼େ ଲୋକ ବି ସିଆଡ଼େ । (ବସି ବଟୁଆ ଖୋଲୁ ଖୋଲୁ) ମଣିଷ ଏତେଦିନେ ଟିକିଏ ନିଶ୍ଚିନ୍ତରେ ଖଣ୍ଡେ ପାନ ହେଲେ ଖାଇଲା । ଏ ପଠାଣକୁ ଗୋଡ଼େଇ ଗୋଡ଼େଇ ଆମେ ବି ପଠାଣ ହେଲୁ ।

ପ୍ରଥମ— ଆଜି ଭାଇ ଆମ ଭୂଇଁମୂଳକୁ କହି କିଛି ଭାଙ୍ଗର ଯୋଗାଡ଼ ନ କଲେ ହେବନି । ବିଜୟା ନ ପଡ଼ିଲେ ଦେହର ଏ ଶିରପୀଡ଼ା ଘୁଞ୍ଚିବନି ।

ଦ୍ୱିତୀୟ— ସେ ତ ଦୂର କଥା, ମୁଠାଏ ଭାତ, ଆଉ ଟିକିଏ ମୁଗଡ଼ାଲି ପାଇବାପାଇଁ ପାଟି କରି କରି ମୋର ଯେ ଶିରପୀଡ଼ା ହୋଇଗଲା ଭାଇ ।

ପ୍ରଥମ— କ'ଣ କରାଯିବ ଭାଇ, ଆମେ ତ ହଜାର ହଜାର ପାଇକ, ହାତୀ, ଘୋଡ଼ା, ମାହୁନ୍ତ ଆଦି ଯାହା ଆସିଛେ; ମହାରାଜାଙ୍କୁ ଦେଖିବା ପାଇଁ ପୁଣି ହଜାର ହଜାର ଲୋକ ଠୁଳ ହେଉଛନ୍ତି । ୟାଙ୍କୁ କିଏ ସମ୍ଭାଳିବ ? ଦେ ଭାଇ, ଖିଲେ ଦେ !

ଦ୍ୱିତୀୟ— ନେ ଏଇ ! (ପାନ ଦେବା । ଦ୍ୱିତୀୟ ଖାଇ ନାକ କାନ ଛୁଇଁବା ।) ହଉ, ଏଠୁ କେବେ ଯିବା କହ ତ ? ମହାରାଜ ଏଠି କେତେ ଦିନ ରହିବେ କି ଆଉ କୁଆଡ଼େ ଲଢ଼ାଇ ହେବ କିଛି ଜଣାପଡୁନି । ମନଟା କିନ୍ତୁ ଘରମୁହାଁ ଧଇଲାଣି । ପୁଅର ମା' ତ ଭାତ ଖାଉ ନ ଥିବ ଭାଇ !

ପ୍ରଥମ— ସେ କଥା କ'ଣ କହିବାକୁ ଅଛି ଭାଇ ? ମୋ ସ୍ତ୍ରୀ ଯେ କୁ' ଦେବତାଙ୍କୁ କ'ଣ ନ ଯାଚିଛି, ମୁଁ ଫେରିଗଲେ ସେ ସବୁ ଭୋଗ ହେବ । ହେଲେ ପାଇକ ପୁଅ ତ ମୁଣ୍ଡକୁ ପାଣି ଛଡ଼ାଇ ଥାଏ । ରାଜାଘର ଜମି ଖାଉଛେ, ତାଙ୍କ ବିପଦବେଳେ ମୁଣ୍ଡ ଦେବାକୁ ସିନା ?

ଦ୍ୱିତୀୟ— କିନ୍ତୁ ଏ ପଠାଣଙ୍କର ଭାଇ ଚାରିଖୁଣ ଛାଡ଼ ଦେଖୁଛି ! ନାହିଁ ଦିଅଁ, ନାହିଁ ଦେବତା, ନାହିଁ ବ୍ରାହ୍ମଣ, ନାହିଁ ଭକ୍ତି, ନାହିଁ ଛୁଆଁ-ଛୁଇଁ, ନାହିଁ କିଛି ! ସେଗୁଡ଼ାକ ଗାଧୋଉ ବି ନାହାନ୍ତି । ଆମର ତେତିଶି କୋଟି ଦିଅଁକୁ ତାଙ୍କର ଗୋଟିଏ । ତା ନାଁ କ'ଣ ଜାଣିଛୁ ? ତା ନାଁଟି ଆଲ୍ଲା ।

ପ୍ରଥମ— ତାଙ୍କୁ ବଳି ତାଙ୍କ ଘୋଡ଼ା । ଦେଖିବାକୁ ଡଉଲ ଯେମିତି, ଦଉଡୁଛନ୍ତି ବି ହରିଣପରି । କୁଆଡୁ ଏଗୁରା ପିମ୍ପୁଡ଼ିପରି ମାଡ଼ିଆସୁଛନ୍ତି, କେଜାଣି ! ତେଲେଙ୍ଗା ହେଲେ ମଣିଷ ପଦେ ପଦେ ବୁଝିବ— ଏମାନଙ୍କ କଥା ଆଦୌ ଧରାପଡୁନାହିଁ ।

ଦ୍ୱିତୀୟ— ମୋର ମନେହେଉଛି ପଠାଣମାନେ ପୁଣି ଆସିବେ । ଆଉ ମହାରାଜା ସେଇ ଆଶଙ୍କାରେ ଏଠାରେ ଦିନାକେତେ ରହି କଟକ ଫେରିବେ ।

ପ୍ରଥମ— ମୁଁ କିନ୍ତୁ ଆଜି ଶୁଣୁଛି ପୁଣି ଯୁବରାଜ ଦକ୍ଷିଣରୁ ଫେରି, ପଠାଣମାନଙ୍କ ସଙ୍ଗେ ଲଢ଼େଇପାଇଁ ବାପାଙ୍କ ପାଖକୁ ଆସୁଛନ୍ତି । ସତ କି ମିଛ ମୁଁ କହିପାରିବି ନାହିଁ ।

ଦ୍ୱିତୀୟ— ତା' ହେଲେ ଭାଇ ଆଉ ରକ୍ଷା ନାହିଁ । ଯୁବରାଜ ଆସିଲେ ତ ବସେଇ ଦେବେ ନାହିଁ ମଣିଷକୁ । ସେ ତ ଏକ ପଠାଣ ଘୋଡ଼ା— ଥିର ରହିବା ଜନ୍ତୁ ନୁହଁ । ବାପ ଉଣିଶ୍ କି ସେ ବିଶ୍ । ତେବେ ଆଉ ଘରକୁ ଯିବା କଥା ଏଇଲେ ନୁହେଁ ! ଚାଲ ଭାଇ, ପାଟ ଅଗଣାରେ ନାଟଫାଟ ଆରମ୍ଭ ହେବଣି, ଆଗରୁ ଜାଗା ମାଡ଼ିବସିଥିବା ।

ପ୍ରଥମ— ହଉ ଚାଲ, ଆଉ କ'ଣ କରିବା !

## (ଅଷ୍ଟମ ଦୃଶ୍ୟ)

[ଗୌଡ଼ରେ ମୁସଲମାନ ଶିବିର, ସିରାଜ ଖାଁ ଓ ଦୁଇଜଣ ଅଧସ୍ତନ ସେନାପତି ।]

ସିରାଜ— ସମଗ୍ର ହିନ୍ଦୁସ୍ଥାନରେ ମୁସଲମାନର ଏହି ହେଲା ପ୍ରଥମ ପରାଜୟ । କନୌଜ, ବିହାର, ବଙ୍ଗଳା ଯେପରି ସୁବିଧାରେ ମିଳିଗଲା, କିଏ ଭାବିଥିଲା ଓଡ଼ିଶାର ରାଜା ଏତେ ଟାଣୁଆ ବୋଲି ?

ପ୍ରଥମ ସେନାପତି— ଖଣ୍ଡାଏତମାନେ ଆମର ଘୋଡ଼ସବାରମାନଙ୍କର ଜୀନ୍ ତୁଟାଇଦେଲେ ।

ସିରାଜ— ଉତ୍ତ୍ର ରାଜ୍ୟରେ ରାଜା ଓ ପ୍ରଜା ଭଲରେ ଅଛନ୍ତି ଏବଂ ସୁବାଦାରମାନେ ରାଜାର ନିମକ୍‌ର ମାନ୍ ରଖୁଛନ୍ତି । ଓଡ଼ିଆ ରାଜା ସାଙ୍ଗକୁ, ଏଥର ପ୍ରାୟ ଆଉ ଦଶଟା ଛୋଟିଆ ରାଜା ତାଙ୍କ ଫଉଜ ନେଇ ଆସିଥିଲେ ।

ପ୍ରଥମ ସେନାପତି— ଆଜି କିନ୍ତୁ ଖବର ମିଳିଛି ଯେ ରାଜା ଜଳେଶ୍ୱର ଛାଡ଼ି ଚାଲିଗଲେଣି ।

ଦ୍ୱିତୀୟ ସେନାପତି— ତା' ହେଲେ ଆମେ ଟିକିଏ ନିଶ୍ୱାସ ମାରି, ଦ୍ୱିତୀୟ ଚଢ଼ାଉପାଇଁ ପ୍ରସ୍ତୁତ ହେବା ।

ସିରାଜ— ନିଶ୍ଚୟ । ଇସଲାମ୍ ପରାଜୟ ସ୍ୱୀକାର କରେନା । ଆମେ ବାରମ୍ବାର ଓଡ଼ିଶା ଆକ୍ରମଣ କରିବାକୁ ପ୍ରସ୍ତୁତ ରହିବା । ସମଗ୍ର ହିନ୍ଦୁସ୍ଥାନର କାଫେର୍‌ମାନଙ୍କୁ ପଦତଳେ ରଖିଲେ କ'ଣ ହେବ, ତାଙ୍କର ମକ୍କାରେ ତ ପତାକା ଉଡ଼ିଲା । ସୋମନାଥ, ନଗରକୋଟ୍, ମଥୁରାର ଦଶାକୁ ଜଗନ୍ନାଥଙ୍କୁ ନ ଆଣିଲେ, ଇସଲାମ୍‌ର ଇଜ୍ଜତ୍ ରହିବନି ଏ ଦେଶରେ ।

ପ୍ରଥମ ସେନାପତି— ଅଲ୍‌ବତ୍ ଜାହାଁପନା, ଜଗନ୍ନାଥଙ୍କୁ ଭାଙ୍ଗି ଇସଲାମ୍‌ର ଇଜ୍ଜତ୍ ରଖିବାକୁ ଆମେ ବାଦ୍ ଦେଲୁ । ଏଇ ଆମର ଶିର୍‌କା ଫେଜ୍ ଜାମିନ୍ ରଖିଲୁ । (ମୁଣ୍ଡର ଫେଜ୍ କାଢ଼ି ଉଭୟ ସେନାପତି ସିରାଜଙ୍କ ପାଦତଳେ ଦେବା । ଇତିମଧ୍ୟରେ ମୁସଲମାନ ଚରର ପ୍ରବେଶ ।)

ସିରାଜ— କି, ଖବର୍ କ'ଣ ? ଖବର୍ କ'ଣ ?

ଚର— ଖୋଦାବନ୍ଦ୍ ସବୁ ପଳାନ୍ତୁ, ପଳାନ୍ତୁ, ପଳାନ୍ତୁ !

ପ୍ରଥମ ଓ ଦ୍ୱିତୀୟ— କାହିଁକି ? କାହିଁକି ?

ଚର— ଉତ୍କଳ ରାଜାର ପୁତ୍ର, ନରସିଂହଦେବ, କୌଶଳରେ ଜାହାଜମାନଙ୍କରେ ନଦୀ ମୁହାଁଣରେ ଥୋଡ଼ା ସୈନ୍ୟ ଓହ୍ଲାଇ, ଏଣେ ସ୍ଥଳ ରାସ୍ତାରେ ମଧ୍ୟ ତା'ର ବାପର ଫେରିଯାଉଥିବା ସୈନ୍ୟମାନଙ୍କୁ ଧରି ବର୍ତ୍ତମାନ ଦୁଇପଟୁ ମାଡ଼ିଆସୁଛି । ସାଥିରେ ତା'ର ଗୌଡ଼ରାଜା ଫେରିଆସିଛି । ଆଉ ରକ୍ଷା ନାହିଁ । ପ୍ରାୟ ତିନିକୋଶ ଦୂରରୁ ଧୂଳି ଉଡ଼ିବାର ଦେଖି ଆମ୍ଭେମାନେ ଭାବିଥିଲୁ ଯେ ଗୋଟାଏ ଝଡ଼ ଆସୁଛି । କିନ୍ତୁ ଦେଖୁ ଦେଖୁ ସହସ୍ର ସହସ୍ର ନରନାରୀ ଓ ବାଳକବାଳିକା ଦୁଇ ଦିଗରୁ ଏ ନଗରରେ ପଶିଲେଣି । ସେମାନଙ୍କର କ୍ରନ୍ଦନ ରୋଳରେ ସହର ପୂର୍ଣ୍ଣ । ସହରବାସୀମାନେ ସେମାନଙ୍କୁ ଆଶ୍ରୟ ଦେବେ କ'ଣ, ନିଜେ ନିଜର ଜିନିଷପତ୍ର ଧରି ପଳେଇବାକୁ ବସିଲେଣି । ଆରଥରର ଓଡ଼ିଶା ଆକ୍ରମଣ ଲୋକଙ୍କୁ ଏପରି ବାଧୁଛି ଯେ, ଲୋକଙ୍କ ମୁହଁରୁ ଖାଲି କେବଳ ଶୁଣାଯାଉଛି— "ଓଡ଼ିଆ ଆସିଲେ, ପଳା ପଳା ।" ଓଡ଼ିଆ ସୈନ୍ୟ ଅତି ନିକଟରେ । ଖୋଦାବନ୍ଦ୍ ପଳାୟନକରନ୍ତୁ, ନଚେତ୍ ବନ୍ଦୀହେବେ । ଓଡ଼ିଆମାନେ ମୁସଲମାନ ଦେଖିଲେହିଁ ହତ୍ୟା କରୁଛନ୍ତି ।

ପ୍ରଥମ ସେନାପତି— ଆଉ ବିଳମ୍ବ କରନ୍ତୁ ନାହିଁ ଜାହାଁପନା ! ଭାବିବାର ସମୟ ଏ ନୁହେଁ । ପଳାୟନହିଁ ଏକମାତ୍ର ପନ୍ଥା ।

ଦ୍ୱିତୀୟ— ତା' ଛଡ଼ା ଯେ ଅନ୍ୟ ବାଟ ନାହିଁ ।

ସିରାଜ— ଚାଲ ତେବେ । ଆଲ୍ଲା ହୋ ଆକବର୍ ! (ନିଷ୍କ୍ରାନ୍ତ)

ସମସ୍ତେ— ଆଲ୍ଲା ହୋ ଆକବର୍ !

(ସେମାନେ ଚାଲିଯିବା ପରେ ପରେ ସସବ୍ୟସ୍ତରେ ନରସିଂହ ଓ ଓଡ଼ିଆ ସେନାପତିଗଣଙ୍କର ପ୍ରବେଶ ।)

ନରସିଂହ— ପଳାୟିତ ! କିନ୍ତୁ କେଉଁଆଡ଼େ ପଳାଇବେ ? ଚାଲ ସେନାପତି, ବିରାଡ଼ି ମୂଷାକୁ ଗାତରୁ ଓଟାରି ଆଣିଲାପରି, ଶତ୍ରୁକୁ ଲୁଚିବା ଜାଗାରୁ କାଢ଼ିଆଣିବା । ଏଣେ ସୈନ୍ୟମାନଙ୍କୁ କହିଦିଅ ଯେ ପ୍ରତ୍ୟେକ ଶତ୍ରୁ ସୈନ୍ୟକୁ ଖୋଜି ଖୋଜି ଯମ ପାଖକୁ ପଠାନ୍ତୁ । ଆମ୍ଭମାନଙ୍କୁ ଅବଶ୍ୟ ଏହିଠାରେ କିଛିକାଳ ରହିବାକୁ ହେବ । ଗୌଡ଼ରାଜାଙ୍କୁ ତାଙ୍କର ସିଂହାସନରେ ବସାଇ ସାରିବା ପରେ, ଆମ୍ଭେମାନେ ପୁଣି ବିହାର ଅଭିଯାନ କରିବା । ଯାଅ ଗୌଡ଼ରାଜାଙ୍କୁ ସମ୍ମାନରେ ଘେନିଆସ ! (ନିଷ୍କ୍ରାନ୍ତ, ପଟପତନ)

## [ ଚତୁର୍ଥ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ବାରବାଟୀର ଅନ୍ତଃପୁର— ନରସିଂହ ଓ କାଞ୍ଚନପ୍ରଭା ଉପବିଷ୍ଟ]

ନରସିଂହ— ବାବା କାହିଁକି ଯେ ମନାକଲେ, ମୁଁ ଜାଣିପାରୁନି । ମୋର ଇଚ୍ଛା ଥିଲା ଯବନରାଜର ପଶ୍ଚାଦ୍ଧାବନ କରି ବିହାରରେ ପଶିବାକୁ । ସେ କିନ୍ତୁ କେବଳ ବଙ୍ଗଳା ଜୟକରି ଫେରିବାକୁ ବାହାରିଲେ । ଖୁବ୍ ସମ୍ଭବତଃ ତମର ଆସିବାର ଖବର ପାଇ, ସେ ତୁରନ୍ତ ବାରବାଟୀକୁ ଫେରିବାକୁ ଚାହିଁଲେ । ମୋର ବଡ଼ ଦୁଃଖ ଯେ ଯବନରାଜର ରକ୍ତରେ ତମର ଟିକା ରଚନା କରିପାରିଲି ନାହିଁ । ମୁଁ ସତେ ତମ କରଧାରଣର ଅଯୋଗ୍ୟ ।

କାଞ୍ଚନପ୍ରଭା— ତୁମେ ତ ମୋର ଚିରଦିନ ପୂଜନୀୟ ଦେବତା । ମତେ ଆଉ ଲଜ୍ଜା ଦିଅ ନାହିଁ । ପ୍ରଥମ ଅଭିଯାନରେ ଶତ୍ରୁକୁ ବେଶ୍ ଶାସ୍ତି ଦିଆଯାଇଛି । ଯାହା ନ ହେଇଛି, ସେଥିପାଇଁ ତମେ ଦାୟୀ ନୁହଁ, ଦାୟୀ ମୁଁ । ମୁଁ ଅପ୍ରତ୍ୟାଶିତ ଭାବରେ ବାରବାଟୀ ଆସି ନ ଥିଲେ, ତୁମେମାନେ ଏତେ ଶୀଘ୍ର ବଙ୍ଗଳା ଛାଡ଼ି ନ ଥା'ନ୍ତ, କି ଯବନ ଆସି ପଳେଇପାରି ନ ଥାନ୍ତା । କିଛି ଦୁଃଖ କରନା । ଏଇ ମାମା ଆସୁଛନ୍ତି—

(ପାଟମହିଷୀଙ୍କର ପ୍ରବେଶ ଓ ଦୁହିଁଙ୍କର ନମସ୍କାର)

ପାଟମହିଷୀ— ଦୀର୍ଘଜୀବୀ ହୁଅ, ବାପା ମା' ଦୁହେଁ ! ପ୍ରଭୁ ନୀଳାଚଳନାଥଙ୍କ ଆଶୀର୍ବାଦରେ ତମରିମାନଙ୍କ ସୁଖ ଯଶ ଦେଖି ଦେଖି ଆମର ଆଖି ବୁଜିହେଉ । ମା' ତୁମକୁ ପାଇ ଏ ଉତ୍କଳ-ରାଜ୍ୟ ଧନ୍ୟ ଓ ଆମ୍ଭେମାନେ କୃତକୃତ୍ୟ । ଏ ଦୁର୍ଗ ହସିଉଠୁଛି ତମଲାଗି । ମହାରାଜ ତୁମପରି ବୋହୂ ପାଇ ନିଜକୁ ଭାଗ୍ୟବାନ ମନେକରୁଛନ୍ତି । ବଙ୍ଗଦେଶରୁ ଫେରିଲା ପରେ ଓ ତୁମକୁ ଦେଖିଲାବେଳୁ ପାତ୍ରମନ୍ତ୍ରୀଙ୍କ ଆଗରେ କେବଳ ତମରି

କଥା; ଲଢ଼େଇର ନାଁ ଧରୁନାହାନ୍ତି । ଆସ ମା, ସଭାମଣ୍ଡପକୁ ଆସ ! ରାଜ୍ୟର ଲୋକେ ତୁମକୁ ଦେଖିବାକୁ ଉଦ୍‌ଗ୍ରୀବ ! ଆସ ବାପା !

(ଧୀରେ ଧୀରେ ସମସ୍ତେ ନିଷ୍କ୍ରାନ୍ତ)

## (ଦ୍ୱିତୀୟ ଦୃଶ୍ୟ)

[ପାତ୍ରମନ୍ତ୍ରୀ ପରିବେଷ୍ଟିତ ଅନଙ୍ଗଭୀମ]

ଅନଙ୍ଗ— ଶୁଣ ପ୍ରିୟ ପ୍ରଜାବର୍ଗ,
ଶୁଣ ପାତ୍ରମନ୍ତ୍ରୀଆଦି ସଭାସ୍ଥ ସକଳେ
ଶେଷେ ମୁଁ କହଇ ଏକ କଥା ସମସ୍ତଙ୍କୁ—
ଏଇ ଯେ ଉତ୍କଳ ରାଜ୍ୟ ପବିତ୍ର ପୁରାଣ,
ସ୍ୱୟଂ ନୀଳାଚଳନାଥ ରକ୍ଷକ ଯାହାର;
ଗଙ୍ଗା, ଗୋଦାବରୀ, ସିନ୍ଧୁ ପରିଖା ପରିରେ
ଘେରିରହିଛନ୍ତି ଯାକୁ; ପଶ୍ଚିମେ, ଉତ୍ତରେ
ଅଭେଦ୍ୟ ପର୍ବତମାଳା, ଏକ ପରେ ଏକ
ପ୍ରାଚୀର ସମାନ ଯା'ର ରହିଛନ୍ତି ଠିଆ;
ବଣିକ-ବୋଇତ ଯା'ର ଚିରେ ସପ୍ତସିନ୍ଧୁ,
ସୈନିକେ ଯାହାର ବଳେ, ସାହସେ ବିଖ୍ୟାତ,
ଯା' ନୃପତିଗଣ,
କରିଲେ ମଣ୍ଡନ ଯା'କୁ ପିନ୍ଧାଇଣ ଯତ୍ନେ
ଦୁର୍ଗ-ଦେଉଳର ମହା-ମହିମ-କିରୀଟ,
ଭକ୍ତ-ଋଷି-ସାଧନାର ଏ ସ୍ଥଳୀ ପାବନ,
ଏହି ସେ ଉତ୍କଳଭୂମି, ଥିବ ଚିରକାଳ
ଏହିପରି ଯଶୋମୟ;
ଯଦି ଉତ୍କଳୀୟେ
ତୁମ୍ଭେ ସବୁ ଖଣ୍ଡାଇତେ, ପାଇକେ, ସାମନ୍ତେ
ଏକ ହୋଇ କର କାର୍ଯ୍ୟ, ଭୁଲି ଆତ୍ମପର
ଭୁଲି ନିଜ କ୍ଷୁଦ୍ର ସ୍ୱାର୍ଥ, ରଖି ଚିତ୍ତେ ସଦା ।
ଉତ୍କଳର ସ୍ୱାଧୀନତା, ଉତ୍କଳ-ସମ୍ମାନ,
ଜୀବନର ଶ୍ରେଷ୍ଠକୃତି ପ୍ରତ୍ୟେକ ଜୀବନେ;

ନିଜ ସୁଖ, ସ୍ୱାର୍ଥପାଇଁ ଉତ୍କଳ-ସମ୍ମାନ
ବିକିବା ବିଦେଶୀ ହାତେ ଘୃଣ୍ୟ ଯଦି ଭାବ,
କିଏ ସେ ପୁଣ୍ୟ ଦେଶେ କରିବ ରାଜତ୍ୱ,
ତୁମ୍ଭ ପରେ, ତୁମ୍ଭ ନିଜ ଭାଇ ବନ୍ଧୁ ଛଡ଼ା ?
ନୀଳାଚଳନାଥେ ଆମ୍ଭେ ହୋଇବା କୃତଜ୍ଞ,
ବାରବାଟୀ ଠିଆହେବା ସଙ୍ଗେ ସଙ୍ଗେ ଆମ୍ଭ—
ତରବାରି ଆଣିଅଛି ବିଜୟ ସନ୍ଦେଶ,
କୁଳବର୍ଗ, ବାରଙ୍ଗଲ, ହୋଇଲେ ନିଭନ,
ଯବନ ତାଡ଼ିତ ହେଲା, ଲୁଣ୍ଠିତ ତା' ଦୁର୍ଗ,
ରାଢ଼ ଓ ବାରେନ୍ଦ୍ର ପୁଣି ମିଶିଲା ଉତ୍କଳେ,
ଉତ୍କଳର ସୀମା ଏବେ ଗଙ୍ଗାନଦୀ କୂଳୁ
ବିସ୍ତାରିତ କୃଷ୍ଣାଯାଏଁ ପୂରୁବୁଁ ପଶ୍ଚିମେ
ସିନ୍ଧୁଠାରୁ ବିନ୍ଧ୍ୟଯାଏ ଗଣ୍ଡବାନା ଭେଦି ।
ଏ ବିରାଟ ସାମ୍ରାଜ୍ୟର ଲକ୍ଷ୍ମୀ ଭବିଷ୍ୟତ
ଏହି ଆସୁଛନ୍ତି ଦେଖ । ଆସ ମା କାଞ୍ଚନ,
(କାଞ୍ଚନପ୍ରଭା ପ୍ରଭୃତିଙ୍କର ପ୍ରବେଶ)
ଉଦ୍‌ଗ୍ରୀବ ଦେଖିବେ ସର୍ବେ ରାଣୀଙ୍କୁ ତାଂକର ।

(କାଞ୍ଚନପ୍ରଭା ପ୍ରଭୃତିଙ୍କର ଆସନ ଗ୍ରହଣ ଓ ସଭାରେ କରତାଳି ଧ୍ୱନି)

ମାଳବ ଅନ୍ଧାର କରି ଆସି ବାରବାଟୀ
ଉଜ୍ଜ୍ୱଳ କରୁଛ ନିଜ ରୂପେ, ଗୁଣେ, ଶୀଳେ ।
ଏଇ ତବ ପ୍ରଜାବର୍ଗ, ଏହି ସେ ସାମନ୍ତେ,
ମୁଷ୍ଟିବଦ୍ଧ କରେ ଯାଙ୍କ ଲକ୍ଷ ଲକ୍ଷ ଅସି,
ତୁମରି ସମ୍ମାନ ପାଇଁ । ତୁମରି ଇଙ୍ଗିତେ
ଉଠିବେ, ବସିବେ ପୁଣି ଦେବେ ପ୍ରାଣ ଢାଳି ।

ସମସ୍ତେ— ଜୟ ମାଳବ ରାଜକନ୍ୟାଂଙ୍କର ଜୟ ! ଜୟ ନରସିଂହଦେବଂଙ୍କର ଜୟ !

କାଞ୍ଚନପ୍ରଭା— (ଉଠି) ପ୍ରିୟ ଉତ୍କଳର ସାମନ୍ତ ଓ ପ୍ରଜାବର୍ଗ ! ଆଜିଠାରୁ ଉତ୍କଳହିଁ ମୋର ଘର । ଉତ୍କଳର ବିପଦବେଳେ ତୁମ୍ଭମାନଙ୍କର ପଛରେ ମୁଁ ଠିଆଥିବି । ଉତ୍କଳର ସମ୍ମାନ ପାଇଁ ମୋର ସ୍ୱାମୀ ଯୁଦ୍ଧକୁ ଗଲେ ମୁଁ ତାଙ୍କର ତରବାରି ବୋହିନେବି । ତମମାନଙ୍କର ପ୍ରାଣ ଗଲେ ମୋ ପ୍ରାଣ ବି ତମମାନଙ୍କର ସଙ୍ଗରେ ଥିବ ।

(ବସିବା ଓ ଘନ ଘନ କରତାଳି ସହ ପଟପତନ ।)

(ବନ୍ଦୀମାନଙ୍କର ଗାଇ ଗାଇ ପ୍ରବେଶ— ସଂସ୍କୃତ ଗୁରୁଲଘୁ ନିୟମରେ ଗାଇବା )

ଦୁର୍ଗରାଜ ଜୟ ହେ
ବାରବାଟୀ ଜୟ ହେ
ଉତ୍କଳ ନିଃଶଙ୍କ କରିଛ ନାଶି ବୈରୀ ଭୟ ହେ । (ଘୋଷା)
ଦେଶ ଦେଶ ଖଣ୍ଡିତ କରି ଖଣ୍ଡାୟତ ଆସେ
ଘୋଷଇ ତବ ନାମ ବୈରୀ ଦୂରରୁ ଗୁରୁତ୍ରାସେ ।
ବୀର-ଗରବ ସ୍ପନ୍ଦିତ, ଘନ—
ଗୌରବ-ରଙ୍ଗ-ମୟ ହେ
ଦୁର୍ଗରାଜ ଜୟ ହେ.... । ୧ ।

ପ୍ରେରିଛ ଶତ ବାହିନୀ ତବ କ୍ଷତ୍ରିୟ ଯଶପାଇଁ
ଫେରୁଛନ୍ତି କୀର୍ତ୍ତି-ଖଚିତ, ଜୈତ୍ର-ଗୀତି ଗାଇ
ନାରୀ ପୂଣ୍ୟ କରଇ ବିଜୟ
ଚୁମ୍ବି ବକ୍ଷୁ ଭୟ ହେ,
ଦୁର୍ଗରାଜ ଜୟ ହେ... । ୨ ।

ବାର ବାର ଉତ୍କଳ-ତମ ନାଶିଲ ତରବାରେ ହେ
ଟେକି ରଖିଲ ଜାତି ମହତ ତୁଙ୍ଗ ଅହଂକାରେ ହେ ।
ମଣ୍ଡିତ ଗଜପତି-ଯଶ-ଫୁଲ-
ସୈନିକ,—ଦୁର୍ଜ୍ଜୟ ହେ
ଦୁର୍ଗରାଜ ଜୟ ହେ । ୩ ।

ବୈରୀ-ବିଜୟ-ଭଞ୍ଜ ଦୁର୍ଗ, ନିତ୍ୟ ଅଭୟ-ଭାଷୀ ।
ଇଙ୍ଗିତ ତବ, ପାଇକ ଲଭି ଯୁଦ୍ଧେ ପଶଇ ଝାସି ।
ଥାଅ ନିତ୍ୟ ଆମ୍ଭଲାଗି,
ଗର୍ବିତ, ନିର୍ଭୟ ହେ
ଦୁର୍ଗରାଜ ଜୟ ହେ । ୪ ।

(ନିଷ୍କ୍ରାନ୍ତ- ପଟପତନ)

———

# ବୁଦ୍ଧ

## ଚରିତ୍ରାବଳୀ

[୧୯୫୧ ଅକ୍‌ଟୋବର ୯ ତାରିଖ ରାତ୍ରିରେ ଅନୁଷ୍ଠିତ ପ୍ରଥମ ଅଭିନୟରେ ଅବତୀର୍ଣ୍ଣ ଗଂଗାଧର ମେହେର କଲେଜର କର୍ମଚାରୀ ଓ ଛାତ୍ରବୃନ୍ଦ ଏବଂ ଲେଡ଼ି ଲୁଇସ୍ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କର ନାମ ସହ ।]

| | | |
|---|---|---|
| ଯୁବରାଜ ସିଦ୍ଧାର୍ଥ (ପରେ ବୁଦ୍ଧ) | | ପ୍ରଫୁଲ୍ଲ କୁମାର ସିହ୍ନା |
| ରାଜା ଶୁଦ୍ଧୋଦନ | ... | ପୁରୁଷୋତ୍ତମ ପଣ୍ଡା |
| ଦେବଦତ୍ତ | (ସିଦ୍ଧାର୍ଥଙ୍କ | ଯାମିନୀ କୁମାର ଚକ୍ରବର୍ତ୍ତୀ |
| ସୁମିତ୍ର | ଜ୍ଞାତିଭାଇମାନେ) | ପ୍ରଭାସ ମହାପାତ୍ର |
| ଆନନ୍ଦ | | ପ୍ରଫୁଲ୍ଲ କୁମାର ମହାନ୍ତି |
| ଛନ୍ଦକ | (ରଥବାହକ) | ଲମ୍ବୋଦର ମିଶ୍ର |
| ପୁରୋହିତ | | ଗିରୀଶଚନ୍ଦ୍ର ପଟ୍ଟନାୟକ |
| ସନ୍ନ୍ୟାସୀ | | ରାମକୃଷ୍ଣ ମିଶ୍ର |
| ତପୁସ | (କଳିଙ୍ଗ ଦେଶୀୟ | ପୂର୍ଣ୍ଣଚନ୍ଦ୍ର ପଣ୍ଡା |
| ଭଲ୍ଲୁକ | ଶଗଡ଼ିଆ ବେପାରୀ) | ନିତ୍ୟାନନ୍ଦ ସାହାନୀ |
| ଆଚାର୍ଯ୍ୟ ଓ ଶିଷ୍ୟଗଣ | | ଭରତ ପୂଜାରୀ, ଯୁଗଳକିଶୋର ପଟ୍ଟନାୟକ, ପୂର୍ଣ୍ଣଚନ୍ଦ୍ର ପଣ୍ଡା । |
| ବ୍ରାହ୍ମଣଗଣ | | ରାମକୃଷ୍ଣ ମିଶ୍ର, ଶରତ୍ ଚନ୍ଦ୍ର ପଣ୍ଡା, ଶଶିଭୂଷଣ ତ୍ରିପାଠୀ, ପୂର୍ଣ୍ଣଚନ୍ଦ୍ର ପଣ୍ଡା |
| ଶବର ସର୍ଦ୍ଦାର ଓ ଶବରମାନେ | | ଲମ୍ବୋଦର ମିଶ୍ର, ଦୟାନିଧି ପ୍ରସାଦ, ଯୁଗଳ କିଶୋର ପଟ୍ଟନାୟକ |
| ଭିକ୍ଷୁଗଣ | | ଜଗନ୍ନାଥ ପଟ୍ଟନାୟକ, ରାମକୃଷ୍ଣ ମିଶ୍ର, ଅଲେଖ ପଟ୍ଟନାୟକ |
| ଦୁର୍ଭିକ୍ଷ ପୀଡ଼ିତ ପରିବାର | | ଜଗନ୍ନାଥ ପଟ୍ଟନାୟକ (ପିତା), କୃଷ୍ଣ ଚନ୍ଦ୍ର ବହିଦାର (ମାତା), ଅଲେଖ ପଟ୍ଟନାୟକ (ପୁତ୍ର), ମଦନମୋହନ ଦାସ (କନ୍ୟା) |

| | | |
|---|---|---|
| ଉପାଳୀ | (ସିଦ୍ଧାର୍ଥଙ୍କ ଭୃତ୍ୟ) | ଦୟାନିଧି ପ୍ରସାଦ |
| ରାଣୀ ପ୍ରଜାବତୀ | | ସନ୍ତୋଷ କୁମାର ମହାପାତ୍ର |
| ଗୋପା | | ପୀତବାସ ମହାପାତ୍ର |
| କୀଶା | | ସୁବୋଧ ମହାପାତ୍ର |
| ଛନ୍ଦକର ସ୍ତ୍ରୀ, ବୃଦ୍ଧା | | ମନମୋହନ ପଟ୍ଟନାୟକ |
| ବ୍ରାହ୍ମଣୀ, ଶବରୁଣୀ | | କୃଷ୍ଣଚନ୍ଦ୍ର ବହିଦାର |
| ଆମ୍ରପାଳୀ | | ସତ୍ୟନାରାୟଣ ବେହେରା |
| ବ୍ରହ୍ମା | | ବୀଣା ଦାସ |
| ବିଷ୍ଣୁ | | ମଞ୍ଜୁଶ୍ରୀ ମହାନ୍ତି |
| ଶିବ | | ଶାନ୍ତି ଦାସ (ପିତା—ଶ୍ରୀ ଘନଶ୍ୟାମ ଦାସ) |
| ପାର୍ବତୀ | | ଗୀତା ଦାସ |
| ଧରଣୀ | | ଶାନ୍ତି ଦାସ (ପିତା—ଶ୍ରୀ ଶିବପ୍ରସାଦ ଦାସ) |
| ନର୍ତ୍ତକୀଗଣ | | ଇଭା, ରାଜେଶ୍ୱରୀ, ଗୀତା ଦାସ (ପାର୍ବତୀ) ଶାନ୍ତି ଦାସ (ପିତା— ଶିବ ପ୍ରସାଦ) ଇରା, ନୀଳିମା । |

---

# ବୁଦ୍ଧ ଓ ବୌଦ୍ଧଧର୍ମ

## ଧାର୍ମିକତା ଓ ମାନବିକତା :

ନୈଷ୍ଠିକ ମୁସଲମାନ ଓ ଉତ୍ତମ ମନୁଷ୍ୟ, ନୈଷ୍ଠିକ ଖ୍ରୀଷ୍ଟାନ ଓ ଉତ୍ତମ ମନୁଷ୍ୟ ଏବଂ ନୈଷ୍ଠିକ ହିନ୍ଦୁ ଓ ଉତ୍ତମ ମନୁଷ୍ୟ ଭିତରେ କିଛି ପ୍ରଭେଦ ଅଛି କି ?

ପ୍ରଥମ କଥା, ଏ ଧର୍ମମାନଙ୍କରେ ନୈଷ୍ଠିକତାରୂପକ ସୁନାମ ବା ପୁଣ୍ୟ ଅର୍ଜନ କରିବାକୁ ହେଲେ, ଜଣେ ବ୍ୟକ୍ତିବିଶେଷଙ୍କୁ ଉଦ୍ଧାରକର୍ତ୍ତା, ଦେବଦୂତ ବା ଅବତାରରୂପେ ମାନିବାକୁଇ ହେବ । ସେତକ ନ ହେଲେ ହିନ୍ଦୁ ବା ଖ୍ରୀଷ୍ଟାନ ବା ମୁସଲମାନ ଭାବରେ ନୈଷ୍ଠିକତା ଅସମ୍ଭବ । ଦ୍ୱିତୀୟରେ ନୈଷ୍ଠିକ ହିନ୍ଦୁ ବା ମୁସଲମାନ ବା ଖ୍ରୀଷ୍ଟାନ ଭାବରେ କୌଣସି ବ୍ୟକ୍ତିକୁ ଉଦ୍ଧାରକର୍ତ୍ତା ବୋଲି ମାନିଲେ, ଅନ୍ୟ ଧର୍ମର ତଥାକଥିତ ଉଦ୍ଧାରକର୍ତ୍ତାଙ୍କୁ ଘୃଣା ବା ଅନ୍ତତଃ ଅବିଶ୍ୱାସ ବା ତାଚ୍ଛଲ୍ୟ କରିବାକୁ ହେବ । ଅନ୍ୟ ଉଦ୍ଧାରକର୍ତ୍ତାଠାରେ ଅବିଶ୍ୱାସ ଓ ଘୃଣାରୁ ଅନ୍ୟ ଧର୍ମ ଓ ଧର୍ମବିଶ୍ୱାସୀମାନଙ୍କ ପ୍ରତି ମଧ୍ୟ ଘୃଣା ଓ ତାଚ୍ଛଲ୍ୟ ସ୍ୱାଭାବିକ । ଫଳରେ ନିଜ ଧର୍ମଗୋଷ୍ଠୀର ଶାସ୍ତ୍ରୀୟ ନୈଷ୍ଠିକତା ଅର୍ଜନ କରିବାକୁ ଯାଇ ମନୁଷ୍ୟ ଆଉ ମନୁଷ୍ୟ ହୋଇ ରହେନା, ସେ ହୁଏ କେବଳ ହିନ୍ଦୁ, କେବଳ ମୁସଲମାନ ବା କେବଳ ଖ୍ରୀଷ୍ଟାନ । କୌଣସି ଲୋକ, ତା'ର ଭିତରେ ଓ ବାହାରେ ମନୁଷ୍ୟ ଭାବରେ ହେୟ ଥାଉ ପଛେ, ସେ ହୋଇପାରେ ଉତ୍ତମ ମୁସଲମାନ, ଉତ୍ତମ ହିନ୍ଦୁ, ଉତ୍ତମ ଖ୍ରୀଷ୍ଟାନ । ମନୁଷ୍ୟତ୍ୱ ଉପରେ ଦୃଷ୍ଟି ନ ଦେଇ ଏଇ ଏଇ ଧର୍ମ ସବୁ କେବଳ ଗୋଷ୍ଠୀଗତ ନୈଷ୍ଠିକତା ଉପରେ ଜୋର୍ ଦେବା ଫଳରେହିଁ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟାନ, ଏକ ମନୁଷ୍ୟ ହୋଇ ମଧ୍ୟ, ଜାନୁଆର ପରି ଧର୍ମ ନାମରେ ପରସ୍ପରକୁ ହଣାହାଣି କରନ୍ତି; ନାରୀଧର୍ଷଣ, ଲୁଣ୍ଠନ, ଗୃହଦାହ ଓ ଅକୁଣ୍ଠିତ ଚିତ୍ତରେ ଶିଶୁହତ୍ୟା ମଧ୍ୟ କରନ୍ତି । ଯେଉଁ ହିନ୍ଦୁ ମୁସଲମାନ ଶିଶୁ ବା ଯେଉଁ ମୁସଲମାନ ହିନ୍ଦୁ ଶିଶୁକୁ, ହିନ୍ଦୁ ବା ମୁସଲମାନ ବୋଲି ଅକରୁଣ ଭାବରେ ହତ୍ୟାକରିପାରେ, ସେ ଉତ୍ତମ ହିନ୍ଦୁ ବା ମୁସଲମାନ ହୋଇପାରନ୍ତି, କିନ୍ତୁ ସେ କ'ଣ ମନୁଷ୍ୟ ? ତାଙ୍କ ଧର୍ମ କ'ଣ ମନୁଷ୍ୟର ନା ଡକାଇତର, ନା ଜାନୁଆରର ଧର୍ମ ?

## ହିନ୍ଦୁର ତଥାକଥିତ ଉଦାରତା :

ହିନ୍ଦୁ କହେ, ତା'ର ଧର୍ମରେ ରକ୍ତପାତର ଚିହ୍ନ ନାହିଁ । କିନ୍ତୁ କୋଟି କୋଟି ନିରୀହ ପଶୁର ଚିତ୍କାର, ଅଗଣିତ ବିଧବା ଓ ସତୀର ମର୍ମ-ଫଟା ନିଶ୍ୱାସ, ଗଙ୍ଗାସାଗର-ନିକ୍ଷେପିତ ସହସ୍ର ସହସ୍ର ଅସହାୟ ଶିଶୁର ଆର୍ତ୍ତନାଦ ଏବଂ କୋଟି କୋଟି ନିମ୍ନଜାତିର ଯୁଗଯୁଗବ୍ୟାପୀ

ଲାଞ୍ଛନା ଓ ନିର୍ଯ୍ୟାତନାର ବୀଭତ୍ସ ରୋଗାବଳିରେ କେଉଁ ଧର୍ମର ଶରୀର ଏପରି ରୁଗ୍ଣ, ବିକୃତ ଓ କୁତ୍ସିତ ? କେଉଁ ଅତ୍ୟାଚାର, କେଉଁ ଘୃଣା, କେଉଁ ଅମାନୁଷିକ ଲାଞ୍ଛନାରୁ ରକ୍ଷା ପାଇବା ପାଇଁ ଶତାବ୍ଦୀ ଶତାବ୍ଦୀ ଧରି କୋଟି କୋଟି ହିନ୍ଦୁ ନିଜର ପୈତୃକ ଗୋଷ୍ଠୀ ଛାଡ଼ି ଅନ୍ୟ ଗୋଷ୍ଠୀ ଗ୍ରହଣ କଲେ ? ହିନ୍ଦୁସ୍ଥାନ ଯେ ଆଜି ତ୍ରିଖଣ୍ଡିତ, ତାହା ବହୁ ଯୁଗର ସେହି ଘୃଣା, ସେହି ଦ୍ୱେଷର, ସେହି ହିନ୍ଦୁ ନୈଷ୍ଠିକତାର ଫଳ ନୁହେଁ କି ? ସବର୍ଣ୍ଣ ହିନ୍ଦୁ 'ନୈଷ୍ଠିକ' ନ ହୋଇ ମନୁଷ୍ୟ ପ୍ରତି ମନୁଷ୍ୟ ପରି ବ୍ୟବହାର କରିଥିଲେ, ପ୍ରାଣର ଏଇ ଭାରତବର୍ଷ କି ଏକ ଭକ୍ଷ୍ୟ ଜୀବପରି ଏପରି କର୍ତ୍ତିତ ଓ ଖଣ୍ଡିତ ହୋଇଥା'ନ୍ତା ?

**ଖ୍ରୀଷ୍ଟ ଓ ମୁସଲମାନ :**

ଆଉ, ମୁସଲମାନ ଓ ଖ୍ରୀଷ୍ଟାନ— ଏମାନଙ୍କର 'ନୈଷ୍ଠିକତା'ର ଅମାନୁଷିକତା ଫଳରେ ଯେ ଇତିହାସର ସହସ୍ରପୃଷ୍ଠା ରକ୍ତାକ୍ତ । ଖ୍ରୀଷ୍ଟାନ ଔଷଦ ବାଣ୍ଟି, ଇସ୍କୁଲ ବସେଇ ଯାହାହେଉ ତା'ର ନୈଷ୍ଠିକତାରେ ଦେବାକୁ ଚାହେଁ ଏକ ମାନବିକ ବର୍ଣ୍ଣ । କିନ୍ତୁ ଇସ୍‌ଲାମର ହିଂସା ଉପରେ ବିଶ୍ୱାସ ସୁସ୍ପଷ୍ଟ, ଅଲୁକ୍‌କାୟିତ ।

**ସଭ୍ୟତମ ଧର୍ମ, ବୌଦ୍ଧଧର୍ମ :**

ମାନବ ସଭ୍ୟତାର ଦୀର୍ଘ ଇତିହାସରେ କପିଳବାସ୍ତୁର ରାଜପୁତ୍ର ଶାକ୍ୟ ଗୌତମହିଁ ମନୁଷ୍ୟକୁ କେବଳ ମନୁଷ୍ୟ ହେବାକୁ ଓ ଅପର ମନୁଷ୍ୟକୁ ମନୁଷ୍ୟ ଭାବରେ ଦେଖିବାକୁ ଶିଖାଇଯାଇଛନ୍ତି । ପୃଥିବୀର ଏକ-ତୃତୀୟାଂଶ ଲୋକ ବୁଦ୍ଧାନୁଗାମୀ ହେଲେହେଁ, ବୌଦ୍ଧଧର୍ମର ଏଇ ବିପୁଳ ପ୍ରଚାରପାଇଁ ଏକବିନ୍ଦୁ ରକ୍ତ ଧରାପୃଷ୍ଠରେ କୌଣସିଠାରେ ପଡ଼ି ନାହିଁ । ସେଥିପାଇଁ କୌଣସି ଧର୍ମ ବା ଧର୍ମର ନେତାଙ୍କ ବିରୋଧରେ ଶୁଣାଯାଇନାହିଁ ଗୋଟିଏ ହେଲେ ନିନ୍ଦା ବା ବିଦ୍ୱେଷର ବାକ୍ୟ । ବୌଦ୍ଧଧର୍ମ କୌଣସି ଦେବଦୂତ ବା ଅବତାରଦ୍ୱାରା ପ୍ରଚାରିତ ହୋଇନାହିଁ ଏବଂ ଏହା କୌଣସି କଳ୍ପିତ ଈଶ୍ୱରର କୃପା ବା ସ୍ୱର୍ଗ-ସୁଖର ବର୍ଣ୍ଣନା ଦେଇ ଲୋକଙ୍କୁ ଭୁଲେଇବାକୁ ଚେଷ୍ଟାକରି ନାହିଁ । ଏହା ମନୁଷ୍ୟପାଇଁ, ଏଇ ପୃଥିବୀସ୍ଥ ମନୁଷ୍ୟପାଇଁ, ତା'ର ପୃଥିବୀସ୍ଥ ଜୀବନକୁ ସୁଖକର, ସହନୀୟ, ମହନୀୟ ଓ ମଧୁର କରିବାକୁହିଁ ଜଣେ ମହାନ୍-ମନୁଷ୍ୟ-ପ୍ରଦର୍ଶିତ ଏକ ବଞ୍ଚିବାର ଆଦର୍ଶ, ଏହାହିଁ ଏକମାତ୍ର ମାନବିକ ଧର୍ମ । ଏଥିରେ ଗୋଷ୍ଠୀଗତ ନୈଷ୍ଠିକତାର ସ୍ଥାନ ନାହିଁ । ଏ ଧର୍ମର ନୈଷ୍ଠିକତା ଓ ଉତ୍ତମ ମନୁଷ୍ୟତ୍ୱ ଭିତରେ ଅଭିନ୍ନ ଏକତା । ବୁଦ୍ଧତ୍ୱ ଅର୍ଥ ମନୁଷ୍ୟତ୍ୱ, ଅବଶ୍ୟ ଉଚ୍ଚକୋଟୀର ମନୁଷ୍ୟତ୍ୱ । ତାହା ଏକପକ୍ଷରେ ଦେବତ୍ୱ ନୁହେଁ, ଅନ୍ୟପକ୍ଷରେ ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟାନର 'ନୈଷ୍ଠିକତା' ପରି ସେଥିରେ ଅନ୍ୟକୁ ଘୃଣାର ବା ଅପରଠାରୁ ନିଜକୁ ଭିନ୍ନ ରଖିବା ପାଇଁ ଗୁଣାଧିକ୍ୟ ବା ପୁଣ୍ୟାଧିକ୍ୟ ଉଚ୍ଚ ପାଚେରି ସେଥିରେ ନାହିଁ । ବୌଦ୍ଧଧର୍ମ ଉନ୍ମୁକ୍ତ ଓ ଉଦାର । ଏହା ଏକମାତ୍ର ଧର୍ମ ଯେଉଁଥିରେ ମନୁଷ୍ୟଠାରୁ ମନୁଷ୍ୟକୁ ଅଲଗା ରଖିବାପାଇଁ କୌଣସି ହେଲେ ବ୍ୟବସ୍ଥା ନାହିଁ । ଅନ୍ୟ କୌଣସି ଅବତାର ବା ଦେବଦୂତ ମନୁଷ୍ୟକୁ ମନୁଷ୍ୟତ୍ୱର ବିରାଟ ସମ୍ଭାବନାର ବାଣୀ ଶୁଣାଇନାହାନ୍ତି, ଯେପରି ଶୁଣାଇଯାଇଛନ୍ତି ଗୌତମ ବୁଦ୍ଧ । କୃଷ୍ଣ, ଖ୍ରୀଷ୍ଟ,

ମହମ୍ମଦଙ୍କ ପରି ସେ ପ୍ରଚାରକରିନାହାନ୍ତି ଯେ, ସେ ସ୍ୱୟଂ ଭଗବାନ ବା ଭଗବାନଙ୍କ ପୁତ୍ର ବା ଭଗବାନଙ୍କ ପ୍ରିୟ ଓ ଶ୍ରେଷ୍ଠ ପ୍ରଚାରକ ଏବଂ ତାଙ୍କର ଆଶ୍ରୟ ନେଲେଇ ସେ ଇହ ଓ ପରକାଳରେ ସୁଖ ଓ ସୁବିଧା ନିଜ ନିଜ ଭକ୍ତମାନଙ୍କୁ ବାଣ୍ଟିଦେବେ । ଜଗତର ଶ୍ରେଷ୍ଠ ମାନବ ବୁଦ୍ଧ ବାରମ୍ବାର କହିଯାଇଛନ୍ତି ଯେ ସେ ଜଣେ ସାମାନ୍ୟ ମନୁଷ୍ୟ ଏବଂ ପ୍ରତ୍ୟେକ ମନୁଷ୍ୟର 'ବୁଦ୍ଧ' ହେବାର ଶକ୍ତି ଅଛି, ସମ୍ଭାବନା ମଧ୍ୟ ଅଛି । ସେଥିପାଇଁ ଇତର ସାଧାରଣଙ୍କୁ ସ୍ୱୟଂ ବୁଦ୍ଧଙ୍କ ଚରଣ ତଳେ ବା ଅନ୍ୟ କୌଣସି କାଳ୍ପନିକ ଦେବତା ବା ଈଶ୍ୱର ନିକଟରେ ଆଶ୍ରୟ ନେବାକୁ ହେବନାହିଁ । ଆଶ୍ରୟ ନେବାକୁ ହେବ, ନିଜର ଆତ୍ମପ୍ରତ୍ୟୟ, ନିଜର କ୍ରମବିକାଶମାନ ବ୍ୟକ୍ତିତ୍ୱ ଭିତରେ । ବୌଦ୍ଧଧର୍ମ ପାର୍ଥିବ ମନୁଷ୍ୟପାଇଁ ସର୍ବଶ୍ରେଷ୍ଠ ପାର୍ଥିବ ଧର୍ମ କେବଳ ନୁହେଁ; ମନୁଷ୍ୟର ବ୍ୟକ୍ତିତ୍ୱ ଓ ବିପୁଳ ସମ୍ଭାବନା, ମନୁଷ୍ୟ ଭାବରେ ମନୁଷ୍ୟ ପ୍ରତି ବିଶ୍ୱାସ; ଅନ୍ୟ କୌଣସି ଧର୍ମରେ ଏଡ଼େ ସ୍ପଷ୍ଟ ଭାବରେ ଫୁଟିନାହିଁ, ଯେପରି ଫୁଟିଛି ବୁଦ୍ଧବାଣୀରେ ।

### ବୌଦ୍ଧଧର୍ମ ଓ ଭାରତର ପତନ :

ଏ ଦେଶରେ ଅନେକଙ୍କର ଧାରଣା ଯେ, ବୌଦ୍ଧଧର୍ମ ଯୋଗୁହିଁ ଭାରତର କ୍ଷାତ୍ର ଶକ୍ତିର ଅପଚୟ ଘଟିଲା, ଯାହାର ଫଳରେ ଭାରତବର୍ଷ ଏତେ ସହଜରେ ବୈଦେଶିକମାନଙ୍କଦ୍ୱାରା ପରାଜିତ ଓ ଅଧିକୃତ ହୋଇପାରିଲା । ପୁଣି ପୃଥିବୀରେ ଅନେକେ— ବିଶେଷତଃ ଖ୍ରୀଷ୍ଟାନ ମିସନାରୀ ଓ ପଣ୍ଡିତମାନେ— ବୌଦ୍ଧଧର୍ମକୁ ତଳେ ପକାଇବାପାଇଁ ପ୍ରଚାର କରିଥା'ନ୍ତି ଯେ, ଏ ଧର୍ମ ଦୁଃଖ-ଶୋକର, ବିତୃଷ୍ଣାର, ପରକାଳର ଧର୍ମ । ଏ ଧର୍ମ ମନୁଷ୍ୟକୁ ତା'ର ପାର୍ଥିବ ଜୀବନଠାରୁ ବିଚ୍ଛିନ୍ନ କରାଏ । ଏ ଧର୍ମରେ ଇହଜୀବନପାଇଁ, ଏଇ ପାର୍ଥିବ ଜୀବନକୁ ସୁନ୍ଦର ଓ ମହତ୍ କରିବାପାଇଁ କୌଣସି ଆଶାର ବାଣୀ ବା ଉପଦେଶ ନାହିଁ । ଦୁଃଖରୁ ମୁକ୍ତି ପାଇବାପାଇଁ ଏ ଧର୍ମର ବିଚିତ୍ର ଉପଦେଶ ହେଉଛି, 'ଏଇ ଜୀବନଟାକୁହିଁ ବିନାଶ କରିଦେବା' । ତାହାହିଁ ନିର୍ବାଣ ! ଏ ଅପପ୍ରଚାରର ଉତ୍ତର ଦେଉଛୁଁ ।

ଯଦି ବୌଦ୍ଧଧର୍ମର ପ୍ରଭାବ ଜାତିର ସାମରିକ-ଶକ୍ତି ଅପଚୟର କାରଣ ହେବାର ଧରାଯାଏ, ତେବେ ବୌଦ୍ଧ-ଚୀନ, ବୌଦ୍ଧ-ଜାପାନ, ବୌଦ୍ଧ-ବର୍ମାର ଲୋକେ ହଜାର ହଜାର ବର୍ଷର ବୌଦ୍ଧ ପ୍ରଭାବରେ ମଧ୍ୟ, ଏପରି ଦୁର୍ଦ୍ଧର୍ଷ ଓ ସମରପ୍ରିୟ ନ ଥା'ନ୍ତେ । ବର୍ମା, ଶ୍ୟାମ, ସିଲୋନ୍‌ର ଲୋକେ ଯେ ପରିମାଣରେ ବୌଦ୍ଧ, ଭାରତବର୍ଷର ଲୋକେ କେବେହେଲେ ସେପରି ବୌଦ୍ଧ ହୋଇ ନ ଥିଲେ । ସବୁକାଳେ ଏ ଦେଶରେ ଏକ ସମୟରେ ବହୁ ଧର୍ମ ଚଳି ଆସିଛି ଏବଂ ମୂଳ ବ୍ରାହ୍ମଣ୍ୟ ଧର୍ମର ଲୋପ କେବେହେଲେ ହୋଇ ନ ଥିଲା । ଓତପ୍ରୋତ ଭାବରେ, ଏ ଦେଶର ସବୁ ଧର୍ମର ଲୋକଙ୍କ ସଂସ୍କାରର ଗଭୀର ସ୍ତରରେ, ଭଣାଅଧିକେ ବ୍ରାହ୍ମଣ୍ୟ ଧର୍ମର କିଛି କିଛି ଉପାଦାନ ବରାବର ରହିଛି । ପୂର୍ବବଙ୍ଗର ମୁସଲମାନମାନଙ୍କୁ ଦେଖ— ସେ ଯେ ଏପର୍ଯ୍ୟନ୍ତ ଅଧା ହିନ୍ଦୁ । ଅତୀତରେ ଅଶୋକ-ହର୍ଷବର୍ଦ୍ଧନଙ୍କ ରାଜତ୍ୱବେଳେ ମଧ୍ୟ ଏ ଦେଶର ଲୋକେ ସେଇପରି ବୌଦ୍ଧ ବୋଲାଇ ମଧ୍ୟ, ଥିବେ କେବଳ ବ୍ରାହ୍ମଣ-

ଶ୍ରମଣର ମିଶାମିଶି ମାତ୍ର । ବ୍ରାହ୍ମଣ-ବିରୋଧୀ, ବେଦଦ୍ରୋହୀ ଗୌତମ ନ ହେଲେ ହିନ୍ଦୁ ଦେବତା ବିଷ୍ଣୁଙ୍କ ଦଶାବତାର ଭିତରେ ସ୍ଥାନ ପାଇ ନ ଥା'ନ୍ତେ ।

ତେଣୁ ଯଦି ପୂରା ବୌଦ୍ଧହୋଇ ଜାପାନ, ବର୍ମା, ଶ୍ୟାମର ଲୋକେ ନିଜର କ୍ଷାତ୍ର-ବୃତ୍ତି ରଖିପାରିଲେ, ଭାରତର ପରାଜୟପାଇଁ ଅଧାପନ୍ତରିଆ ବୁଦ୍ଧାନୁରକ୍ତି ଦାୟୀ ହେବ କିପରି ? ମୋ ମତରେ ଭାରତର ସକଳ ଅପଯଶ, ଅପମୃତ୍ୟୁ, ପରାଜୟ ଓ ଲାଂଛନା ପାଇଁ ଦାୟୀ ବ୍ରାହ୍ମଣ୍ୟଧର୍ମ । ଏଇ ଧର୍ମ ଏ ଦେଶକୁ ଜାତିପ୍ରଥାର ଗୋଲକଧନ୍ଦାରେ ପୂରାଇ କେବେହେଲେ ଗୋଟିଏ ବିରାଟ ଏକକ ଅଖଣ୍ଡ 'ନେଶନ୍' ଭାବରେ ଗଢ଼ିଉଠିବାକୁ ଦେଇ ନାହିଁ । ଏ ଧର୍ମର ସ୍ୱାର୍ଥପର ପୁରୋହିତଦଳ ଜନସାଧାରଣକୁ ଶାସ୍ତ୍ରର ଦ୍ୱାହି ଦେଇ ଚିରକାଳ ମୂର୍ଖତାର, ଭାଗ୍ୟବାଦୀତାରନୈରାଶ୍ୟମୟ ପଥହୀନ ମରୁଭୂମିରେ ଭ୍ରାମ୍ୟମାଣ କରାଇଆସିଛନ୍ତି । ଦେଶକୁ ଶତ୍ରୁ ଆସିଲାବେଳେ ଲଢ଼ିବ କିଏ ? ପ୍ରତ୍ୟେକ ମୁସଲମାନ ଇସଲାମର ଏକ ଯୋଦ୍ଧା ଓ ସେ ନିଜେଇ ତା'ର ପୁରୋହିତ । ଆଉ ପ୍ରତ୍ୟେକ ହିନ୍ଦୁ ?— ତା'ର ପୁରୋହିତ ଅଲଗା, ତା'ର ଯୋଦ୍ଧା ଅଲଗା, ତା'ର କୃଷକ ଅଲଗା । କେବଳ ଅଲଗା ନୁହେଁ, ହିନ୍ଦୁ କୃଷକ ଓ ହିନ୍ଦୁ ଜନତା ପୁଣି ହିନ୍ଦୁ ପୁରୋହିତ ନିକଟରେ ଅସ୍ପୃଶ୍ୟ— ସେ ବହୁଦୂରରେ ଠିଆ ନ ହେଲେ ବ୍ରାହ୍ମଣ କୋମଳାଙ୍ଗ ପବିତ୍ରତା ନଷ୍ଟହୋଇଯିବ । ମହମ୍ମଦଙ୍କ ଇସଲାମୀ ଭ୍ରାତୃତ୍ୱ ଆଦର୍ଶରେ ଅନୁପ୍ରାଣିତ, ଜାତି ଲେଶ-ଶୂନ୍ୟ-ଦୁର୍ଦ୍ଧର୍ଷ ମୁସଲମାନ ବାହିନୀ ସମ୍ମୁଖରେ ଏ ପୋକରା ହିନ୍ଦୁ ସମାଜ ତିଷ୍ଠନ୍ତା କିପରି ? ହିନ୍ଦୁ, ତୁମେ ବୌଦ୍ଧଧର୍ମ ଉପରେ ଦୋଷ ଲଦିଦେଇ ପରାଜୟର ଲାଞ୍ଛନାରେ ସାନ୍ତ୍ୱନା ଖୋଜିଛ ମାତ୍ର ! ନିଜ ସମାଜକୁ ଅନାଅ, ନିଜ ଭିତରକୁ ଅନାଅ— ଦେଶର ଲାଂଛନା ଜାତିର ବିପର୍ଯ୍ୟୟର କାରଣ ଖୁବ୍ ମୋଟା ଅକ୍ଷରରେ ସେଠି ଲେଖାଥିବାର ଦେଖିପାରିବ !

ଅନ୍ୟ ପକ୍ଷରେ, ଭାରତବର୍ଷ ପୂରା ବୌଦ୍ଧ ହୋଇଥିଲେ ଏ ଦେଶରେ 'ନେଶନ୍'ର ଭାବ ଆଣିବା ପାଇଁ ଇଂରେଜ ଶାସନ ଓ ଇଂରେଜୀ ଭାଷା ଦରକାର ପଡ଼ିନଥା'ନ୍ତା, କି ସମଗ୍ର ଏସିଆର ଆଲୋକ ଏହି ପୁରାଣ ଦେଶ ଖଣ୍ଡିତ, ବିକଳାଙ୍ଗ ହୋଇନଥା'ନ୍ତା । ଏକ ଧର୍ମପ୍ରବର୍ତ୍ତକ, ଏକ ଧର୍ମ, ଏକ ଜାତି, ଏକ ଭାଷା ଦେଖାଦେଇଥା'ନ୍ତା ଭାରତବର୍ଷରେ । ବୌଦ୍ଧଧର୍ମକୁ ବିତାଡ଼ିତ କରି କି ପାଇଛି ଏ ହତଭାଗ୍ୟ ଜାତି !

### ଜୀବନ ପ୍ରତି ବୌଦ୍ଧଧର୍ମର ଆଶାବାଣୀ :

ବର୍ତ୍ତମାନ, ବୌଦ୍ଧଧର୍ମ ବିତୃଷ୍ଣାର ବା କେବଳ ବୈରାଗ୍ୟର ଧର୍ମ କି ନା ଦେଖାଯାଉ । ଜୀବନରେ ଦୁଃଖ ଯେ ଅଛି ବା ଏପରିକି ଜୀବନଟାହିଁ ଯେ ଦୁଃଖମୟ, ଏହା ଅସ୍ୱୀକାର କରି ହବ କି ? ଆମ୍ଭମାନଙ୍କ ଜନ୍ମ ଯାତନାମୟ; ଯାତନାରେ ପୁଣି ଏ ଜୀବନ ଶେଷ । ସେଇ ଯାତନାମିଶ୍ରିତ ଆଦ୍ୟ ଓ ଅନ୍ତ ଭିତରେ ଯେଉଁ ଅଢ଼ାଇଟି ଦିନ ଆମର ଆୟୁ, ସେଥିରେ କେତୋଟି ମୁହୂର୍ତ୍ତ ପ୍ରକୃତରେ ସୁଖମୟ ? କେତେ ଅଶ୍ରୁ, କେତେ ଅପମାନ, କେତେ ଆଶଂକା, କେତେ ଆତଂକ ! ବୁଦ୍ଧଙ୍କ ଭାଷାରେ, ''ଯାହା ପ୍ରିୟ ତାକୁ ନ ପାଇ ଦୁଃଖ, ଯାହା ପ୍ରିୟ

ତା'ଠାରୁ ବିରହରେ ଦୁଃଖ, ପୁଣି ଯାହା ଅପ୍ରିୟ ତାକୁ ପାଇ ଦୁଃଖ ।'' ପୁଣି ଅଛି ଦୁର୍ଭିକ୍ଷ, ମହାମାରୀ, ମଡ଼କ, ରାଷ୍ଟ୍ରବିପ୍ଳବ, ଭୂମିକମ୍ପର ବିଭୀଷିକା । ପୁଣି କୁତ୍ସିତ, କଷ୍ଟକର ସହସ୍ର ରୋଗବ୍ୟାଧି ! ପୁଣି ଅଛି ପାଷଣ୍ଡ, ଅଯୋଗ୍ୟମାନଙ୍କର ପ୍ରଭୁତ୍ୱକୁ ଯୋଗ୍ୟ, ବୁଦ୍ଧିମାନ ଓ ପ୍ରତିଭାବାନ୍‌ର ମୁଣ୍ଡପାତି ମାନିବା । ସବୁକାଳେ ଏହା ଚାଲିଆସିଛି । ପ୍ରତି ପୁରୁଷରେ ଲୋକେ ଦେଖିଆସୁଛନ୍ତି ଚାରିଆଡ଼େ ଅନ୍ୟାୟ ଅନାଚାରରେ ଜୟ-କେତନ ଉଡ୍‌ଡ଼ୀୟମାନ । ସତ୍ୟ ରହିଛି ମୂକ, ନ୍ୟାୟ ରହୁଛି କାରାବଦ୍ଧ । ଯା' ଉପରେ ପୁଣି ବେକାର ହେବାର ଦୁଃଖ, ବହୁକୁଟୁମ୍ବର ଭାର, ଅବିନୀତ ପୁତ୍ର, ବହୁଚାରିଣୀ ପତ୍ନୀ, ଅପଗାମିନୀ କନ୍ୟାକୁ ନେଇ ଦୁଃଖ । ଧନ ଅର୍ଜନ ପାଇଁ ଦୁଃଖ, ତାକୁ ରଖିବାରେ ଓ ତା'ର ବିନାଶରେ ଦୁଃଖ । ତେଣୁ ଜୀବନ ଯହିଁ ଦୁଃଖ ତହିଁ ।

ବୁଦ୍ଧଙ୍କ ଯୁକ୍ତି ଓ ବିଚାର କ୍ଷୁରଧାର ପରି ତୀକ୍ଷ୍ଣ । ସେ ଅନ୍ୟ ଧର୍ମପ୍ରବର୍ତ୍ତକମାନଙ୍କ ପରି ମନୁଷ୍ୟ ଜୀବନର ଏହି ନିରାଟ ବାସ୍ତବତାଟାକୁ ନାନା କାଳ୍ପନିକ ଆଲଂକାରିକ ଭବିଷ୍ୟତର ଚିତ୍ର ପଛରେ ଲୁଚେଇବାକୁ ଚେଷ୍ଟାକରି ନାହାନ୍ତି । ସେ କହିନାହାନ୍ତି— ଏ ଜୀବନ ଈଶ୍ୱରଦତ୍ତ; ସେଇ ଆଲ୍ଲା ପରମଶକ୍ତିମାନ୍, ତାଙ୍କର ଦାନକୁ ଓ ଆଦେଶକୁ ମୁଣ୍ଡପାତି ଗ୍ରହଣକର । ଏ ଜୀବନ କିଏ ଦେଇଛି, ସେ ବା କିଏ, ବୁଦ୍ଧ ଏସବୁ ଅବାନ୍ତର ବା ଅଜ୍ଞେୟ ପ୍ରଶ୍ନ ଓ ସେ ସବୁର କାଳ୍ପନିକ ଉତ୍ତରରେ ଜୀବନର ପ୍ରଧାନ ସମସ୍ୟାମାନଙ୍କୁ ଗୋଳମାଳିଆ କରିନାହାନ୍ତି । ସେ ଦେଖିଛନ୍ତି ଯେ ଜୀବନଟା ପ୍ରକୃତରେ ଦୁଃଖପୂର୍ଣ୍ଣ ଓ ଅପୂର୍ଣ୍ଣ; ସେ ସାହସର ସହିତ ତାହାହିଁ ପ୍ରଚାରକରିଛନ୍ତି । ଅନ୍ୟ ଧର୍ମମାନଙ୍କର କଳ୍ପିତ ଈଶ୍ୱର ସଂପୂର୍ଣ୍ଣ ସୁଖମୟ, ଆନନ୍ଦମୟ ହୋଇପାାରନ୍ତି— କିନ୍ତୁ ଦୁଃଖମୟ ଜୀବନର ସମସ୍ୟା ତାହା ବାରମ୍ବାର ଉଚ୍ଚାରଣ କଲେଇ କି ସମାଧାନ ହୋଇଯିବ ? ସେକଥା ଜାଣି ବା ନ ଜାଣି କ୍ଷତି କ'ଣ ?

ଜୀବନର ସମସ୍ୟାକୁ ବୁଦ୍ଧ କେବଳ ବୈଜ୍ଞାନିକ ଦୃଷ୍ଟିରେ ରଖିନାହାନ୍ତି; ତା'ର ସମାଧାନ ମଧ୍ୟ ବୈଜ୍ଞାନିକ ପନ୍ଥାରେ କରିବାକୁ ଚେଷ୍ଟାକରିଛନ୍ତି । ମନେରଖିବାକୁ ହେବ ଯେ, ଅନ୍ୟ ଧର୍ମ ପ୍ରବର୍ତ୍ତକମାନଙ୍କ ପରି ବୁଦ୍ଧ କୌଣସି ସତ୍ୟ ବା ସମାଚାର ସାଥିରେ ଉପରୁ ଆଣି ଏଠି ଛାଡ଼ିଯାଇନାହାନ୍ତି । ସେ ଯାହା ଭାବିଛନ୍ତି ବା ପ୍ରଚାର କରିଛନ୍ତି ତାହା ତାଙ୍କର କଠୋର, ତୀକ୍ଷ୍ଣ ବିଚାରବୁଦ୍ଧିର ପ୍ରୟୋଗର ଫଳମାତ୍ର । ତେଣୁ ଜୀବନର ସମସ୍ୟା ଓ ତା'ର ସମାଧାନ ବୁଦ୍ଧ ଯେପରି କରିଯାଇଛନ୍ତି ତାହା ଧରିନେବାକୁ ହେବ ଜଣେ ଅସାଧାରଣ ବୁଦ୍ଧିମାନ୍ ଓ ଜନକଲ୍ୟାଣକାମୀ ମନୁଷ୍ୟର 'ଚେଷ୍ଟା' ମାତ୍ର । ବୁଦ୍ଧ ନିଜ ମତର ପ୍ରଚାରପାଇଁ କେବେ କୌଣସି ଦେବଦେବୀର ଦ୍ୱାହି ଦେଇନାହାନ୍ତି । ସେ ସର୍ବତ୍ର ବିରୋଧୀମାନଙ୍କୁ ନିମନ୍ତ୍ରଣ କରିଆଣି ତାଙ୍କର ଯୁକ୍ତି ଶୁଣୁଥିଲେ ଓ ନିଜେ ସେମାନଙ୍କ ସହିତ ଯୁକ୍ତିକରୁଥିଲେ । ତାଙ୍କର ମତବାଦ ସେ ପ୍ରତିଷ୍ଠାକରିଯାଇଛନ୍ତି ଯୁକ୍ତିର କଠିନ ଇଷ୍ଟକ ଓ ବୈଜ୍ଞାନିକ ଦୃଷ୍ଟୀଭଙ୍ଗିର ସୁରକି ଦେଇ ତିଆରି ସୁଦୃଢ଼ ପତ୍ତନ ଉପରେ ।

**ବୌଦ୍ଧଧର୍ମ ଓ ଆଧୁନିକ ମନୋବିଜ୍ଞାନ :**

ବୁଦ୍ଧ ପାର୍ଥିବ ଜୀବନରେ ଦୁଃଖର ନିରାକରଣପାଇଁ ଦୁଇଟି ପନ୍ଥା ନିର୍ଦ୍ଦେଶ କରିଯାଇଛନ୍ତି– ଗୋଟିଏ ନିରୋଧାତ୍ମକ, ଅନ୍ୟଟି ପ୍ରସାରାତ୍ମକ । ମନୁଷ୍ୟର ନିମ୍ନବୃତ୍ତିକୁ ନିରୋଧ ନ କଲେ ଉଚ୍ଚ ବୃତ୍ତିର ପ୍ରସାର ଅସମ୍ଭବ । କଳୁଷିତ ବ୍ୟକ୍ତିତ୍ୱର ଭସ୍ମଉପରେହିଁ କଲ୍ୟାଣମୟ ଅର୍ହତତ୍ତ୍ୱ ଫୁଟିଉଠିବ । ଅତ୍ୟନ୍ତ ବିସ୍ମୟର କଥା ଏହି ଯେ ବୁଦ୍ଧଙ୍କର ଏଇ ନିର୍ଦ୍ଦେଶ ଆଧୁନିକ ମନୋବିଜ୍ଞାନର ଆବିଷ୍କାର ଓ ତତ୍ତ୍ୱ ସଙ୍ଗେ ପରିପୂର୍ଣ୍ଣ ଭାବରେ ଖାପଖାଉଛି ।

ବୁଦ୍ଧ ଦେଖିଲେ ଯେ, ଜୀବନରେ ଦୁଃଖର ମୂଳ ବୀଜ ହେଉଛି ତୃଷ୍ଣା । ମନୁଷ୍ୟର ଏଇ ତୃଷ୍ଣା ତା'ର ଅହଂପ୍ରତିଷ୍ଠିତ ବ୍ୟକ୍ତିତ୍ୱକୁ କେନ୍ଦ୍ରକରି ତିନି ପ୍ରଧାନ ଲକ୍ଷ୍ୟରେ ଧାଏଁ । ଗୋଟିଏ ହେଉଛି ଶାରୀରିକ ସୁଖ ସମ୍ଭୋଗ, ଦ୍ୱିତୀୟ ସାଂସାରିକ ପ୍ରତିପତ୍ତି, ତୃତୀୟ ହେଉଛି ଅମରତ୍ୱ ଲାଳସା । ଏଇ ତିନି ଲକ୍ଷ୍ୟ ଦିଗରେ ଆମ୍ଭେମାନେ ପ୍ରତ୍ୟେକେ ଧାଇଁଛୁ ଏବଂ ସେଥିପାଇଁ ଅହରହ ସହସ୍ର ବାସନାରେ ନିଜକୁ ଜଡ଼ିତ ଓ କ୍ଷୟିତ କରୁଛୁଁ । ବୁଦ୍ଧ-ମତରେ ମନୁଷ୍ୟ ଯେପର୍ଯ୍ୟନ୍ତ ସ୍ୱାର୍ଥକୈନ୍ଦ୍ରିକ ଏଇ ତୃଷ୍ଣାଜାଲରୁ ନିଜକୁ ମୁକ୍ତ ନ କରିଛି, ଅର୍ଥାତ୍ ଯେତେଦିନ ସେ କେବଳ ନିଜପାଇଁ, ନିଜ ସୁଖ, ନିଜ ସ୍ୱାଚ୍ଛନ୍ଦ୍ୟପାଇଁହିଁ ବଞ୍ଚିଛି, ସେପର୍ଯ୍ୟନ୍ତ ତା' ଜୀବନରେ ଶାନ୍ତି ନାହିଁ । ସ୍ୱାର୍ଥକୈନ୍ଦ୍ରିକ ଏଇ ଲାଳସା-ସକଳ ଯାହା ମନୁଷ୍ୟଜୀବନକୁ ବିକଳ, ରୁଗ୍ଣ, ଅଶାନ୍ତିମୟ ଓ ବୀଭତ୍ସ କରେ, ସେ ସବୁର ନିରୋଧ କରି ମନୁଷ୍ୟ ଯେବେ ଜୀବନକୁ ସଂପୂର୍ଣ୍ଣ ଭାବରେ ପରାର୍ଥପର କରିପାରେ, ତେବେ ଯାଇ ମନୁଷ୍ୟ ଚିତ୍ତ ଲାଭ କରିବ ନିର୍ବାଣର ପରମ ଶାନ୍ତି ଓ ଗଭୀର ଆନନ୍ଦ । ବୁଦ୍ଧଙ୍କ ନିର୍ବାଣ ଆଦୌ ଜୀବନର ବିନାଶ ନୁହେଁ, ତାହା ଅନେକଙ୍କର ଅପପ୍ରଚାର ମାତ୍ର । ଏହା ପ୍ରକୃତରେ ନିମ୍ନତର ଜୀବନର ବିନାଶ, ଯେଉଁଠାରୁ ଉଦ୍ଭୂତ ହେବ ମହତ୍ତର ଜୀବନ । ପୁଣି ନିର୍ବାଣ ମୃତ୍ୟୁର ଆରପଟେ ନାହିଁ, ତାହା ଏଇ ଜଗତରେ, ଏଇ ଜୀବନରେହିଁ ଲଭ୍ୟ, ତାହାହିଁ ଅର୍ହତତ୍ତ୍ୱ ।

ବୁଦ୍ଧଙ୍କ ତୃଷ୍ଣା, ଏବର ମନୋବିଜ୍ଞାନର 'ଇନ୍‌ଷ୍ଟିଂକ୍ଟ' ବା ପ୍ରବୃତ୍ତି । ଏବେ ମନୋବିଜ୍ଞାନ କହେ ଯେ ଆମ ଜୀବନର ନବଦଶମାଂଶ କେବଳ ଏଇ ଇନ୍‌ଷ୍ଟିଂକ୍ଟ । ଏଇ ଇନ୍‌ଷ୍ଟିଂକ୍ଟ ସବୁହିଁ ମନୁଷ୍ୟକୁ ପଶୁ ସ୍ତରରେ ରଖନ୍ତି । ଆମ ବ୍ୟକ୍ତିତ୍ୱର ଏକ-ଦଶମାଂଶ ମାତ୍ର ଯେଉଁ 'ରିଜନ' ବା 'ବିଚାରବୁଦ୍ଧି', ତା'ର ପ୍ରୟୋଗକରି ଏଇ ଇନ୍‌ଷ୍ଟିଂକ୍ଟ ସବୁକୁ 'ସବ୍‌ଲିମେଟ୍' ବା ଉର୍ଦ୍ଧ୍ୱଗ କରିପାରିଲେ ପଶୁରୁ ମନୁଷ୍ୟତ୍ୱ କେବଳ ନୁହେଁ, ମନୁଷ୍ୟତ୍ୱ ଭିତରେହିଁ ଦେବତ୍ୱର ବିକାଶ ଘଟିବ । ବୁଦ୍ଧ, ଖ୍ରୀଷ୍ଟ, ରାମକୃଷ୍ଣ, ଅରବିନ୍ଦ ଓ ବାପୁଜୀଙ୍କ ଜୀବନ ଏଇ ସବ୍‌ଲିମେସନ୍‌ର ଜ୍ୱଳନ୍ତ ପ୍ରମାଣ ।

ମନୁଷ୍ୟର ସ୍ୱାର୍ଥ-କୈନ୍ଦ୍ରିକ, ତୃଷ୍ଣା-ବିଭ୍ରାନ୍ତ, ନିମ୍ନ-ବ୍ୟକ୍ତିତ୍ୱକୁ ସବ୍‌ଲିମେଟ କିର କିପରି ନିର୍ବାଣର ଶାନ୍ତି ଓ ଆନନ୍ଦ ଆଡ଼କୁ ଧୀରେଧୀରେ ନିଆଯାଇପାରିବ, ସେଥିପାଇଁ ବୁଦ୍ଧ ନିର୍ଦ୍ଦେଶ କରିଯାଇଛନ୍ତି ଆର୍ଯ୍ୟ-ଅଷ୍ଟାଙ୍ଗ-ମାର୍ଗ । ତାହାହେଉଛି ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଂକଳ୍ପ, ସମ୍ୟକ ବାକ୍, ସମ୍ୟକ୍ କର୍ମ, ସମ୍ୟକ୍ ଆଜୀବନ (ଜୀବିକା), ସମ୍ୟକ୍ ବ୍ୟାୟାମ

(ପ୍ରଚେଷ୍ଟା), ସମ୍ୟକ୍ ସ୍ମୃତି (ଚିନ୍ତା) ଏବଂ ସମ୍ୟକ୍ ସମାଧି । ଏ ସମସ୍ତର ମିଳିତ ଫଳ ଯେ ହେବ ଅସାଧାରଣ, ସୁନ୍ଦର ଓ ମହତ୍ ବ୍ୟକ୍ତିତ୍ୱ; ଲାଭ ହେବ ଯେ ପରମ ମାନସିକ ଶାନ୍ତି, ଏଥିରେ ସନ୍ଦେହ ଥାଇପାରେ କି ? ପୁଣି, ହିନ୍ଦୁ ସନ୍ନ୍ୟାସ ପରି ବୌଦ୍ଧ ଅର୍ହତତ୍ୱ ବ୍ୟକ୍ତିଗତ ଲକ୍ଷ୍ୟ ନୁହେଁ । ବୌଦ୍ଧ ଅର୍ହତତ୍ୱ କେବଳ ଜନକଲ୍ୟାଣ ପାଇଁହିଁ ନିଜକୁ ଉପଯୋଗୀ କରାଇବା, ନିଜର ମୁକ୍ତିପାଇଁ ନୁହେଁ । ସ୍ୱୟଂ ତୃଷ୍ଣାଉଦ୍‌ଭ୍ରାନ୍ତ ଯେଉଁ ଲୋକ, ସେ ଅନ୍ୟର କଲ୍ୟାଣ କରିପାରେ କି ? ସେଥିପାଇଁ ଲୋଡ଼ା ତୃଷ୍ଣା ନିରୁଦ୍ଧ, ଶାନ୍ତ, ଅର୍ହତତ୍ୱ ବା ସବ୍‌ଲିମେଟେଡ୍ ଜୀବନ ।

ବୌଦ୍ଧଶାସ୍ତ୍ରରେ 'ପ୍ରଜ୍ଞା', 'ମୁଦିତା' ଓ 'କରୁଣା' ଏଇ ତିନୋଟି ବହୁ-ବ୍ୟବହୃତ ଶବ୍ଦ ଆମ୍ଭମାନଙ୍କୁ ବୁଦ୍ଧ-ବାଣୀର ସମ୍ୟକ୍ ପରିଚୟ ଦିଏ । 'ପ୍ରଜ୍ଞା', ବିଚାର-ବୁଦ୍ଧିର ପ୍ରୟୋଗ ନିର୍ଦ୍ଦେଶ କରେ । 'ମୁଦିତା' ହେଉଛି ସେଇ ଭାବ ଯାହା ପରର ସୁଖରେ ଆହ୍ଲାଦିତ ହେବା । 'କରୁଣା' ହେଉଛି ସେଇ ଭାବ ଯାହା ପରର ଦୁଃଖକୁ ନିଜର ଦୁଃଖ ବୋଲି ମନେକରେ । ବୌଦ୍ଧ ଜୀବନାଦର୍ଶ ଏଇ ତିନୋଟି ସ୍ୱର୍ଣ୍ଣପଟ ଉପରେ ପ୍ରତିଷ୍ଠିତ । ଯେଉଁ ଧର୍ମ ମନୁଷ୍ୟକୁ ପ୍ରବୃତ୍ତିରେ ବୁଡ଼ି ପଶୁ ପାଷଣ୍ଡ ନ ହୋଇ, ବିଚାରବୁଦ୍ଧି ପ୍ରୟୋଗ କରିବାକୁ ଶିଖାଏ, ଯେଉଁ ଧର୍ମ ପରର ଦୁଃଖକୁ ଓ ପରର ସୁଖକୁ ନିଜର ବୋଲି ଗ୍ରହଣ କରିବାକୁ ପ୍ରବର୍ତ୍ତାଏ, ସେ ଧର୍ମ ବିତୃଷ୍ଣାର, ବୈରାଗ୍ୟର, ଦୁଃଖର ଧର୍ମ ବୋଲି କହିବା ଯୁକ୍ତିଯୁକ୍ତ କି ? ସେ ଧର୍ମର ପାର୍ଥିବ ଜୀବନ ପ୍ରତି କୌଣସି ବାଣୀ ନାହିଁ କି ? ବସ୍ତୁତଃ, ମନୁଷ୍ୟ ପ୍ରତି ମନୁଷ୍ୟର ଦରଦ ଶିଖାଇଛି ପ୍ରଥମରେ ବୌଦ୍ଧଧର୍ମ ।

ଏବର ଖ୍ରୀଷ୍ଟାନ ମିସନାରୀମାନଙ୍କର ମାନବିକ ସେବା ବୌଦ୍ଧ ଅନୁକରଣ ମାତ୍ର । ଅଧିକନ୍ତୁ ବୌଦ୍ଧ 'ମୁଦିତା' ଓ 'କରୁଣା' କେବଳ ନିଜର ଗୋଷ୍ଠୀ ବା ଗୋଷ୍ଠୀ ବାହାରର ମନୁଷ୍ୟଠାରେ ନିବଦ୍ଧ ନୁହେଁ, ତାହା ପରିବ୍ୟାପ୍ତ ଜଗତର ସକଳ ଜୀବନବନ୍ତ ପ୍ରାଣୀପାଇଁ । 'ସୁତନିପାତ'ର ବାଣୀ ଶୁଣନ୍ତୁ– ''ବଳବାନ ବା ଦୁର୍ବଳ, ବୃହତ୍ ବା କ୍ଷୁଦ୍ର, ଦୃଷ୍ଟ ବା ଅଦୃଷ୍ଟ, ନିକଟସ୍ଥ ବା ଦୂରସ୍ଥ ଜଗତର ସକଳ ଜୀବନ୍ତ ପ୍ରାଣୀ ସମଭାବରେ ସୁଖୀ ହୁଅନ୍ତୁ । ଜନନୀ ତା'ର ଏକମାତ୍ର ପୁତ୍ରକୁ ରକ୍ଷାକଲାପରି, ପ୍ରତ୍ୟେକ ମନୁଷ୍ୟ ସମସ୍ତ ଜୀବଗ୍ରାମ ପ୍ରତି ସୀମାହୀନ କରୁଣାର ଅଭ୍ୟାସ କରନ୍ତୁ ।'' ଅନ୍ୟତ୍ର ଜଣେ ଅର୍ହତ କହୁଛନ୍ତି, ''ମୁଁ ଆଶ୍ରୟହୀନର ଆଶ୍ରୟଦାତା ଏବଂ ଉଦ୍‌ଭ୍ରାନ୍ତ ପଥିକର ପଥପ୍ରଦର୍ଶକ ହେବି । ଯେଉଁମାନେ ସାଗର (ସଂସାର)ର ସେପାରିକୁ ଯିବାକୁ ଚାହାନ୍ତି ତାଙ୍କଲାଗି ହେବି ଏକ ପୋତ ବା ସେତୁବନ୍ଧ । ଯେଉଁମାନେ ଆଲୋକ ଦରକାର କରନ୍ତି ତାଙ୍କପାଇଁ ପ୍ରଦୀପ ହେବି । ଯେଉଁମାନେ ଶୟନ ଚାହାନ୍ତି ତାଙ୍କପାଇଁ ହେବି ଶଯ୍ୟା ଏବଂ ଯେଉଁମାନେ ଭୃତ୍ୟର ସେବା ଚାହାନ୍ତି ତାଙ୍କର ହେବି ମଧ କ୍ରୀତଦାସ ।

ଆମ୍ଭେମାନେ ବରାବର ଦେଖୁଛୁ ଯେ ଭିନ୍ନ ଭିନ୍ନ ଦେବଦୂତ ଓ ଧର୍ମପ୍ରବର୍ତ୍ତକଗଣ କେବଳ ମନୁଷ୍ୟ ନାମକ ପ୍ରାଣୀକୁ ଉଦ୍ଧାର କରିବାପାଇଁ ବଡ଼ ବ୍ୟସ୍ତ । ଚିରଉଦ୍‌ପଥଗାମୀ, ସ୍ୱାର୍ଥସର୍ବସ୍ୱ,

ହିଂସ୍ରକ ମନୁଷ୍ୟ ନାମକ ଏଇ ପ୍ରାଣୀଟାପାଇଁ ଭଗବାନ ଏତେ ବିବ୍ରତ କାହିଁକି ? ଆଉ ଏଯେ କୋଟି କୋଟି ମୂକ ଜୀବ ଯେଉଁମାନେ ମନୁଷ୍ୟର ଅତ୍ୟାଚାରରେ ଚିର ଜର୍ଜରିତ, ନିର୍ଯାତିତ ଓ ପ୍ରତ୍ୟହ ବିନାଶପ୍ରାପ୍ତ ହୋଇ ମଧ୍ୟ, ବିଧାତାର ସୃଜନ କ୍ରିୟାରେ ଆପଣାକୁ ନୀରବରେ ନିୟୋଜିତ କରିଚାଲିଛନ୍ତି, ବିଧାତାପୁରୁଷର ସେମାନଙ୍କପାଇଁ ଭାବିବାର କିଛି ନାହିଁ ? ଅଛି କେବଳ ଅତ୍ୟାଚାରୀ ମନୁଷ୍ୟପାଇଁ ? ଜୀବଜନ୍ତୁ କ'ଣ ଈଶ୍ୱର ସୃଷ୍ଟିର ବାହାରେ ? ସୃଷ୍ଟିକୁ ସମଗ୍ର ଭାବରେ ଦେଖିଲେ ମନୁଷ୍ୟକୈନ୍ଦ୍ରିକ ଏଇ ଏଇ ପ୍ରତ୍ୟେକ ଧର୍ମ ଧପ୍‌ପାବାଜି ଛଡ଼ା ଆଉ କିଛି ବୋଧହୁଏନା । ବୌଦ୍ଧଧର୍ମହିଁ କେବଳ ସାର୍ବଜନୀନ ନୁହେଁ, ସାର୍ବସୃଷ୍ଟିକ, ସାର୍ବଜାନ୍ତବ । ତା'ର ବିଚାର ସଂକୀର୍ଣ୍ଣ ନୁହେଁ, ତା'ର କରୁଣା ସୀମାଶୀଳ ନୁହେଁ । ଏହା କେବଳ ମନୁଷ୍ୟର ଧର୍ମ ନୁହେଁ, ଆମର ଏହି ଜନନୀ ପୃଥିବୀକୁ ସମଗ୍ର ଭାବରେ କରୁଣାମୟ, ସଭ୍ୟ, ଭଦ୍ର କରିବାପାଇଁ ଏକମାତ୍ର ଧର୍ମ ।

**ସଭ୍ୟତା ଓ ଆନନ୍ଦର ଜନକ ବୌଦ୍ଧଧର୍ମ :**

ଇତିହାସର ଜ୍ୱଳନ୍ତ ପ୍ରମାଣ ଏଇ ଯେ ବୌଦ୍ଧଧର୍ମ ଯହିଁ ଯହିଁ ଯାଇଛି ସେଠି ହୋଇଛି ସଭ୍ୟତାର, ଆଲୋକର, ଜ୍ଞାନର, ସାହିତ୍ୟ, କଳା ଶିଳ୍ପ ଓ ଆନନ୍ଦର ବ୍ୟାପ୍ତି । ବ୍ରାହ୍ମଣ୍ୟ ଧର୍ମ-ପ୍ରପୀଡ଼ିତ ହିନ୍ଦୁସ୍ଥାନ ଓ ବୌଦ୍ଧବିକଶିତ ବର୍ମା, ସିଂହଳ, ଶ୍ୟାମ, ଜାପାନକୁ ତୁଳନା କରି ଦେଖ । ଏ ଦେଶରେ ଜୀବନ ନିରାନନ୍ଦ, ନିଃସହାୟ, ନିର୍ମମ, ନିପୀଡ଼ିତ, ନିର୍ଯାତିତ । ଏ ଦେଶରେ ନାରୀ ପକ୍ଷାଘାତଗ୍ରସ୍ତ ଜୀବ, ଗୃହପାଳିତ ପଶୁପକ୍ଷୀ ରୁଗ୍‌ଣ, ଅଭୁକ୍ତ, ଅଭିଶପ୍ତ । କିନ୍ତୁ ବେଶି ଦୂରକୁ ନ ଯାଇ ଏଇ ଆମର ପ୍ରତିବେଶୀ ବର୍ମାକୁ ଯାଅ; ଦେଖିବ ଜୀବନ ଆନନ୍ଦମୟ, ସ୍ୱଚ୍ଛନ୍ଦ, ନିଷେଧହୀନ, ଅବଂଧନ; ନାରୀ ନିଜର ସାବଲୀଳ ସ୍ୱାଭାବିକ ପ୍ରକାଶରେ ସମଗ୍ର ଦେଶକୁ କରୁଛି ସୁନ୍ଦର, କର୍ମଠ, ବର୍ଣ୍ଣମୟ, ସଙ୍ଗୀତମୟ; ଜୀବନ ହୋଇଛି ଆଶାମୟ, ଗୃହ ହୋଇଛି ରୂପାଧାର; ଗୃହପାଳିତ ଜୀବଜନ୍ତୁ ଏ ଦେଶର ମନୁଷ୍ୟ ଅପେକ୍ଷା ଅଧିକ ଯତ୍ନ ଓ ସ୍ନେହ ଭୋଗକରନ୍ତି । ଅନେକ ପାଶ୍ଚାତ୍ୟ ପର୍ଯ୍ୟଟକ ଓ ଶାସକ ଭାରତବର୍ଷ ଓ ବର୍ମା ଭିତରେ ଏଇ ଆକାଶ ପାତାଳ ପ୍ରଭେଦ ପ୍ରତି କଟାକ୍ଷ କରିଯାଇଛନ୍ତି ।

ଜନୈକ ଜାପାନୀ ପଣ୍ଡିତ ଜାପାନର ଅଭିବୃଦ୍ଧିପାଇଁ ବୌଦ୍ଧଧର୍ମ କିପରି ଦାୟୀ ଏଇପରି ଭାବରେ ବର୍ଣ୍ଣନା କରିଛନ୍ତି– ''ସେମାନେ (ଜାପାନୀମାନେ) ଆଦିମକାଳୀନ କୁଟୀରରେ ବାସକରୁଥିଲେ ଏବଂ ଭୂମିକର୍ଷଣ ଜାଣିଥିଲେ ମଧ, ମାଛ ମାରି ଓ ଶିକାର କରିହିଁ ବଞ୍ଚୁଥିଲେ । ପ୍ରକୃତିର ପୂଜା ଓ ପ୍ରେତାତ୍ମା, ବିଶେଷତଃ ନିଜ ନିଜ ସ୍ୱଜନମାନଙ୍କର, ଆତ୍ମାରେ ବିଶ୍ୱାସ– ଏଇ ଥିଲା ତାଙ୍କର ଧର୍ମ । ତାଙ୍କର ଧର୍ମ କେବଳ ଆଶ୍ରୟ କରିଥିଲା ବର୍ତ୍ତମାନକୁ ଏବଂ ସମୁଦ୍ର ସେପଟ ଜଗତ ଥିଲା ଅନ୍ୟ ଏକ ସଂସାର । କିନ୍ତୁ ପ୍ରାୟ ଶହେ ବର୍ଷ ପରେ, ସପ୍ତମ ଶତାବ୍ଦୀର ଶେଷଆଡ଼କୁ ତାଙ୍କୁ ଦେଖ । ଅନ୍ତତଃ କେନ୍ଦ୍ରସ୍ଥଳୀମାନଙ୍କରେ ଦେଶଟା ଏକାବେଳକେ ବଦଳିଯାଇଛି । ଦେବାଳୟମାନ ସ୍ୱର୍ଗଲକ୍ଷ୍ୟରେ ଉଠିଛନ୍ତି ଆକାଶ ଭେଦକରି, ସେମାନଙ୍କର ଉନ୍ନତ ମିନାର ଓ ସବୁଜ ଟାଇଲ ସୂର୍ଯ୍ୟାଲୋକରେ ଉଦ୍ଭାସିତ । ବେଦିକା ଉପରେ ବୃହତ୍

ଆକାର ଓ ଦର୍ଶନୀୟ ମାଧୁର୍ଯ୍ୟମଣ୍ଡିତ ଧାତବ ମୂର୍ତ୍ତି ସବୁ ପ୍ରତିଷ୍ଠିତ; ଗମ୍ଭୀର ସଙ୍ଗୀତ ସହ ଜଟିଳ ଧର୍ମାଚାର ସବୁ ଅନୁଷ୍ଠିତ ହେଉଛି । ଲିଖନକଳା ବହୁଳ ଭାବରେ ପ୍ରଚାରିତ ଓ ଚିକିତ୍ସା ବିଦ୍ୟା ଅନୁଶୀଳିତ ହେଉଛି । ଚିକିତ୍ସାଳୟମାନ ପ୍ରତିଷ୍ଠିତ ହେଉଛି । ଦେଶରେ ଭିନ୍ନ ଭିନ୍ନ ଗୋଷ୍ଠୀ ଏକ ରାଜବଂଶ ତଳେ ଏକୀଭୂତ ହୋଇ ଯାଉଅଛନ୍ତି । ଚୀନ୍ ଦେଶ ସାଙ୍ଗେ ବରାବର ସମ୍ବନ୍ଧ ସ୍ଥାପିତ ହୋଇସାରିଛି ଏବଂ ଭାରତବର୍ଷ ଓ ଦକ୍ଷିଣ-ପୂର୍ବ ଏସିଆରୁ ପ୍ରଚାରକ ଓ ପଣ୍ଡିତମାନଙ୍କୁ ବରାବର ଅଣାଯାଉଛି । ଏକ କଥାରେ ଏକ ନୂତନ ସଭ୍ୟତା ଦ୍ରୁତ ଭାବରେ ଗଢ଼ିଉଠିଛି । ଏକ ଜାତିର ଜାତୀୟ ଜୀବନର ବସନ୍ତକାଳ ଉପସ୍ଥିତ । ଏହାର କାରଣ କ'ଣ ? ଯା ପଛରେ କେଉଁ ଯାଦୁବିଦ୍ୟା କାମ କରୁଛି ? ପ୍ରଧାନତମ କାରଣ ହେଉଛି ବୌଦ୍ଧଧର୍ମ ଯାହା ଚୀନ୍ ଓ କୋରିଆ ଦେଇ ଏ ଦେଶକୁ ଆସିଲା ଏବଂ ସାଥିରେ ଆଣିଲା ତା'ର ତତ୍ତ୍ୱ ଓ ସାହିତ୍ୟ, କଳା, ଶିଳ୍ପ ଏବଂ ଆଚାର ।''*

ଭାରତବର୍ଷର ଦୀର୍ଘ ଇତିହାସରେ ସବୁଠାରୁ ଗୌରବମୟ ଯୁଗ ମଧ୍ୟ ହେଉଛି ବୌଦ୍ଧଯୁଗ । ସୀମାବଦ୍ଧ, ସଂକୀର୍ଣ୍ଣ ଆର୍ଯ୍ୟାବର୍ତ୍ତକୁ ବିଶ୍ୱପ୍ରସାରୀ କରିଛି ଗୌତମ ବୁଦ୍ଧଙ୍କର ଉଦାର ସନ୍ଦେଶ । ବୁଦ୍ଧ ଚରଣଧୂଳି ଯୋଗୁଁ ହିନ୍ଦୁସ୍ଥାନ ହୋଇଛି ବହୁ ଦେଶ, ବହୁ ଜାତିର ପୁଣ୍ୟ ତୀର୍ଥସ୍ଥଳ । ଜାତି ନ ହୋଇ ମଧ୍ୟ ଏ ଦେଶକୁ ଆନ୍ତର୍ଜାତିକ ସମ୍ମାନ ଦେଇଛି ବୌଦ୍ଧଧର୍ମ; ବୁଦ୍ଧଙ୍କ ବ୍ୟକ୍ତିତ୍ୱ ସ୍ପର୍ଶରେ ଭାରତବର୍ଷର କୁଣ୍ଠିତ ସଂକୀର୍ଣ୍ଣ ଜୀବନ ବିକଶିତ ହୋଇଉଠିଥିଲା ଶିଳ୍ପ, ଚିତ୍ର, ସଙ୍ଗୀତ, ବାଣିଜ୍ୟ, ଶିକ୍ଷା ଓ ନାରୀ ସ୍ୱାତନ୍ତ୍ର୍ୟ ଦେଇ । ସେ ବିକାଶର ଜୁଆର ଏ ଦେଶର ସୀମାଡେଇଁ ମାଡ଼ିଚାଲିଲା ସୁଦୂର ଚୀନ୍, ଜାପାନ, ସାଇବିରିଆ, ପାଲେଷ୍ଟିନ୍, ତୁର୍କୀସ୍ଥାନ ପର୍ଯ୍ୟନ୍ତ । ଯହିଁ ଯାଇଛି ସେ ପୁଣ୍ୟଧାରା, ଉର୍ବର କରିଛି ଶିଳ୍ପ, ସଭ୍ୟତା ଓ ପବିତ୍ରତାରେ । ଆଜି ସେ ବିରାଟ ଐତିହ୍ୟ ଓ ପରମ୍ପରାକୁ ଭୁଲି ହତଭାଗ୍ୟ ହିନ୍ଦୁ କଲିକତା ନଗରୀର ନର୍ଦ୍ଦମା-କଳୁଷିତ ହୁଗୁଳି ନଦୀର ଅପେୟ ଜଳରେ ବୁଡ଼ଦେଲାବେଳେ ଶଙ୍କରାଚାର୍ଯ୍ୟଙ୍କର ଗଙ୍ଗାଷ୍ଟକ ଗାଇ ନିଜକୁ ଧନ୍ୟ ଓ ପୂତ ମନେକରୁଛି । ମାନସିକ ସଂକୀର୍ଣ୍ଣତା ଯାଠାରୁ ବେଶି ନିମ୍ନ ଓ ଅଧଃପତନ ଯାଠାରୁ ଅଧିକ ହୋଇପାରେ ବୋଲି କଳ୍ପନାକୁ ଆସିପାରୁ ନାହିଁ ।

**ବୁଦ୍ଧଙ୍କ ନିରୀଶ୍ୱରତା :**

ବୁଦ୍ଧଙ୍କ ବିରୁଦ୍ଧରେ ଆଉ ଏକ ପ୍ରଧାନ ଅଭିଯୋଗ ଏହି ଯେ, ଈଶ୍ୱରଙ୍କ ଅସ୍ତିତ୍ୱ ବା ଶକ୍ତି ସମ୍ବନ୍ଧରେ କିଛି ହେଲେ ସେ କହିଯାଇନାହାନ୍ତି । ତାଙ୍କ ଧର୍ମରେ ପ୍ରାର୍ଥନାର ସ୍ଥାନ ନାହିଁ, ମନୁଷ୍ୟର ଦୈନନ୍ଦିନ ଛୋଟବଡ଼ ଆଶା ଆକାଂକ୍ଷା ପୂରଣପାଇଁ ପୂଜାପୂଜିର ବ୍ୟବସ୍ଥା ନାହିଁ । ଏ ଧର୍ମକୁ ଗ୍ରହଣ କରି ଲୋକର ଲାଭ କ'ଣ ?

କାଫେର ହିନ୍ଦୁର ବିନାଶ ବା ପରାଜୟପାଇଁ ମୁସଲମାନ ତା'ର ମସଜିଦ୍‌ରେ ଆଲ୍ଲାଙ୍କୁ ବା ଖ୍ରୀଷ୍ଟାନ୍ ପାଦ୍ରୀ ନିଜ ଗୋଷ୍ଠୀର ପ୍ରସାରଣପାଇଁ ସ୍ୱର୍ଗସ୍ଥ ପିତାଙ୍କୁ ଡାକିବାର ବା ହିନ୍ଦୁ

* କେନେଥ୍ ସଣ୍ଡରସ୍‌ଙ୍କ 'ବୌଦ୍ଧଧର୍ମ'– ପୃ. ୫୬.

ଜମିଦାର ବା ହିନ୍ଦୁ କିରାଣି ମକଦ୍ଦମାର ଡିଗ୍ରୀ ବା ଦରମାର ସ୍କେଲ୍ ବଢ଼େଇବାପାଇଁ କାଳିମନ୍ଦିରରେ ଭୋଗ ଦେବାର ପିଲାଳିଆ ବ୍ୟବସ୍ଥା ବୁଦ୍ଧଙ୍କ ଧର୍ମରେ ପ୍ରକୃତରେ ନାହିଁ । କିନ୍ତୁ ତାହାହିଁ ସବୁ ଧର୍ମ ଭିତରେ ବୌଦ୍ଧଧର୍ମର ଶ୍ରେଷ୍ଠତ୍ୱ ଦୃଢ଼ଭାବରେ ଓ ନିଃସନ୍ଦେହରେ ପ୍ରତିପାଦନକରେ । ଯଦି ଈଶ୍ୱର ଥାଆନ୍ତି ଓ ତାଙ୍କର ଚିର ପରସ୍ପର ବିବଦମାନ ଭକ୍ତମାନଙ୍କର ପରସ୍ପର ବିରୋଧୀ ପ୍ରାର୍ଥନାମାନ ଶୁଣି କାମ କରୁଥା'ନ୍ତେ, ତେବେ ଏ ସୃଷ୍ଟି ହୁଏତ ଜଙ୍ଗଲ ରାଜ୍ୟ ହୋଇଥା'ନ୍ତା ବା ଅଚଳ ରହନ୍ତା ।

## ଈଶ୍ୱରବିଶ୍ୱାସର ଉପହାସ୍ୟ ପରିସ୍ଥିତି :

ପ୍ରତ୍ୟେକ ଧର୍ମ ଗୋଷ୍ଠୀରେ ଦୁଇ ବ୍ୟକ୍ତିର କଳହ ପରି ଇତିହାସରେ ଦୁଇ ଖ୍ରୀଷ୍ଟାନ ବା ଦୁଇ ହିନ୍ଦୁ ବା ଦୁଇ ମୁସଲମାନ ରାଜ୍ୟ ମଧ୍ୟରେ ବିବାଦର ବହୁ ବିବରଣ ରହିଛି । ଏପରି ସ୍ଥଳରେ ପ୍ରାର୍ଥନାବିଶ୍ୱାସୀ ଜନତା ନିଜର ସେଇ ଏକ ଈଶ୍ୱରଙ୍କୁ ଦୁଇ ଅନ୍ୟୋନ୍ୟ ବିରୋଧୀ କାମ କରିବାପାଇଁ ପ୍ରାର୍ଥନା କରିବା ସ୍ୱାଭାବିକ । ସେହାଠାରୁ ଅଧିକ ହାସ୍ୟଜନକ ସଂସ୍କାର ଥାଇପାରେ କି ? ବୁଦ୍ଧ ମାନବ ଜାତିକୁ ଏ ମାୟାଜାଲରେ ପଡ଼ିବାକୁ ଦେଇନାହାନ୍ତି— ସମସ୍ତ ଧର୍ମ ପ୍ରଚାରକମାନଙ୍କ ଭିତରେ ଏକମାତ୍ର ବୈଜ୍ଞାନିକ ବିଚାରକ ସେହି ମାନବଶ୍ରେଷ୍ଠ ବୁଦ୍ଧ ।

ଯଦି ଈଶ୍ୱରଙ୍କୁ ପ୍ରାର୍ଥନା କଲେ ବା ଦିଅଁଙ୍କୁ ଭୋଗ ଦେଲେହିଁ ସବୁ ହୋଇଯାଉଥା'ନ୍ତା, ତେବେ ମନୁଷ୍ୟର ତ ଆଉ ଭାବନାଇ ନ ଥିଲା— କିଏ କାହିଁକି କାମ କରିବାକୁ ଯାଆନ୍ତା ? ସାମାନ୍ୟତମ ଦୁଶ୍ଚିନ୍ତାର ଅବକାଶ ବା ଆସନ୍ତା କାହୁଁ ?

କିନ୍ତୁ ତା'ତ ଦେଖାଯାଏନା । ବରଂ ଯେଉଁ ବ୍ୟକ୍ତି ବା ଜାତି ଈଶ୍ୱର ପରି ଏକ ବାହ୍ୟ ଶକ୍ତି ଉପରେ କେବଳ ନିର୍ଭର କରିବାର ଶିଖିଆସିଛନ୍ତି ସେମାନଙ୍କ ପରି ରୁଗ୍ଣ, ବିକଳ, ଦୁର୍ଦ୍ଦଶାଗ୍ରସ୍ତ ଲୋକ ବା ଜାତି ଦ୍ୱିତୀୟ ଦେଖାଯା'ନ୍ତି ନାହିଁ । ଦିଅଁ ଓ ପୁରୋହିତର ମାୟାଜାଲବଦ୍ଧ ହିନ୍ଦୁକୁ ଦେଖନା, ଦୂରକୁ ଯିବାର ଦରକାର ନାହିଁ । ଅନ୍ୟପକ୍ଷରେ ଯେଉଁ ଯେଉଁ ବ୍ୟକ୍ତି ବା ଜାତି ଆତ୍ମବିଶ୍ୱାସ, ଆତ୍ମପ୍ରଚେଷ୍ଟା ଉପରେ ନିଜକୁ ଠିଆକରିବାର ଶିଖିଆସିଛନ୍ତି, ସେଇମାନେହିଁ ଜୀବନଜୟୀ, ସମୃଦ୍ଧ ଓ କୃତକାର୍ଯ୍ୟ ହେବାର ଦେଖାଯାଏ ।

## ବିରାଟ ନିରୀଶ୍ୱର ମାନବ ସଂପ୍ରଦାୟ :

ଯେଉଁମାନେ ମନେକରନ୍ତି ଯେ ଈଶ୍ୱରବିଶ୍ୱାସ ବା ପ୍ରାର୍ଥନା ନ ହେଲେ ବଂଚିବା ଅସମ୍ଭବ, ସେମାନଙ୍କର ସ୍ମରଣ କରିବା ଉଚିତ ଯେ ସମଗ୍ର ସୋଭିଏଟ୍ ରୁଷିଆ ଆଜି ନିରୀଶ୍ୱର ।

ସାର୍ଦ୍ଧ ଏସିଆ ବ୍ୟାପ୍ତ ବିରାଟ ବୌଦ୍ଧଜନତା ନିରୀଶ୍ୱର । ଏପରିକି, ସେହିପରି ବୌଦ୍ଧ-ଧର୍ମ-ପ୍ରଭାବିତ କେନ୍ଦ୍ର ଏସିଆର ବହୁ ଭାଷାରେ 'ଈଶ୍ୱର' ପାଇଁ କୌଣସି ଶବ୍ଦହିଁ ନାହିଁ । ଆଜି କୋଟି କୋଟି ହିନ୍ଦୁ ସୀତାରାମ ବା ରାଧାକୃଷ୍ଣଙ୍କୁ ପୂଜାକରନ୍ତି । କିନ୍ତୁ ଏହି ଦେବତାଗୁଡ଼ିକର ଇତିହାସ ଆଠଶ' ବା ହଜାର ବର୍ଷରୁ ବେଶି କି ? ସଂସ୍କୃତ ଭାଗବତରେ ରାଧାର ନାମୋଲ୍ଲେଖ ନାହିଁ । ଏ ଲୀଳାର ଉତ୍ପତ୍ତି ଏକାଦଶ ଶତାବ୍ଦୀରେ । ଖ୍ରୀଷ୍ଟାନମାନେ

ବିଶ୍ୱାସ କରନ୍ତି ଯେ, ଯିଏ ଯୀଶୁଖ୍ରୀଷ୍ଟଙ୍କୁ ତ୍ରାଣକର୍ତ୍ତା ବୋଲି ନ ମାନିଛି ତା'ର ମୁକ୍ତି ନାହିଁ । ଖ୍ରୀଷ୍ଟଧର୍ମର ବୟସ ୧୯୦୦ ବର୍ଷ ମାତ୍ର; କିନ୍ତୁ ମାନବ ସଭ୍ୟତାର ବୟସ ଅନ୍ତତଃ ପାଞ୍ଚ ହଜାର ବର୍ଷ । ଖ୍ରୀଷ୍ଟ ଆବିର୍ଭାବର ବହୁ ପୂର୍ବରୁ ଗ୍ରୀସ୍, ଚୀନ୍, ଭାରତ ଓ ଇଜିପ୍ଟ ସଭ୍ୟତାର ଚରମ ସ୍ପର୍ଶକରିଥିଲା; କିନ୍ତୁ ଖ୍ରୀଷ୍ଟ ପୁରୋହିତଙ୍କ ବାକ୍ୟାନୁସାରେ ଖ୍ରୀଷ୍ଟଜନ୍ମର ପୂର୍ବସ୍ଥ ଏ ସମସ୍ତ ଜାତି ଆଜିପର୍ଯ୍ୟନ୍ତ ତ୍ରାଣ ନ ପାଇ ହୁଏତ ନରକରେ ଛଟପଟ ହେଉଛନ୍ତି । ଅର୍ଥାତ୍, ଆଜି ଖ୍ରୀଷ୍ଟ ନାମ ଧରି ସାମାନ୍ୟ ଖ୍ରୀଷ୍ଟାନ କିରାଣି ବା ମଟର ଡ୍ରାଇଭରର ମୁକ୍ତି ସୁନିଶ୍ଚିତ; କିନ୍ତୁ ଅଖ୍ରୀଷ୍ଟ ପ୍ଲାଟୋ, ଆରିଷ୍ଟଟଲ୍, ଜରଥୁଷ୍ଟ୍ର, ବଶିଷ ବା ଯାଜ୍ଞବଲକ୍ୟଙ୍କର ମୁକ୍ତି ନାହିଁ । ସେହିପରି, ଯେକୌଣସି ପାଷଣ୍ଡ ମୁସଲମାନର ମୁକ୍ତି ନିଶ୍ଚିତ; କିନ୍ତୁ କାଫେର ଗାନ୍ଧୀ, ରାମକୃଷ୍ଣ, ଅରବିନ୍ଦ, ବିବେକାନନ୍ଦର ମୁକ୍ତି ନାହିଁ । ଧର୍ମର ଅନ୍ଧତା ଓ ଭଣ୍ଡତା ଆଉ କେତେଦୂର ଯାଇପାରେ ?

## ମାନବାତ୍ମାର ବୈଜ୍ଞାନିକ ଚିକିତ୍ସକ ବୁଦ୍ଧ :

ଏକମାତ୍ର ବୁଦ୍ଧ ଏସବୁ ଉପହାସ୍ୟ ଅଯୌକ୍ତିକତାରୁ ଏକାନ୍ତ ମୁକ୍ତ । ମନୁଷ୍ୟର ଆତ୍ମାର ଓ ବ୍ୟକ୍ତିତ୍ୱର ପ୍ରକୃତ ଚିକିତ୍ସକ ହେଉଛନ୍ତି ବୁଦ୍ଧ । ଠିକ୍, ଏବର ବୈଜ୍ଞାନିକମାନଙ୍କ ପରି ବୁଦ୍ଧ ମନୁଷ୍ୟର ସମସ୍ୟାକୁ ହାତକୁ ନେଇଥିଲେ ଓ ଠିକ୍ ବୈଜ୍ଞାନିକ ଧାରାରେ ତା'ର ସମାଧାନ ଦେଇ ଯାଉଛନ୍ତି । ବୈଜ୍ଞାନିକର ଲାବରେଟୋରୀରେ ଯେପରି ଅବାନ୍ତର, ଅପ୍ରମାଣ୍ୟ, ଅପ୍ରତ୍ୟକ୍ଷ କଥାର ସ୍ଥାନ ନାହିଁ, କେବଳ କ୍ଷୁରଧାର ଯୁକ୍ତି ଓ ବିଚାରର କାରବାର, ବୁଦ୍ଧଙ୍କ ବ୍ୟବସ୍ଥା ଠିକ୍ ସେଇପରି । ବୁଦ୍ଧ ଅଜ୍ଞାତ ବା ଅଜ୍ଞେୟ କଥାକୁ ପ୍ରୀତିକର କରି ମନୁଷ୍ୟ ଆଗରେ କେବେହେଲେ ଥୋଇ ନାହାନ୍ତି, ମନୁଷ୍ୟକୁ ଭୁଲାଇବାକୁ । ଯାହା ପ୍ରତ୍ୟକ୍ଷ, ଯାହା ଚାକ୍ଷୁଷ, ଯାହା ପାର୍ଥିବ, ଯାହା ଜୀବନରେ ମନୁଷ୍ୟ ଅଙ୍ଗେ ନିଭାଏ, ବୁଦ୍ଧ ତାହାରି ଉପରେ ହିଁ ତାଙ୍କର ସମାଧାନକୁ ଠିଆ କରେଇଛନ୍ତି । ବୈଜ୍ଞାନିକ ଓ ଚିକିତ୍ସକ ଭାବରେ ମନୁଷ୍ୟକୁ ଦେଖିଲେ, ତା'ର ଦେହ ଓ ଆତ୍ମାକୁ ସୁସ୍ଥ, ରୋଗମୁକ୍ତ ଓ ଦୁଃଖମୁକ୍ତ କରିବା ଦିଗରେ, ମନୁଷ୍ୟହିଁ ଯେ ମନୁଷ୍ୟର ଏକମାତ୍ର କର୍ତ୍ତା ଓ ସହାୟକ, ଏହା ଏକାନ୍ତ ସତ୍ୟ ନୁହେଁ କି ? ଏସବୁ ପାଇଁ କୌଣସି ବାହ୍ୟବସ୍ତୁ ଉପରେ ନିର୍ଭର କରିବାକୁ ଶିଖେଇବା, ମନୁଷ୍ୟକୁ ଭୁଲେଇବା ଛଡ଼ା ଆଉ କିଛି ନୁହେଁ । ଦିନେ ଜଗନ୍ନାଥଠି ବିଶ୍ୱାସ ରଖି ସହସ୍ର ସହସ୍ର ହିନ୍ଦୁ ନରନାରୀ ପୁରୀର ରାସ୍ତାରେ କରୁଣ ମରଣ ଭୋଗ କରୁଥିଲେ । ଆଜି ବୈଜ୍ଞାନିକ ବ୍ୟବସ୍ଥା ଫଳରେ ସେ ବୀଭତ୍ସତା ଆଉ ନାହିଁ । ହଜ୍‌ଯାତ୍ରୀ ମୁସଲମାନମାନେ ମଧ୍ୟ ଦିନେ ସେଇପରି ମରୁଥିଲେ ଓ ଯନ୍ତ୍ରଣା ଭୋଗ କରୁଥିଲେ— ଆଲ୍ଲାଙ୍କ ଉପରେ ନିର୍ଭରତା ମୁସଲମାନମାନଙ୍କୁ ଅସ୍ୱାସ୍ଥ୍ୟକର ଅଭ୍ୟାସର କୁଫଳରୁ ରକ୍ଷା କରିପାରୁ ନ ଥିଲା । ଏବେ ଆଲ୍ଲାଙ୍କୁ ଅପେକ୍ଷା ନ କରି ବୈଜ୍ଞାନିକର ହସ୍ତ ଲାଗିପଡ଼ିବାରୁ ହଜ୍‌ଯାତ୍ରୀର ବହୁ ନିର୍ଯାତନା କଟିଗଲାଣି ।

କିନ୍ତୁ ଅନ୍ୟପକ୍ଷରେ ସବୁକଥା ପରି ଈଶ୍ୱରଙ୍କ ଅସ୍ତିତ୍ୱର ମଧ୍ୟ ଉଭୟ ଲୌକିକ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଅଛି । ଲୌକିକ ଦୃଷ୍ଟିକୋଣରୁ ବୁଦ୍ଧ ନିରୀଶ୍ୱର ମନେହୋଇପାରନ୍ତି । କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାରକଲେ ଦେଖାଯିବ ଯେ ବୁଦ୍ଧ ହିଁ ପ୍ରକୃତ ଈଶ୍ୱରଧର୍ମୀ ।

## ବୈଜ୍ଞାନିକ ଦୃଷ୍ଟିକୋଣରୁ ଈଶ୍ୱର ବିଚାର :

ଜଗତରେ ଆମେ ଈଶ୍ୱରଙ୍କର ଯେତେ କଳ୍ପନା ଦେଖୁ, ତାହା ଦୁଇ ପ୍ରଧାନ ଭାଗରେ ବିଭକ୍ତ ହୋଇପାରେ । ଗୋଟିଏ ହେଉଛି ନରାକାର, ଅନ୍ୟଟି ନିରାକାର । ଖ୍ରୀଷ୍ଟାନ, ମୁସଲମାନ ପ୍ରଭୃତି ସବୁ ଧର୍ମରେ ଭଗବାନ ନରାକାର । କେବଳ ପ୍ରକୃତ ହିନ୍ଦୁ ଓ ବୌଦ୍ଧଧର୍ମରେ ଭଗବାନ ନିରାକାର । ଏହାକୁ ସ୍ପଷ୍ଟତର କରେଁ ।

ମୁସଲମାନ ଧର୍ମ ପୌତ୍ତଳିକତାର ଘୋର ବିରୋଧୀ । ମହମ୍ମଦ ପ୍ରତିମା ପୂଜାର ଏପରି ବିରୋଧୀ ଥିଲେ ଯେ କାଳେ ତାଙ୍କ ଭକ୍ତମାନେ ତାଙ୍କ ମୂର୍ତ୍ତିକୁ ପୂଜା କରି ବସିବେ ଏଥିପାଇଁ ତାଙ୍କର କୌଣସି ଚିତ୍ର ବା ପ୍ରତିମା ସେ କରାଇ ଦେଇ ନ ଥିଲେ । ଏ ଦିଗରେ ମହମ୍ମଦଙ୍କ ଦୃଷ୍ଟାନ୍ତ ପ୍ରକୃତରେ ଅସାଧାରଣ । ମୁସଲମାନମାନେ ଅନ୍ୟ ଧର୍ମାବଲମ୍ବୀମାନଙ୍କ ଅପେକ୍ଷା ଅନେକାଂଶରେ ପ୍ରକୃତରେ ପ୍ରତିମାପ୍ରଭାବମୁକ୍ତ; କିନ୍ତୁ ମହମ୍ମଦ ଯେଉଁ ଆଲ୍ଲାଙ୍କର କଳ୍ପନାଟି ଦେଇଯାଇଛନ୍ତି ସେ ଗୋଟିଏ ବିରାଟ, ପରାକ୍ରମଶାଳୀ ମନୁଷ୍ୟ ଛଡ଼ା ଆଉ କିଛି ନୁହନ୍ତି । ଆଲ୍ଲା ବସିଛନ୍ତି ସ୍ୱର୍ଗରେ, ଦଣ୍ଡ ଦେଉଛନ୍ତି, ପୁରସ୍କାର ଦେଉଛନ୍ତି, ସ୍ତୁତି ଶୁଣୁଛନ୍ତି, ରାଗୁଛନ୍ତି; ତାଙ୍କର ସେଠି ସୁନ୍ଦରୀମାନଙ୍କର ନୃତ୍ୟ ଚାଲିଛି, ସୁରାପାନ ଚାଲିଛି । ଈଶ୍ୱରର ଏ କଳ୍ପନା ନରାକାର ନୁହେଁ ତ ଆଉ କ'ଣ ? ଖ୍ରୀଷ୍ଟୀୟ ସ୍ୱର୍ଗ ଓ ଈଶ୍ୱରର କଳ୍ପନା ମଧ୍ୟ ତଦ୍ରୂପ ।

## ଭାରତରେ ଈଶ୍ୱର-କଳ୍ପନାର ବୈଜ୍ଞାନିକ ଦୃଷ୍ଟି :

କେବଳ ଭାରତବର୍ଷରେହିଁ ସଭ୍ୟତାର ଏକାବେଳକେ ମୂଳରୁ କହିଲେ ଚଳେ, ଈଶ୍ୱରଙ୍କୁ ସୃଷ୍ଟିର ମୌଳିକ ସତ୍ତା ବା ଶକ୍ତି ବା ନିୟମରୂପେ କଳ୍ପନା କରାହୋଇଆସିଛି– ମନୁଷ୍ୟ ରୂପରେ ନୁହେଁ । ବେଦାନ୍ତରେ ଏହି ଅଦୃଷ୍ଟ ଶକ୍ତି ବା ଉପାଦାନର ନାମ ଦିଆଯାଇଛି 'ବ୍ରହ୍ମ ।' ବିରାଟ ବିଶ୍ୱ ଏହି ବ୍ରହ୍ମମୟ । ଜଡ଼ ଓ ଜୀବ ସମସ୍ତେ ଏଇ ବ୍ରହ୍ମ-ଉପାଦାନରେ ଗଠିତ । ଆକାର, ପ୍ରକାର ଓ ବର୍ଣ୍ଣର ଅଶେଷ ବିଭିନ୍ନତା ଆମେ ଯାହା ଦେଖିବାକୁ ପାଉଁ, ତାହା କେବଳ ଆମର ମାୟାଚ୍ଛନ୍ନ ଦୃଷ୍ଟିର ଭ୍ରମ ହେତୁ । ଏଇ ଭ୍ରମଯୋଗୁଁ ଆତ୍ମା ରାଗ ଓ ବିରାଗର ବନ୍ଧନରେ ପଡ଼ିରହିଛି । ଯୋଗୀ ଅନ୍ତରର ଜ୍ଞାନଚକ୍ଷୁ ଫିଟାଇ ଚେଷ୍ଟାକରେ ନାମରୂପର ପରଦାକୁ ଡେଇଁ ମୌଳିକ ଉପାଦାନରେ ମିଶିଯିବାକୁ । ବେଦାନ୍ତରେ ତେଣୁ ଈଶ୍ୱରର ନର-କଳ୍ପନା ବା କୌଣସି ସ୍ୱର୍ଗର କଳ୍ପନା ନାହିଁ, ଯେଉଁଠି ଠିକ୍ ଆମ ଅଜାମାନଙ୍କ ପରି ଗୋଟିଏ କୌଣସି ସ୍ଥୂଳ ବୃଦ୍ଧ ତା'ର ମଜଲିଶ୍ ବସେଇ ଆମ୍ଭମାନଙ୍କୁ ଦଣ୍ଡ ବା ପୁରସ୍କାର ଦେଉଛନ୍ତି । ଆତ୍ମା ଓ ପରମାତ୍ମା ଏଠି ଏକ ଉପାଦାନ ବୋଲି ଧରାଯାଉଛି ଏବଂ ସସୀମ ଆତ୍ମାକୁ ନିର୍ଦ୍ଦେଶ ଦିଆଯାଉଛି ଅସୀମ ଆତ୍ମାରେ ମିଶିଯିବାକୁ । କାରଣ ତାହାହିଁ ମନୁଷ୍ୟର ଦୁଃଖାବସାନର ଏକମାତ୍ର ଉପାୟ ।

ଆଜି ହିନ୍ଦୁ ଭାରତ, ପ୍ରତିମା ଓ ପୁରୋହିତମାନଙ୍କଦ୍ୱାରା ଚାରିଆଡ଼େ ଜର୍ଜରିତ ଓ କଳୁଷିତ ହୋଇଥିଲେ ମଧ୍ୟ, ଏକ ବୈଜ୍ଞାନିକ, ନିରାକାର ଈଶ୍ୱରତ୍ୱହିଁ ହିନ୍ଦୁଧର୍ମର ସବୁ

ଶାଖାର ପଶ୍ଚାତ୍ ପଟସ୍ଥ ପ୍ରେରଣା । ଅଜ୍ଞ ଜନସାଧାରଣଙ୍କର ହୃଦୟଙ୍ଗମ କରେଇବାପାଇଁ, ପରେ ହୁଏତ ପ୍ରତିମା ଓ ମାନବିକ କାହାଣୀର ଆଶ୍ରୟ ନିଆଯାଇଛି । କିନ୍ତୁ ଏହା ସତ୍ୟ— ପାଷଣ୍ଡତମ ହିନ୍ଦୁ ମଧ୍ୟ ଜାଣେ ଯେ ଏ ଜଗତର ସ୍ରଷ୍ଟା, ସୃଷ୍ଟି, ସ୍ଥିତି ଓ ଲୟ, ଏଇ ତିନି ଚିରନ୍ତନ ନିୟମଦେଇହିଁ ନିଜକୁ ପ୍ରକାଶକରେ ଏବଂ ସେ ଜାଣେ ଯେ ଜଗତ୍ ବ୍ରହ୍ମମୟ ବା ଈଶ୍ୱରମୟ; ଈଶ୍ୱର ବାହାରେ ନାହାନ୍ତି, ଅଛନ୍ତି ତା'ର ଅନ୍ତରରେ । ଏପରି ଉଦାର ଐଶ୍ୱରିକ ବୋଧ ଅନ୍ୟ ଧର୍ମରେ ଦୁଷ୍ପ୍ରାପ୍ୟ ।

**ସୃଷ୍ଟିର ଏକତ୍ୱ ଭିତରେ ଈଶ୍ୱରର ଓତପ୍ରୋତ ବ୍ୟାପ୍ତି :**

ବ୍ରାହ୍ମଣ ପୁରୋହିତମାନେ ଯାହା ବୁଝୁଥିଲେ ତାହା କାର୍ଯ୍ୟରେ କରୁ ନ ଥିଲେ, ଏବେ ବି କରନ୍ତି ନାହିଁ । ଜଗତ୍ ଯଦି ବ୍ରହ୍ମମୟ ଜାତିଭେଦ ରହନ୍ତା କିପରି ? ବୁଦ୍ଧ କିନ୍ତୁ ଏଇ ଭଣ୍ଡତାର ପ୍ରାଚୀରକୁ ଭାଙ୍ଗିପକାଇଲେ । ସୃଷ୍ଟିକୁ ଏକୀଭୂତ ଭାବରେ ଦେଖିବାରେ ବୁଦ୍ଧ ବେଦାନ୍ତୀମାନଙ୍କଠାରୁ ଆଉରି ଆଗକୁ ଚାଲିଗଲେ । ବେଦାନ୍ତ ଧରିନିଏ ଯେ ମନୁଷ୍ୟର ଏକ ଆତ୍ମା ଅଛି, ବୁଦ୍ଧ ତାହା ମଧ୍ୟ ମାନନ୍ତି ନାହିଁ । ଯଦି ପଥର ବା ପାଣିର ଆତ୍ମା ନାହିଁ, ମନୁଷ୍ୟର ଆସିବ କୁଆଡୁ ? କାରଣ ସମଗ୍ର ସୃଷ୍ଟି ଏକ ବା ଏକାଧିକ ସମଉପାଦାନରେ ଗଠିତ ଏବଂ ଯେହେତୁ ଆମ୍ଭେମାନେ ସମସ୍ତେ ସମଉପାଦନରେ ଗଠିତ ତେଣୁ ଯାହା ଆମକୁ ଦୁଃଖପ୍ରଦ ତାହା ଅପରକୁ ମଧ୍ୟ ଦୁଃଖପ୍ରଦ ହେବାର ଆଶା କରିବାର କଥା । ଯାହା ଆମର ଆନନ୍ଦଦାୟକ ତାହା ଅନ୍ୟର ଆନନ୍ଦଦାୟକ । ତେଣୁ ନିଜର ସୁଖପାଇଁ ମନୁଷ୍ୟର ଅନ୍ୟ ମନୁଷ୍ୟ ବା ଜୀବକୁ କଷ୍ଟ ଦେବା ଉଚିତ ନୁହେଁ । ଏଇଥିରୁ ଯୁକ୍ତିଯୁକ୍ତ ଭାବରେ ବାହାରିଲା ବୌଦ୍ଧଧର୍ମର ବିଶ୍ୱବ୍ୟାପୀ କରୁଣା ଓ ମୈତ୍ରୀ । ନିରୀଶ୍ୱର ହେଲେହେଁ ବୁଦ୍ଧ ଅନ୍ୟ ଯେକୌଣସି ଧର୍ମର କଳ୍ପିତ ଈଶ୍ୱର ଅପେକ୍ଷା ଅଧିକ କରୁଣାମୟ; ତାଙ୍କ ପ୍ରଚାରିତ ଧର୍ମ ଜୀବମାନବ ପ୍ରତି ଅସୀମ ଅନୁକଂପା ଓ ସହାନୁଭୂତି ଉପରେହିଁ ପ୍ରତିଷ୍ଠିତ । ବୁଦ୍ଧଙ୍କ ଧର୍ମ ଗୋଷ୍ଠୀଗତ ନୁହେଁ ଏହା ସମଗ୍ର ମାନବଲାଗି ଉଦ୍ଦିଷ୍ଟ । ଏକ ଈଶ୍ୱରର ଆଦେଶରେ ଅନ୍ୟ ଈଶ୍ୱରବିଶ୍ୱାସୀମାନଙ୍କୁ ହତ୍ୟା ବା ବିଭୀଷିକା ଦେଇ ନିଜ ଗୋଷ୍ଠୀ ବଢ଼ାଇବାର ବୀଭତ୍ସ ବର୍ବରତା ବୌଦ୍ଧଧର୍ମରେ କେବେହେଲେ ଘଟି ନାହିଁ । ବୁଦ୍ଧଶିଷ୍ୟ ସାରା ପୃଥିବୀରେ ଏହି କରୁଣାମୟ ଧର୍ମ ପ୍ରତିଷ୍ଠିତ କରିଯାଇଛନ୍ତି, ଏକ ହସ୍ତରେ କଳା ଓ ବିଜ୍ଞାନ ଏବଂ ଅନ୍ୟ ହସ୍ତରେ ତତ୍ତ୍ୱ ବିତରଣ କରି । ବୌଦ୍ଧର ଈଶ୍ୱର ନାହିଁ କହିବା ଅସତ୍ୟ । ବୌଦ୍ଧର ଈଶ୍ୱର ଅନ୍ୟ ଧର୍ମାବଲମ୍ବୀର ଈଶ୍ୱରପରି କୌଣସି ଗୋଟିଏ ସ୍ଥାନରେ ମନୁଷ୍ୟ ରୂପ ଧରି ବା ବସି ଆଦେଶ ଦେଉନାହିଁ । ବୌଦ୍ଧର ଈଶ୍ୱର ସର୍ବବ୍ୟାପୀ । ସେ ଏକ ଅଲଂଘ୍ୟ ନିୟମ, ଯାହା ଜୀବ ମାନବ ସମସ୍ତଙ୍କ ପାଇଁ ସମାନ । ବୌଦ୍ଧ ପ୍ରାର୍ଥନା କରେନାହିଁ କହିବା ଅସତ୍ୟ । ସେ ପୂଜା ପ୍ରାର୍ଥନା ଛଳରେ ଏକ କଳ୍ପିତ ଦେବତା ଓ ତା'ର ପୁରୋହିତକୁ ଉତ୍କୋଚ ଦିଏ ନାହିଁ ସତ୍ୟ, କିନ୍ତୁ ଦୈନନ୍ଦିନ ଜୀବନରେ ସେ ପଞ୍ଚଶୀଳ ଓ ଅଷ୍ଟାଙ୍ଗ ମାର୍ଗ ଦେଇ ପ୍ରତ୍ୟହ ଓ ପ୍ରତିମୁହୂର୍ତ୍ତରେ ଉତ୍କୃଷ୍ଟ ପ୍ରାର୍ଥନା କରେ ତା'ର କର୍ମରେ ।

**ବୁଦ୍ଧଙ୍କ ଯୌକ୍ତିକ ତୂଷ୍ଣୀତା :**

ଈଶ୍ୱର, ତାଙ୍କର ଅସ୍ତିତ୍ୱ ଓ ପ୍ରକୃତି ନେଇ ବୁଦ୍ଧଙ୍କ ଜୀବନ କାଳରେ ତାଙ୍କୁ ଅନେକ ପ୍ରଶ୍ନ କରିଥିଲେ; କିନ୍ତୁ ଏ ସବୁ ପ୍ରଶ୍ନରେ ବୁଦ୍ଧ ନିରୁତ୍ତର ରହିବାର କଥିତ ଅଛି । କାହିଁକି ସେ ନିରୁତ୍ତର ରହୁଛନ୍ତି ବୋଲି ପଚରାଯିବାରୁ ସେ ଏଇ ମର୍ମରେ କହୁଥିଲେ ଯେ, ''ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନୟନପାଇଁ ସେ ସବୁର ପ୍ରୟୋଜନ ନାହିଁ । ଯାହା ଓ ଯେତିକି ଦରକାର ତାହାହିଁ ମୁଁ ତୁମକୁ କହୁଛି ଓ ତାକୁଇ ପାଳନକର । ଯାହା ଅସୀମ, ସସୀମ ତାହା ଧାରଣା କରିପାରେନା ଓ ପ୍ରକାଶ କରିପାରେନା । ତେଣୁ ସେଥିରେ ଘାଣ୍ଟିହେବାର ପ୍ରୟୋଜନ ନାହିଁ । କୌଣସି ଲୋକ ଶରବିଦ୍ଧ ହେଲେ ତା'ର ଉପସ୍ଥିତ କର୍ତ୍ତବ୍ୟ ହେଉଛି ଶରଟି ବାହାରକରିନେଇ ଘା'ର ଚିକିତ୍ସା କରିବା; କିନ୍ତୁ ତା' ନ କରି ସେ ଯଦି ଜାଣିବାକୁ ଚାହେଁ ଏ ଶର କେଉଁଠୁ ଆସିଲା, ଶର ନିକ୍ଷେପକ କିପରି ଲୋକ, ଗୋରା ନା କଳା, ଡେଙ୍ଗା ନା ଗେଡ଼ା, ସେ ସବୁ ତା'ର ଉପସ୍ଥିତ ବେଦନା ନେଇଯାଇ ପାରିବ ନାହିଁ ।''

ବୁଦ୍ଧଙ୍କର ଏହି ଦୃଷ୍ଟିକୋଣ ଠିକ୍ କି ଭୁଲ୍, ତାହା ପରିଷ୍କାର ହେବ ଏହାହିଁ ସ୍ମରଣ କଲେ ଯେ, ପୃଥିବୀରେ ସହସ୍ର ସହସ୍ର ବର୍ଷ ଧରି ହିଂସା, ହତ୍ୟା, ଦ୍ୱେଷର ପ୍ରଭଂଜନ ପ୍ରବାହିତ ହୋଇ ମନୁଷ୍ୟର ସ୍ୱଭାବ ଓ ସଭ୍ୟତାକୁ ବିକଳକରିଛି ଏଇ ପିଲାଳିଆ ବିବାଦ, କାହାର ଈଶ୍ୱର ଠିକ୍ ।

**ବୁଦ୍ଧ ପୃଥିବୀର ପ୍ରଥମ ଓ ଶ୍ରେଷ୍ଠ କମ୍ୟୁନିଷ୍ଟ :**

ଆଜି ସମଗ୍ର ପୃଥିବୀ ଉପରେ ମାନବିକ ସମାଜ ଗୋଟିଏ ଛାଞ୍ଚରେ ଗଢ଼ି ହେବାକୁ ଯାଉଛି । ଚାରିଆଡ଼େ ଈଶ୍ୱରବିଶ୍ୱାସ କ୍ଷୀଣୀଭୂତ ହୋଇଆସୁଛି । ପୁରୋହିତର ମର୍ଯ୍ୟାଦା ଦିନକୁ ଦିନ କମୁଛି ଓ ସ୍ଥାନେ ସ୍ଥାନେ ଏକାବେଳକେ ଲୁପ୍ତହେଲାଣି । ଜାତିଜାତିର ଭେଦ, ନାରୀ ପୁରୁଷର ଭେଦ ଉଠିଯାଇଛି । ଧନୀ ଓ ଦରିଦ୍ରର ପ୍ରଭେଦ କ୍ରମେ କ୍ଷୟପ୍ରାପ୍ତ ହେଉଛି । ଲୋକେ ପ୍ରାର୍ଥନା ଅପେକ୍ଷା କର୍ମରେ ଅଧିକ ବିଶ୍ୱାସ କରୁଛନ୍ତି । ସର୍ବୋପରି ମନୁଷ୍ୟ ପ୍ରତି ମନୁଷ୍ୟର ଓ ମନୁଷ୍ୟର ଅନ୍ୟ ଜୀବପ୍ରତି ବ୍ୟବହାରରୁ ନିଷ୍ଠୁରତା ଓ ଅମାନୁଷିକତା କ୍ରମେ କମିଆସୁଛି । ସକଳ ପ୍ରକାର ଅନ୍ଧସଂସ୍କାର ଆଜି ଲୁପ୍ତ ହେବା ଉପରେ । ଆଜି ଆମ୍ଭେମାନେ ବିଜ୍ଞାନର ସ୍ୱଚ୍ଛ ଦିବାଲୋକ ତଳେ ଦଣ୍ଡାୟମାନ । ତାନ୍ତ୍ରିକର ଗାରିଡ଼ିମନ୍ତ୍ର ବା ଡେଉଁରିଆ ବା ପୁରୋହିତର ଅସମ୍ଭବ ପ୍ରତିଶ୍ରୁତିରେ ଆମ୍ଭମାନଙ୍କର ବିଶ୍ୱାସ କ୍ରମେ ତୁଟିଆସୁଛି ।

ସକଳ ଧର୍ମପ୍ରଚାରକମାନଙ୍କ ଭିତରେ ବୁଦ୍ଧହିଁ ଏ ପ୍ରକାର ଯୁକ୍ତିଯୁକ୍ତ ଓ ଜ୍ଞାନାଲୋକିତ ମାନବିକ ସମାଜର କଳ୍ପନା ପ୍ରଥମେ ଦେଇଛନ୍ତି ଓ ଏକମାତ୍ର ସେଇହିଁ ଦେଇଯାଇଛନ୍ତି । ବର୍ତ୍ତମାନର କମ୍ୟୁନିଜିମ୍‌ର କଳ୍ପିତ-ସମାଜ ବୁଦ୍ଧ ବହୁ ଆଗରୁ ଆରମ୍ଭ କରିଯାଇଥିଲେ । ବୁଦ୍ଧ ପୃଥିବୀରେ ପ୍ରଥମ ଓ ଶ୍ରେଷ୍ଠ କମ୍ୟୁନିଷ୍ଟ; କିନ୍ତୁ କମ୍ୟୁନିଜିମ୍ କରୁଣା ଉପରେ ପ୍ରତିଷ୍ଠିତ, ମାର୍କସ୍‌ର କମ୍ୟୁନିଜିମ୍ ପରି ତାହା ହିଂସାର ରକ୍ତରେ ବୀଭତ୍ସ ନୁହେଁ ।

**ବୌଦ୍ଧଧର୍ମ ଓ ଉନ୍ନତ ଇଉରୋପର ନବତମ ଚିନ୍ତାଧାରା :**

ବୌଦ୍ଧଧର୍ମ ସମ୍ବନ୍ଧରେ ଏକ ନବତମ ପୁସ୍ତକର ଆଲୋଚନା କରିବାକୁ ଯାଇ ପ୍ରସିଦ୍ଧ ଇଂରେଜି ସାହିତ୍ୟ-ସାପ୍ତାହିକ 'ଟାଇମ୍‌ସ ଲିଟେରାରୀ ସପ୍ଲିମେଣ୍ଟ' (ମେ ୪, ୧୯୫୧)ର ବିଜ୍ଞ ସମାଲୋଚକ ବୌଦ୍ଧଧର୍ମ କିପରି ବହୁ ନୂତନତମ ତାତ୍ତ୍ୱିକ ଆବିଷ୍କାର ସବୁକୁ ବହୁ ଶତବର୍ଷ ପୂର୍ବେ ଦେଖିପାରିଥିଲା ଓ ଏଇ ଧର୍ମ କିପରି ପୃଥିବୀର ବହୁ ଅଂଶରେ କଳା, ସଭ୍ୟତା ଓ ମାନବିକତା ପ୍ରତିଷ୍ଠା କରିଆସିଛି ତାହା ନିମ୍ନଲିଖିତ ଭାବରେ ବର୍ଣ୍ଣନା କରିଛନ୍ତି—

''ପ୍ରାଚୀନପନ୍ଥୀଙ୍କ ଦୃଷ୍ଟିକୋଣରୁ ଦେଖିଲେ ବୌଦ୍ଧଧର୍ମ ଗୋଟିଏ ଧର୍ମ ନୁହେଁ, ଏହା ଏକ ଧର୍ମ-ତତ୍ତ୍ୱ ମାତ୍ର ଏବଂ ପୂର୍ବ ଓ ପଶ୍ଚିମ ଉଭୟ ଗୋଲାର୍ଦ୍ଧର ଦର୍ଶନର ଇତିହାସରେ ଏହାକୁ ଏକ ଗଭୀରତମ ଓ ମୌଳିକତମ ଦର୍ଶନ ମାତ୍ର ବୋଲି ଧରିବାକୁ ହେବ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଭାରତରେ ଏହାର ଜନ୍ମ ହେଲେହେଁ ଏହା ଅନେକ ଏସିଆୟିକ ଦେଶରେ ଏପର୍ଯ୍ୟନ୍ତ ବଂଚି ରହିଛି ଏବଂ ସଂଖ୍ୟା ଦିଗରୁ ମଧ ଏହା ପୃଥିବୀର ଏକ ଶ୍ରେଷ୍ଠଧର୍ମ । ଆତ୍ମଜ୍ଞାନ ଓ ମାନସିକ ବିକାଶ ଏହାର ପ୍ରଧାନ ଲକ୍ଷ୍ୟ ଏବଂ ଯେଉଁ ମନସ୍ତତ୍ତ୍ୱ ଉପରେ ଏହା ପ୍ରତିଷ୍ଠିତ ତାହାର ଆବିଷ୍କାର ୟୁରୋପରେ ଏବେ ମାତ୍ର ହେଉଛି । ଆଦ୍ୟ ବୌଦ୍ଧମାନଙ୍କର କେତେକ ମୌଳିକ ଭାବଧାରା ସଂଗେ ୟୁରୋପରେ ଊନବିଂଶ ଶତାବ୍ଦୀର ଅଗ୍ରଗାମୀ କେତେକ ଚିନ୍ତାଧାରାର ବିସ୍ମୟକର ସାମ୍ୟ ଦେଖାଯାଏ । ହାଟମାନ୍ ଓ ସୋପେନ୍‌ହର୍‌ଙ୍କ ଦର୍ଶନକୁ ପ୍ରାଚୀନ ବୌଦ୍ଧଧର୍ମର ଆଧୁନିକ ରୂପାନ୍ତର କହିଲେହିଁ ଚଳେ । ବୁଦ୍ଧଙ୍କର ପ୍ରକୃତିତତ୍ତ୍ୱର ଗତିବାନ୍ ଧାରଣା ବର୍ଗସୋଂକ ସୃଷ୍ଟିଶୀଳ ବିବର୍ତ୍ତନର ପୂର୍ବଗାମୀ ।

ପୁଣି ବୌଦ୍ଧଧର୍ମ ଯେଉଁ ଦେଶକୁ ଯାଇଛି ସେଠାର ସ୍ଥାନୀୟ ସଂସ୍କୃତିକୁ ଉନ୍ନୀତ କରିଛି । ଭାରତବର୍ଷ, ଚୀନ୍ ଓ ଜାପାନର ଶ୍ରେଷ୍ଠତମ କଳାର ପ୍ରେରଣା ଆସିଛି ବୌଦ୍ଧଧର୍ମରୁ । ବୌଦ୍ଧଧର୍ମ ଅନୁକଂପା ଓ କରୁଣା ଉପରେ ପ୍ରତିଷ୍ଠିତ । ଏହାର ସାରତତ୍ତ୍ୱ ମାନବିକ ମାଧୁର୍ଯ୍ୟମୟ । ଏହା ସମଗ୍ର ସୃଷ୍ଟିର ଏକତାରେ ବିଶ୍ୱାସକରେ ଏବଂ ଏହାର ଏହି ଐଶ୍ୱର୍ଯ୍ୟ ପ୍ରକାଶ ପାଇଛି ଅହିଂସା, ଅନ୍ୟ ଧର୍ମ ପ୍ରତି ଅବୈରଭାବ, ଜୀବ ଓ ପ୍ରକୃତି ପ୍ରତି ଆଦର, ମନୁଷ୍ୟ ଓ ମନୁଷ୍ୟ ଏବଂ ନର ଓ ନାରୀ ମଧ୍ୟରେ ଅଭିନ୍ନ ସମତାରେ । ରୋମାନ୍‌ମାନଂକ ସମୟରେ ଏହି ଧର୍ମର ପ୍ରଭାବ ୟୁରୋପରେ ପ୍ରଥମେ ପଡ଼ିଥିଲା । ଇଂରେଜ ଓ ୟୁରୋପୀୟ ପଣ୍ଡିତମାନଂକ ଲେଖା ନେଇ ବୌଦ୍ଧଚିନ୍ତା ଓ କଳାରେ ଗତ ୭୫ ବର୍ଷ ହେଲା ୟୁରୋପର କୌତୂହଳ ବରାବର ବଢ଼ିବାରେ ଲାଗିଛି ।''

**ଏବର ଭାରତ ଓ ବୌଦ୍ଧଧର୍ମ :**

ଭାରତ ଆଜି ସ୍ୱାଧୀନ, କେବଳ ରାଜନୈତିକ ଭାବରେ । ତା'ର ଆଉ ଦୁଇଟି ସ୍ୱାଧୀନତା ଆଉରି ବାକୀ ଅଛି । ଗୋଟିଏ ସ୍ୱାଧୀନତା ପୁଂଜିପତିମାନଙ୍କ ଦଲାଲିରୁ, ଆଉ

ଗୋଟିଏ ସ୍ୱାଧୀନତା ପୁରୋହିତ ଓ ସମାଜପତିମାନଙ୍କର ଅନ୍ଧତା ଓ ସ୍ୱାର୍ଥପରତାରୁ । 'ବର୍ଣ୍ଣ'ର ଉଚ୍ଚାବଚ ଭାବକୁ ବଜାୟରଖି ରାଜନୈତିକ ସାମ୍ୟର ଆଦର୍ଶ ଉପଲବ୍ଧି କରିବା ଅସମ୍ଭବ । ଯେଉଁ ଜାତି ନିଜର ଭାଗ୍ୟକୁ ପୁରୋହିତ ହାତରେ ଛାଡ଼ିଦେଇଛି, ସେ ଉଠିପାରିବ ନାହିଁ । ବହୁ ଦେବତାର ପୂଜାକାରୀ, ବହୁ ଗୋଷ୍ଠୀ, ବହୁ ଭାଷା, ବହୁ ଜାତିରେ ସହସ୍ରଧା ବିଭକ୍ତ ଏହି ଭାରତ ଡିମୋକ୍ରାସିର ପ୍ରକୃତ ସୁବିଧା ପାଇପାରି ନ ପାରେ ଯେପର୍ଯ୍ୟନ୍ତ ଆମ୍ଭେମାନେ ଏକ ଦେଶ, ଏକ ବେଶ, ଏକ ଭାଷା ଓ ଏକ ଧର୍ମ ଗ୍ରହଣ ନ କରିଛୁ । ବୁଦ୍ଧହିଁ ଆମକୁ ଏଇ ବିରାଟ ସମ୍ଭାବନା ଦେଇଯାଇଥିଲେ । ତାଂକର ବାଣୀରେ ଭାରତର ଆପାମର ଜନସାଧାରଣର ଗଭୀରତମ ଆତ୍ମା ଦିନେ ଆନ୍ଦୋଳିତ ହୋଇଉଠିଥିଲା, ସମଗ୍ର ଜାତିର ହୃଦୟ-ପଦ୍ମ ପ୍ରଜ୍ଞା ଓ କରୁଣାର ନିର୍ମଳ ଆକାଶ ତଳେ ଦିନେ ବିକଚ ହୋଇ ଫୁଟି ଉଠିଥିଲା ଅନୁପମ ଚିତ୍ର, ଶିଳ୍ପ ଓ ବିଜ୍ଞାନରେ; କାରଣ ପ୍ରାଣ ହୋଇଉଠିଥିଲା ବନ୍ଧନହୀନା । ଭାରତର ନାବିକ ଚାଲିଲା ଅକୁତୋଭୟରେ ଦୂରଦୂରାନ୍ତର ସାଗରପାରି, ବିସ୍ତାର କଲା ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମରେ ଧରଣୀର ଶେଷସୀମା ପର୍ଯ୍ୟନ୍ତ ବିରାଟ ରାଷ୍ଟ୍ରିକ ଓ ସାଂସ୍କୃତିକ ସାମ୍ରାଜ୍ୟ, ଯାହା ଏବେ ବି ବଞ୍ଚିରହିଛି ଓ ବିଶ୍ୱକୁ ଦେଇଯାଇଛି ଅବିନଶ୍ୱର ଏବଂ ବିସ୍ମୟକର କଳା ଓ ସ୍ଥାପତ୍ୟ ।

ଗୁପ୍ତ ଯୁଗରେ ଯେଉଁ ବ୍ରାହ୍ମଣ୍ୟ ଧର୍ମର ତଥାକଥିତ ପୁନରୁତ୍‌ଥାନ ହେଲା, ସେହି ଦିନରୁ ଭାରତ ଇତିହାସର ସ୍ୱର୍ଣ୍ଣଯୁଗର ଅବସାନ ଓ ଘୋର ତମିସ୍ରରଜନୀର ଆରମ୍ଭ । ଜାତି-କୁଣ୍ଠିତ ହିନ୍ଦୁ ଜାତି ଯିବା ଭୟରେ ସମୁଦ୍ରରେ ପଶିଲାନାହିଁ । ସହସ୍ର ଜାତିରେ ବିଭକ୍ତ ହେଲା ଏହି ମହାଜାତି ଏବଂ ସହଜ କବଳ ହେଲା ଜାତିହୀନ ଦୁର୍ଦ୍ଧର୍ଷ ମୁସଲମାନ ଆକ୍ରମଣକାରୀର । ଭାରତ ହେଲା କୂପମଣ୍ଡୁକ । ଶତାବ୍ଦୀ ପରେ ଶତାବ୍ଦୀ ଚାଲିଗଲା ଏକଆଡ଼େ ଦ୍ୱୈତ-ଦ୍ୱୈତବିଶିଷ୍ଟାଦ୍ୱୈତର ଅମୀମାଂସ୍ୟ ମୀମାଂସାରେ; ଅନ୍ୟଆଡ଼େ କ୍ରୂର ବର୍ବର ସତୀ-ଦାହ, ବାଲ୍ୟବିବାହ ଓ ବାଧବୈଧବ୍ୟ ଯୋଗୁଁ କୋଟି କୋଟି କୋମଳପ୍ରାଣା ନାରୀର କରୁଣ ବିଳାପରେ, ଗଙ୍ଗାସାଗରରେ ଶିଶୁ ନିକ୍ଷେପ ଓ ମନୁଷ୍ୟକୁ କେତେଦୂର ଅସ୍ପୃଶ୍ୟ ରଖାଯାଇପାରେ ତା' ପାଇଁ ଶାସ୍ତ୍ର ଯୋଗାଇବାରେ ।

ହତଭାଗ୍ୟ ହିନ୍ଦୁ-ଭାରତ, ଆଜି ହେଲେ ଶୁଣ—ପୁଣି ସେହି କରୁଣାମୟ, ବନ୍ଧନ-ମୋଚନକାରୀ, ଜ୍ଞାନାଲୋକିତ ବୁଦ୍ଧବାଣୀ । ଜାତିର କୁଣ୍ଠିତ, ସଂକୀର୍ଣ୍ଣ ଗୋଷ୍ଠୀସବୁ ଭାଙ୍ଗ, ପୁରୋହିତକୁ ସମାଜରୁ ସମୂଳେ ବିଦାୟଦିଅ, ନିଜେଇ ନିଜର ପୁରୋହିତ ହୁଅ, ନିଜର ଶକ୍ତିରେ ବିଶ୍ୱାସକର ଓ କାଠାଥରର ଉପାସନା ପରିତ୍ୟାଗକର । ସେହିହିଁ ତମର ଏକମାତ୍ର କଲ୍ୟାଣମୟ ପନ୍ଥା । ବାପୁଜୀଙ୍କ ଅହିଂସା ନୀତିରେ ଯେଉଁ ରାଷ୍ଟ୍ରିକ ସ୍ୱାଧୀନତା ଲାଭ କରାଗଲା ବଳିରକ୍ତ-ପିଚ୍ଛିଳ, ଜାତି ବିଦ୍ୱେଷ-ଜର୍ଜରିତ ବ୍ରାହ୍ମଣ୍ୟ ଧର୍ମ ସେ ସ୍ୱାଧୀନତାକୁ ରଖି ନ ପାରେ । ତା'ର ଏକମାତ୍ର ଉପଯୁକ୍ତ ଆଧାର ହେବ ବୁଦ୍ଧବାଣୀ ।

**କାହିଁକି ଏ ନାଟକ ଲେଖିଲି :**

ନିଜ ମନର କ୍ଷୁଧା ମେଣ୍ଟାଇବା ପାଇଁ ମୁଁ ମଝିରେ ମଝିରେ ବିବିଧ ଧର୍ମଶାସ୍ତ୍ର ଆଲୋଚନା କରିଥାଏ । ଏ ସମସ୍ତଂକ ଭିତରେ ବୁଦ୍ଧ ଓ ତାଂକର ବାଣୀ ମୋ ଚିତ୍ତକୁ ଅଧିକ ଅଭିଭୂତ କରିବାରୁ ତାଙ୍କର ଜୀବନ ଓ ତତ୍ତ୍ୱ ଅଧିକ ଆଲୋଚନା କଲି । ସାର୍ ଏଡଉଇନ୍ ଆର୍ଣ୍ଣଲଡ୍ଂକ 'ଲାଇଟ ଅବ୍ ଏସିଆ' ନାମକ ପ୍ରସିଦ୍ଧ ଇଂରେଜି କାବ୍ୟ ବୁଦ୍ଧବାଣୀ ପଶ୍ଚିମରେ ପ୍ରଚାରିତ ହେବାରେ ବହୁ ସାହାଯ୍ୟ କରିଛି । ଜର୍ମାନ୍ ଓ ଇଂରେଜି ପଣ୍ଡିତମାନଂକ ଲିଖିତ ବୁଦ୍ଧଙ୍କ ଜୀବନୀ ଓ ବୌଦ୍ଧଧର୍ମର ଏତେ ସୁନ୍ଦର ବିସ୍ତୃତ ଆଲୋଚନା ଅଛି ଯେ, ସେସବୁ ପଢ଼ି ପଢ଼ି କ୍ଳାନ୍ତିହିଁ ଆସିବ ନାହିଁ । ଅତି ପୁରାତନ ପାଲି ଓ ସଂସ୍କୃତ ଗ୍ରନ୍ଥ ଆଲୋଚନା କରି ଆମରି ମଣିମାଣିକ୍ୟ ପଶ୍ଚିମର ଜ୍ଞାନସାଧକମାନେ ଆମକୁ ଯେପରି ଦେଖାଇଅଛନ୍ତି ତାହା ଦେଖି ଲଜ୍ଜା ବି ଯେପରି ଆସେ, ସେଇପରି ଆସେ ବିସ୍ମୟ । ଏସବୁ ପଢ଼ି ପଢ଼ି ମୋର ପ୍ରଥମେ ଇଚ୍ଛା ହେଲା ଯେ, ମୁଁ ଓଡ଼ିଆରେ ବୁଦ୍ଧଙ୍କର ଗୋଟିଏ ବିସ୍ତୃତ ଜୀବନୀ ଲେଖେଁ । ତା' ପରେ ଦେଖିଲି ଯେ ଅନ୍ୟ ଭାଷାରେ ବୁଦ୍ଧଙ୍କର ଜୀବନୀ ଗଦ୍ୟରେ ଲେଖାହୋଇଛି, କାବ୍ୟ ବି ହୋଇଛି, କିନ୍ତୁ ନାଟକୀକୃତ ହେବାର ଜଣାଯାଉନି । ଓଡ଼ିଶାରେ ତା' ହେଲେ ମୁଁ ବୁଦ୍ଧଜୀବନୀକୁ ନାଟକ ଆକାରରେହିଁ ପ୍ରକାଶକରେଁ ।

ଏ ନାଟକ ସେଇ ବାସନାର ଫଳ ମାତ୍ର । ଏଇ ନାଟକ ପାଠକରି ବା ଏହାର ଅଭିନୟ ଦେଖି ପାଠକ ଓ ଦର୍ଶକ ବୁଦ୍ଧବାଣୀ ପ୍ରତି ଆକୃଷ୍ଟ ହେଲେ ମୁଁ ନିଜକୁ କୃତକୃତ୍ୟ ମନେକରିବି ।

ସମ୍ବଲପୁର — ମାୟାଧର ମାନସିଂହ

ଗଣେଶ ଚତୁର୍ଥୀ

ତା ୪-୯-୧୯୫୧

## ପ୍ରସ୍ତାବନା*

[ପଶ୍ଚାତ୍‌ପଟରେ ବରଫାବୃତ ହିମାଳୟର ଅଭ୍ରଭେଦୀ ଶିଖରମାଳା ଦେଖାଯାଉଛି । ତା'ର ନିମ୍ନକୁ ଶୀତ-କଟିବନ୍ଧର ଗାଢ଼ ସବୁଜ ଓ ସୂଚ୍ୟଗ୍ରପତ୍ର-ବୃକ୍ଷାବଳିମଣ୍ଡିତ ଅଧିତ୍ୟକା । ଏଇ ଅଧିତ୍ୟକାର ଦେବଦାରୁ କୁଞ୍ଜରେ ଶିବଗୌରୀଙ୍କର ନୃତ୍ୟର ଆୟୋଜନ । ଗୋଟିଏ ସ୍ୱର୍ଣ୍ଣବେଦୀ ଉପରେ ନୃତ୍ୟୋନ୍ମୁଖ ଶିବ ଓ ଗୌରୀ ଦଣ୍ଡାୟମାନ । ବେଦୀର ଅପରପାର୍ଶ୍ୱରେ ବହୁ ସ୍ୱର୍ଗବାସୀ ଚିତ୍ରପଟରେ କ୍ରମକ୍ଷୀଣୀଭୂତ ହୋଇ ନୃତ୍ୟୋତ୍ସୁକ ଭାବରେ ଚିତ୍ରିତ ଭାବରେ ଦେଖାଯାଉଛନ୍ତି । ବେଦୀର ଏପଟେ କେବଳ ବିଷ୍ଣୁ ଓ ବ୍ରହ୍ମା ଦ୍ରଷ୍ଟାରୂପେ ଅବତୀର୍ଣ୍ଣ । ସେମାନେ ନିଜ ନିଜ ଆସନରେ ଉପବିଷ୍ଟ ।

ପଟ ଉତ୍ତୋଳିତ ହେଲା ପରେ ଧ୍ରୁପଦ ତାଳରେ ମୃଦଙ୍ଗ ଓ ଘଣ୍ଟ-ଘଣ୍ଟାର ଗମ୍ଭୀର ସଙ୍ଗୀତ ଆରମ୍ଭହେଲା । ପ୍ରଥମ ତାଳ ପରେ କେବଳ ତାରଯନ୍ତ୍ର ସାହାଯ୍ୟରେ ନୃତ୍ୟଗୀତର ଆରମ୍ଭ । ଶିବ ଓ ଗୌରୀଙ୍କର ଲାସ୍ୟତାଣ୍ଡବ ନୃତ୍ୟର ପରିପୂରକ ଭାବରେ ଦୁଇଟି ଅଶରୀରୀ କଣ୍ଠ ରଙ୍ଗମଞ୍ଚର ଦୁଇ ଦିଗରୁ ଗାନ ଗାଇଲେ ।]

(ଗାନ)

ନଟରାଜ, ଚମକେ ନାଚି ଯା,
ଘେଣ୍ଟି ନୃତ୍ୟଚପଳ ସଖୀ ଗିରିଜା । (ଘୋଷା) ।
ବାରିଦ-ମୁକୁଟେ ତବ ଚନ୍ଦ୍ରିକା ହସେ ଯେ
ବିଜୁଳି ଚମକେ କର-କେୟୂରେ,
ହିମଗିରି ଟଳମଳ ତାଣ୍ଡବ ପରଶେ,
ନବ ନଟ ଜାହ୍ନବୀ ଢେଉରେ ।୧।
ବିକାଶ-ବିନାଶ-ଲୀଳା ଦିଶେ ଦିଶେ ଛୁଟେରେ
ଜଳିଉଠେ କୋଟି ଶଶୀ ସୂର୍ଯ୍ୟ,
ତୃତୀୟ ନୟନ ଫୁଟେ ଯୋଗୀଜନ ଚିତ୍ତେ
ନାରୀ-ମୁଖେ ନବୀନ ମାଧୁର୍ଯ୍ୟ ।୨।

---

* ବୈଦିକ-ବ୍ରାହ୍ମଣ୍ୟ ସଂସ୍କୃତିରୁ ଯେ ବୁଦ୍ଧ-ତତ୍ତ୍ୱର ଉଦ୍ଭବ, ତାହାର ପ୍ରତୀକରୂପେ ଏହି ପ୍ରସ୍ତାବନା ପରିବେଷିତ । ବୁଦ୍ଧ, ଜନତାକୁ ଉପଦେଶ ଦେଲାବେଳେ କଥାଛଳରେ ବ୍ରାହ୍ମଣ୍ୟ ଦେବ-ଦେବୀଙ୍କର ନାମୋଚ୍ଚାରଣ ବେଳେ ବେଳେ କରୁଥିଲେ ।

ଗୌରୀ କବରୀ ଫୁଲ ତାରାରୂପେ ଖସେ ରେ,
ହୁଅନ୍ତି ପ୍ରଣୟୀ ଘନ ନିକଟ,
ମରଣ ଉଭେଇ ଯାଏ ଭୟେ, ମୃତ୍ୟୁଞ୍ଜୟ,
ଜୀବନ ଲଭଇ ନବ ପ୍ରକଟ ।୩।

(ଗୀତ ଗାନହେଉଥିବା ଓ ଶଙ୍କର-ଗୌରୀ ନୃତ୍ୟ କରୁଥିବା ଭିତରେ ଅଲକ୍ଷିତ ଭାବରେ ପୃଥିବୀ-ଦେବୀ ରଙ୍ଗମଞ୍ଚରେ ପ୍ରବେଶ କରି ଗୋଟିଏ କଣରେ ମୁଖପୋତି ଠିଆରହିଲେ । ପୃଥିବୀଙ୍କର ଅଙ୍ଗ ସବୁଜବସ୍ତ୍ରାବୃତ ଓ ମସ୍ତକରେ ବରଫାବୃତ ଶିଖରୀର ପ୍ରତୀକ ସ୍ୱରୂପ ରଜତ-ମୁକୁଟ । ସେ କିଛିକ୍ଷଣ ଠିଆହେବା ପରେ ହଠାତ୍ ଶଙ୍କର ନୃତ୍ୟ ବନ୍ଦ କରିଦେଲେ । ସଭାସ୍ଥ ସମସ୍ତେ ବିସ୍ମିତହୋଇ ଶଙ୍କରଙ୍କଆଡ଼କୁ ଓ ପରସ୍ପରକୁ ବିସ୍ମିତ ଭାବରେ ଚାହିଁ ରହିଲେ । ତା' ପରେ .....)

ବିଷ୍ଣୁ ଓ ବ୍ରହ୍ମା— କି ଶଙ୍କର, ହଠାତ୍ ନୃତ୍ୟ ବନ୍ଦକରିଦେଲ ଯେ ! ଘଟଣା କ'ଣ ?

ବିଷ୍ଣୁ— କଥା କ'ଣ ଗୌରୀ ?

ଗୌରୀ— ଜାଣେନା । ତାଙ୍କୁଇ ପଚାର ! ସେ ବନ୍ଦହେବାରୁ ମୁଁ ବନ୍ଦହେଲି ।

ଶଙ୍କର— ଉଁ—ଏଠାରେ ଦେବତାମାନଙ୍କ ଛଡ଼ା ଆଉ କେ...ହି—(ଚାରିଆଡ଼କୁ ଚାହିଁ) ମୋର ହଠାତ୍ ରସଭଙ୍ଗ ହେଲା ଯେପରି ।

ଅନ୍ୟ ସମସ୍ତେ— ନାହିଁତ ! କାହିଁ ? କିଏ ?

(ପୃଥିବୀ ହଠାତ୍ ଲୁକ୍କାୟିତ ଅବସ୍ଥାରୁ ବାହାରି ଦେବସଭାକୁ ଆସିଲେ ଓ ପ୍ରଣତି କଲେ)

ପୃଥିବୀ— ମୁଁଇ ମାନବୀ ଆସିଛି ଏ ଦେବସଭାକୁ ।

(ଗୌରୀ ଓ ଶଙ୍କର ଓହ୍ଲାଇ ଆସିଲେ)

ଗୌରୀ— ଧରିତ୍ରୀ ଦେବି, ଆସ, ଆସ, ଆସନ ଗ୍ରହଣକର !

ପୃଥିବୀ— ମୋର ବସିବାର ବେଳ କାହିଁ ମା' ? ମୁଁ ଯେ ଚିରଦୁଃଖିନୀ !

ଶଙ୍କର— ତୁମର ପୁଣି କି ଦୁଃଖ, ଧରିତ୍ରି ?

ପୃଥବୀ— ଦିନେ ମତେ ରକ୍ଷା କରିବାଲାଗି ତମେ ଶଙ୍କର, ବିଷ ପାନ କରିଥିଲ । ଆଜି ତମରି ପାଖକୁ ଆସିଛି ଆଉ ଏକ ବିଷର ନିରାକରଣପାଇଁ ।

ବ୍ରହ୍ମା—କି ବିଷର କଥା କହୁଛ ଧରିତ୍ରି ? ଶିବ ତ ତମକୁ ଚିରକାଳଲାଗି ଭୟମୁକ୍ତ କରି ଦେଇଛନ୍ତି ।

ପୃଥିବୀ—ଆପଣ କେବଳ ଗଢ଼ି ଗଢ଼ି ବୁଢ଼ାହେଲେ । କୋଟି କୋଟି ଯୁଗ ତଳେ ଦିନେ କ'ଣ ଗଢ଼ିଥିଲେ ସେ କଥା ଆଉ ଆପଣଙ୍କର ମନରେ ଅଛି କି ? ଆପଣଙ୍କର ସ୍ମରଣ ଅଛି କି, ମୋ ଘରେ ମନୁଷ୍ୟ ନାମକ ଯେଉଁ ଜୀବ ସୃଷ୍ଟି କରିଥିଲେ, ସେ ଆଜି କିପରି ଅଛି ? କାହିଁକି ବା ତାକୁ ଆପଣ ସୃଷ୍ଟି କଲେ, କହିବେ କି ?

ବିଷ୍ଣୁ– ଦେଖ ଧରିତ୍ରି, ମୁଁଇ ବ୍ରହ୍ମାଙ୍କୁ କୁହାଇ ତମ ଗର୍ଭରେ ମନୁଷ୍ୟକୁ ସୃଷ୍ଟି କରାଇଛି । ଆମ୍ଭେମାନେ ଏପରି ଏକ ପ୍ରାଣୀ ଚାହିଲୁ, ଯେ କି ଜୀବ ଓ ଦେବର ବ୍ୟବଧାନକୁ ଦୂରୀଭୂତ କରିବ । ମନୁଷ୍ୟ ସେହି ପ୍ରାଣୀ, ସେ ଜୀବ ଓ ଦେବର ମିଳନ କ୍ଷେତ୍ର । ମନୁଷ୍ୟକୁ ପାଇ ତମେ ସୁଖୀ ନୁହଁ ଧରିତ୍ରି ?

ପୃଥିବୀ– ସହସ୍ର ସହସ୍ର ପଶୁ ଥିବା ସ୍ଥଳେ ତମେ କେବଳ ଆଉ ଏକ ଅଧିକା ପଶୁ ଛାଡ଼ିଛ ଭଗବାନ; ମନୁଷ୍ୟକୁ ସୃଷ୍ଟି କରି । ତା'ରି ଜ୍ୱାଳାରେ ମୋର ଜୀବସଂସାର ଓ ବୃକ୍ଷସଂସାର ପ୍ରାୟ ଧ୍ୱଂସ ହେବା ଉପରେ । ପଶୁଠାରୁ ସେ ଚତୁର, ତେଣୁ ସେହି ପରିମାଣରେ ସେ ଅଧିକତର ପଶୁ । ଅନ୍ୟକୁ ଧ୍ୱଂସ କରି ତା'ର ଶାନ୍ତି ନାହିଁ, ସେ ଏବେ ନିଜେ ନିଜକୁ ଧ୍ୱଂସ କରୁଛି । ଏହି ଧ୍ୱଂସ ଓ ହିଂସାରେ ଅଗ୍ରଣୀ ହେଉଛନ୍ତି ପୁରୋହିତର ଦଳ, ଯେଉଁମାନେ ପ୍ରଚାର କରୁଛନ୍ତି ଯେ ସେମାନେ ବିଧାତାର–ଅର୍ଥାତ୍ ତମରି ପ୍ରତିନିଧି, ତମରି ଆଜ୍ଞାବାହକ ଓ ତମରି ଦୂତ । ସେଇମାନଙ୍କ ପ୍ରରୋଚନାରେ, ମୃତ୍ୟୁ ପରେ ଦେବଭୂମିରେ ବାସକରିବା ଆଶାରେ କୋଟି କୋଟି ନିରୀହ ପଶୁ ପ୍ରତ୍ୟହ ଆପଣମାନଙ୍କ ଉଦ୍ଦେଶ୍ୟରେ ହତ୍ୟା ହେଉଛନ୍ତି, ସହସ୍ର ସହସ୍ର ନିରୀହ ନରନାରୀ ଅର୍ଥହୀନ କପଟ କର୍ମକାଣ୍ଡରେ ମାତି ପାରସ୍ପରିକ ଘୃଣା, ହିଂସା, ବିଦ୍ୱେଷରେ ରୁଗ୍ଣ, ବିକଳ ଜୀବନ ଯାପନ କରୁଛନ୍ତି । ସେହି ନିରୀହ ଜୀବ-ସଂଘର ବିକଳ ଚିତ୍କାର, କର୍ମକାଣ୍ଡ ନିପୀଡ଼ିତ ଉଦ୍‌ଭ୍ରାନ୍ତ ମାନବର ମାନସିକ ଯନ୍ତ୍ରଣା ଆପଣମାନଙ୍କ କର୍ଣ୍ଣରେ କେବେ ହେଲେ କ'ଣ ବାଜିନାହିଁ ?

ବ୍ରହ୍ମା–ସତ୍ୟ କହିଲେ ଧରିତ୍ରି, ତମ-ଘର ମୋ ସଂସାରଠାରୁ ଏତେ ଦୂରରେ ରହିଲାଣି ଯେ, ତମ ଗୃହସ୍ଥଳୀର ଛୋଟକାଟ କଥା ମୋ କାନକୁ ଆସି ପାରୁନି । ତେବେ ବିଷ୍ଣୁ ତ ଏସବୁ ବୁଝିବାର କଥା–କି ବିଷ୍ଣୁ ?

ବିଷ୍ଣୁ–ଧରିତ୍ରୀ, ଦୁଃଖ ଓ ମୃତ୍ୟୁ ଗୋଟିଏ ପାଖ ସିନା । ଆରପାଖେ ଯେଉଁ ସୁଖ, ଆର ପାଖେ ଯେଉଁ ଜୀବନ, ମୁଁ ତା'ରି ଖବରହିଁ ରଖେ । ଲୀଳାର ସାମାନ୍ୟ ଅଂଶ ସିନା ତମେ ଦେଖିପାରୁଛ; ମୁଁଇ କେବଳ ସମଗ୍ର ଦେଖୁଛି । ସେ ସମଗ୍ରତାରେ ଦୁଃଖ ନାହିଁ ବା ସୁଖ ନାହିଁ, ତାହା କେବଳ ଛାୟାଲୋକର ଶବଳିତ କ୍ରୀଡ଼ା ।

ପୃଥିବୀ–କିନ୍ତୁ ମତେ ଜୀବମାନବର ଜନନୀ ଯଦି କଲ, ତେବେ ମତେଇ ସ୍ୱୟଂ-ସଂପୂର୍ଣ୍ଣ କରୁନା କାହିଁକି ? ମୋ ପିଲେ ସବୁବେଳେ ତମଆଡ଼କୁ ଅନେଇ ରହିବେ, ତମକୁ ହାତ ଟେକିବେ, ତମକୁ ସ୍ତୁତି କରିବେ କାହିଁକି ? ଜନନୀତ୍ୱର ଏ କି ବିକଟ ପରିହାସ !

ବିଷ୍ଣୁ– ଧରିତ୍ରି, ତମେ କ'ଣ ସେ କାଳର କଥା ଭୁଲିଯାଉଛ ? ତମେ କହିଥିଲ ପରା, ତମକୁ ସ୍ୱର୍ଗର ସ୍ଥିର ଜୀବନ ଆଉ ଭଲଲାଗୁନି, ତମେ ଚାହିଁଲ ସୃଷ୍ଟିର ପୁନରାଭିନୟ କରିବାକୁ ? ସେହି ଅଭିନୟ ଯେ ଚାଲିଛି । ସେ ଅଭିନୟର ମୂଳମନ୍ତ୍ର ହେଉଛି 'ଅଭିଜ୍ଞତା' । ଭୁଲ, ଭ୍ରାନ୍ତି ମଧ୍ୟଦେଇ ସତ୍ୟ ଓ ଜ୍ଞାନର ଆବିଷ୍କାର, ପାର୍ଥିବ ଜୀବନର

ପନ୍ଥା, ଲକ୍ଷ୍ୟ ଓ ସୁଖ । ତମେ ଧରିତ୍ରି, ସମଗ୍ର ବିଶ୍ୱରେ ପରମଭାଗ୍ୟବତୀ । କେଉଁଠି କେବଳ ଆଲୋକ, କେଉଁଠି କେବଳ ଅଂଧକାର । ତମର ଗୃହ ଆଲୋକ, ଅଂଧକାର, ସତ୍ୟ-ଭ୍ରାନ୍ତି, ପ୍ରେମ-ବିରହ, କରୁଣା-ନିଷ୍ଠୁରତା ଓ ଉଷ୍ମ-ଶୀତଳର ବିଚିତ୍ର ସମାବେଶରେ ଉପଭୋଗ୍ୟ । ତମ ଗୃହର ଏଇ ବୈଚିତ୍ର୍ୟ ଭୋଗ କରିବାପାଇଁ ଦେବତାମାନେ ତମ ଗର୍ଭରେ ବାରମ୍ବାର ଜନ୍ମଗ୍ରହଣକରନ୍ତି ।

ପୃଥିବୀ– କିନ୍ତୁ ଭ୍ରାନ୍ତିର ଅଂଧକାରରେ ମୋ ଗୃହ ବର୍ତ୍ତମାନ ବିଭୀଷିକାମୟ । ଜ୍ଞାନ କାହିଁ ? ସତ୍ୟ କାହିଁ ? ମୋର ଆଜି ଏକାନ୍ତ ପ୍ରାର୍ଥନା, ମୋ ଘରେ ଶୀଘ୍ର ଜ୍ଞାନ-ପ୍ରଦୀପର ଆୟୋଜନ କର ।

ବିଷ୍ଣୁ– ତା' ଆମେ କରିବୁ । ଶଂକର, ତମେ ଏ ଭାର ନେବ କି ? ବ୍ରହ୍ମା ଓ ମୁଁ ବର୍ତ୍ତମାନ ମଂଗଳ ଗ୍ରହରେ ଏକ ନୂତନ ପରୀକ୍ଷା ନେଇ ବ୍ୟସ୍ତ ପରା ।

ଶଂକର–ତେବେ ଆମକୁ ବର୍ତ୍ତମାନ ଏପରି ଏକ ମହାତ୍ମାଙ୍କୁ ପ୍ରେରଣ କରିବାକୁ ହେବ, ଯେ କି ମନୁଷ୍ୟଙ୍କୁ କେଉଁଦେ ଦେଖିନଥିବା ଦେବଦେବୀ, ଈଶ୍ୱର ବା ସ୍ୱର୍ଗଭୂମି ଉପରେ ବିଶ୍ୱାସ ନ ରଖି କେବଳ ନିଜର ଆତ୍ମସ୍ଥ ମହତ୍ତ୍ୱକୁ ବିକଶିତ କରିବାକୁ ଶିଖାଇବେ ଏବଂ ଯେ ଧର୍ମ ନାମରେ ଜୀବହତ୍ୟା, ମିଥ୍ୟାଚାର, ପାପାଚାର ଓ ବିଚାରହୀନ ଅନ୍ଧ କର୍ମକାଣ୍ଡ ବନ୍ଦକରିବେ । ଏକ କଥାରେ, ଯିଏ ଈଶ୍ୱର ବା ଦେବତାର ସ୍ତୁତି ନ କରି ମଧ କେବଳ ଆତ୍ମ-ବିକାଶ ଫଳରେ ହେବେ ଦେବୋପମ ଓ ଈଶ୍ୱରୋପମ ।

ଗୌରୀ–ଧରିତ୍ରି, ତମେ ଏଇପରି ଏକ ପୁତ୍ର ଚାହ ତ ?

ପୃଥିବୀ– ପ୍ରଭୁ ଶଂକର, ଏପରି ଏକ ପୁତ୍ର ପାଇବାର କଳ୍ପନାରେହିଁ ମୋର ଶରୀର ରୋମାଞ୍ଚିତ ହୋଇଉଠୁଛି । ସେହି ମହୀୟାନ୍ ମାନବ ଶୀଘ୍ର ମୋର ଘର ଆଲୋକିତ କରନ୍ତୁ, ଏହାହିଁ ମୋର ପ୍ରାର୍ଥନା ।

ଶଙ୍କର– ଆଚ୍ଛା, ତା'ର ବ୍ୟବସ୍ଥା ହେବ, ଧରିତ୍ରି । ଏଇ ହିମାଳୟରୁ ଜାହ୍ନବୀର ଅଜସ୍ର ଧାରା ତଳକୁ ଓହ୍ଲାଇ ତମର ମାଟିକି ପବିତ୍ର ଓ ଶସ୍ୟଶ୍ୟାମଳ କଲାପରି, ଏହି ନୂତନ ମହାପୁରୁଷଙ୍କ ଜୀବନ ଓ ସାଧନା ହିମାଳୟରୁ ଉଦ୍‌ଗତ ହୋଇ ତମର ସମଗ୍ର ଶରୀରକୁ ଜ୍ଞାନାଲୋକରେ ଆଲୋକିତ ଓ ମୈତ୍ରୀରସରେ ଉଜ୍ଜୀବିତ କରିବ । ବୈଶାଖର ରୁଦ୍ରତା ପରି ହେବ ତାଙ୍କର ପ୍ରଜ୍ଞାର ତେଜ, ଯାହା ସକଳ ଅବିଚାର, ମୂର୍ଖତା ଓ ଅଜ୍ଞତାକୁ ଜାଳିପକାଇବ, ଅଥଚ ଫାଲ୍‌ଗୁନର ପ୍ରଥମ ମଳୟପରି ହେବ ତାଙ୍କର କରୁଣା, ଯା'ର ସ୍ପର୍ଶରେ କୋଟି କୋଟି ଦଳିତ, ପତିତ, ଅବହେଳିତର ପ୍ରାଣରେ ନବ-ଜୀବନ ଅଙ୍କୁରି ଉଠିବ ।

ପୃଥିବୀ–(ନତଜାନୁ ହୋଇ) ହେ ଶଙ୍କର, ତୁମର ବଚନହିଁ ବିଧିର ବିଧାନ ! ତୁମର ଏଇ ପରମ ଆଶୀର୍ବାଦରେ ମୁଁ ଅଭିଭୂତ । ଏପରି ସନ୍ତାନର ଜନନୀ କରି ମତେ ପ୍ରକୃତରେ ହିରଣ୍ୟଗର୍ଭା କର । ମୋ ଗର୍ଭ-ଧାରଣ ଧନ୍ୟହେଉ ।

ଗୌରୀ–(ପୃଥିବୀକୁ ଉଠାଇ) ଉଠ, ଉଠ । ସେହି ମହାମାନବର ଗର୍ଭଧାରଣୀ ତମେ, ଆମ ସମସ୍ତଙ୍କର ଯେ ନମସ୍ୟା । ଉଠ, ଉଠ ! (ପୃଥିବୀ ଉଠିବା)

(ନେପଥ୍ୟେ)

ବୁଦ୍ଧଜନନୀଙ୍କର ଜୟ ! ବୁଦ୍ଧଜନନୀଙ୍କର ଜୟ !

(ଗାନ)

ଉଷା ଆସେ, ନିଶା ଶେଷେ ପ୍ରଦୀପ ହାତେ
ନବୀନ ଜୀବନ ଝରେ ପ୍ରଭାତ ବାତେ ।
ପକ୍ଷୀ ଗାଏ ନଭ-ତଳେ
ଫୁଲ ଫୁଟେ ମାଟି ପରେ
ରବି-ରଥ ଏଇ ଆସେ ସରଗ ବାଟେ ।

(ଧୀରେ ଧୀରେ ପଟପତନ)

## [ ପ୍ରଥମ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ଏକ ପାହାଡ଼ତଳି । ଦୂରରେ ହାକାର ନାଗରା ବାଜୁଛି । ପରେ ପରେ ଚାରିଜଣ ବଣୁଆ ଶିକାରୀ ଉପସ୍ଥିତ ହେଲେ । ସେମାନେ ଗୀତ ଗାଇ ନାଚିଲେ । ଦୂରର ନାଗରା ତାଙ୍କ ନୃତ୍ୟକୁ ତାଳ ଯୋଗାଉଥାଏ ।]

(ଗୀତ)

| | | |
|---|---|---|
| ଧର ଧର | ମାର ମାର | ହାଣ୍, ହାଣରେ |
| ଉହାଡ଼ରୁ, | ବୁଦାତଳୁ, | ଛାଡ଼୍, ବାଣରେ |
| ଧର ଢାଲ, | ତଲୁଆର, (ଧର୍) | କାତି କଟୁରି |
| ଧର୍ ଲାଠୀ, | ଟାଣ-ମୁଠୀ, (ଧର୍) | ଧାରୁଆ ଛୁରି |
| | ଚାଲ୍, ଚାଲ୍‌ରେ | |
| | ବାଘ ଛାଲ୍‌ରେ ।୧। | |
| ଘୋଡ଼ା ଚଢ଼ି, | ଛାଡ଼ି ରଡ଼ି, | ରଜାର ପିଲା |
| ପାରିଧିରେ | ଆସିବାରେ | ନକର ଢିଲା; |
| ବାର୍‌ହା ମାରି | ତରକାରି | କରି ଖାଇବା |

ଭୋଜି ଭାତ, ଗୀତ ନାଟ, ମଦ ପିଇବା ।
ଆଣ, ଆଣରେ
ଭାଲୀ, ବାଣରେ ।୨।

(ହଠାତ୍ ସର୍ଦ୍ଦାରର ପ୍ରବେଶ । ସେ 'ଏ-ଏ' ବୋଲି କିଛିକ୍ଷଣ ଚିତ୍କାର କଲେ ମଧ୍ୟ ନୃତ୍ୟ ଚାଲିଥାଏ । ତା' ପରେ ସେ ଜୋର୍‌ରେ ଗୋଟି ଗୋଟି କରି ଭିଡ଼ି ଠିଆକରେଇଲା ।)

ସର୍ଦ୍ଦାର—ହଇରେ ଏ, ବାର୍‌ହା ନାଇ ମାରନୁ ତ ଏତିକି ନାଚ, ଆଉ ମାରି ଆନ୍‌ଲେ ମାଟିଥି ନାଇଁ ଟାଲିକରି ମେଘେ ଉଡ଼ିବ କାଏଁ । ରଜାର ବେଟା ତ ସେ ବାଟେ ଜଙ୍ଗଲେ ଜଙ୍ଗଲେ ଭାଗ୍‌ଲାନ୍ । ଅଉର୍ ତୁହରମାନ୍‌ନେ କାର୍ ଲାଗି ନାଚି ମରୁଛ ?

ଶିକାରୀଦଳ—ସତେ, ସତେ, ଚାଲରେ ଚାଲରେ, ଆସରେ ଆସରେ ।

(ସେମାନଙ୍କର ଦ୍ରୁତ ଅନ୍ତର୍ଦ୍ଧାନ । ବିପରୀତ ଦିଗରୁ ଅତ୍ୟନ୍ତ ବ୍ୟସ୍ତତାରେ ତରୁଣ ଯୁବରାଜ ସିଦ୍ଧାର୍ଥ ରଙ୍ଗମଞ୍ଚ ଉପରକୁ ଦୌଡ଼ି ଦୌଡ଼ି ଆସିବାର ଦେଖାଗଲା । ପଛରେ ଦାଦିପୁଅ ଭାଇ ତରୁଣ, ଆନନ୍ଦ । ଉଭୟଙ୍କର ପାରିଧି ବେଶ ।)

ସିଦ୍ଧାର୍ଥ—(ଉଚ୍ଚସ୍ୱରରେ ଓ ଦୂରକୁ ଲକ୍ଷ୍ୟକରି) ମାର ନାହିଁ ଦେବଦତ୍ତ...ଏପରି କଦର୍ଯ୍ୟ ଭାବରେ ମୂକ ଜୀବକୁ ହତ୍ୟା କର ନାହିଁ । (ବୁଲିପଡ଼ି) ଓଃ କି ନିଷ୍ଠୁରତା......କି ଅମାନୁଷିକ......

(କହି କହି ଉଭୟଙ୍କର ପ୍ରସ୍ଥାନ । ଦୂରରେ ମୁମୂର୍ଷ ବରାହର କରୁଣ ଚିତ୍କାର ଓ ଛଟପଟ ଧ୍ୱନି । କିଛି ସମୟ ନୀରବତା ପରେ ସିଦ୍ଧାର୍ଥ ଓ ଆନନ୍ଦଙ୍କର ପୁନଃ ପ୍ରବେଶ । ସିଦ୍ଧାର୍ଥଙ୍କ ପାଦ ଠିକ୍ ପଡ଼ୁନି । ବିଷଣ୍ଣତାର ଚିହ୍ନସ୍ୱରୂପ ସେ ମଝିରେ ମଝିରେ ମୁଣ୍ଡରେ ହାତ ଦେଉଛନ୍ତି ।)

ଆନନ୍ଦ— ଯୁବରାଜ, ଏଇଠି ଟିକିଏ ବସିଯାଅ, ଟିକିଏ ଥକ୍‌କା ମାରିନିଅ ।

ସିଦ୍ଧାର୍ଥ— (ବସୁ ବସୁ) ଓଃ, ଯେତେ କହିଲି ଶୁଣିଲାନି ଦେବଦତ୍ତ । ଜନନୀ ବରାହର ସେ ବିକଳ ଆର୍ତ୍ତନାଦ, ଗଭୀର ଯନ୍ତ୍ରଣାରେ ଭୂଇଁରେ ତା'ର ସେ ଅସ୍ଥିର ଗଡ଼ାଗଡ଼ି, ତା'ର ମୂକ ଚକ୍ଷୁରେ ସେହି କରୁଣ ଯନ୍ତ୍ରଣାମୟ ଚାହାଣି,:....ଓଃ ସେ ସ୍ମୃତି ମୁଁ କିପରି ଭୁଲିବି ଆନନ୍ଦ ? ମୋ ପ୍ରାଣରେ ଯେ ପ୍ରତି ମୁହୂର୍ତ୍ତରେ କୁନ୍ତ ଭେଦକରୁଛି । ମନୁଷ୍ୟର ଏ କି ବୀଭତ୍ସ ଆମୋଦ ! କ୍ଷତ୍ରିୟର ଏ କି ପାଶବ ବିଳାସ ! ବହୁ କାଳ ପରେ ଆଜି ବାହାର ଜଗତକୁ ଉପଭୋଗ କରିବାକୁ ରାଜ-ପ୍ରାସାଦରୁ ବାହାରିଥିଲି, ଏଇ ହେଲା ଜୀବନ ସଂଗେ ମୋର ପ୍ରଥମ ପରିଚୟ । ଅଥଚ କି ଘୃଣ୍ୟ, କି କରୁଣ, କି ମର୍ମବିଦାରକ !

ଆନନ୍ଦ—ଯୁବରାଜ, ବ୍ୟସ୍ତ ହୁଅନ୍ତୁ ନାହିଁ । ବହୁ ବେଳ ହେଲା କିଛି ଖାଇ ନାହିଁ, ପିଇ ବି ନାହିଁ । ଅନେକ ବର୍ଷ ଧରି ଶିକାରକୁ ବି ଆସି ନ ଥିଲି । ମୁଁ ଯାଏ ନିକଟର ସେହି ଝରଣାରୁ କିଛି ଜଳ ନେଇ ଆସେ, ତମେ ଏଠି ବସିଥାଅ । (ଗମନୋଦ୍ୟତ)

ସିଦ୍ଧାର୍ଥ— (ଆନନ୍ଦକୁ ବନ୍ଦକରି) ଥାଉ ଆନନ୍ଦ, ଖାଇବା ପିଇବାର କଥାହିଁ ତମେ ଉଠାନି । ମୂକ ଜୀବର ମୃତ୍ୟୁକାଳୀନ ସେହି ବୀଭତ୍ସ ବିକଳ ଦୃଶ୍ୟର ଏତେ ନିକଟରେ ଥାଇ, ମୁଁ

ମୋର ସାମାନ୍ୟ ସ୍ୱାଚ୍ଛନ୍ଦ୍ୟପାଇଁ ଏତେ ଲାଳସୀ ନୁହେଁ ଆନନ୍ଦ ! ଓଃ ଏକ ସାମାନ୍ୟ ଜୀବର ଜୀବନ ରକ୍ଷା କରିପାରିଲିନି, ମୋଦ୍ୱାରା ଆଉ କି କାମ ହୋଇପାରେ ଆନନ୍ଦ ? ଦେବଦତ୍ତ ବାର୍‌ହାଟିକି ନ ମାରି ସେହି ଶରରେ ମୋତେ ମାରିଦେଇଥିଲେ ସଂସାରର କିଛି ଅଭାବ ଘଟି ନ ଥା'ନ୍ତା ବୋଧହୁଏ ।

ଆନନ୍ଦ– (କିଂଚିତ ଅଭିଭାବକତ୍ୱ ଦେଖାଇ) ଯୁବରାଜ, ତମ ପକ୍ଷରେ ଏ ଆତ୍ମଗ୍ଲାନି ଅତ୍ୟନ୍ତ ଅସଙ୍ଗତ । ଆମର ଧର୍ମଇ ତ ଜୀବହତ୍ୟା । ତମର ଜନ୍ମପାଇଁ କେତେ ମୂକ ଜୀବର ହତ୍ୟା ହୋଇଛି ତା'ର ସଂବାଦ ତମର ପୁରାତନ ଭୃତ୍ୟ ଉପାଳୀ ଦେବ । ଆଚ୍ଛା, ଯଦି କପିଳବାସ୍ତୁ ଆଜି ପର ରାଜ୍ୟଦ୍ୱାରା ଆକ୍ରାନ୍ତ ହୁଏ, ତେବେ ତମେ କ'ଣ କରିବ କହିଲ ? ଅନ୍ୟ କଥା ଛାଡ଼ିଦିଅ, ମନୁଷ୍ୟର ବଂଚିରହିବାପାଇଁ ତ ଜୀବହତ୍ୟା ଦରକାର । ଏଇ ବଣରେ ଏକ ଜୀବ ଅନ୍ୟ ଜୀବକୁ ନ ମାରିଲେ ବଂଚିପାରିବ କି ? ଜୀବହତ୍ୟା ଯେତେବେଳେ ସୃଷ୍ଟିର ନିୟମ, ମନୁଷ୍ୟର ଜୀବହତ୍ୟା କରିବାରେ ଆପତ୍ତି କାହିଁକି ?

ସିଦ୍ଧାର୍ଥ– (ଉଠିପଡ଼ି) ଆନନ୍ଦ, ତେବେ ଦୟା ଓ କରୁଣାର ଅର୍ଥ କ'ଣ କିଛି ନାହିଁ ? ଜୀବକୁ ଦୟା କଲେ ସ୍ୱର୍ଗଲାଭ ନ ହୋଇ ଜୀବକୁ ହତ୍ୟା କଲେ, ଯନ୍ତ୍ରଣା ଦେଲେ ସ୍ୱର୍ଗଲାଭ ହେବ ? ଏ କିପରି ଧର୍ମ, ଆନନ୍ଦ ? ଏ କ'ଣ ସତ୍ୟ ପନ୍ଥା ? ମନୁଷ୍ୟ ଓ ପଶୁ କ'ଣ ତେବେ ସମାନ ?

ଆନନ୍ଦ– ସମାନ ନୁହେଁ ବୋଲି ତ ମନୁଷ୍ୟ ପଶୁକୁ ନିଜର ଖାଦ୍ୟ କରିପାରିଛି ।

ସିଦ୍ଧାର୍ଥ– ଯାହା ମନୁଷ୍ୟର ଖାଦ୍ୟ, ସେଇ କ'ଣ ଦେବତାମାନଙ୍କର ଖାଦ୍ୟ ? କିଏ କିପରି ଜାଣିଲା ଯେ ଘୋଟକ-ଛାଗଳର ରକ୍ତାକ୍ତ ମାଂସ ବ୍ୟାଘ୍ର-ଶାର୍ଦ୍ଦୂଳ ପରି ଦେବତାମାନଙ୍କର ମଧ୍ୟ ପ୍ରିୟ ଖାଦ୍ୟ ? ମାଂସଲୋଭାଶୀ ଦେବତାର ପ୍ରୀତି ସାଧନପାଇଁ ପୁରୋହିତ ନିଜକୁ ବା ଯଜ୍ଞାଗ୍ନିରେ ଦଗ୍‌ଧ କରୁନି କାହିଁକି ?

ଆନନ୍ଦ– ପୁରୋହିତଙ୍କୁ ପଚାରିବା ଆଜି ଫେରିଲେ । ପୁରୋହିତ ଏସବୁ ଶୁଣି ବିସ୍ମିତ ହେବେ– କାରଣ ଏ ପ୍ରକାର ପ୍ରଶ୍ନ କେହି ଉଠାନ୍ତିନି ।

ସିଦ୍ଧାର୍ଥ– ମୋ ମନରେ ଆହୁରି ବହୁ ପ୍ରଶ୍ନ ଉଠୁଛି, ଯାହ ଶୁଣିଲେ ବାବା ମା'ତ ବିରକ୍ତ ହେବେ । ପୁରୋହିତ ହୁଏତ ଉତ୍‌କ୍ଷିପ୍ତ ହୋଇଉଠିବେ । ଈଶ୍ୱର କ'ଣ ? ସେ କିଏ ? କିଇବା ତାଙ୍କର ଶକ୍ତି ? କିଇବା ତାଙ୍କର କର୍ମ ? ଯଦି ସେ ସର୍ବଶକ୍ତିମାନ, ଦେବଦତ୍ତ ହାତରୁ ସେ ଏଇ ମୂକ ନିରୀହ ଜୀବଟିକୁ ଏପରି କରୁଣ, କଦର୍ଯ୍ୟ, କଦର୍ଥନାମୟ ମରଣରୁ ରକ୍ଷା କରିପାରିଲେ ନାହିଁ କାହିଁକି ? ତେବେ କାହାପାଇଁ ଓ କେଉଁଥିପାଇଁ ଏ ଯାଗଯଜ୍ଞ ଓ ଦାନଦକ୍ଷିଣାର ଆଡ଼ମ୍ବର ? ଏ ସବୁ ପୁଣି କେବଳ ରାଜା, ସାମନ୍ତ, ଧନପତିଙ୍କ ପକ୍ଷରେହିଁ ସିନା ସମ୍ଭବ ? ଦରିଦ୍ରପାଇଁ ସ୍ୱର୍ଗ କାହିଁ ? ସାଧାରଣ ମନୁଷ୍ୟ ପାଇଁ ଦେବତା କାହାନ୍ତି ?

ଆନନ୍ଦ— ଯୁବରାଜ, ତମର ଏ ସବୁ ବାଜେ ବିଷୟ ନେଇ ମୁଣ୍ଡ ଘୂରେଇବାର ଦରକାର ନାହିଁ । ରାଜ୍ୟ କିପରି ସୁଶାସିତ ହେବ ତାହାହିଁ ତମର ଶିଖିବାର କଥା । ତମର ଏ ଉଦ୍ଭଟ ପ୍ରଶ୍ନ ସବୁ ଶୁଣିଲେ ବାବା ଓ ପୁରୋହିତମାନେ ଯେ ବିରକ୍ତ ହେବେ, ଏଥିରେ ସନ୍ଦେହ ନାହିଁ ।

(ସିଦ୍ଧାର୍ଥଙ୍କ ଦାଦିପୁଅ ଭାଇ, ତରୁଣ ଶାକ୍ୟ ଯୁବକ ଦେବଦତ୍ତର ଶିକାରୀ ବେଶରେ, ଏକ ହସ୍ତରେ ଶର ଝୁଲାଇ ପ୍ରବେଶ । ତାଙ୍କର ବ୍ୟକ୍ତିତ୍ୱହିଁ ଆସ୍ପର୍ଦ୍ଧାମୟ ।)

ଦେବଦତ୍ତ— ହଯୋ ସିଦ୍ଧ ଭାଇ, ତମେ ନାମମାତ୍ର ଶିକାରକୁ ଆସ କାହିଁକି ? ଖାଲି ଗ୍ରାମ ପ୍ରଜାଙ୍କଠୁ ଭୂମିଷ୍ଠ ଦଣ୍ଡବତ ପାଇବାପାଇଁ ବୋଧହୁଏ । ଏଇ କେତେବର୍ଷ ଯେ ତମେ ଆସୁ ନ ଥିଲ, ମୁଁ ଅବାଧରେ ଶିକାର କରୁଥିଲି । ତମେ ତ ଫେରେ ଆସି ପହଞ୍ଚିଲଣି ମୂର୍ତ୍ତିମନ୍ତ ବାଧାରୂପେ । ତମକୁ ସାଙ୍ଗରେ ଆଣି ଆଉ ଥରେ ହେଲେ ଯଦି ଶିକାରକୁ ଆସେ—ତୁମେ କ୍ଷତ୍ରିୟ ଜାତିର ଓ ରାଜକୁଳର ନାମ ବୁଡ଼େଇବ ଦେଖୁଛି ।

ଆନନ୍ଦ—(କିଂଚିତ୍ ଆକ୍ରୋଶରେ) କାହାକୁ କ'ଣ କହୁଚ ଦେବଦତ୍ତ ? ଯଶୋଧାରାର ବିବାହ ବେଳେ ତମେଇ ଏଇ ନିନ୍ଦା ଉଠେଇଥିଲ । ଫଳରେ ଯେଉଁ ଅସ୍ତ୍ର ଶସ୍ତ୍ରର ପରୀକ୍ଷା ହେଲା ତା'ର ଫଳାଫଳ କ'ଣ ଭୁଲିଗଲଣି ଏତେ ଶୀଘ୍ର ?

ଦେବଦତ୍ତ—ଯା' ହୋ, ଥରେ କ'ଣ ହୋଇଗଲା ଯେ ସେଇ କଥାକୁ ଗଣିକରି ବସିଥା' । ଜଗତ୍ର ଲୋକେ ସହସ୍ର ଥର ଯାହା ଦେଖୁଛନ୍ତି, ସେ ସବୁ କୁଆଡ଼େ ଉଡ଼ିଯିବ ? ହେଲା, ହେଲା ଯେ; ତମେ ବୀର ହୁଅ, ଯଶୋଧାରାକୁ ବିବାହକର; କିନ୍ତୁ ଅନ୍ୟର ଶିକାରରେ ତମର ବାଧା ଦେବାର କି ଅଧିକାର ଅଛି ? ତମେ ନିଜେ ଦୁର୍ବଳଚିତ୍ତ, ଦୁର୍ବଳଦେହ ଏବଂ ତମେ ଚାହ ଯେ ସମସ୍ତେ ତମରିପରି ହୁଅନ୍ତୁ, ନା ?

ଆନନ୍ଦ—(ଅସ୍ତ୍ର ଉତ୍ତୋଳନ କରି) ଦେଖ ଦେବଦତ୍ତ ! ଯୁବରାଜଙ୍କୁ ଭର୍ତ୍ସନା କରି ଆଉ ପଦେ କହିଛୁ ତ ଏଇ ତା'ର ଉତ୍ତର ଦେବ ।

ସିଦ୍ଧାର୍ଥ— (ଆନନ୍ଦଠାରୁ ଅସ୍ତ୍ର ଛଡ଼ାଇନେଇ) ଛି, ଆନନ୍ଦ, ମୁଁ ମୂକ ଜୀବପାଇଁ ଲଢ଼ିବାକୁ ଗଲାବେଳେ ତମେ ମୋ ଭାଇକି ମୋ ଆଗରେ ହତ୍ୟା କରି ମୋର ସନ୍ତୋଷ ବିଧାନ କରିବ ? କି ବିକଟ ପ୍ରତ୍ୟୁତ୍ତର ! (ଦେବଦତ୍ତକୁ ଦୁଇ ହାତରେ ଧରି) ଆସ ଦେବଦତ୍ତ, ଆନନ୍ଦ ବହୁବେଳ ହେଲା ନ ଖାଇବାରୁ ତା' ମୁଣ୍ଡରେ ପିତ୍ତ ଉଠିଲାଣି । ତମ ଦିହିଁକି ଭଲକରି ଖୁଆଇବାର ଭାର ଆଜି ମୋ ଉପରେ । ଆସ...

(ଦେବଦତ୍ତଙ୍କ କାଂଧରେ ହାତଦେଇ ନେପଥ୍ୟକୁ ଘେନି ଗଲାବେଳେ, ବିପରୀତ ଦିଗରୁ ବଂଶୀଧ୍ୱନି ଶୁଣି ଆନନ୍ଦ ଅଟକିଗଲେ । ଯୁବରାଜ ଫେରି ଚାହିଁଲେ—ଆନନ୍ଦଙ୍କୁ ଡାକିଲେ, 'ଆନନ୍ଦ' ।

ଆନନ୍ଦ—(ଲେଉଟାଇ) ଯୁବରାଜ, ଏଣେ ତୁମର ଜଙ୍ଗଲ ପ୍ରଜା ତୁମକୁ ତମ ସ୍ୱନକ୍ଷେତ୍ରରେ ଭେଟିବାକୁ ଆଇଲେଣି ପରା ।

(ବିପରୀତ ଦିଗରୁ ସେହି ପାର୍ବତ୍ୟ ଶିକାରୀଦଳର ପ୍ରବେଶ ଓ 'ମଣିମା', 'ମଣିମା' କହି ସାଷ୍ଟାଙ୍ଗ ପ୍ରଣତି)

ସିଦ୍ଧାର୍ଥ— ଉଠ ଉଠ । (ସମସ୍ତେ ଉଠିଲେ)

ସର୍ଦ୍ଦାର— ତୋର ପରା ଆଜି ଜନମ ଦିନ । ଆଉର୍ ହାମରମାନ୍‌ସେ ଭେଟ ନାଇ ନେଇ କରି ପଳାଇଯାଉଛୁ । ବୁଢ଼ା ରଜା ଶୁନ୍‌ଲେ ସର୍ଦ୍ଦାରକେ କାଣ ବଲ୍‌ବା ? ପଛେ ମହୁ, କାଙ୍ଗୁଲ, କଡ଼ବା ଭାରମାନ୍‌କେ ଆଉଛେ । ଅଉର୍ ତୁଇ ପଳାଇଯାଉଛୁ ?

ଆନନ୍ଦ— ନାହିଁ ସର୍ଦ୍ଦାର, ନେବୁ । ତମେ ଯୁବରାଜଙ୍କୁ ତମର ନାଚ ଟିକିଏ ଇ ଭିତରେ ଦେଖାଅ ନା ।

ସର୍ଦ୍ଦାର ଓ ଅନ୍ୟାନ୍ୟମାନେ— ହାଁ, ହାଁ, ହାମର୍ ରାଜା ଆଗେ ନାଇଁ ନାଚ୍‌ମୁତୋ କାର ଆଗେ ନାଚ୍‌ମୁ ।

(ଗୀତ ଓ ନୃତ୍ୟ)

| | | |
|---|---|---|
| ରଜାଘର | ଖଜାପିଠା | ଭୋଜି ଜଞ୍ଜାଳ |
| ଆମ ଘରେ | ପୋଡ଼ପିଠା | ଆମ୍ବୁଲ ଫାଳ; |
| ମାଇପକୁ | ମିଛ କହ | ରଜାକୁ ସତ |
| ଘରଣୀ | ନଈର ପାଣି, | ରଜାପର୍ବତ; |
| | କହ କହରେ | |
| | କାମନା ପୂରିବ ଅତି ସହଳେ । | |

(ନୃତ୍ୟ ଗୀତବେଳେ ସିଦ୍ଧାର୍ଥ ଅନ୍ୟମନସ୍କଭାବରେ ଅନ୍ୟଆଡ଼େ ଅନେଇରହିଥିଲେ ।)

(ନୃତ୍ୟ ଶେଷରେ)

ଆନନ୍ଦ— କିଓ ଯୁବରାଜ, ତମେ କଅଣ ସେଇଆଡ଼େ ଅନେଇ ରହିଚ, ଏମାନେ ଆଉ ନାଚ କରୁଥିଲେ କାହାପାଇଁ ? ହଉ, ଏମାନଙ୍କୁ ବିଦାୟ ଦିଅ, ଯିବା ।

ଯୁବରାଜ— (ଅନ୍ୟମନସ୍କତା ଭାଙ୍ଗି) ଓଃ, ନାଚ ସରିଗଲାଣି କି ? ମୋର ଖିଆଲ ନ ଥିଲା । କି ସୁନ୍ଦର ନିଷ୍କଳଙ୍କ, ସ୍ୱଚ୍ଛନ୍ଦ ଏମାନଙ୍କର ଜୀବନ, ଆନନ୍ଦ ! ଏମାନଙ୍କୁ ଦେଖିଲା ପରେ ମୋର ଆଉ ପ୍ରାସାଦରେ ବନ୍ଦୀ ହେବାକୁ ଇଚ୍ଛା ହେଉନି । ମନେହେଉଛି ଏଇ ବଣ ଜଙ୍ଗଲରେ ଏମାନଙ୍କ ସାଥିରେ ସାଧାରଣ ମନୁଷ୍ୟ ପରି ନିରାଡ଼ମ୍ବର ଜୀବନ ଯାପନ କରିବାକୁ ।

ଦେବଦତ୍ତ— ଆସୁନା, ତୁମକୁ କିଏ ବାଧା ଦେଉଛି ?

ଯୁବରାଜ— ନିଅ ସର୍ଦ୍ଦାର, ଏଇ ନିଅ ତମର ବଧେଇ !

(ବେକରୁ କାଢ଼ି ମାଳା ଅର୍ପଣ । ଶିକାରୀମାନେ ପୁଣି ନୃତ୍ୟ କରି ଓ ଗୀତ ଗାଇ ଧୀରେ ଧୀରେ ଏକ ଦିଗରେ ପ୍ରସ୍ଥାନ କରିବେ । ଅନ୍ୟ ଦିଗରେ ସିଦ୍ଧାର୍ଥ, ଆନନ୍ଦ ଓ ଦେବଦତ୍ତ ।)

## (ଦ୍ୱିତୀୟ ଦୃଶ୍ୟ)

[କପିଳବାସ୍ତୁ ରାଜପ୍ରାସାଦର ଏକ ପ୍ରାଙ୍ଗଣ । ପଟ ଉତ୍ତୋଳିତ ହେବାର ସାମାନ୍ୟ ପରେ ରାଜା ଶୁଦ୍ଧୋଦନ ଓ ତାଙ୍କ ପଛେ ପଛେ ରାଜପୁରୋହିତ ରଙ୍ଗମଞ୍ଚରେ ପ୍ରବେଶକରିବେ । ରାଜା ଶୁଦ୍ଧୋଦନ ଶୁକ୍ଳକେଶ, ଶ୍ୱେତ ରେଶମ ବସ୍ତ୍ର ପରିହିତ ଓ ସ୍ୱର୍ଣ୍ଣକୁଣ୍ଡଳ, ସ୍ୱର୍ଣ୍ଣକଙ୍କଣ ଓ ସ୍ୱର୍ଣ୍ଣମାଳା ପରିଶୋଭିତ । ପୁରୋହିତ ରକ୍ତପଟ୍ଟାମ୍ବର ପରିହିତ, ଦୀର୍ଘକେଶ ଓ ରୁଦ୍ରାକ୍ଷମାଳା ମଣ୍ଡିତ । ଶୁଦ୍ଧୋଦନ ଯଷ୍ଟି ସାହାଯ୍ୟରେ ଧୀରେ ଧୀରେ ପରିକ୍ରମା କରିବେ ।]

ପୁରୋହିତ— ଧର୍ମର ଅର୍ଥ ହେଉଛି ମହାରାଜ ଧରିରଖିବା । ଯଦି ଯୁବରାଜଙ୍କୁ ଧର୍ମରେ ରଖିବାକୁ ଚାହାନ୍ତି ତେବେ ତାଙ୍କୁ ପେର୍ ବାହାରକୁ ଛାଡ଼ିଲେ କାହିଁକି ?

ଶୁଦ୍ଧୋଦନ— ତମ ବ୍ରାହ୍ମଣମାନଙ୍କର ଧର୍ମ ସିନା ଘରର ଚାରିକାନ୍ଥ ଭିତରେ, କିନ୍ତୁ କ୍ଷତ୍ରିୟର ଧର୍ମ ଠିକ୍ ବିପରୀତ ନୁହେ କି, ପୁରୋହିତେ ?

ପୁରୋହିତ— କିନ୍ତୁ ମହାରାଜ, ଆମ ଯୁବରାଜ ଅଳ୍ପ କ୍ଷତ୍ରିୟ ବେଶି ବ୍ରାହ୍ମଣ । କ୍ଷତ୍ରିୟ ରହେ ସର୍ବଦା କର୍ମନିରତ । ସିଦ୍ଧାର୍ଥଙ୍କର ବଡ଼ କାମ ହେଲା ଯେ ଧ୍ୟାନ । ସେଇତ ହେଉଛି ଭୟର କାରଣ !

ଶୁଦ୍ଧୋଦନ— ବିବାହ ପରେ, ସେ ଭୟ କ'ଣ ଅନେକ କଟିଯାଇନିକି ପୁରୋହିତେ ?

ପୁରୋହିତ— ହଁ କଟିଛି, କଟିନି କ'ଣ—ତେବେ—

ଶୁଦ୍ଧୋଦନ— ମୁଁ ଯେ ଦିନକୁ ଦିନ ବୃଦ୍ଧ ହେଉଛି, ପୁରୋହିତେ ! ସିଦ୍ଧାର୍ଥକୁ କ'ଣ ଏଇମିତି ଘରପଶା ପଣ୍ଡିତ-ବ୍ରାହ୍ମଣ ଥିବାର ଦେଖି ଦେଖି ମରିବି ?

ପୁରୋହିତ— କେବଳ ଆପଣଙ୍କର ନୁହେଁ ମହାରାଜ, ଆମ ସମସ୍ତଙ୍କର ସ୍ୱପ୍ନ କ'ଣ ନୁହେଁ ଯେ ଯୁବରାଜ ସିଦ୍ଧାର୍ଥ ଦିଗ୍‌ବିଜୟୀ ସମ୍ରାଟ ହେଉନ୍ତୁ । ଶାକ୍ୟ ହୋଇ ନୀଚ କୋଶଳାଙ୍କର ସାମନ୍ତ ହୋଇ ରହିବା କାହାକୁ ଭଲଲାଗିବ ମହାରାଜ ?

ଶୁଦ୍ଧୋଦନ— ସେଥିପାଇଁ ତ ସ୍ଥିରକଲି ପୁରୋହିତେ, ସିଦ୍ଧାର୍ଥ କ୍ରମେ କ୍ରମେ କ୍ଷତ୍ରିୟର, ରାଜପୁତ୍ରର, ଯେପରି ଯାହା ଯାହା କରିବାର କଥା ସେହିପରି କରୁ । "ତୋର ସ୍ୱନକ୍ଷତ୍ରରେ ଶିକାର କରି ଯିବୁକି ବାପ" ବୋଲି ପଚାରିବାରୁ ସେ ତ କାଲି ବିନା ଦ୍ୱିଧାରେ ହଁକଲା । ଏ କ'ଣ ଆଶାର କଥା ନୁହେଁ ପୁରୋହିତେ ?

ପୁରୋହିତ— ହଁ ହୋଇପାରେ । ବହୁଦିନ ଘରେ ରହି ରହି ମନ ଚିଟା ଧରିଯାଇଥିଲା, ଟିକିଏ ପରିବର୍ତ୍ତନ (ବୃଦ୍ଧ ଭୃତ୍ୟ ଉପାଳୀର ପ୍ରବେଶ) ପାଇଁ ହୁଏତ—

ଶୁଦ୍ଧୋଦନ— କିରେ ଉପାଳି, ଖବର କ'ଣ ?

ଉପାଳୀ— ଯୁବରାଜହେରିକା ବେଣ୍ଟରୁ ଫେରିଲେଣି ମହାରାଜ ।

ଶୁଦ୍ଧୋଦନ— (ବିସ୍ମିତ ଭାବରେ) ଯୁବରାଜ କ'ଣ ଶିକାରରେ ଉତ୍ସାହର ସହିତ ଯୋଗ ଦେଇଥିଲେ ?

ଉପାଳୀ— ହଁ ଯୋଗଦେଇଥିଲେ ।

ଶୁଦ୍ଧୋଦନ— ବାଃ, ଏ ଯେ ଭାଗ୍ୟର କଥା । କ'ଣ କହୁଛ ପୁରୋହିତେ ?

ଉପାଳୀ— କିନ୍ତୁ ଜୀବ ମାରିନାହାନ୍ତି ।

ଶୁଦ୍ଧୋଦନ— (ବିସ୍ମିତ ଭାବରେ) କ'ଣ ? ଜୀବ ମାରି ନାହାନ୍ତି ? ଆଉ କହୁଛୁ ଶିକାରରେ ଯୋଗଦେଇଥିଲେ ?

ଉପାଳୀ— ସବୁ ରାଜକୁମାରଙ୍କ ପରି ଯୁବରାଜ ବି ଯାଇଥିଲେ; କିଂତୁ କେବଳ କୁମାର ଦେବଦତ୍ତହିଁ ଜନ୍ତୁ ମାରିଥିଲେ ।

ଶୁଦ୍ଧୋଦନ— ସେ କାମ ତ ସେଇପରି । ସବୁବେଳେ କ'ଣ ସମସ୍ତଙ୍କର ବାଣରେ ଜନ୍ତୁ ପଡ଼ନ୍ତି ?

ପୁରୋହିତ— ସିଦ୍ଧାର୍ଥଙ୍କ ଲକ୍ଷ୍ୟ ଯେ ଅବ୍ୟର୍ଥ । ସେ ଚାହିଁଥିଲେ ଗୋଟିଏ ହେଲେ, ସାମାନ୍ୟ ଜୀବ ମାରିପାରି ନ ଥା'ନ୍ତେ ! ଆପଣ ଯୁବରାଜଙ୍କ ସମ୍ବନ୍ଧରେ ବିଶେଷ ଆଶାବାଦୀ ହୁଅନ୍ତୁ ନାହିଁ ମହାରାଜ— ସାବଧାନରେ ରହନ୍ତୁ !

ଶୁଦ୍ଧୋଦନ— ନା ପୁରୋହିତେ, ଆପଣ ଦେଖନ୍ତୁ କ'ଣ ହେଉଛି । ଆଶଂକାର ଦିନ ଚାଲିଯାଇଛି । ଏଇ ରାଣୀ ଆସିଲେଣି, ତମକୁ ଡାକି ନେବାକୁ ବୋଧହୁଏ, ପୁରୋହିତେ ।

(ରାଣୀ ପ୍ରଜାବତୀଙ୍କର ପ୍ରବେଶ । ସେ ବର୍ଷିୟସୀ, ପୃଥୁଳା)

ପ୍ରଜାବତୀ— ଆସନ୍ତୁ ପୁରୋହିତେ, ଭିତରକୁ ଆସନ୍ତୁ । ପୁଅ ଫେରିଆସିଲାଣି, ବୋହୂ ବି ସବୁ ସଜାଡ଼ି ବହୁତବେଳୁ ଅପେକ୍ଷା କରି ବସିଛି । ଆସନ୍ତୁ, ଦିହିଁକଯାକୁ ଆଶୀର୍ବାଦ ଦିଅନ୍ତୁ । ଆପଣଂକ ଆଶୀର୍ବାଦରେ, ଦିଅଁଦେବତାଙ୍କ ଇଚ୍ଛାରେ, ମୋ ପିଲା କିମିତି ଭଲରେ ଭଲରେ ଘରେ ରହୁ; ମୁଁ ନାତି ନାତୁଣୀଙ୍କି କୋଳରେ ଧରି ଯେମିତି ଆଖି ବୁଜେଁ !

ଶୁଦ୍ଧୋଦନ— ତମେଇ ତା'ର ମୁଣ୍ଡ ଖାଇଛ ! ଆଦର କରି କରି ତ ଘରପଶା କରିଛ, ଏବେ ବି କ୍ଷତ୍ରିୟପୁଅ ଯୁଦ୍ଧକୁ ନଯାଇ ଘରେ ନାତି ନାତୁଣୀ କରୁଥିବ ବୋଲି ତମର ଇଚ୍ଛା, ନା ?

ପ୍ରଜାବତୀ— (ଅଭିମାନରେ) ସବୁବେଳେ ତ ଏଇ କଥା କହିଲ । ବୋହୂ ପାଁଚ ବର୍ଷ ହେଲା ଘରେ ରହିଲାଣି, ଅଗଣାରେ ଫୁଲଟିଏ ଫୁଟନ୍ତାନି ? ଏଇ କଥା କହିଲେ ମତେ ଥଟ୍ଟା !

ପୁରୋହିତ— (ଗତିକରି) ଚାଲନ୍ତୁ, ଚାଲନ୍ତୁ, ଭିତରକୁ ଯିବା । ଆପଣ ବି ଠିକ୍, ମହାରାଜା ବି ଠିକ୍ । ପୁଅଙ୍କ ନାଁତ ଦିଆହୋଇଛି ସିଦ୍ଧାର୍ଥ । ସମସ୍ତଙ୍କ ସବୁ ଅର୍ଥ ପୂରଣ କରନ୍ତୁ, ଏଇ ହେଲା ମୋର ଆଶୀର୍ବାଦ ।

(ଧୀରେ ଧୀରେ ସମସ୍ତଙ୍କର ପ୍ରସ୍ଥାନ । ପଟପତନ)

## (ତୃତୀୟ ଦୃଶ୍ୟ)

[କପିଳବାସ୍ତୁ ରାଜପ୍ରାସାଦର ଏକ କକ୍ଷ । ନବବଧୂ ଗୋପା ଏକ ମାଳା ଗୁନ୍ଥୁଥିବାର ଦେଖାଯାଇଛି । ମାଳାଟି ପ୍ରାୟ ଶେଷ ହୋଇ ଆସିଲାଣି । ପାଖରେ ଏକ ସଖୀ ବୀଣାବାଦନରତା । କିଛି ସମୟ ପରେ ଯୁବରାଜ ରଙ୍ଗମଞ୍ଚରେ ପ୍ରବେଶକରିବେ । ସେ ପ୍ରବେଶ କରିବା ମାତ୍ରକେ ସଖୀଟି ତାଙ୍କୁ ଅଭିବାଦନ କରି ପଛେଇ ପଛେଇ ରଙ୍ଗମଞ୍ଚରୁ ଅପସୃତ ହେବ । ସିଦ୍ଧାର୍ଥଙ୍କର ପରିଧାନ ଗାଢ ରକ୍ତ ପଟ୍ଟାମ୍ବରର ଲୁଗା । ମସ୍ତକରେ କୁଞ୍ଚିତ ବାବୁରୀ ବାଳ, କଣ୍ଠଦେଶରେ ମୋଟା ମଣିଖଚିତ ସ୍ୱର୍ଣ୍ଣମାଳା ଓ ମୁକ୍ତାର ହାର । ସେ ହସି ହସି ଧୀର ପଦକ୍ଷେପରେ ଗୋପାଙ୍କୁ ବିସ୍ମିତ କଲାପରି ପ୍ରବେଶକରିବେ । ଗୋପା କିନ୍ତୁ ଜାଣିପାରି ଉଠିପଡ଼ିବେ ।]

ଗୋପା– ଏତେ ଶୀଘ୍ର ଆସିଗଲ । ମୋ ମାଳା ଯେ ଶେଷହୋଇନି ।

ସିଦ୍ଧାର୍ଥ– ମୋ' ପାଇଁ ଯେ ତମର ମାଳାଗୁଂଥା ତା' କ'ଣ ଶେଷହୋଇଯିବ ବୋଲି ତମର ଇଚ୍ଛା, ଗୋପା ?

ଗୋପା– ତା' ତମେ ପଚାରୁଛ ପୁଣି ! ମୁଁ ଜନ୍ମଜନ୍ମାନ୍ତର ତମଲାଗି ଏଇପରି ମାଳା ଗୁନ୍ଥୁଥାଏଁ । କିନ୍ତୁ କେବଳ କ'ଣ ଗୁନ୍ଥୁଥିବି, ମାଳା ଆଉ ପିନ୍ଧାଇବିନି–ଏଇ ତମର ବାସନା ? ଆଜିର ଏ ମାଳାଟି ମତେ ଶେଷ କରିବାକୁ ଦେବନି ?

ସିଦ୍ଧାର୍ଥ– ଗୋପା, ମୁଁ ତୁମଠୁ କ'ଣ ଚାହେ, ତମେ ତା କ'ଣ ଜାଣନି ? ମୁଁ ଫୁଲ ଚାହେନା, ମୁଁ କେବଳ ଚାହେ ତୁମର ମଧୁର ସ୍ମିତ, ବଗିଚାର ପୁଷ୍ପରାଜି ଆଉ ଏ ମାଳା ଚାହେନା, ଚାହେ ତମର କୋମଳ ଭୂଜମାଳାର ବନ୍ଧନ ।

ଗୋପା– ଏବେ ତ କଅଣ ଭାରି ଚାଟୁ କହି ଶିଖିଲଣି ! ସେବେ ମୁହଁକୁ କଥା ଆସୁ ନ ଥିଲା । ନାଁ, ସେ ସବୁ ହବନି । ତମକୁ ଆଜି ଏ ମାଳାଟି ପିନ୍ଧିବାକୁ ହେବ । ଯେତିକି ହୋଇଚି ସେତିକିରେ ଗଣ୍ଠି ପକେଇ ଦେଉଛି । ତମେ ଯେ ହଠାତ୍ ଏପରି ବାଧାରୂପେ ବାହୁଡ଼ିବ, ମୁଁ କ'ଣ ଜାଣିଥିଲି ? (ମାଳାରେ ଗଣ୍ଠିଦେଇ ପିନ୍ଧାଇଦେଲେ ।)

ସିଦ୍ଧାର୍ଥ– ମୁଁ ତମ ଜୀବନର ଏକ ମୂର୍ତ୍ତିମନ୍ତ ବାଧା, ଗୋପା, ନାଁ ? ତମେ କେଜାଣି କେଉଁ ସାମ୍ରାଜ୍ୟର ମହାରାଣୀ ହୋଇଥା'ନ୍ତ, ଏ ଛୋଟିଆ କପିଳବାସ୍ତୁରେ ତୁମକୁ ବାଂଧି ରଖିଲି ମୁଁଇ ।

ଗୋପା– ବାଜେ କଥା ସବୁ ବନ୍ଦକର ତ ! ତମେଇ ମୋର ସବୁ ।

(ଗୋପା ହଠାତ୍ ଭୂମିଷ୍ଠ ହୋଇ ସିଦ୍ଧାର୍ଥଙ୍କ ପଦସ୍ପର୍ଶକଲେ ।)

ସିଦ୍ଧାର୍ଥ– (ଉଠାଇଆଣି) ମୁଁ ଦେଖୁଛି ଗୋପା, ତମର ଭକ୍ତି ବନ୍ୟାରେ ମୁଁ ଦିନେ ବୁଡ଼ି ମରିବି । ତା'ଛଡ଼ା, ତମ ଜୀବନର ଅର୍ଦ୍ଧେକ କେବଳ ଜୁହାର ହୋଇ ହୋଇ କଟିବ ଦେଖୁଛି । ବାପାଙ୍କୁ ଜୁହାର, ମା'ଙ୍କୁ ଜୁହାର, ଗାଁଯାକର ମାନ୍ୟମାନ୍ୟାଙ୍କୁ ଜୁହାର, ପୁଣି

ଏବେ ନାଗଦେବତା, ବୃକ୍ଷଦେବତାଙ୍କୁ ଜୁହାର କରିବା ଆରଂଭ କରିଦେଇଛ ଶୁଣୁଛି । ଗଛ, ସାପଙ୍କ ନିକଟରେ ପୁଣି କି ପ୍ରାର୍ଥନା ?

ଗୋପା– (ସଲଜ୍ଜ) ତମେ ପୁରୁଷଲୋକ ସେ ସବୁର ଖବର ନ ରଖିଲେଇ ହେଲା । ଶୁଣ, ତୁମର ଜନ୍ମଦିନରେ ଆଜି ମୁଁ ବାପା ଆଉ ମା' ସମସ୍ତଙ୍କୁ ଖାଇବାକୁ ନିମନ୍ତ୍ରଣ କରିଛି ।

ସିଦ୍ଧାର୍ଥ– ଆଉ ମତେ ?

ଗୋପା–(ସିଦ୍ଧାର୍ଥଙ୍କ ଦୁଇ ହାତକୁ ଧରି ଓ ତାଙ୍କ ମୁହଁକୁ ଅନାଇ) ତମେ କ'ଣ ମୋଠୁ ଭିନ୍ନ ?

ସିଦ୍ଧାର୍ଥ– ଦେଖୁଛି ତମେ ମୋର ନିଜତ୍ୱ ବୋଲି ଆଉ କିଛି ବାକୀ ଯାହା ଥିଲା ତାକୁ ମଧ ରଖାଇ ଦେବ ନାହିଁ । ଏ ଯେ ଭୀଷଣ ଅବସ୍ଥା । ତମର ଆଦରର ଆତିଶଯ୍ୟରେ ମୋର ଶ୍ୱାସରୋଧ ହେବାକୁ ବସିଲାଣି ।

ଗୋପା– ହଉ, ତା'ହେଲେ ମତେ ବିଦାୟ ଦେଇଦିଅ । ଶାକ୍ୟ ଦେଶରେ ତୁମକୁ ତ କନ୍ୟା ହାତ ବଢ଼େଇଲେ ମିଳିବେ– ମୁଁ ବାଧା ବନ୍ଧନ ହୋଇ କାହିଁକି ରହିବି ? (ପ୍ରସ୍ଥାନର ଅଭିନୟ)

ସିଦ୍ଧାର୍ଥ– (ଗୋପାଙ୍କୁ ଭିଡ଼ିଧରି) ନାଁ, ନାଁ, ସେ ଚାତୁରି ପଟିବନି । ମୁଁ ଆସିଛି ତମେ ଗୀତ ଗାଇବ, ମୁଁ ଶୁଣିବି । ମତେ ଠକି ଦେବାକୁ ବସିଛ ?

ଗୋପା– (ନିଜକୁ ଛଡ଼ାଇ) ସୁନାଟି ପରା, ମୋତେ ଛାଡ଼ । ଗଡ଼ର ଝିଅମାନେ ଆସିଗଲେଣି, ତମକୁ ବନ୍ଦେଇ ଯିବେ । ମୋ ଗୀତ କ'ଣ ଶୁଣିନ ? ଯୁ'ତ କଣ୍ଠ ! ଯାହାହେଉ ମୁଁ ପରେ ଗାଇବି । ଏଇକ୍ଷଣି ଉଛୁର ହୋଇଗଲାଣି ପରା । ଛାଡ଼ ମୋର ସୁନାଟି....

ସିଦ୍ଧାର୍ଥ– ନାଁ, ନାଁ, ତମେ ମୋତେ ଫାଙ୍କି..... (ହଠାତ୍ ନେପଥ୍ୟରୁ)

ବୋଉମା' ଅଛ କି ?

(ରାଣୀ ପ୍ରଜାବତୀଙ୍କର ପ୍ରବେଶ । ତାଙ୍କ ଡାକ ଶୁଣୁ ଶୁଣୁ ସିଦ୍ଧାର୍ଥ ଓ ଗୋପା ଅଲଗା ଅଲଗା ହୋଇ ଅଧୋମୁଖରେ ଛିଡ଼ାହୋଇଗଲେ ।)

ପ୍ରଜାବତୀ– ମା ଗୋ,ସା'ନ୍ତଘରର ପିଲାପିଲି ସବୁ ଜମାହୋଇଗଲେଣି । ଯା'ତ ତମେ ସେମାନଙ୍କୁ ବସାବସି କରେଇଦେବ । ବାପା ମୋର ପଛରେ ଯିବ, ମୁଁ ସାଙ୍ଗରେ ନେଇଯାଉଛି । ତମେ ବନ୍ଧାପନାର ଯୋଗାଡ଼ଟା କରି ରଖ । (ଗୋପାଙ୍କର ସଲଜ୍ଜ ପ୍ରସ୍ଥାନ) ବାପା, ଆ । ତେଣେ ବାହାର ମେଲାରେ ତୋର ସାଙ୍ଗମାନେ ଏକାଠି ହେଲେଣି । ସେମାନଙ୍କ ସାଙ୍ଗକୁ ଯିବୁନି, ବାପା ?

ସିଦ୍ଧାର୍ଥ– ଯିବି ମା' !

ପ୍ରଜାବତୀ– ତେବେ ବନ୍ଧାପନାଟା ସରିଯାଉ ଶୀଘ୍ର । ଆ.....

(ପ୍ରସ୍ଥାନ ଓ ପଟପତନ)

## (ଚତୁର୍ଥ ଦୃଶ୍ୟ)

[କପିଳବାସ୍ତୁ ରାଜପ୍ରାସାଦର ବହିରାଙ୍ଗନ । ପଟ ଉତ୍ତୋଳିତ ହେଲାବେଳକୁ ଦେବଦତ୍ତ ଓ ଆନନ୍ଦ ଗୋଟିଏ ଆଡ଼କୁ ଅନାଇ ଅପେକ୍ଷା କଲାପରି ଠିଆହୋଇ ରହିଥିବେ ।]

ଦେବଦତ୍ତ– କିରେ, ସୁମିତ୍ର ବି ଯାଇ ସେଣେ ଲାଖିଲା ଯେ । ଏଠି ଆଉ କେତେ ସମୟ ଅପେକ୍ଷା କରିବା ?

ଆନନ୍ଦ– (ଅନ୍ୟଆଡ଼କୁ ଆଖି ଫେରାଇ) ନା, ଏଇ ସୁମିତ୍ର ଆସିଲାଣି ପରା । (ଆଉ ଏକ ଶାକ୍ୟ ତରୁଣ ସୁମିତ୍ରର ପ୍ରବେଶ) କିଓ ସୁମିତ୍ର, ଉଆସ ଭିତର ଖବର କ'ଣ ?

ସୁମିତ୍ର– ବନ୍ଦାପନା ଆରମ୍ଭ ହୋଇଗଲାଣି । ଯୁବରାଜ ସେଠୁ ଫେରିଲେଇ ଆମ ପାଖକୁ ଆସିବେ । ତା' ପରେ ତ ସିଧା ଖନ୍ଦାଘରକୁ ।

ଦେବଦତ୍ତ– ତେବେ ଚାଲ କିଛି ଗୋଟାଏ କରି ସମୟ କଟାଇବା । ଏଇକ୍ଷଣି ତ ଆଉ ଘରକୁ ଫେରିଯାଇ ଲେଉଟି ଆସି ହେବନି ?

ସୁମିତ୍ର– ଆଚ୍ଛା ହେଉ–ଅକ୍ଷର କ୍ରୀଡ଼ାପାଇଁ ରାଜିଅଛ ଦେବଭାଇ ? ତମକୁ ପରୀକ୍ଷା କରେ । ଦେଖିବା ତମ କଥାର ସତ୍ୟତା ।

ଦେବଦତ୍ତ– ଆଚ୍ଛା, ଆଗ ଆନନ୍ଦ । ସେ ବି ତ କହୁଛି ସବୁ ଅକ୍ଷର ଶିଖିଗଲାଣି ବୋଲି ।

ଆନନ୍ଦ– ନାହିଁ ସୁମିତ୍ର, ତମକୁଇ ଆଗ ପରୀକ୍ଷା କରାଯାଉ । ଠିଆ ହେବଟି ସୁମିତ୍ର । ପିଠି ଦେଖା ।

(ସୁମିତ୍ରକୁ ପିଠି ବୁଲାଇ ଠିଆକରାଇବା ଓ ତା' ପିଠିରେ ଆନନ୍ଦ ଅକ୍ଷର ଲେଖିବା) ଆଚ୍ଛା କହ, କ'ଣ ଲେଖିଲି ?

ସୁମିତ୍ର– (ଟିକିଏ ଭାବି) ତମେ 'ଅ'ତ ଲେଖିଲ, ଆଉ ଦି'ଟା କ'ଣ କ'ଣ ଲେଖିଲ ଧରିପାରିଲି ନି, ଆନନ୍ଦ ଭାଇ ।

ଆନନ୍ଦ– ବାଃ, ଭଲ ଶିଖିଛ ! ଯେଉଁ ପଦାର୍ଥ ଘରେ ଘରେ; ଯାହା ସର୍ବବିଦ୍ୟାର ମୂଳ, ସେହି ସାଧାରଣ କଥାଟା ଧରିପାରୁନ ।

ଦେବଦତ୍ତ– ସର୍ବବିଦ୍ୟାର ମୂଳ ! କ'ଣ ସେ ଜିନିଷ ! କ'ଣ ତମେ ଲେଖିଲ ଆନନ୍ଦ ?

ଆନନ୍ଦ– ଲେଖିଲିପରା ଅ,ର,ଟ । ଏଇଟା ଠଉରେଇ ପାରୁନ ? 'ଅ'ରେ ବ୍ରହ୍ମା, 'ର'ରେ ବିଷ୍ଣୁ, 'ଟ'ରେ ମହେଶ୍ୱର–ସେଇଥିରେ ପୁଣି ସୃଷ୍ଟି, ସ୍ଥିତି, ପ୍ରଳୟ–ସେଇ ହେଉଛି ଲକ୍ଷ୍ମୀଙ୍କ ଆସନ, ଶତଦଳ ପଦ୍ମ; ସେଇ ପୁଣି ଖାଦ୍ୟ, ବସ୍ତ୍ର, ବାସ । ଏଇ ତିନୋଟି ଅକ୍ଷରକୁ କମ୍ ଜାଣିବନି !

ସୁମିତ୍ର– ଆରେ ଏତେ କଥା ଯା ଭିତରେ ଅଛିବୋଲି ତ ଆମକୁ ଜଣା ନ ଥିଲା । ଆମେ ଯେ ଅଲଗା ପ୍ରକାରେ ଅକ୍ଷର ଶିଖିଛୁ । ଆମେ....

ଆନନ୍ଦ— ବୁଝିଲି'ମା' ରୁ ଆରମ୍ଭ ତ ? ସେ ବି ବେଦକୁ ଧରିଛି । ମା' ହେଲା ଜୀବନର ଆଦ୍ୟବୀଜ କିନା ? ସେଇଠୁ ବାହାରିଲା ଘର, ରମା, ମା, ମାର, ମା' ଘର । ମନ୍ଦ କ'ଣ ? ତେବେ ସେ ଧାରା ଆଉ ନାହିଁ— ଏବେ ଅରଟରୁ ସବୁର ଅୟମାରମ୍ଭ ।

ଦେବଦତ୍ତ— ଆଚ୍ଛା ଆନନ୍ଦ, ମୁଁ ତମ ପିଠିରେ ଏପରି ଗୋଟିଏ ଅକ୍ଷର ଲେଖିବି ଯାହା ତମେ ମଧ୍ୟ କେବେହେଲେ ଠଉରାଇ ପାରିବନି । ପୁରୋହିତ କହେ ସେଇଥିରୁ କୁଆଡ଼େ ସମଗ୍ର ସଂସାର ବାହାରିଛି । ଏଃ, (ନେପଥ୍ୟ ଆଡ଼କୁ ଅନାଇ) ପୁରୋହିତ ଏଇ ଆସୁଛି । ତାକୁ ରଗେଇବା ପାଇଁ ଭୁଲଭାଲ୍ ହେଉ ପଛେ ଆସ ଆହୁରି ଭଲକରି ଅକ୍ଷରକ୍ରୀଡ଼ା ଚଳେଇବା ସୁମିତ୍ର; ଆସ, ଆସ, ଆହୁରି ପାଖକୁ ଲାଗିଆସ ।

ଆନନ୍ଦ— ଦେବଦତ୍ତ, ତମେ ମୋ ପିଠିରେ ଲେଖତ !

ଦେବଦତ୍ତ— (ପୁରୋହିତ ପ୍ରବେଶକୁ ଲକ୍ଷ୍ୟ ନ'କରି ପଠିରେ ଲେଖି ସାରିବା ପରେ) କଣ ଲେଖିଲି, କହିଲ ?

ଆନନ୍ଦ— 'ଓଁ' ଲେଖିଲ କି ? ହଁ,'ଓଁ',ତ ।

ପୁରୋହିତ— (ବିରକ୍ତହୋଇ) ପୁଣି ସେଇ ଖେଳ ! ପୁଣି ପବିତ୍ର 'ଓଁ'କାରକୁ ନେଇ କୌତୁକ । ଆନନ୍ଦ ! ଏ ସବୁ କି କଥା ?

ସମସ୍ତେ— ନମସ୍ତେ, ନମସ୍ତେ !

ପୁରୋହିତ— (ହାତଟେକି) ଏ କଥା ମହାରାଜାଙ୍କୁ ଜଣାକରିବା !

ଦେବଦତ୍ତ— ଆଜ୍ଞା, ମହାରାଜ ଯେ ନିଜେ ଆମ ସାଥିରେ ବେଳେ ବେଳେ ଏ ଖେଳ ଖେଳୁଛନ୍ତି । ଯୁବରାଜ ତ ସବୁ ଅକ୍ଷର ପ୍ରାଞ୍ଜଳଭାବେ ଶିଖିଗଲେଣି ।

ପୁରୋହିତ— ସରିଲା ତାହେଲେ, ସବୁ ଧ୍ୱଂସ ହେଲା । ସଂସାରରୁ ଧର୍ମ ଉଠିଗଲା । ଏ ମ୍ଳେଚ୍ଛ ଆବିଷ୍କାର ଆର୍ଯ୍ୟ ଶାସ୍ତ୍ରକୁ କଳୁଷିତ କରିବାକୁ ଆଉ କେତେ ସମୟ ? ମହାରାଜା ମଧ୍ୟ..... (ଶୁଦ୍ଧୋଦନଙ୍କର ପ୍ରବେଶ) ଏଥିରେ ମାତିଲେଣି ?

ଶୁଦ୍ଧୋଦନ— କ'ଣ ପୁରୋହିତ ଆପଣେ ! ମତେ କ'ଣ ଗାଳିଦେଲେଣି ଆଗେ ଆଗେ ଆସି !

ପୁରୋହିତ— ଗାଳିଦେବାର ଯଥେଷ୍ଟ କାରଣ ଦେଖୁଛି । ଏ ଟୋକାମାନେ ମ୍ଳେଚ୍ଛକଥା ସବୁ ଶିଖୁଛନ୍ତି; ଛାମୁ ଟିକିଏ ବାରଣ କରନ୍ତୁ । ପବିତ୍ର ଶ୍ରୁତି, ସ୍ମୃତି ଯେ କଳୁଷିତ ହେବାକୁ ବସିଲାଣି ।

ଶୁଦ୍ଧୋଦନ— ଏଥିରେ ଦୋଷ କ'ଣ ପୁରୋହିତେ ? ମୁଦ୍ରା ବା ବର୍ଷ ବା ମାସ ବା ଦିନକୁ ଗଣିବାପାଇଁ ଆମେ ଯେମିତି ଗାର କାଟୁଁ, ମୁହଁର କଥା ପ୍ରକାଶ କରିବାପାଇଁ ଏ ସେପରି କେତେଟା ରେଖା । ପାପ କ'ଣ ଏଥିରେ ?

ପୁରୋହିତ— ଆଜ୍ଞା, ବିଧାତା ତ ଆମକୁ କର୍ଣ୍ଣ ଦେଲା ଶୁଣିବାକୁ, ମଥା ଦେଲା ହେତୁ ରଖିବାକୁ, ଜିହ୍ୱା ଦେଲା ତାକୁ ପ୍ରକାଶ କରିବାକୁ, ଆଉ ଅଧିକା କ'ଣ ଆବଶ୍ୟକ ? ଆବଶ୍ୟକ

ଥିଲେ, ଆର୍ଯ୍ୟ ଋଷିମାନେ ଏତେ ମନ୍ତ୍ର, ତନ୍ତ୍ର, ଯାଗ, ଯଜ୍ଞ, ଶ୍ରୁତି, ସ୍ମୃତି ଛାଡ଼ି ଦେଇଗଲେ, ଏଇ ଗାରକଟାତକ ତାଙ୍କୁ ଦିଶୁ ନ ଥିଲା ? ରତନ ଶେଠୀର ପୁଅ ଦଶବର୍ଷ ତଳେ ସୌରାଷ୍ଟ୍ରଆଡ଼ୁ ଏଠି ଆଣି ଯାକୁ ପୂରାଇଛି । ଏଗୁଡ଼ାକ ସେଇ ଆଡ଼ର ମ୍ଳେଚ୍ଛମାନଙ୍କର କାରବାର, ଯେଉଁମାନେ ସ୍ନାନ କ'ଣ, ଶୁଚି କ'ଣ ଜାଣନ୍ତି ନାହିଁ । ଯାଙ୍କର ଯାଗଯଜ୍ଞ ନାହିଁ, ଧର୍ମ ନାହିଁ, ସେହି ମ୍ଳେଚ୍ଛଙ୍କଠାରୁ ଆର୍ଯ୍ୟଜାତି ଶିକ୍ଷା କରିବ ? ଏହାଠାରୁ ମୃତ୍ୟୁ ବରଂ ଶ୍ରେୟସ୍କର ।

ଦେବଦତ୍ତ— ଆଜ୍ଞା, ପୁରୋହିତଙ୍କର ଏକମାତ୍ର ଭୟ ଯେ ଏ ଅକ୍ଷରତକ ସଭିଏଁ ଶିଖିଗଲେ ଶୂଦ୍ରମାନେ ବି ଶାସ୍ତ୍ର ଜାଣିପାରିବେ । ସେଇଠୁ ବ୍ରାହ୍ମଣଙ୍କ ଭେକ ବୁଡ଼ିବ ।

ପୁରୋହିତ— ଅଃ, ଦିବ୍ୟ ବୁଝିଲ ! ଯୁ' ଗୁଣଗ୍ରାମ ତ— ଲୋକେ ଖାଲି ଧନ୍ୟ ଧନ୍ୟ କହୁଛନ୍ତି । ଦଦେଇଙ୍କର କୀର୍ତ୍ତି ରଖିବ ତମେ ! ନ ହେଲେ ଏପରି ଛିଦ୍ରିଆ କଥା ମୁହଁରୁ ବାହାରନ୍ତା କିପରି ?

ଶୁଦ୍ଧୋଦନ— ପିଲେ, ତମେ ଯାଅ ଯୁବରାଜଙ୍କ ପାଖକୁ । ଆଜି ସ୍ୱନକ୍ଷତ୍ର ଦିନରେ ପୁରୋହିତଙ୍କୁ ବିରକ୍ତ କରନା । ଆଉ ଏ ଖେଳ ଖେଳିବନି ଯା........(ତାଚ୍ଛଲ୍ୟରେ ହସି ହସି ସମସ୍ତଙ୍କର ପ୍ରସ୍ଥାନ) ହଉ, ପୁରୋହିତ ଆପଣେ ! ଯୁବରାଜଙ୍କ ହାବଭାବ ଏଇକ୍ଷଣି ଯା ଦେଖିଲ ସେଥିରୁ କ'ଣ ବୁଝୁଛ ? ସବୁ ଆଶାଜନକ ନୁହେଁ କି, ମୁଁ ଯେପରି କହୁଥିଲି ?

ପୁରୋହିତ— ଅତି ଉତ୍ତମ, ଅତି ଉତ୍ତମ ମଣିମା ! ସତରେ ବିବାହ ପରଠାରୁ ଆଉ କହିବାର କିଛି ନାହିଁ । କିନ୍ତୁ ଛାମୁ ଠିକେ ଠିକେ ଆମ କଥା ମାନିଲେ ସିନା ? ଯାଗ ଯଜ୍ଞ କରାଗଲା, ପୁଅ ନ ଥିଲା, ପୁଅ ହେଲା । ଆଉ ପୁଅର ମନଟା ବଦଳିପାରିବନି ? ଏଟା ଗୋଟାଏ କି ଛାର କଥା । କିନ୍ତୁ ଛାମୁ, ଏ ମ୍ଳେଚ୍ଛକ୍ରିୟା ସବୁ ନହରରେ ପୂରାନ୍ତୁନି । ଠିକ୍ ଶାସ୍ତ୍ରମତେ ଯାଗ ଯଜ୍ଞ ଯିମିତି ଯାହା ହେବାର ବିଧି ସେମିତି କରନ୍ତୁ; ଦେଖିବେ ଆଶଙ୍କା କରିବାକୁ କିଛି ନ ଥିବ । ନ ହେଲେ ମୋତେ ଆଉ ଦୋଷ ଦେବେନି ପରେ !....ହଉ, ଛାମୁ ବାହାର ମେଲାକୁ ବିଜେକରିବେ ନା ପେର୍ ଭିତରକୁ ବିଜେ କରିବେ ? ମତେ ଉଚ୍ଛୁର ହୋଇଯାଉଛି, ମୁଁ ଯାଏ ।

ଶୁଦ୍ଧୋଦନ— ମୁଁ ପୁଣି ଭିତରକୁ ଯିବି, ଦେଖିବି ଭୋଜିଭାତ କେତେଦୂର ଗଲା ।

ପୁରୋହିତ— ଆଚ୍ଛା, ତେବେ ଆସେ ।

(ଉଭୟଙ୍କର ଦୁଇ ଦିଗରେ ପ୍ରସ୍ଥାନ । ପଟପତନ)

## (ପଞ୍ଚମ ଦୃଶ୍ୟ)

[ଏକ ପୁଷ୍ପସଜ୍ଜିତ ବିମାନରେ ସିଦ୍ଧାର୍ଥ ଆସୀନ । ଦୁଇ ପାଖରେ ଧୂପ ଦୀପ । ଏକ ପାଖରେ ଏକ ଚାମରଧାରିଣୀ । ଅନ୍ୟ ପାର୍ଶ୍ୱରେ ଆଉ ଜଣେ ଆଲଟ ପକାଉଛି । ଏଇ

ଦୁଇଜଣ ଗୀତ ଗାଇବେ ଓ ଆଉ ତିନୋଟି ତରୁଣୀ ନୃତ୍ୟ କରିବେ । ନେପଥ୍ୟରୁ ବଧୂ ଓ କନ୍ୟାମାନେ ପ୍ରଥମ ପଦଟି କୋରସ୍‌ରେ ଗାଇ ମଝିରେ ମଝିରେ ସିଦ୍ଧାର୍ଥଙ୍କ ଉପରେ ପୁଷ୍ପ ବର୍ଷଣ କରିବେ ।]

ଗୀତ

ଜୀବନର ଫାଲ୍‌ଗୁନେ ମରମର ବହ୍ନି
ଜାଳିରଖ, ଢାଳି ଭୋଗ-ମଦିରା,
ଯଉବନ ବନେ ଭ୍ରମ ଭ୍ରମରପରି—,
ଫୁଲ ସଉରଭ ଅତି ଅଚିରା ।

ମଳୟ ଡାକଇ ବାତାୟନେ ପରଶି,
ପକ୍ଷୀ ଡାକେ ମେଘହୀନ ଗଗନେ
ପ୍ରାନ୍ତରେ ଡାକେ ନୂଆ କଅଁଳ ଘାସ
କାଟିବାକୁ ବେଳ ମଧୁ-ସପନେ,
ମୋହିନୀ ସାଜିଛି ମହୀ-ମହିଳା ।

ମନ ଆଜି ମାତିଉଠେ ନ ରହେ ଘରେ
ଜୀବନୁ ମଧୁର ରସ ପିଇବ,
ପ୍ରାଣର ସାଥୀରେ ଧରି ଗଗନ ତଳେ
ପ୍ରଣୟ ଗୀତିକା ଥରେ ଗାଇବ,
ମରମେ ବାସନା ହୁଏ ଛବିଳା ।

(ନୃତ୍ୟ ଶେଷରେ ନର୍ତ୍ତକୀମାନେ ନୃତ୍ୟ କରିକରି ରଙ୍ଗମଞ୍ଚରୁ ଅପସୃତ ହୋଇଯିବେ । ଚାମର ଓ ଆଲଧାରିଣୀ ଘଣ୍ଟି ଓ ଧୂପଦାନୀ ନେଇ ସଦ୍ଧାର୍ଥଙ୍କୁ ନିରାଜନା କରିସାରିଲା ପରେ ପଛେଇ ପଛେଇ ବିଦାୟନେବେ । ସଦ୍ଧାର୍ଥ କିନ୍ତୁ ସେହି ସ୍ଥାନରେ ଗାଲରେ ହାତଦେଇ ନୃତ୍ୟ ମଧରେ ଓ ପରେ ଅନ୍ୟମନସ୍କ ଭାବରେ ଚିନ୍ତିତ ଦେଖାଯାଉଥିବେ । ଏଇ ସମୟରେ ପଛରୁ ଛପି ଛପି ଏକ ତରୁଣୀ ଫୁଲମାଳାଟିଏ ସିଦ୍ଧାର୍ଥଙ୍କ କଣ୍ଠରେ ଲମ୍ବାଇଦେଇ ପଛରେ ଠିଆହେବେ, ହସି ହସି ।)

ସିଦ୍ଧାର୍ଥ— (ପୂର୍ବପରି ଅନ୍ୟମନସ୍କ ଥାଇ) କିଏ ? ଗୋପା ?

ତରୁଣୀ— ନାଁ ସିଦ୍ଧଭାଇ, ସେ ଭାଗ୍ୟ ଆମର କାହିଁ ?

ସିଦ୍ଧାର୍ଥ— (ଚମକିପଡ଼ି ଠିଆହୋଇ) ଓ, କିଶା ? ତମେ ଏଠି ? ତମ ଘରେ ଆଜିପରା ପିଠାପଣା ? ଭାଇର ବିଭାଘର ? ତମ ଭାଗରେ କ'ଣ କିଛି କାମ ନାହିଁ ?

କିଶା— ବହୁତ କାମ, ସିଦ୍ଧଭାଇ ! ଖାଇବାକୁ ବେଳ ନାହିଁ ।

ସିଦ୍ଧାର୍ଥ— କାମରେ ଖାଇବାକୁ ବେଳ ନାହିଁ, ଆଉ ମାଳା ଗୁନ୍ଥିବାକୁ ବେଳ ପାଇଲ, ଏଠି ଆସି ଦୁଷ୍ଟାମି କରିବାକୁ ବେଳ ପାଇଲ ? ତମର ସେଇ ପିଲାଦିନର ଦୁଷ୍ଟାମି ଛାଡ଼ିନି ତ ଦେଖୁଛି ।

କିଶା— ଜଗତର ଲୋକଙ୍କ ଆଖି ଆଜି ତୁମରି ଉପରେ ସିଦ୍ଧଭାଇ । ରୂପ, ଗୁଣ, ଭୋଗ, ଭାଗ୍ୟରେ ତମପରି ଭାଗ୍ୟବନ୍ତ ଆଉ କିଏ ହେବ ? ତମର ଜନ୍ମଦିନରେ ତୁମକୁ ଗୋଟିଏ ଭେଟି ନ ଦେଇ ମୁଁ ରହିପାରିଲି ନାହିଁ । ସିଦ୍ଧଭାଇ, ତମେ ଧନ୍ୟ, ତୁମକୁ ଯେ ଗର୍ଭରେ ଧରିଛି ସେ ଧନ୍ୟ, ଯେ ତମର ହାତ ଧରିଲା ସେ ଆଉରି ଧନ୍ୟ । ତମର ଜନ୍ମଦିନରେ ଏ ମାଳଟି ଦେଇ ମୁଁ ଆଜି ଧନ୍ୟା ।

ସିଦ୍ଧାର୍ଥ— କିଶା, ତୁମେ ଧନ୍ୟ, ଜଗତ ଧନ୍ୟ, ମୁଁ ବି ଧନ୍ୟ, ତେବେ ତ ସବୁ ସମାନ ହୋଇଗଲା । ନାହିଁ ତମେ ଧନ୍ୟ, ଆଉ ମୁଁ ମାତ୍ର ଗୋଟିଏ ଧାନ୍ୟ ହୁଏ—ଆକାରଟି ମୋର ଯାହା ଅଧିକା ଭାଗ୍ୟ ।

କିଶା— ଥଟ୍ଟା କରୁଛ କାହିଁକି ସିଦ୍ଧଭାଇ ? ତମେ କି ସୁନ୍ଦର, ତମେ କ'ଣ ଜାଣନି ? କାଲି ଘୋଡ଼ାରେ ଚଢ଼ି ତମେ ଫେରୁଥିଲ ବଡ଼ଦାଣ୍ଡ ଦେଇ । ମୁଁ ଆମ ଜଗତିର ବାତାୟନରୁ ତମକୁ ଦେଖୁଥିଲି । ତମେ ଅଦୃଶ୍ୟ ହେଲାଯାଏ ମୁଁ ଚାହିଁରହିଥିଲି ।

ସିଦ୍ଧାର୍ଥ— ଆଚ୍ଛା... (ଟିକିଏ ପଦଚାରଣା କରି) ତମେ ଯେ ଚିତ୍ର ଆଙ୍କୁଥିଲ, ଆଉ ଆଙ୍କୁଛନା ? ମୁଁ ଅନେକ କାଳ ହେଲା ତମ ଘରଆଡ଼େ ଯାଇପାରିନି । ଆଚ୍ଛା, ତାହାହେଲେ ମୁଁ ଘୋଡ଼ାରେ ଚଢ଼ିଥିବାର ଗୋଟାଏ ଛବି ଆଙ୍କି ମୋତେ ଦେଖାଅ ତ !

କିଶା— କ'ଣ, ଏଇ ଥଟ୍ଟା ବୋଧହୁଏ ହେଲା ମୋର ପୁରସ୍କାର । ତମେ ବର୍ତ୍ତମାନ ଯୁବରାଜ । ବିବାହ କରିଛ ରାଜକନ୍ୟାକୁ । ଆଦେଶ ଦେଲେ କାଲି ସକାଳେ ଚିତ୍ର କ'ଣ, ତମର ସୁନାର ପ୍ରତିମୂର୍ତ୍ତି ଗଢ଼ାହୋଇ ଆସିବ । ମୋ ପରି ଅକିଞ୍ଚନଙ୍କୁ ଆଦେଶ ଦେଇ ଅପମାନ ଦେଉଛ କାହିଁକି ?

ସିଦ୍ଧାର୍ଥ— (ହସିହସି) ଚିତ୍ର କରିବାକୁ କହିଲେ ଦରିଦ୍ର ହୋଇପଡୁଛ, ଆଉ ଏତେ ସୁନ୍ଦର ମାଳା ଗୁନ୍ଥିବା ବେଳକୁ ?.....(ପଦଚାରଣ କରି) ତୁମର ଅଭିମାନର କାରଣ ବୁଝିଛି କିଶା....ସେ ସବୁ ଭୁଲିଯାଅ, ସାନଭଉଣୀଟି ମୋର, ଯାଅ...ଭାଇର ବିଭାଘରେ ସମସ୍ତେ ବ୍ୟସ୍ତ ଥିଲାବେଳେ ତମର ଘରଛାଡ଼ି ଆସିବା ଉଚିତ ନ ଥିଲା । ଯାଅ.... ବାଟରେ କି ତୁମ ଘରେ ସୁମିତ୍ରକୁ ଦେଖିବ ଯଦି କହିବ ମୁଁ ଡାକୁଛି.....ନା, ନା, ସେ ତ ଆସିଯିବଣି । ଥାଉ, ଯାଅ (କିଶା ପ୍ରସ୍ଥାନୋଦ୍ୟତା । ତାକୁ ଫେରାଇ) ଆଉ, ଏଇ ନିଅ ଅଭିମାନିନୀ କିଶାର ବହୁମୂଲ୍ୟ ଫୁଲହାର ବିନିମୟରେ ଦରିଦ୍ର ସିଦ୍ଧଭାଇର ଏଇ ସାମାନ୍ୟ ବସ୍ତୁ । (କିଶାକୁ ମୁକ୍ତାହାର ପିନ୍ଧାଇଦେଲେ ।)

କିଶା— (ନତଜାନୁ ହୋଇ ସିଦ୍ଧାର୍ଥଙ୍କ ପଦ ଛୁଇଁ) ସିଦ୍ଧଭାଇ, ତମେ ସବୁବେଳେ ସବୁ କ୍ଷେତ୍ରରେ ବିଜୟୀ । (ଉଠିପଡ଼ି) ମୁଁ ଯାଉଛି ଭାଇ । ତମେ ବଡ଼ ହୁଅ, ବିଖ୍ୟାତ

ହୁଅ, ରାଜଚକ୍ରବର୍ତ୍ତୀ ହୁଅ । ଜଣେ ତା'ର ପ୍ରାଣର ଅନ୍ତରତମ ପ୍ରଦେଶରେ ସର୍ବଦା ଏଇ ପ୍ରାର୍ଥନା କରୁଥିବ ବୋଲି ମନେରଖିଥାଅ । (ହସିହସି ପଛେଇ ପ୍ରସ୍ଥାନ କଲେ । ସିଦ୍ଧାର୍ଥ ପଛକୁ ହାତଯୋଡ଼ି କିଛିକାଳ ଚିନ୍ତିତ ଭାବରେ ପଦଚାରଣ କଲା ପରେ ଉପାଳୀର ପ୍ରବେଶ ।)

ଉପାଳୀ— ମଣିମା, ବାହାରେ ପ୍ରଜାମାନେ ଅପେକ୍ଷା କରିଛନ୍ତି ପରା ! ବାହାରକୁ ଆସନ୍ତୁ !

ସିଦ୍ଧାର୍ଥ— ଚାଲ ଉପାଳୀ, ଚାଲ ।

(ସିଦ୍ଧାର୍ଥ ଓ ଉପାଳୀ ଯାଉଁ ଯାଉଁ ନେପଥ୍ୟରୁ ଶୁଦ୍ଧୋଦନଙ୍କର କଣ୍ଠ ଶୁଣାଯିବ; ସିଦ୍ଧାର୍ଥ ଓ ଉପାଳୀ ଚମକି ଠିଆହୋଇଯିବେ ।)

ନେପଥ୍ୟେ— ସେଇ ରଥରେ ଛନ୍ଦକ, ଯୁବରାଜ ତମର ଦିଗ୍‌ବିଜୟରେ ଦିନେ ବାହରିବେ । ସେହି ଲକ୍ଷ୍ୟରେ ତାହା ଗଢ଼ାହୋଇଛି, ତିଥି ନକ୍ଷତ୍ର ଦେଖାହୋଇ ।

ସିଦ୍ଧାର୍ଥ— (ବିସ୍ମୟରେ) ଦିଗ୍‌ବିଜୟ ! ଦିଗ୍‌ବିଜୟ ! ମୁଁ ଯିବି ଦିଗ୍‌ବିଜୟରେ ! ବାପା କ'ଣ କହୁଛନ୍ତି ଉପାଳୀ ?

ଉପାଳୀ— କେବଳ ସାଆନ୍ତେ ନୁହନ୍ତି ମଣିମା, ସମଗ୍ର କପିଳବାସ୍ତୁ ପ୍ରଜାଙ୍କର ଇଚ୍ଛା ଆପଣ ଦିଗ୍‌ବିଜୟ କରି ଦିନେ ମହାରାଜାଧିରାଜ ହେବେ । ପାଟି ଫିଟାଇ କହୁନାହାନ୍ତି ସିନା, ସୂର୍ଯ୍ୟବଂଶୀ କ୍ଷତ୍ରୀ ହୋଇ ଶାକ୍ୟମାନେ କୋଶଳ ରାଜାର ସାଆନ୍ତ ହୋଇ ରହିବାକୁ କାହାକୁ ବାଧୁନି ? ବାବାଙ୍କର ଆଶା, ସେ ଆଖି ବୁଜିଲା ଆଗରୁ ଅନ୍ତତଃ ଏଇ ଅପମାନଟା ଛାମୁ ପୋଛିନେବେ । ବାବା ସେଥିପାଇଁ ସବୁ ଯୋଗାଡ଼ କରି ରଖୁଛନ୍ତି । ଏଇ, ବାବା ଆଉ ମା' ଆସିଲେଣି ।

(ବିପରୀତ ଦିଗରୁ ଶୁଦ୍ଧୋଦନ, ରାଣୀ ଓ ରଥବାହକ ଛନ୍ଦକର ପ୍ରବେଶ । ଛନ୍ଦକେ ହାତରେ ଏକ ବଡ଼ ଠେଙ୍ଗା ।)

ଶୁଦ୍ଧୋଦନ— ବାବା, ଗୋଟିଏ ନୂତନ ରଥ ତୋ ପାଇଁ ତିଆରିକରିଛି । ଆଜି ତୋର ସ୍ୱନକ୍ଷତ୍ରରେ ତତେ ତାହା ଉପହାର ଦେଲି । କାଲିଠୁଁ ସେଇଥିରେ ବସି ବୁଲାବୁଲି କରିବୁ, ବାବା ! ବହୁ ପ୍ରଜା ଭେଟି ଘେନି ଜମାହେଲେଣି । ସାଆନ୍ତମାନଙ୍କର ବି ସେଣେ ପତ୍ର ପଡ଼ିଲାଣି । ଆ, ବାହାରକୁ ଆ !

ପ୍ରଜାବତୀ—(ପୁଅକୁ ଧରିପକେଇ ଗଦ୍‌ଗଦ୍ ସ୍ୱରରେ) ତୋର ସବୁ ଆଧିବ୍ୟାଧି ମୋତେ ଦେଇଦେ ବାପା, ମୋରି ଆୟୁଷ ନେଇ ବଞ୍ଚିବୁ, ଜଗତରେ ଯଶ କୀର୍ତ୍ତି ରଖିବୁ.... (ଲୁଗାରେ ମୁହଁକୁ ଲୁଚାଇ) ହତଭାଗିନୀ ଅପା ! ଏ ଶିରୀ ଦେଖିବାକୁ ବିଧାତା ଯା' ରଖିଲାନି ତାକୁ....

ଶୁଦ୍ଧୋଦନ— ଛାଡ଼ ! ସ୍ୱନକ୍ଷତ୍ରଟାରେ ସେଗୁଡ଼ାକ ଆଉ କାହିଁକି ମନେପକାଉଛ ? ଆସ ବାବୁ ଆସ....

(ଶୁଦ୍ଧୋଦନ, ସିଦ୍ଧାର୍ଥ ଓ ପ୍ରଜାବତୀଙ୍କର ପ୍ରସ୍ଥାନ । ପଛରେ ଉପାଳୀ ଓ ଛନ୍ଦକ ରହିଗଲେ ।)

ଉପାଳୀ– (ହସିହସି ଛନ୍ଦକକୁ) କି ଛନ୍ଦିଆ, ଆଜି ଛାଞ୍ଚୁଣୀମାଡ଼ ଖାଇଛୁ ?

ଛନ୍ଦକ–ଏ' ପରା ଦିନଟାରେ ଉପାଳୀ ଭାଇ, ସେଗୁରା କାହିଁକି ପକେଇଚ ! ହେଲେ, ମୋ ବିଚାରରେ ଯେ ମାଇପଠୁ ମାଡ଼ ଖାଇନି, ସିଏ ବିଭା ହୋଇନି । (ଠେଙ୍ଗାକୁ ଭୂଇଁରେ ବାଡ଼େଇଲା) ଅଣ୍ଡିରା, ମାଇପିକି ବାଡ଼େଇଲେ, ସେଟା କ'ଣ ସୁନ୍ଦର ? ମାଇକିନା ମାଡ଼ମାରିଲେ ବି ସେଥିରେ ସରାଗ ଅଛି । (ଠେଙ୍ଗାକୁ ପୁଣି ଭୂଇଁରେ ବାଡ଼େଇବା)

ଉପାଳୀ– ଏଁ ! ଛନ୍ଦିଆଁ ତୁ ଏମିତି ଫଟାରସିକ କେବେଠୁ ହେଲୁଣି ମ ? କ'ଣ, ସାନ ମଣିମାଙ୍କଠୁଁ ଏଡ଼େ ଏଡ଼େ କଥା ଶିଖିଚୁ କିରେ ! ପିଠିରୁ ଛାଲ ବାହାର କରିଦିଏ ମାଇପ, ଆମ ଆଗରେ ସକେଇହେଉଥାଉ, ଆଜି କ'ଣ ସରାଗ ବାହାର କଲୁଣି ମାଇପ ମାଡ଼ରୁ !

ଛନ୍ଦକ–ଆରେ ଉପାଳୀ ଭାଇ–ଆମେ ହେଲେ କ୍ଷତ୍ରିୟ । ରକତ ଟକ୍‌ମକ୍ ଟକ୍‌ମକ୍ ହୋଇ ଫୁଟୁଛି । କିନ୍ତୁ ଲଢେଇ କାଇଁ ? (ନିଶମୋଡ଼ି ବାହାରେ ହାତମାରି) ଟୋକା ବୟସରେ ଏତେ କୁସ୍ତି କସରତ କରିଥିଲେ, ଯାଉଚିନା ସବୁ ସତ୍ୟାନାଶ ହୋଇ, କୁ' କାମରେ ନାଗିଲା ?

ଉପାଳୀ– ବାହାରେ ଲଢେଇ ନ ମିଳିବାରୁ ତୁ ମାଇପ ସଂଗେ ଲଢେଇ କରୁଚୁ ? ଏପରି ବୀରପୁରୁଷ ତ ଏ ରାଜ୍ୟରେ ନ ଥିବେ ! ମହାର୍ଜାଙ୍କୁ କହିବା, ତତେ ଏଥର ସେନାପତି କରିବେ ତା'ହେଲେ ।

ଛନ୍ଦକ– କହୁନା, କହ ! ସତ କହୁଚି ଉପାଳୀ ଭାଇ, ଗୋଟାଏ ମାଡ଼ମରାମରି, ହଣାହଣି, ଲଢେଇଭିଡ଼େଇ, ବଳକଷାକଷିପାଇଁ ମୋ ଦି ଡେଣାଯାକ ଫକ୍‌ଫକ୍ ହେଉଚିନି ପରା । ସାନ ମଣିମା ସବୁଥିରେ ପରିପୂର୍ଣ୍ଣ, ସବୁ ତାଙ୍କ ହାତରେ ହେବ, ହେଲେ ସେଇ ଗୋଟିଏ କଥାକୁ ତ ମନ ଦେଉନାହାନ୍ତି । ଏଇ ଛାର କାଶୀଆ, କୋଶଳିଆ ଗୁରାକ ଏତେ ଏତେ ରାଜ୍ୟ ମାଡ଼ିବସିଚନି, ଆଉ ଆମେ ସୂର୍ଯ୍ୟବଂଶୀ ଶାକ୍ୟ ହୋଇ କ'ଣ ନା କେଉଁ କଣରେ ପଡ଼ିଚେ–କୋଶଳିଆଙ୍କ ପର୍ଜା ହୋଇ । ମଣିମା ତ ଏ କଥାଟାକୁ ଟିକିଏ ହେଲେ ଧ୍ୟାନ ଦେଉ୍ଲେନି; ହବ କ'ଣ ? ମଣିମାଙ୍କ କାଳରେ ନ ହେଇଚି ତ ଆଉ କ'ଣ ହେବ ? (ନିଶମୋଡ଼ି) ମଣିମା ଖାଲି ଆଙ୍ଗୁଠି ଦେଖାଇ ଦିଅନ୍ତେ କି– ଏ ମହୀମଣ୍ଡଳରେ ଯେତେ ରାଜା ଅଛନ୍ତି ସମସ୍ତଙ୍କୁ ମାସକ ଭିତରେ ମଛିଦେଇ ଆସନ୍ତୁ ନି ! (ଛନ୍ଦକ ବୃତ୍ତାକାରରେ ଠେଙ୍ଗା ବୁଲାଇବା ଫଳରେ ଉପାଳୀ ବିଶେଷଭାବରେ ଆହତହେବା ।)

ଉପାଳୀ–(ଯନ୍ତ୍ରଣାରେ ତଳେ ପଡ଼ୁ ପଡ଼ୁ ପୁଣି ଉଠି) ତତେ ମଣିଷ ଦିଶୁନାହାନ୍ତି ନା କ'ଣ, ଛନ୍ଦିଆ ! ଜାଣି ତ ଶଗଡ଼ ବୋହୁଚୁ । ନାହିଁ, ଯଦି ସତରେ ପାଇକ, ସାଆନ୍ତ ହୋଇ ଥାଆନ୍ତୁ.....

ଛନ୍ଦକ—(ସଙ୍କୁଚିତ ହୋଇ ଯୋଡ଼ହସ୍ତରେ) ଉପାଳୀ ଭାଇ, ଗୋଡ଼ତଳେ ପଡୁଛି, ମତେ କ୍ଷମା କର ଭାଇ, ଅଜାଣତରେ ବାଜିଗଲା ।

ଉପାଳୀ—କ୍ଷମା ଦେବି ତତେ ? (ଚାରିଆଡ଼େ ଆଉଁସି) ଉଃ, ମୋ ପ୍ରାଣ ଚାଲିଗଲାପରି ଲାଗୁଛି....ଆଣ୍ ସେ ଠେଙ୍ଗା (ଜୋର୍‌ରେ ଛନ୍ଦକଠାରୁ ଠେଙ୍ଗା ଛଡ଼ାଇଆଣି ଓ ଉଞ୍ଚାଇ) ଶ...ସେନାପତି ହେଉଚି ! ତତେ ବାଡ଼େଇ ବାଡ଼େଇ ମହାର୍ଜାଙ୍କ ପାଖକୁ ନଉଚି ଚା !

ଛନ୍ଦକ—(ଚିତ୍‌କାରକରି) ଏ ବାପରେ, ମାରିଦେଲାରେ, ଗାଁ ଲୋକେ ଧାଇଁଆସ ହୋ... ।

(ଉଭୟଙ୍କର ପଳାୟନ)

## (ଷଷ୍ଠ ଦୃଶ୍ୟ)

[ଗଭୀର ରାତ୍ରି । ସିଦ୍ଧାର୍ଥଙ୍କ ଶୟନକକ୍ଷ । ସୁସଜ୍ଜିତ ପଲଙ୍କ । ପିଲିସଜରେ ଏକ ପ୍ରଦୀପ ଜଳୁଛି । ପାଖରେ ଏକ ଚତୁଷ୍କୋଣାକାର କାଷ୍ଠାସନ । ତାହାରି ଉପରେ ସିଦ୍ଧାର୍ଥ ଚିନ୍ତାକୁଳ ଭାବରେ ଓଠରେ ହାତଦେଇ ବସିଛନ୍ତି, ନେପଥ୍ୟରୁ ଆସୁଥିବା ସଙ୍ଗୀତଆଡ଼କୁ କର୍ଣ୍ଣ ଓ ପ୍ରଦୀପଆଡ଼କୁ ଆଖିଦେଇ । ଏହା ବୀଣା ସାହାଯ୍ୟରେ ଗୋପା ଗାଉଥିବା ଗୀତ ବୋଲି ମନେକରାଯାଉଛି ।]

ଗୀତ (ନେପଥ୍ୟରୁ)

ତା ଲାଗି ସନ୍ଦେହେ ମନ ସଦା ଛନଛନ
ଯେ ପ୍ରାଣର ପରମ ରତନ । ଘୋଷା ।
ଆଲିଙ୍ଗନେ ଯେବେ ନାହିଁ
ଥାଏ ବ୍ୟବଧାନ
ପ୍ରାଣ ଉଠେ ହୋଇ ଉନମନ
ସତେ କି ସେ ମୋର ବୋଲି
ଡାକିଉଠେ ଚିତ୍ତ
ସେ କି ଅବା ମରୀଚିକା ବନ ।୧।

ନୁହେଁ ଯେହୁ ଚିରନ୍ତନ,
ସତେ ଆପଣାର
ସେ କିପାଁ ମାଡ଼ିବ ଚିତ ଦ୍ୱାର,
ସେ କିପାଁ ଭୁଲାଇ ନେବ କରୁ ଫୁଲହାର,
କି ଲାଭ, ସରଳେ ପ୍ରବଞ୍ଚନ ।୨।

(ସଙ୍ଗୀତ ଶେଷ ହେବାର ସାମାନ୍ୟ ପରେ ଗୋପା ହସିହସି ପଛପଟୁ ଆସି ସିଦ୍ଧାର୍ଥଙ୍କ ଆଖି ଚିପିଧରିବା ।)

ସିଦ୍ଧାର୍ଥ– କିଏ ତମେ ? ତମକୁ କେବେ ଦେଖିଛି କି ? ଅଜଣାପରି ଜଣାପଡୁଛ ଯେ ।

ଗୋପା– (ଆଖି ଛାଡ଼ିଦେଇ) ହଁ, ମୁଇଁ ତମର ସୁବୁଠୁଁ ଅଚିହ୍ନା, ଅଜଣା, ଅପରିଚିତ । ତମର ସମସ୍ତେ ନିକଟ, ସମସ୍ତେ ନିଜର, ମୁଇଁ କେବଳ ଦୂର, ମୁଇଁ କେବଳ ତୁମର ଅଲୋଡ଼ା ।

ସିଦ୍ଧାର୍ଥ– ଓଃ, ସେଇଥିପାଇଁ ଏପରି କରୁଣ ସଙ୍ଗୀତ ଗାଉଥିଲ ? କିନ୍ତୁ ଯିଏ ନିଜର ନୁହେଁ, ଯିଏ ଅନାକାଂକ୍ଷିତ, ଯିଏ ଦୂର, ତାକୁଇ ଲୋକ ବୋଧହୁଏ ଦୀପ ଜାଳି ଅନିଦ୍ରାରେ ଅପେକ୍ଷା କରି ବସିଥାଆନ୍ତି ?

ଗୋପା– ଖାଲି ବସିଲେଇ ଯଦି ହେଉଥା'ନ୍ତା ପ୍ରତୀକ୍ଷା ତାହାହେଲେ କଜଳ ମାରୁମାରୁ ଆଖିରୁ ପାଣି ଗଡ଼ିଲେ କହିବାକୁ ହେବ ବିରହାଶ୍ରୁ ।

ସିଦ୍ଧାର୍ଥ– ତମେ କହ ଯେ ଆଗେ ମୋର ପାଟି ଫିଟୁ ନ ଥିଲା, କିନ୍ତୁ ତୁମ ପାଟି ଯେ ଆଁ ହେଉ ନ ଥିଲା । ଏବେ ଦେଖୁଛି ତମ ବାକ୍ୟବାଣ ଏକ ଅତ୍ୟାଚାର ହେବାକୁ ବସିଲାଣି ।

ଗୋପା– ସ୍ନେହ ଯେ ଅତ୍ୟାଚାର, ଏଟା ଯେ ସ୍ନେହ କରେ ସେଇ ଜାଣେ ।

ସିଦ୍ଧାର୍ଥ– ଯିଏ ସେହି ଅତ୍ୟାଚାର ସହଜରେ ସହ୍ୟକରେ, ଆଉ ପୁଣି ସେହି ଅତ୍ୟାଚାରକୁ ଚାହିଁ ରହିଥାଏ, ତା' ପାଇଁ ପଦେ କିଛି କହିବାର ନାହିଁ କି ?

ଗୋପା– ଯିଏ ଅତ୍ୟାଚାର ସହ୍ୟ କରିବାର ଗର୍ବ କରନ୍ତି, ସିଏ ପୁଣି ଆସିବାରେ ଟିକିଏ ବିଳମ୍ବ ହେଲେ ଅଭିମାନ କରନ୍ତି, ନା ? ସହିବାର ଗୁଣ ଅତି ଚମତ୍କାର ତ !

ସିଦ୍ଧାର୍ଥ– (ଗୋପାର ଦୁଇ ହାତକୁ ଧରି) ଗୋପା, ହଁ, ମୁଁ ଅଭିମାନକରେ । କିନ୍ତୁ ସେଇ ଅପରାଧ ଟିକକରେ ପ୍ରଚ୍ଛନ୍ନ ଅଛି ଯେ ତମରି ଗୌରବ । ମୋର ବେଳେବେଳେ ଇଚ୍ଛା ହେଉଛି ତମର ଏଇ ସୁନ୍ଦର ମୁଖଟିକୁ ଯୁଗଯୁଗାନ୍ତର ଧରି ଚାହିଁ ରହିବାକୁ । ତମେ ରୂପର ସୂର୍ଯ୍ୟ, ଆଉ ମୁଁ ସୂର୍ଯ୍ୟମୁଖୀ ପୁଷ୍ପ । ତମକୁ ବେଳେ ବେଳେ ନ ଦେଖିଲେ ମୋ ପ୍ରାଣ ଉଚ୍ଛନ୍ନ ହୋଇଉଠେ ।

ଗୋପା–ମିଛକଥା, କେବଳ ଚାଟୁ । ତୋଟାର ଜାମୁଗଛମୂଳେ, ଯିଏ ସବୁ ଭୁଲି, ପ୍ରହର ପ୍ରହର ଧରି ଧ୍ୟାନମଗ୍ନ ରହିପାରନ୍ତି, ତାଙ୍କ ମନରେ ଯେ କାହାପ୍ରତି ଉତ୍କଣ୍ଠା ଥାଏ– ଏହା ବିଶ୍ୱାସ କରିବା ଟିକିଏ କଷ୍ଟର କଥା ନୁହେଁ କି ?

ସିଦ୍ଧାର୍ଥ–(ହଠାତ୍ ମୋହଭଙ୍ଗ ହେଲାପରି, ଗୋପାଙ୍କ ହାତ ଛାଡ଼ିଦେଇ) ହଁ, ସତ୍ୟ ! ସତ ଗୋପା ! ସେତେବେଳେ ମୁଁ ସବୁ ଭୁଲିଯାଏ !

ଗୋପା–(ଉତ୍କଣ୍ଠିତା ହୋଇ) ଆଚ୍ଛା ସତ କହିଲ ଦେଖି, କି ବିଷୟ ନେଇ ଏତେ ଧ୍ୟାନ ! ରାଜପୁତ୍ରର ପୁଣି ଏତେ ଭାବନା କ'ଣ ? କଅଣ ତମର ଅଭାବ ? କି

ବିଷୟ ତମେ ମୋଠୁଁ ଗୋପନ ରଖି, ଭାବିହେଉଚ, ମତେ କହୁନା ? ମୋଠି କ'ଣ ତମର ବିଶ୍ୱାସ ନାହିଁ ? ମୁଁ କ'ଣ ତମ ଚିନ୍ତାରେ ଯୋଗଦେବାର ଯୋଗ୍ୟା ନୁହେଁ ?

ସିଦ୍ଧାର୍ଥ—ଗୋପା, ତୁମକୁ ଗୋପନୀୟ ରଖିବାର ମୋର କିଛିହେଲେ ନାହିଁ । ଯାହା ମୁଁ ଭାବେ ତାହା ମୋର ବା ତମର କଥା ନୁହେଁ, ତାହା ସମଗ୍ର ଜୀବଜଗତର ଚିର ସାଧାରଣ ସମସ୍ୟା । ମନୁଷ୍ୟ ଜନ୍ମ ହୁଏ କାହିଁକି ? ସେ ବା କେଉଁଠୁ ଆସେ, ଯାଏ ବା କୁଆଡ଼େ ? ମରେ ବା କାହିଁକି ? ମୃତ୍ୟୁ ଯଦି ଶେଷ ପରିଣତି, ତେବେ ଜନ୍ମିବାର ବା ବଞ୍ଚିଥିବାର ଅର୍ଥ କ'ଣ ? ଆଦ୍ୟ ଓ ଅନ୍ତର ପତ୍ତା ନାହିଁ, ଅଥଚ ଆମେ କେବଳ କେତେ ମୁହୂର୍ତ୍ତର ମଧଟାକୁ ନେଇ ପ୍ରମତ୍ତ । ଏଇସବୁ ଭାବୁ ଭାବୁ ଗୋପା, ମୁଁ ଚିନ୍ତାର ଗଭୀର ତଳକୁ ଚାଲିଯାଏ । ଥଳକୂଳ ପାଏନା, ପ୍ରଶ୍ନର ଉତ୍ତର ପାଏନା । ପ୍ରଶ୍ନରୁ କେବଳ ପ୍ରଶ୍ନ ବାହାରେ; ସମାଧାନରୁ ପୁଣି ଉଠେ ସମସ୍ୟା—ପୁଣି....

ଗୋପା—(ଟିକିଏ ଚିନ୍ତିତା ହୋଇ) ବୁଝିଲ,...କିନ୍ତୁ ଏ ସବୁ ତ ରାଜପୁତ୍ରକୁ ଯୋଗାଏନି । ତମକୁ ସହସ୍ର ସହସ୍ର ପ୍ରଜା ଚାହିଁରହିଛନ୍ତି । ବାବାଙ୍କର ଶେଷଦଶା— କାଆଲି ତମକୁ ଶାସନଦଣ୍ଡ ଧରିବାକୁ ପଡ଼ିପାରେ । ଜନ୍ମ ତମର ରାଜଗୃହରେ, କ୍ଷତ୍ରିୟ କୁଳରେ । ସେଥିପାଇଁ ନିଜକୁ ପ୍ରସ୍ତୁତ କରିବ ନାହିଁ ? ଏସବୁ ତତ୍ତ୍ୱ ବ୍ରାହ୍ମଣ, ପରିବ୍ରାଜକ, ଜଟିଳମାନଙ୍କ ପାଇଁ ସିନା ! ଯୋଦ୍ଧା, କ୍ଷତ୍ରିୟ, ଶାସକର କର୍ତ୍ତବ୍ୟ ହେଉଛି ପ୍ରଜାକୁଳକୁ ଶାସନକରିବା; ଶତ୍ରୁକୁଳ ଜୟକରିବା; ପୃଥିବୀକୁ ସମୃଦ୍ଧ କରିବା । ସଂସାରର ତତ୍ତ୍ୱ ଖୋଜିବାପାଇଁ ଅନ୍ୟ ଲୋକ ଅଛନ୍ତି ।

ସିଦ୍ଧାର୍ଥ—ସେ ବି ମିଥ୍ୟାକଥା । ଜଗତରେ କେବଳ ବ୍ରାହ୍ମଣର ଜନ୍ମ ବା ମୃତ୍ୟୁ ହୁଏନା, ଗୋପା, ଯୋଦ୍ଧା ବି ମରେ, ଶୂଦ୍ର ବି ମରେ, ରାଜା ବି ମରେ । ଏ ସବୁ ବିଷୟରେ ଚିନ୍ତା କରିବାର ଅଧିକାର କେବଳ ବ୍ରାହ୍ମଣର ହେବ କାହିଁକି ? ଅଥଚ ବୃକ୍ଷ ତା'ର ଅସଂଖ୍ୟ ଚେରକୁ ଏଣେ ତେଣେ ବିସ୍ତାରିତକରି ନିଜର ସଂରକ୍ଷଣର ବ୍ୟବସ୍ଥା କରୁଛି, ଆଉ ମନୁଷ୍ୟ ତା'ର ଚିନ୍ତା ଓ କର୍ମକୁ ଆଉ ଜଣକ ହାତରେ ଛାଡ଼ିଦେବ, ଇଏ କି ଯୁକ୍ତି !

ଗୋପା— ତାହାହେଲେ ତତ୍ତ୍ୱ ଖୋଜି ଖୋଜି ତମେ ବି କଅଣ ଜଟିଳ ପରିବ୍ରାଜକଟିଏ ହୋଇ ବସିବ ? ରାଜସିଂହାସନରେ ବସିବନି, ରାଜା ହେବନି, ପ୍ରଜାଶାସନ କରିବନି ?

ସିଦ୍ଧାର୍ଥ— ଗୋପା, ସେପର୍ଯ୍ୟନ୍ତ ମୋର ଭାବନା ଯାଇନି । କିନ୍ତୁ ଯଦି ଆବଶ୍ୟକ ହୁଏ, ସତ୍ୟ ପାଇଁ, ତତ୍ତ୍ୱ ପାଇଁ, ଜ୍ଞାନ ପାଇଁ, ମୁକ୍ତି ପାଇଁ, ସିଂହାସନଟା ତ୍ୟାଗ କରିବା କ'ଣ ଗୋଟାଏ ବଡ଼ ବାଧା ?

ଗୋପା— ତାହାହେଲେ ମତେ ଦିନେ ଛାଡ଼ି ପଳେଇବା ତମ ପକ୍ଷରେ ତ ଖୁବ୍ ସମ୍ଭବ ଦେଖୁଛି । ତେବେ ମତେ ଯେଉଁ ଚାଟୁକଥା କୁହାଯାଉଛି, ସେସବୁ କହି ପ୍ରତାରଣା କରିବାର କି ପୌରୁଷ ? (କ୍ରନ୍ଦନାଭାସ)

ସିଦ୍ଧାର୍ଥ– (ସ୍ତମ୍ଭୀଭୂତ ହୋଇ) କ'ଣ କହିଲ ଗୋପା ! ମୁଁ ତୁମକୁ ପ୍ରତାରିତ କରୁଛି । ପ୍ରତାରିତ କରୁଥିଲେ ପ୍ରାଣର ଅନ୍ତରତମ ପ୍ରଦେଶର ନିଗୂଢ଼ ପ୍ରଶ୍ନସବୁ ତମ ଆଗରେ ବାଢ଼ିବସି ନ ଥା'ନ୍ତି । (କାନ୍ଧରେ ହାତ ଦେଇ) କାନ୍ଦନା ଗୋପା, ଆସ ବାହାରକୁ ଯିବା । କିଛିକ୍ଷଣ ଉଦ୍ୟାନରେ ବୁଲିଆସିବା । ପୁରୁଷର କର୍ମକ୍ଷେତ୍ର ଘର ପାଚେରିର ଆରପଟେ—ସୀମାହୀନ ବାହାରେ । ନାରୀର କ୍ଷେତ୍ର ଘରର ପାଚେରିଘେରା ଛୋଟ ଅଗଣାରେ । ଦୁହେଁ କିପରି ସବୁବେଳେ ଏକାଠି ରହିବେ କହିଲ ? ମୁଁ ସବୁବେଳେ ତମ ପାଖରେ ରହିଥିବି ବୋଲି କିପରି ଆଶା କରୁଛ କହ ତ ! ଯଦି କେବେ ତୁମକୁ ଛାଡ଼ିଯାଏ, ମୁଁ ଯିବି ଜ୍ଞାନ, ତତ୍ତ୍ୱ ଓ ସତ୍ୟ ଖୋଜିବାକୁ, ନ ହେଲେ ଦିଗ୍‌ବିଜୟ ପାଇଁ । ଯାହା ପାଇବି ଗୋପା, ତାହା ଧରି ପୁଣି ଫେରିଆସିବି ତୁମରି ପାଖକୁ । ଆସ, ବାହାରକୁ ଆସ । ଅନନ୍ତ ବ୍ୟୋମଦେଶରେ ଅୟୁତାୟୁତ ନକ୍ଷତ୍ରସଂଘ ଦେଖାଇ ମୁଁ ତୁମକୁ ବୁଝାଇଦେବି ଯେ, ଏହି ଆଦ୍ୟନ୍ତହୀନ ସୃଷ୍ଟି ପ୍ରବାହରେ ଦୁଇ ଜଣ ନୁହେଁ, ସହସ୍ର ସହସ୍ର ସିଦ୍ଧାର୍ଥ ଓ ଗୋପାର ସୁଖ ଦୁଃଖର ଜୀବନ ମରଣର ମଧ୍ୟ କୌଣସି ଅର୍ଥ ନାହିଁ । ବୁଦ୍‌-ବୁଦ୍‌ ପରି ଆମ ସମସ୍ତଙ୍କର ଜୀବନଲୀଳା– ସମସ୍ତେ ଏଇ ଦେଖୁ ଦେଖୁ ଫାଟିବା । ଏଇ ବିରାଟ କ୍ଷଣିକର ଅଭିନୟ ତଳେ ଯାହା କିଛି ସତ୍ୟ, ଯାହା ଚିରନ୍ତନ, ଯାହା ଅବିନଶ୍ୱର ତାହାରି ସଂଧାନହିଁ ସବୁଠାରୁ ବଡ଼ କର୍ମ । ଆଉସବୁ– ଧନ, ମାନ, ପଦ, ଅହଙ୍କାର, ରାଜସିଂହାସନ—ସମସ୍ତହିଁ ଭ୍ରମାତ୍ମକ ମରୀଚିକା । ଆସ, ଆସ ଗୋପା, ମୁକ୍ତ ଆକାଶ ତଳେ ବସି ତମକୁ ମୁଁ ଆହୁରି ଭଲକରି ବୁଝେଇଦେଉଛି ।

(ହାତ ଧରି ଟାଣିନେବା । ପଟପତନ)

## [ ଦ୍ୱିତୀୟ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[କପିଳବାସ୍ତୁର ଉପକଣ୍ଠରେ ଏକ ଉଦ୍ୟାନ । ପଟ ଉତ୍ତୋଳିତ ହେଲା ପରେ ସିଦ୍ଧାର୍ଥ ଉତ୍ସାହର ସହିତ ରଂଗମଂଚରେ ପ୍ରବେଶକଲେ—ଯେପରି ସେ ଜୀବନକୁ ଉପଭୋଗ କରୁଛନ୍ତି । ପଛରେ ଆନନ୍ଦ ।]

ସିଦ୍ଧାର୍ଥ– (ହସି ହସି ଓ ଚାରିଆଡ଼କୁ ଚାହିଁ) ବାଃ, ନୂତନ ବସନ୍ତର କି ମାଦକତା ! ଶୀତ କାଳର ରୁକ୍ଷ ଧରିତ୍ରୀ ପୁଣି କେବଳ ଜୀଇଁଉଠିନି, ନବଯୌବନ ପାଇଲାପରି ଲାଗୁଛି । ତା'ର ବର୍ଣ୍ଣ, ସୌରଭ ଆଉ ସଂଗୀତରେ ଶରୀରର ସମସ୍ତ ସ୍ନାୟୁ ଉତ୍ତେଜିତ ହୋଇ ଉଠୁନି କି ଆନନ୍ଦ ? (ଥଟାରେ) ତମେ ତ ନବବିବାହିତ, ତୁମକୁ ବେଶି ଲାଗିବାର

କଥା ।....ଶୁଣ, ବାବା ଦେଇଥିବା ରଥଟି ଦେଖିଲ ତ କିପରି ଆରାମଦାୟକ ହୋଇଛି । ଚାଲ ଏଇଥିରେ ହିମାଳୟର ଆଉ କିଛି ଉପରକୁ ଯିବା—ଦେଖିବା ଘନନୀଳ ଗଗନ ପଟରେ ହିମାଳୟର ନଭଶ୍ଚୁମ୍ବୀ ସହସ୍ର ଶୁକ୍ଳ ଶିରର ମହିମାମୟ ଦୃଶ୍ୟ । ଯିବ ?

ଆନନ୍ଦ— ଯିବି ଯୁବରାଜ । କିନ୍ତୁ ବାବାଙ୍କୁ କହିଆସିନେ ପରା ?

ସିଦ୍ଧାର୍ଥ— କିଛିଦୂର ଯାଇ ଫେରିଆସିଲେ କ୍ଷତି କ'ଣ ? (ପଦଚାରଣା କରି) ଏଇ ଉଦ୍ୟାନଟି ମଧ ନବବସନ୍ତର ଯାଦୁସ୍ପର୍ଶରେ ମନୋହର ହୋଇଛି ।

(ଟିକିଏ ଏକାନ୍ତରେ, ଯେପରି ଏକ ଗୋପନ କଥା ବନ୍ଧୁକୁ କୁହାଯାଏ) ଆହା, ଗୋପାକୁ ଯାହା ସାଥିରେ ଆଣିପାରିଲି ନାହିଁ ! ତାଙ୍କର ବି ଭାରି ଇଚ୍ଛା, ମୋ ସାଥିରେ ରଥରେ ବସି ବନବନାନ୍ତରେ ବୁଲିବାକୁ । ମୋ ପ୍ରାଣର କଥା ତ ତମେ ଜାଣ ଆନନ୍ଦ; କିନ୍ତୁ ବାପା, ମା'ଙ୍କ ଆଖିଆଗରେ ଏହା ସମୀଚୀନ ନୁହେଁ । ନାଇଁ ଆନନ୍ଦ ? ଓଃ ! ପୁଷ୍ପ ଓ ବୃନ୍ତପରି, ଆକାଶ ଓ ମେଘପରି, ପକ୍ଷୀ ଓ ତା'ର ନୀଡ଼ପରି ଗୋପା ଯେ କ୍ରମେ କ୍ରମେ ମୋଠାରୁ ଅବିଚ୍ଛେଦ୍ୟ ଓ ଅବିଭାଜ୍ୟ ହୋଇଉଠୁଛି । ବାହାରକୁ କେବେ କାହିଁ ବୁଲି ବି ଟିକିଏ ଆସିଲେ ପୁଣି ତା'ରି ପାଖକୁ ଫେରିଯିବାକୁ ପ୍ରାଣ ଉଦ୍‌ବିଗ୍ନ ହୋଇ ଉଠୁଛି, ଗାଈ ଯେପରି ବିପଦ ଆଶଂକାରେ ଧାଏଁ କଅଁଳା ବାଛୁରୀଆଡ଼କୁ । ସେ ଯେ ନାହିଁ ପାଖରେ, ଏଇକ୍ଷଣି ମୋ ମନଟା କିମିତି କିମିତି ହେଉଛି ।

ଆନନ୍ଦ— ଚାଲନ୍ତୁ ତା'ହେଲେ ଫେରିଯିବା । ସେ ବି ଅପେକ୍ଷା କରି ବସିଥିବେ । ଆମେ ଅନେକବେଳୁ ଘରୁ ବାହାରିଲେଣି, ମଣୋହିର ବେଳ ଯେ ଗଡ଼ିଲାଣି । ବୁଲୁବୁଲୁ ଜଣାପଡୁନି ସିନା । ଚାଲନ୍ତୁ, ଛନ୍ଦକକୁ ଡାକେ ।

(ଆନନ୍ଦ କହିଲାବେଳେ ଛନ୍ଦକ ଏକ ଦିଗରୁ ପ୍ରବେଶକରିବା ଓ ଅନ୍ୟ ଦିଗରେ ସିଦ୍ଧାର୍ଥ ଅନ୍ୟମନସ୍କ ଭାବରେ ପଦଚାରଣା କରୁ କରୁ....)

ସିଦ୍ଧାର୍ଥ— ଆରେ, ଏ ଗଛମୂଳେ ଗୁଡ଼ାଏ ପୂଜାଦ୍ରବ୍ୟ କ'ଣ ପଡ଼ିଛି ? ଏ କି ବ୍ୟାପାର ପୁଣି ? ଛନ୍ଦକ କୁଆଡ଼େ ଗଲା ? (ଲେଉଟି ତାକୁ ଦେଖିପାରି) ଛନ୍ଦକ, ଏଟା କି ଗଛ ? ଏ ଗଛଟା କ'ଣ ପୂଜା ହେଉଛି ନା ଯା ତଳେ କିଏ ପୂଜା କରି ଯାଇଛି ?

ଛନ୍ଦକ— ମଣିମା, ସେଇଟା କାମନା ଗଛ ।

ସିଦ୍ଧାର୍ଥ— କାମନା ଗଛ ? ଅର୍ଥ ?

ଛନ୍ଦକ— ମଣିମା, ଯାହାର ଯାହା କାମନା ଥିବ ଏ ଗଛ ପାଖରେ ଆସି ଜଣାକଲେ ମିଳୁଚି । ବହୁତ ନୋକ ଏଠିକି ମଂଗଳବାରକୁ ମଂଗଳବାର ଆସନ୍ତି ମଣିମା । ଜଣେ କାଳିସୀ ବି ଆସେ, କାଇଁକି ନା ଏ ଗଛରେ ପ୍ରେତ ଅଛି, ସେ କାଳିସୀଠି ଉଭା ହୁଏ । କାଳିସୀ ବସି ଧିଆନ କଲେ ପ୍ରେତ ତା ଉପରେ ଉଭାହୋଇ ଯାହା ଯିଏ ପଚାରିବ ସବୁ ଠିକେ ଠିକେ କହିଯାଉଛି ମଣିମା ।

ସିଦ୍ଧାର୍ଥ— ସେ କାଳିସୀର ଘର କେଉଁଠି ? ସେ କ'ଣ ଏଇ କାମ କରି ବଂଚୁଛି, ନା ତା'ର ଆଉ କିଛି ଜୀବିକା ଅଛି ?

ଛନ୍ଦକ— ମଣିମା, ଆମରି ପଡ଼ାରେ ତା'ଘର । ଚାଷବାସ କିଛି ଥିଲା; ହେଲେ ଛ'ଛଟା ପିଲାରେ କୁଆଡ଼େ ବା ଅଣ୍ଟନ୍ତା । କାଳିସୀ ହେଲା ଦିନରୁ ତା'ର ଆଉ ଚଳାଚଳକୁ ଅସୁବିଧା ନାହିଁ ।

ସିଦ୍ଧାର୍ଥ— ତୁ ନିଜେ କେବେ କାଳିସୀ ପାଖକୁ ଆସିଛୁ ?

ଛନ୍ଦକ— (ସଶଂକିତେ) ମଣିମା, ଅଭୟ ଦେଲେ କହିବି !

ସିଦ୍ଧାର୍ଥ— କହ କହ ! ଭୟ କରିବାର ଏଥିରେ କ'ଣ ଅଛି ?

ଛନ୍ଦକ— (ହାତ ଘଷିଘଷି) ମଣିମାଙ୍କୁ ନୁଚେଇବି କ'ଣ ? ମୋ ଘରବାଲୀର ପାଟିଟା ଭାରି ଖର । ସବୁବେଳେ କଳି, ସବୁବେଳେ ରାଉ ରାଉ, କଚର କଚର; କଥାଗୁଡ଼ାକ ତା'ର ଦାନ୍ତୁଆ କତୁରୀ ପରି । କେତେ ସହିବ ମନିଷ ? ମୁଁ ଅସ୍ଥିର, ସାଇପଡ଼ିଶା ବ୍ୟସ୍ତ, ସାରାପଡ଼ା ଉଠପଡ଼ ତା' ନାଗି । ସେ ଜପତ୍ ହୋଇପାରିବ କି ନାହିଁ ବୋଲି ଥରେ ଆଇଥେଲି ମଣିମା । ଛାମୁଙ୍କୁ ତ ସବୁ ଜଣା । ଆମେ ଗାଈ ଚରଉଛୁ, ଛାମୁ ମନିଷ ଚରଉଛନ୍ତି, କୁ' କଥା ଅଜଣା ? ଜଗତ୍ରରେ ଘର କରିଛେ ଯେତେବେଳେ......ଛାମୁଙ୍କୁ ନୁଚେଇବି ଆଉ କ'ଣ ?

ସିଦ୍ଧାର୍ଥ— (ହସି ) ଆରେ, ମୁଁ ତୋ ଘର କଥା ଜାଣିମି କିପରି ? ହଉ, ତୋ ସ୍ତ୍ରୀ ଜବତ୍ ହେଲା ? କଳିସୀମନ୍ତ୍ର କାଟୁକଲା ?

ଛନ୍ଦକ— ଆଜ୍ଞା କାଳିସୀ, ତା ମନ୍ତ୍ର ସିଏ ଜାଣିଥିବ । ମତେ ଖାଲି ଟିକିଏ ଗୁଣ୍ଡଦେଇ କହିଥିଲା ଅମେଇସା ଆଉ ରଇବାର ଯେଉଁଦିନ ଏକାଠି ପଡ଼ିବ—ସେ ଦିନ ଅଧରାତି ସମୟକୁ ସେ ନିଘୋଡ଼ ନିଦରେ ଶୋଇଥିଲାବେଳେ ତା' ଜିଭରେ ଏ ଗୁଣ୍ଡ ପକେଇଦେବୁ । ଆଜ୍ଞା, ମୁଁ ତ ଅମେଇଷା ରବିବାରକୁ ଅପେକ୍ଷା କରି ରହିଛି । ଇ ଭିତରେ ଜଉତିଷଙ୍କୁ କେତେ ଥର ପଚାରିଲିଣି । ସେ କହୁଚିନି, ପଡ଼ିନି, ପଡ଼ିନି । ମୁଁ ତ ସେ ଗୁଣ୍ଡ ସ୍ବୁବେଳେ କାନିରେ ବାଂଧି ବୁଲୁଚି । ମାଇକିନା ଜାଣିଲେ ମତେ ବାକୀ ରଖିବ ନା ? ତେବେ ମଣିମା ମୁଁ ଯାହା ଅନୁଭବ କଲିଣି, ଦେଖୁଛି ଏ ମହୀମଣ୍ଡଳରେ ମାଇକିନା ପାଟିକି ଓଷଦ ନାହିଁ ମଣିମା ।

ସିଦ୍ଧାର୍ଥ— (ହସିହସି) ଆନନ୍ଦ, ଛନ୍ଦକର ଏ ଯେ ବିଚିତ୍ର ଅଭିଜ୍ଞତା ! କିନ୍ତୁ ନାରୀର ସୁନ୍ଦର ମୁଖମଣ୍ଡଳରୁ ଅପ୍ରୀତିକର, ଦୁଃଖଦାୟକ ଯେ କିଛି ବାହାରିପାରେ, ମୁଁ ଭାବିପାରୁ ନାହିଁ । ଗୋପାର କଣ୍ଠସ୍ୱର କି ଶ୍ରୁତିପ୍ରୀତିକର, କି କୋମଳ, କିପରି ଶାନ୍ତିସୁଖଦାୟିନୀ ! ଆମ ପ୍ରାସାଦରେ ଶତ ଶତ ରମଣୀଙ୍କର ଗତାଗତ; ସମସ୍ତେ ସୁନ୍ଦରୀ, ସମସ୍ତେ କମନୀୟା । ତାଙ୍କର ଚାଲିରେ ନୃତ୍ୟର ମାଦକତା, ତାଙ୍କର କଟାକ୍ଷରେ ସମ୍ମୋହର ନିଶା, ତାଙ୍କର ବଚନରେହିଁ ସଙ୍ଗୀତ । ଆଉ ଛନ୍ଦକ କହୁଛି ତା'ସ୍ତ୍ରୀର ପାଟି (ହଠାତ୍

କଥା ବନ୍ଦକରି ଓ ଅନତିଦୂରକୁ ଦୃଷ୍ଟିପକାଇ) ଛନ୍ଦକ, ଛନ୍ଦକ, ଦେଖ ତ ଦେଖ ତ, ଏଆଡ଼େ କି ଏକ ଅଦ୍ଭୁତ ଜୀବ ଆସିଲାଭଳି ଦେଖାଯାଉଛି । ଦେଖ ତ ଆନନ୍ଦ ।

(ଛନ୍ଦକ ଓ ଆନନ୍ଦ ସେଇ ଦୃଶ୍ୟକୁ ଦେଖି ଆତଙ୍କିତ ହୋଇଉଠିଲେ ଓ ପରସ୍ପର ମୁହଁକୁ ବାରମ୍ବାର ଅନାଅନି ହେଲେ । ଉଭୟଙ୍କର ମୁଖରେ ଏପରି ଏକ ଛାୟାପାତ ହେଲା ଯେପରି ମନେହେବ ଯେଉଁ ସଙ୍କଟକୁ ସେମାନେ ଆଡ଼େଇ ଆଡ଼େଇ ଯାଉଥିଲେ, ସେଇ ସଂକଟ ବର୍ତ୍ତମାନ ଉପସ୍ଥିତ ।

ଇତିମଧ୍ୟରେ ଧୀରେ ଧୀରେ ରଙ୍ଗମଞ୍ଚରେ ଏକ ଅତି ବୃଦ୍ଧା ନାରୀର ପ୍ରବେଶ । ବୟସ ଭାରରେ ସେ ଏକାବେଳକେ ନଇଁପଡ଼ିଛି । ହାତରେ ତା'ର ଯଷ୍ଟି । ହାତ ଥରୁଛି । ପରିଧାନ ଗଣ୍ଠିଳ ବସ୍ତ୍ର । ଗୋଟିଏ ପଦ କ୍ଷତ-ଦୁଷ୍ଟ, ସେଥିରେ କନା ଗୁଡ଼ାଯାଇଛି । ଦେହ ତା'ର ଶିରାମୟ । ମସ୍ତକର କେଶ ଅଳ୍ପ ଓ ଶୁକ୍ଳ । ସେ ଯେତିକି ଅଗ୍ରସର ହେବ ସିଦ୍ଧାର୍ଥ ସେତିକି ବିସ୍ମିତ ହୋଇ ପଛକୁ ପଛକୁ ପଦେ ପଦେ ଘୁଞ୍ଚୁଥିବେ ଏବଂ ଅନ୍ୟ ଦୁହେଁ ଅନ୍ୟ ଦିଗରେ ସେଇ ପରିମାଣରେ ଆତଙ୍କିତ ଭାବ ଦେଖାଇ ଘୁଞ୍ଚୁଥିବେ । ଶେଷରେ ବୁଢ଼ୀ ସିଦ୍ଧାର୍ଥଙ୍କ ସମ୍ମୁଖରେ ମୂକ ଭାବରେ ହାତ ମେଲାଇ ମାଗିବାର ଅଭିନୟ କରିବ ।)

ସିଦ୍ଧାର୍ଥ– (ଅତ୍ୟନ୍ତ ବିସ୍ମୟରେ) ଏ କ'ଣ ? ଏ କ'ଣ ମନୁଷ୍ୟ ଛନ୍ଦକ !

ଆନନ୍ଦ– ହଁ ଯୁବରାଜ, ଏ ମନୁଷ୍ୟ । ଏ ଜଣେ ବୃଦ୍ଧା ସ୍ତ୍ରୀ । ଅତି ବେଶୀ ବୟସ ହୋଇ ଯିବାରୁ ଏକାବେଳକେ ନଇଁଗଲାଣି ଶୁଖିଲା ଲଟାପରି ।

ସିଦ୍ଧାର୍ଥ– ନାରୀ ପୁଣି ଏ । ମୁଁ ତ ଏହା କଳ୍ପନା ବି କରିପାରି ନ ଥା'ନ୍ତି ।

ଛନ୍ଦକ– ମଣିମା, ବୁଢ଼ା ବୁଢ଼ୀ ହେଲେ ସବୁ ମନିଷ ଏଇପରି ହେବେ । ଆମେ ସମସ୍ତେ ଏଇପରି ଦିନେ ହେବା ।

ସିଦ୍ଧାର୍ଥ– (ଭାବାଭିଭୂତ ହୋଇ) ଏହି ସେହି ନାରୀ ଯେ ପୁରୁଷକୁ ମନ୍ତ୍ରମୁଗ୍ଧ କରି ରଖେ । ତା'ର ତରଙ୍ଗାୟିତ ଯୌବନର, ବର୍ଣ୍ଣ ସୌରଭାକୁଳ ଲାବଣ୍ୟର ଏଇ ଶେଷ ପରିଣତି । ସମସ୍ତ ନାରୀ, ସକଳ ନରର ପୁଣି ଏଇ ପରିଣତି ! ଆନନ୍ଦ, ଆନନ୍ଦ, ଏଇ ଏଇ ମୁଁ ଯେ ଏବେ ସ୍ପଷ୍ଟ ଦେଖିପାରୁଛି ସୁନ୍ଦରୀ ଗୋପାର ଜରାବିକୃତ, ବେପଥୁମତୀ ଶିରାଳ, ବୀଭତ୍ସ ବାର୍ଦ୍ଧକ୍ୟର ଛବି । କଳ୍ପନାରେ ଭାସିଉଠୁଛି ମଧ୍ୟ ମୋର ନିଜର ଶୁକ୍ଳକେଶ, ଆନତ ଦୁର୍ବଳ ଶରୀର । ମୋର ଆଉ ଗୋପାର ବାର୍ଦ୍ଧକ୍ୟ କେବେ ଆସିପାରେ ବୋଲି ମୁଁ କେବେ କଳ୍ପନାହିଁ କରି ନ ଥିଲି । କିନ୍ତୁ ଜୀବନାରମ୍ଭର ଏଇ ତା' ହେଲେ ନିଶ୍ଚିତ ଶେଷ । ହଠାତ୍ ମୋର ଅଂଧୀଭୂତ ନୟନ ଫିଟିଗଲା ଯେପରି ! ମନେହେଉଛି ମୁଁ କି ଭ୍ରାନ୍ତିରେ ଥିଲି । ପ୍ରାଣ ବଡ଼ ଅଶାନ୍ତ ହୋଇଉଠୁଛି । ଚାଲ ଆନନ୍ଦ, ଚାଲ ଛନ୍ଦକ, ଚାଲ ଫେରିଯିବା (ଦ୍ରୁତ ପଦକ୍ଷେପରେ କିଛିଦୂର ଯାଇ ପୁଣି ଫେରି)– ନା, ନା, ଛନ୍ଦକ ପଚାର, ପଚାର ତ ସେ କିଏ, ଆଉ କାହିଁକି ଏ ବାଟରେ ଆସିଛି ?

ଛନ୍ଦକ— ଏ ବୁଢ଼ୀ, ତୁ କାହିଁକି ଆସିଛୁ ? ତୁ କିଏ ? କ'ଣ ମାଗୁଛୁ ?

ବୁଢ଼ୀ— (କ୍ଷୀଣ କଣ୍ଠରେ ଯେପରି କାଲା ଲୋକ କହନ୍ତି) ମୁଁ ବୁଢ଼ୀନୋକ ବାବା । ଘର ଥିଲା, ଚାଷ ଥିଲା, ଭଲରେ ଥିଲି । ସ୍ୱାମୀ ବାଡ଼ିରେ ମଲା, ପୁଅ ଜରରେ ମଲା । ବୋହୂ ଆଉ ଜଣକର ହାତଧରି ଚାଲିଗଲା । ବୁଢ଼ୀ ହୋଇଗଲି, କାମଦାମ ଆଉ କରିପାରିଲିନି । ପୁଣି ଏଇ ଦରପୋଡ଼ା ରୋଗ ଦିହରେ ବାହାରିଲା ଯେ ସାଇପଡ଼ିଶା ନାକ ଟେକିଲେ । ଏବେ ଏଇ ପୋଡ଼ା ପେଟ ଚାଖଣ୍ଡକପାଇଁ ଖାସ୍ ଏ ଜୀବନକୁ ବଞ୍ଚେଇ ରଖିବାପାଇଁ ଦ୍ୱାର ଦ୍ୱାର ଭିକ ମାଗି ବୁଲୁଛି । ବଳ ବୟସ ଥିଲା, ଧାନ ଚାଉଳ ଥିଲା, ସେତେବେଳେ କେତେ ବଂଧୁବାନ୍ଧବ, କେତେ ପଚରା ସଂଖୁଳା; ଏବେ କିଏ ଆଉ ପଚାରିବ ବାବା ?

ସିଦ୍ଧାର୍ଥ— ଏ ଅବସ୍ଥାରେ ବି ସେ ବଂଚିବାକୁ ଚାହୁଁଛି ?

ଆନନ୍ଦ— ଜୀବନର ଅର୍ଥ ହେଉଛି ବଂଚିବାର ଆଶା । ଏ ଜଗତରେ ମରିବାକୁ କେହି ଇଛା କରନ୍ତି ନାହିଁ, ଯୁବରାଜ ! ଏହା ଜୀବର ଧର୍ମ ।

ସିଦ୍ଧାର୍ଥ— ଛନ୍ଦକ, ତାକୁ ଏଇ ସ୍ୱର୍ଣ୍ଣ ମୁଦ୍ରାଟି ଦେଇଦିଅ, ସେ ଚାଲିଯାଉ । ଆଉ ଆନନ୍ଦ, ଆମେ ବି ଚାଲ ଫେରିଯିବା । ମୋ ମନଟା ଅଶାନ୍ତ ହୋଇ ଉଠିଲାଣି ।

ଛନ୍ଦକ— ଏ ବୁଢ଼ୀ,ନେ । (ମୁଦ୍ରା ଦାନ)

ବୁଢ଼ୀ— ହଉ ବାବା, ବିଧାତା ତମକୁ ମୋଅରି ଆୟୁଷ ଦେଇଥାଉ ।

(ଧୀରେ ଧୀରେ ପ୍ରସ୍ଥାନ)

ସିଦ୍ଧାର୍ଥ— କି ବିକଟ ଆଶୀର୍ବାଦ ଦେଖୁଛ, ଆନନ୍ଦ ! କି ବିକୃତ ଅଭିଳାଷ ! ଏଇ ଆୟୁଷ, ଏଇ ଜରା ପୁଣି ଏକ ଆକାଂକ୍ଷିତ ବସ୍ତୁ ହୋଇପାରେ ? ଚାଲ ଛନ୍ଦକ, ରଥ ପ୍ରସ୍ତୁତ କର ଫେରିବାପାଇଁ । ଆସ, ଆନନ୍ଦ ।

(ପ୍ରସ୍ଥାନ ଆରମ୍ଭରେହିଁ ନେପଥ୍ୟରୁ ଶବବାହୀମାନଙ୍କର 'ବ୍ରହ୍ମନାମ ସତ୍ୟ ହେ', ଏଇ ବିଭୀଷିକାମୟ ଚିତ୍କାର ଶୁଣାଯିବ । ସଂଗେ ସଂଗେ ନାରୀ ଓ ପୁରୁଷ କଣ୍ଠରୁ, 'କୁଆଡ଼େ ଚାଲିଗଲ ହୋ ବାପା', 'ଅନାଥ କରିଦେଇ କୁଆଡ଼େ ଗଲ ହେ ଧନ', 'ଆମକୁ ଭିକାରୀ କରି କୁଆଡ଼େ ଗଲ ହେ' ଇତ୍ୟାଦି ବିଳାପ । ସିଦ୍ଧାର୍ଥ, ଛନ୍ଦକ ଓ ଆନନ୍ଦ ବିଳାପଧ୍ୱନି ଦୂରରେ ମିଳାଇଯିବାଯାଏଁ ନେପଥ୍ୟଆଡ଼କୁ ଅନାଇରହିବେ ।)

ସିଦ୍ଧାର୍ଥ— (ସ୍ତମ୍ଭୀଭୂତ ହୋଇ) ଏ ପୁଣି କ'ଣ, ଛନ୍ଦକ ? ମୋର ଲୋମ ଟାଙ୍କୁରିଉଠୁଛି । କାହିଁକି ଏ ବିଭୀଷିକାମୟ କ୍ରନ୍ଦନ ଧ୍ୱନି ? ସେହି ଲୋକମାନେ ବୋହି ନେଇଯାଉଛନ୍ତି କଅଣ ?

ଛନ୍ଦକ— (ସେଇଆଡ଼କୁ ଅନାଇ, ଯେତେ ନିର୍ବିକାର ଭାବ ଦେଖାଯାଇପାରେ ଦେଖାଇ ।) ମଣିମା କେହି ଜଣେ ମରିଗଲା ବୋଧହୁଏ । ଏଇ ବାଟଦେଇ କିଛିଦୂର ଗଲେ ନଈ

କୂଳରେ ଶ୍ମଶାନ । ସେଠାରେ ମଲା ମଣିଷଟି ପୋଡ଼ାହେବ । ପଛରେ ତା'ର କୁଟୁମ୍ବ ଲୋକେ କାନ୍ଦି କାନ୍ଦି ଯାଉଛନ୍ତି ।

ସିଦ୍ଧାର୍ଥ— କିଏ ମଲା ଛନ୍ଦକ ? ଆମରି କପିଳବାସ୍ତୁର ଲୋକ ତ ସେ ? ଅନୁମାନ କଲ ସେ କିଏ ହୋଇପାରେ !

ଛନ୍ଦକ— (ସେଇଆଡ଼କୁ ଅନାଇ) ଆଜ୍ଞା, ମନେହେଉଛି ରତନ ଶେଠୀର କାଳହୋଇଗଲା ।

ଆନନ୍ଦ— ହଁ, ଠିକ୍ ତା'ରି ପିଲାପିଲି ତ ପଛରେ ଯାଉଛନ୍ତି, ଏଇ !

ସିଦ୍ଧାର୍ଥ— ରତନ ଶେଠୀ ! ଲକ୍ଷପତି ବଣିକ ରତନ ଶେଠୀ । ଏଇ ସେଦିନ ସେ ନୂତନ ମୁକ୍ତାର ମାଳା ଗୋପା ପାଇଁ ଉପହାର ଧରି ଆସିଥିଲା ମୋ ନିକଟକୁ । ସେଇ ରତନ ଶେଠୀ ଆଉ ନାହିଁ । ଅକଳନ ସଂପଦର ଅଧିକାରୀ, ଲକ୍ଷପତି ସାଧବର ଏଇ ହୃଦୟବିଦାରକ ଶେଷ !

ଏଇ ତା' ହେଲେ ମୃତ୍ୟୁ ! ନିଜ ପ୍ରିୟଜନମାନଙ୍କର ଏହି କରୁଣ ବିଭୀଷିକାମୟ ବିଳାପ ଶେଠୀ ଆଉ ଶୁଣିପାରୁନାହିଁ ? କି ଆଶ୍ଚର୍ଯ୍ୟ ! ମାତ୍ର କେତେ ମୁହୂର୍ତ୍ତ ପୂର୍ବେ ତା'ର କ୍ଷୁଦ୍ରତମ ପୁତ୍ର ବା କନ୍ୟା କେବଳ 'ବାପା' ବୋଲି କାନ୍ଦି ଡାକିଦେଲେ, ଯେ ହୁଏ ତ ଖଣ୍ଡାଧରି ଉଠିଥା'ନ୍ତା ସେଇ ଏବେ ସେମାନେ ମୁଣ୍ଡ ପିଟିପିଟି ଫଟାଇ ଦେଲେ ବି ପଦେ କଥା କହିପାରୁନି । ପଡ଼ିରହିଲା ତା'ର ପରିବାର, ତା'ର ଦାସଦାସୀ, ତା'ର ମାଣିକ୍ୟମୁକ୍ତା । କୁଆଡ଼େଗଲା ରତନ ଶେଠୀ ! ଓଷ୍ଠ ଅଛି କିନ୍ତୁ ଆଉ ବାଣୀ ସ୍ଫୁରଣ ନାହିଁ; ପଦ ଅଛି ଅଥଚ ଉଠିବାର ଶକ୍ତିହିଁ ଉଭେଇଗଲା— ଚାଲିବା କଥା ଦୂରେ ଥାଉ । କି କରୁଣ, କି ଭୟାବହ ପରିଣତି ଏ ମନୁଷ୍ୟର ଆନନ୍ଦ ! ଯୌବନଉନ୍ମାଦମୟ ମୁଖର ଜୀବନର ଏଇ ନିର୍ବାକ ଶେଷ । ଜୀବନର ଶେଷ ମୃତ୍ୟୁ ମୁଁ ଶୁଣିଥିଲି, କିନ୍ତୁ ଏ ପ୍ରତ୍ୟକ୍ଷ ପରିଚୟ ଏପରି ବିଭୀଷିକାମୟ ହେବ ବୋଲି ମୁଁ ତ କଳ୍ପନା ବି କରି ନ ଥିଲି ।

ଛନ୍ଦକ— (ବେଖାତିର ଭାବ ଦେଖାଇ) ବ୍ୟସ୍ତ ହୁଅନ୍ତୁ ନାହିଁ ମଣିମା । ମଣିମା ନୂଆ ନୂଆ ଦେଖିଲେ ବୋଲି ମଣିମାଙ୍କୁ ପ୍ରଥମେ ଖରାପ ଲାଗିବ ନିଚେ । ଆମେ ପ୍ରତ୍ୟନିତ୍ୟ ମରଣ ଦେଖୁଛୁ, ଆମକୁ କିଛି ନାହିଁ । ପରେ ସବୁ ଦିହଘସିଆ ହୋଇଯିବ ଯେ । ଜନ୍ମ ପରିକା ମରଣ, ଗୋଟିଏ ଜିନିଷର ଏପାଖ ସେପାଖ । ଏଥିରେ ଭାବିବାର କିଛି ନାହିଁ ମଣିମା ।

ସିଦ୍ଧାର୍ଥ— ହଁ ଆନନ୍ଦ, ଦେଖୁଛି ଏ ସବୁକୁ ନ ଭୁଲିଲେ ମନୁଷ୍ୟ ବଂଚିବ ବା କିପରି ? ଚାଲ ଛନ୍ଦକ, ଚାଲ ଘରକୁ ଫେରିବା । ଆଉ କିଛି ଦେଖିବାର ଇଚ୍ଛା ମୋର ନାହିଁ ।

(ଧୀରେ ଧୀରେ ରଙ୍ଗମଞ୍ଚରୁ ବହିର୍ଗମନ)

## (ଦ୍ୱିତୀୟ ଦୃଶ୍ୟ)

[ରାଜପଥ । ଗୋଟିଏ ଦୁର୍ଭିକ୍ଷଗ୍ରସ୍ତ ପରିବାରର ପ୍ରବେଶ । ବାପ, ମା’ ଓ ପୁଅଟିଏ, ଝିଅଟିଏ । ସେମାନେ ସମସ୍ତେ କଙ୍କାଳସାର ଓ ଅପରିଚ୍ଛନ୍ନ । ରଂଗମଂଚରେ ପ୍ରବେଶ କରୁ କରୁ ପିଲାମାନେ କ୍ଷୁଧାଜ୍ୱାଳାରେ ଚିତ୍‌କାର କରିବେ ଓ ଚାଲି ନ ପାରି ଓଟାରି ହେଉଥିବେ ।]

ପୁଅ– ମା’, ମୁଁ ଆଉ ଚା...ଲିପାରିବିନି । କ’ଣ ଖାଇବି–ମତେ ଖାଇବାକୁ ଦିଅ ମା’....ମତେ ଭା...ରି ଭୋଖ ।

ଝିଅ– (ମୁମୂର୍ଷ ପରି) ବାପା, ମୁଁ ମ..ରି...ଯିବି । ଆଉ...ଯାଇ....ପାରିବିନି । (ତଳେ ପଡ଼ିଯିବା)

ପୁଅ– ମା’....ମତେ....ମାରି....ଦିଅ । ମୁଁ ଏଇଠି ଶୋଇପଡ଼େ...ଆଉ ଚଲାନା ।

ପିତା– (ଲେଉଟି) ଚୁପ୍ ଚୁପ୍ ....ତମେ ଦି’ ଜଣ ଏପରି ନବରଙ୍ଗ କରିବ ତ ପେର ପିଠିରୁ ଛାଲ ଉତାରି ଦେବି । ଦେଖୁଛ ଚନ୍ଦନ ପୋଛୁଛ କାଠ । ଆରେ, ବାଟରେ ତମପେଇଁ କିଏ ରାଂଧିକରି ରଖିଛି, ବାଢ଼ିଦେବ ? (ପୁଅଟିକୁ ଜୋର୍‌ରେ ଓଟାରି ଦେବା । ସେ ଭେଁ ଭେଁ କାନ୍ଦିବା)

ମା’– ଏ ଦରମଲା ପିଲାଗୁଡ଼ାକୁ ମାରିବାକୁ ତମର ହାତ ଯାଉଛି ? ବିଧାତା ମତେ ହେଲେ ମରଣ ଦେଉ ନାହିଁ ? ରକତ ମାଉଁସ ଦେହ ଧରି ମତେ ଯା ଦେଖିବାକୁ ଥିଲା । (ରୋଦନ)

ପିତା– (ସ୍ତମ୍ଭୀଭୂତ ଓ ଅନୁତପ୍ତ ହୋଇ) ସତେ ତ କି ପାଷଣ୍ଡ ମୁଁ । ମୋର ରକ୍ତର ଫୁଲଫଳ । ସେ ମୋରି ଆଗରେ ନ ଖାଇ ଛଟପଟ ହୋଉଛନ୍ତି, ଅଥଚ ମୁଁ ତାଙ୍କୁ ମାରୁଛି । ଭୋକରେ ମୁଁ ବି ତ ଆଉ ଚାଲିପାରୁନି । ପିଲେ ବା ଚାଲିବେ କିପରି ? (ସ୍ତ୍ରୀକୁ ଲକ୍ଷ୍ୟକରି) କାନ୍ଦନି, କାନ୍ଦନି, କପିଳବାସ୍ତୁ ଏଇ ତ ହେଲା; ଘର ଦ୍ୱାର ସବୁ ଦିଶିଲାଣି । ପିଲାଙ୍କୁ କୌଣସିମତେ ସେଠି ପହଁଚେଇ ଦେଲେ ଢୋକେ ଢୋକେ ମିଳିଯିବ ପରା–ସେଥିପାଇଁ ତରତର କରୁଛି ସିନା–ଆସ, ମୁଁ କୁରୁପାକୁ କାଖଉଛି ଖଣ୍ଡେ ବାଟ–ତମେ ସାବୀକି ହାତଧରି ଚଲେଇ ଆଣ...

(ପିତା ପୁଅଟିକୁ କାଖେଇ ଆଗେ ଆଗେ ଚାଲିଯିବେ) ଶୀଘ୍ର ଶୀଘ୍ର ଗୋଡ଼ କାଢ଼ି ଆସଭାରି । (ପ୍ରସ୍ଥାନ)

ମା’– ଆ, ଆ, ମୋ ମା’ଟି ପରା...ବାପା ଭାଇନା ଗଲେଣିଭାରି ଆଗରେ...(ହାତ ଧରି ଓଟାରିବା)

ଝିଅ– ନାଁ ବୋଉ, ମୁଁ ଏଇଠି ମରିଯିବି ପଛେ, ମତେ ଆଉ ଚଲାନା...ମୋ ପେଟ କଅଣ ହୋଇଯାଉଚି ଲୋ ବୋଉ...ମତେ ମାରି ଦେ’ଲୋ.... (ବିଳାପ)

ମା'–ଛି ମା'ଟା ସେମିତି ହ'ନା । ହାୟ ଭଗବାନ, କି ପାପରୁ ଏ ପ୍ରାୟଶ୍ଚିତ୍ତ ଦେଉଛ କେଜାଣି...(ଅଶ୍ରୁମୋଚନ କରୁ କରୁ ପିଲାଟିକୁ ଟେକି ଉଠାଇଲା ବେଳକୁ ସିଦ୍ଧାର୍ଥ, ଆନନ୍ଦ ଓ ଉପାଳୀର ହଠାତ୍ ପ୍ରବେଶ)

ସିଦ୍ଧାର୍ଥ– (ପିଲାଟିକୁ ନିଜ କାଂଧରେ ପକାଇ) ମା', ବ୍ୟସ୍ତ ହୁଅନି । ତମ ପିଲାକୁ ମୁଇଁ ବୋହିନେବି ।

ଉପାଳୀ– (ଆଗକୁ ଧାଇଁ ଆସି) ମଣିମା, ମତେ ଦିଅନ୍ତୁ ମତେ....ଛାମୁ କାହିଁକି....ମହାର୍ଜା ଶୁଣିଲେ କ'ଣ.....

ସିଦ୍ଧାର୍ଥ– (ପିଲାଟିକୁ ଉପାଳୀକୁ ଦେଇ) ହଉ, ନିଅ ଉପାଳୀ, ନିଜ ପିଲାପରି ଯତ୍ନରେ ନିଅ । ଆଉ ଏମାନଙ୍କର ଖାଇବା ପିଇବାର ସମସ୍ତ ବ୍ୟବସ୍ଥା କରିଦେବ । ଆମେ ପଛରେ ଯାଉଛୁ । ପଛରେ ବି ବୁଭୁକ୍ଷୁଦଳ ଆସୁଛନ୍ତି । ତମେ ଯାଅ ।

ମା'– (ଗଦ୍‌ଗଦ ସ୍ୱରରେ) ଆପଣ କିଏ ? ଆମକୁ କୁଆଡ଼େ ନଉଛନ୍ତି ? ମୋ ସ୍ୱାମୀ ଆଗରେ ଯାଉଛନ୍ତି । ମୁଁ ତାଙ୍କ ପାଖେ ନ ଖାଇ ମରିବି ପଛେ ଆଉ କୁଆଡ଼େ ଯିବିନି । (କ୍ରନ୍ଦନ)

ଆନନ୍ଦ– ମା', ଏ କପିଳବାସ୍ତୁର ଯୁବରାଜ । ତମର କୌଣସି ଆଶଂକା ନାହିଁ । ତମର ସବୁ ବ୍ୟବସ୍ଥା ଆମେ କରିଦେଉଛୁ ।

ମା'–(ଆଖି ପୋଛି) ଯୁବରାଜ ! ଶୂଦ୍ର ପିଲାକୁ କାଁଧରେ ପକେଇଲେ । କାନରେ ନ ଶୁଣିବା କଥା ଦେଖିଲି ! ଦେବତା ତମକୁ କୋଟି କଲ୍ୟାଣ ଦେଉ ବାବା, କୋଟି ପରମାୟୁ (ଭୂମି ସ୍ପର୍ଶକରି ନମସ୍କାର) ।

ଆନନ୍ଦ– ମା', ଉଠ । (ନାରୀ ଉଠି ଠିଆହେଲେ) କିନ୍ତୁ ତମେ ସବୁ କେଉଁଠୁ ଆସୁଛ ? ଲୋକ ଯେ ଧାଡ଼ି ଚାଲିଛନ୍ତି, କୁଆଡୁ ଆଇଲ, ଯିବ ବା କୁଆଡ଼େ ?

ମା'– ବାପା, ଆମଆଡ଼େ ରଜା ରଜା ଭିତରେ ନଢ଼େଇ ନାଗିଛି, ସେଇଥିରୁ ଆମର ଏ ଦଶା । ରକତର ନଈ ବୋହିଯାଉଚି । ଘରଦୁଆର ଲୁଟ୍‌ପାଟ ହୋଇଯାଉଚି । ଗାଁ କୁ ଗାଁ ଭୟରେ ଜୀବନ ଧରି ପଳେଇ ଆସିଛନ୍ତି । କେଜାଣି, ଆଉ କ'ଣ ସତେ ସେ ଜନମ ମାଟି ଦେଖିବୁ ଆଖିରେ ? (କ୍ରନ୍ଦନ)

ଆନନ୍ଦ–ଦେଖିବ ମା', ଦେଖିବ । କାନ୍ଦନି, ଯାଅ ଆଗ ପିଲାପିଲିଙ୍କି ଖୁଆଇ ସାଷ୍ଟାମ କର । ଉପାଳୀ, ନେଇଯାଅ ।

ଉପାଳୀ–ଆସ ମା', ଆସ......(ନାରୀ ଓ ଉପାଳୀରପ୍ରସ୍ଥାନ)

ସିଦ୍ଧାର୍ଥ–ବାବା, ଏଥିପାଇଁ ପୂର୍ବଦ୍ୱାର ମନାକରିଥିଲେ ଆନନ୍ଦ,ନା ? ଜଣେ ରାଜପୁତ୍ରପାଇଁ ଏ ଯେ ଅଦ୍ଭୁତ ବ୍ୟବସ୍ଥା । ପ୍ରଜାର, ମନୁଷ୍ୟର ଦୁଃଖ ଦୁର୍ବିପାକ ସଂଗେ ପରିଚିତ ନ ହେଲେ ରାଜା ରାଜ୍ୟ ଶାସନ କରିବ କିପରି ? ପୁଣି ଏଇ ମାନବିକ ନିର୍ଯାତନାର କ୍ରୂର ପରିହାସ, ଯାହାକୁ ବୀରତ୍ୱ ଓ କ୍ଷତ୍ରିୟତ୍ୱର ପୂର୍ଣ୍ଣ କର୍ତ୍ତବ୍ୟ ବୋଲି କୁହାଯାଉଛି ସେହି

ସାମରିକ ଦିଗ୍‌ବିଜୟ ମୁଁ କରିବି ବୋଲି ବାବା ଅନେଇ ରହିଛନ୍ତି ? ମନୁଷ୍ୟର ବ୍ୟକ୍ତିଗତ ଓ ସାମୂହିକ ଦୁଃଖର ଦୃଶ୍ୟ ମୁଁ ଯାହା ପରେ ପରେ ଦେଖିଲିଣି ସେଥିରେ ତ ମୁଁ ଏକାବେଳକେ ଅଭିଭୂତ ହୋଇଗଲିଣି ଆନନ୍ଦ । ଏ ଦୁଃଖର କାରଣ କ'ଣ ? କାହିଁକି ମନୁଷ୍ୟ ଏପରି ଦୁଃଖ ଭୋଗ କରୁଛି ? ଜୀବନ ବୋଲି ଯାହାକୁ କହୁଛେ ଓ ଭୋଗକରୁଛେ, ସେ ଯେ କେବଳ ପ୍ରଲେପଦିଆ ଦୁଃଖପରି ମନେହେଉଛି । ପ୍ରଲେପଟିକ ଖସିଗଲେ ଫୁଟି ଦେଖାଯାଉଛି ଦୁଃଖ, ଜରା, ବ୍ୟାଧି, ଅନାହାର, ମୃତ୍ୟୁର କରୁଣ ବୀଭତ୍ସତା । ଈଶ୍ୱର ଅଛନ୍ତି ନା ନାହିଁ ? ଈଶ୍ୱର ଜୀବକୁ ସୃଷ୍ଟି କଲେ କ'ଣ ଏଇଥିପାଇଁ ? କାହିଁ ସେ ଈଶ୍ୱର ? କିଏ ଯାର ଉତ୍ତର ଦେବ ?

ଆନନ୍ଦ—ମୁଁ ଯାର ଉତ୍ତର ଦେଇପାରିବିନି ଯୁବରାଜ । ଯଦି କିଛି ତତ୍ତ୍ୱ ଜାଣିବାକୁ ଇଚ୍ଛାକର ତେବେ ରାଜ୍ୟ, ପିତା, ମାତା, ପତ୍ନୀଙ୍କି ଛାଡ଼ି ଯାଇ ବଣରେ ତପସ୍ୟାରେ ବସିବାକୁ ହେବ । ତାହା କ'ଣ ତମ ପକ୍ଷରେ ସମ୍ଭବ ? ତେଣୁ ସେ ସବୁରେ ମୁଣ୍ଡ ଖେଳେଇ ଲାଭ ବା କ'ଣ ? ନିଜ କର୍ତ୍ତବ୍ୟରେ ମନ ଦିଅ ।

ସିଦ୍ଧାର୍ଥ—(ଗମ୍ଭୀର ଭାବରେ ଇତସ୍ତତଃ ବୁଲି) ବାହାରେ ଦୁଃଖର ଏଇ ଦିଗନ୍ତ ବିସ୍ତୃତ ଊର୍ମିମାଳା ଦେଖି ଭୃତ୍ୟ-ପରିବେଷ୍ଟିତ ସୁଲଭଭୋଗ ମୋର ଏଇ ବିଳାସିତ ରାଜକୀୟ ଜୀବନ ମୋତେ ଏକ ନିଷ୍ଠୁର ପରିହାସ, ଏକ କ୍ରୁର ସ୍ୱାର୍ଥପରତା ପରି ବୋଧହେଲାଣି, ଆନନ୍ଦ । ଏକ ଉଦାରତର ଜୀବନପାଇଁ ଏସବୁକୁ ଦିନେ ଛାଡ଼ି ଯିବାକୁ ମୋର ତିଳେ ହେଲେ କଷ୍ଟହେବ ନାହିଁ । ସେ ଦିନ ମନେଅଛି, ପାରିଧିରେ ପାର୍ବତ୍ୟ ପ୍ରଜାମାନଙ୍କର ନୃତ୍ୟଗୀତମୟ ସ୍ୱଚ୍ଛନ୍ଦ ଜୀବନ ଦେଖି ମୁଁ ଯେଉଁ ଆନନ୍ଦଲାଭ କରିଥିଲି, ସେ ଆନନ୍ଦ ଚିତ୍ତରେ ଲାଗିରହିଛି । ମୋର ଅନ୍ତରାତ୍ମା ଏବେ ଅସ୍ଥିର, ରାଜପ୍ରାସାଦର ପିଞ୍ଜରା ଭାଂଗି ବାହାର ଜଗତର ଅଗଣ ଜନସଂଘ ଭିତରେ ସାମାନ୍ୟ ମନୁଷ୍ୟ ଭାବରେ ମିଶିବାକୁ । ମୁଁ ଯିବି ଆନନ୍ଦ— ଦେଖିବ ମୁଁ ଯିବି । ରାଜପୁତ୍ର ବା ରାଜା ବୋଲି ସାଧାରଣ ମନୁଷ୍ୟଠାରୁ ମୁଁ ଉଚ୍ଚରେ ବା ଦୂରରେ ରହିବାକୁ ଚାହେନା ।

ଆନନ୍ଦ— ତମେ ପାଗଳ ।

ସିଦ୍ଧାର୍ଥ— (ଠିଆହୋଇପଡ଼ି) ମୁଁ ପାଗଳ ? କାହିଁକି ?

ଆନନ୍ଦ—ସାଧାରଣ ମନୁଷ୍ୟ ହେବାର ଥିଲେ, ବିଧାତା ତମକୁ ରାଜପୁତ୍ର ପରି ଜନ୍ମଦେଇ ନ ଥା'ନ୍ତା । ବିଧାତା ଯାହାକୁ ଯେଉଁ କୁଳରେ ଜନ୍ମ ଦିଏ ତା'ର କ'ଣ କିଛି ଅର୍ଥ ନାହିଁ ଯୁବରାଜ ?

ସିଦ୍ଧାର୍ଥ—(ପୁଣି ଇତସ୍ତତଃ ବୁଲି) ବିଧାତା ଧାନ୍ୟ ସୃଷ୍ଟି କଲା । ମନୁଷ୍ୟ ସେଥିରୁ ତଣ୍ଡୁଳ କାଢ଼ି ପଲାନ୍ନ ରନ୍ଧନ କରି ଯେ ଖାଉଛି, ଏହା ତ ହେଲେ ବିଧାତା ନିକଟରେ ମନୁଷ୍ୟର ଏକ ଅକ୍ଷମଣୀୟ ଅପରାଧ; ନୁହେଁ ଆନନ୍ଦ ?

ଆନନ୍ଦ—ତମକୁ ଯୁକ୍ତିରେ କିଏ ପାରିବ ? ତେବେ ଆଙ୍ଗନ୍ତ୍ରସବା ପତ୍ନୀ, ଆଉ ବୃଦ୍ଧ ପିତାମାତାଙ୍କୁ ଛାଡ଼ିଯିବା ପୂର୍ବରୁ ଶ୍ରୁତି ସ୍ମୃତିରେ ଯାହା ଅଛି ସେହି ତତ୍ତ୍ୱ ଆଗ ଘରେ ରହିହିଁ ଖୋଜାଯାଉ । ମିଥିଳାର ରାଜା ଜନକ ରାଜସିଂହାସନରେ ବସି ପୁଣି ତ ମହର୍ଷି ହୋଇଥିଲେ ।

ସିଦ୍ଧାର୍ଥ—(ହସି) ତମେ ଏଇକ୍ଷଣି କହୁଥିଲ ଯେ ତତ୍ତ୍ୱ ପାଇବାକୁ ହେଲେ ବଣକୁ ଯିବାକୁ ହେବ— ଫେର୍ କ'ଣ ଘରେ ତତ୍ତ୍ୱ ଖୋଜିବାକୁ କହିଲଣି ? ରାଜସଭାର ଯୋଗ୍ୟ ଚାଟୁକାର ତମେ ଗୋଟିଏ ମୁଁ ଦେଖୁଛି ଆନନ୍ଦ ।

ଆନନ୍ଦ—(ହସି) ମୁଁ ତମକୁ ଡରେଇବାକୁ ସେମିତି କହିଥିଲି ହୋ । ହେଲା, ମୁଁ ହାରମାନିଲି ।

ସିଦ୍ଧାର୍ଥ—ମୋର ତମଠୁଁ ବିଜୟ ଲୋଡ଼ା ନାହିଁ ଆନନ୍ଦ । ମତେ ବାଟ ବତାଅ । ମୁଁ କରିବି କ'ଣ ଏଇ ମାନସିକ ଉଦ୍‌ବେଳରୁ ରକ୍ଷାପାଇବାପାଇଁ ।

ଆନନ୍ଦ—(ହଠାତ୍ ସ୍ମରଣ ଆସିଲାପରି) ହଁ ଯୁବରାଜ, ମନେପଡୁଛି ଏଇ ତମ କଥା ଶୁଣି । ମୁଁ ଆଜି ରାଜଦାଣ୍ଡରେ ଜଣେ ପ୍ରଶାନ୍ତବଦନ ପରିବ୍ରାଜକଙ୍କୁ ଭେଟିଥିଲି । ମୋର ମନେହେଲା ସେ ଜଣେ ପ୍ରକୃତ ସନ୍ନ୍ୟାସୀ । କହିଲେ ତାକୁ ଖୋଜି ପଠାଇ ଦେବି ।

ସିଦ୍ଧାର୍ଥ—ଏ କଥା ପଚାରୁଛ ପୁଣି ଆନନ୍ଦ ? ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ ଖୋଜି ପଠାଇବ ।

ଆନନ୍ଦ—ଆଚ୍ଛା, ଆପଣ ତା' ହେଲେ ଉଆସକୁ ବିଜେହୁଅନ୍ତୁ । ମୁଁ ସେଇଠୁ ଫେରି ଘରକୁ ଯିବି, ବାଟରେ ସନ୍ନ୍ୟାସୀଙ୍କର ସନ୍ଧାନ ନେବି । ବିଜେକରନ୍ତୁ..... (ଉଭୟଙ୍କର ଧୀରେ ପ୍ରସ୍ଥାନ)

## (ଦ୍ୱିତୀୟ ଦୃଶ୍ୟ)

[ସେହି ରାଜପଥ । ପୂର୍ବ ଦୃଶ୍ୟ ଅପସାରଣ ପରେ ପରେ ଏକ ଶୁକ୍ଳଶ୍ମଶ୍ରୁଶୋଭିତ ତେଜୋମୟ ସନ୍ନ୍ୟାସୀ ଧୀରେ ଧୀରେ ରଂଗମଂଚରେ ପ୍ରବେଶ କରି ଖଂଜଣି ଧରି ଭଜନ ଗାଇବେ ।]

ଧନ, ମାନ, ପଦ, ନାରୀ
ଦିନ ରାତ୍ରି ପ୍ରାଣ ଘାରି
ବୁଲାଏ ଭଉଁରି ପ୍ରାୟେ ମନ,
ବାସନା ବହ୍ନିରେ ଜଳି
ମରୀଚିକା ମୃଗପରି
କାହିଁ ଧାଏଁ, ବୁଝ ପାନ୍ଥ ଜନ,

ଧାଇଁ ଖାଲି ହେବୁ ଅଣକତ
ବୁଝିବୁରେ ଏ ହଟଚମଟ ।୧।

ଦେଖୁଦେଖୁ ପ୍ରିୟ ଯାହା
ଉଭେଇ ଯିବଟି ତାହା
ଶେଷେ ଥିବ ଜରା ଅଥରପା
ତେଲହୀନ ବତି ପରି
ଶେଷେ ଯନ୍ତ୍ରଣାରେ ଜଳି
ମରଣେ ମିଶିବୁ ମନେପକା
କାହିଁ ଯିବୁ, କି ନେବୁ ପାଥେୟ
ଭାବ ପାନ୍ଥ, ନାହିଁ କର ହେୟ ।୨।

ଏ ଭେଳିକି ଭରା ଦେଶେ
ସତ୍ୟ ଅଛି କେଉଁ ବେଶେ,
କେଉଁ ପଥେ ସୁଖ ଚିରନ୍ତନ
ପାଇବୁରେ ଏ ଧରାରେ
ଦୁଃଖ ଯନ୍ତ୍ରଣାର ପାରେ
ସେଇଲାଗି ଦିଅ ଧ୍ୟାନ ମନ ।
ଭୋଗିବୁରେ ପରମ ଆନନ୍ଦ
ଜୀବନ ପଦ୍ମରୁ ମକରନ୍ଦ ।୩।

(ଧୀରେ ଧୀରେ ପ୍ରସ୍ଥାନ)

## (ଚତୁର୍ଥ ଦୃଶ୍ୟ)

[ସିଦ୍ଧାର୍ଥଙ୍କ ଶୟନକକ୍ଷ । ସିଦ୍ଧାର୍ଥ ଅର୍ଦ୍ଧଶାୟିତ । ଉପାଳୀ ଧୀରେ ଧୀରେ ତାଙ୍କ ପାଦ ମର୍ଦ୍ଦନ କରୁଛି । କିଛି ସମୟ ପରେ—]

ସିଦ୍ଧାର୍ଥ— ଉପାଳି ! ସେମାନଙ୍କର ଆଉ ଅସୁବିଧା କିଛି ନାହିଁ ତ ? ସବୁ ବୁଝାସୁଝା କରିଛ ?

ଉପାଳୀ— ଆଜ୍ଞା ହଁ, କିଛିଭାବନ୍ତୁନି । ସେମାନେ ଖାଇ ପିଇ ନିଶ୍ଚିନ୍ତରେ ଅଛନ୍ତି । ଯେଉଁମାନେ ପରେ ଆସିବେ ତାଙ୍କପାଇଁ ବି ଯୋଗାଡ଼ ହେଉଛି ।

ସିଦ୍ଧାର୍ଥ— ଓଃ, ସେ ଦୃଶ୍ୟ ମନେପଡ଼ିଲେ ମତେ ଖାଇବା ପିଇବାକୁ ଇଚ୍ଛା ହେଉନି । ମନୁଷ୍ୟ ଜୀବନରେ ପୁଣି ଏତେ ଦୁଃଖ । ଦେଖ ତ ଉପାଳି, ଆନନ୍ଦକୁ ଆସିବାକୁ କହିଥିଲି, ଆସି ଯଦି ଅପେକ୍ଷା କରିଥିବ ବାହାରେ ।

ଉପାଳୀ— ହଉ ମଣିମା...

(ପ୍ରସ୍ଥାନ । କିଛି ସମୟ ପରେ ଆନନ୍ଦର ପ୍ରବେଶ)

ସିଦ୍ଧାର୍ଥ— କ'ଣ କିଛି ବୁଝିଲ ଆନନ୍ଦ ? (ଅର୍ଦ୍ଧଶାୟିତ ଅବସ୍ଥାରୁ ଉଠିପଡ଼ି)

ଆନନ୍ଦ— ଆଶ୍ଚର୍ଯ୍ୟର କଥା ଯୁବରାଜ, ମୁଁ ବହୁ ଲୋକଙ୍କୁ ପଚାରିଲି, ବହୁଆଡ଼େ ଖୋଜ ଖବର ନେଲି, କିନ୍ତୁ ସେ ପରିବ୍ରାଜକଙ୍କୁ ଭେଟିଲିନି ।

ସିଦ୍ଧାର୍ଥ— (ପଦଚାରଣ କରି) ତା' ହେଲେ ଚାଲ ଆନନ୍ଦ, ସେଇପରି କୌଣସି ତତ୍ତ୍ୱଜ୍ଞାନୀଙ୍କ ଅନ୍ୱେଷଣରେ କିଛିକାଳ ବାହାରେ ବୁଲିଆସିବା । କିଛି ନ ହେଲେ ଦଶ ଦେଶ, ନାନା ଲୋକ ତ ଦେଖିଆସିବା ।

ଆନନ୍ଦ— ବାବା ଏଥିରେ ରାଜି ହେବେ ନାହିଁ, ଯୁବରାଜ ! ସେ ଚାହାଁନ୍ତି ତମେ ବର୍ତ୍ତମାନ ଦିଗ୍‌ବିଜୟପାଇଁ ପ୍ରସ୍ତୁତ ହେବାକୁ । ତା' ଛଡ଼ା କପିଳବାସ୍ତୁକୁ ମଝିରେ ମଝିରେ ଉଚ୍ଚସ୍ତରର ପରିବ୍ରାଜକ ବି ଆସନ୍ତି— କେହି ହୁଏତ ଆପଣଙ୍କର ସବୁ ସନ୍ଦେହ ଦୂର କରିଦେଇ ପାରିବ ।

ସିଦ୍ଧାର୍ଥ— ତା' ହେଲେ କିଛିଦିନ ଅପେକ୍ଷା କରିଯିବା ତେବେ ? ବାବା, ମା' ଓ ଗୋପା ମନରେ ହଠାତ୍ ଗୋଟିଏ ଆଘାତ ଦେବା ମଧ୍ୟ ଉଚିତ ହେବ ନାହିଁ ।

ଆନନ୍ଦ— ମୁଁ ତ ସେଇକଥା ବାରମ୍ବାର କହେ । ଆପଣଙ୍କର ଦୀର୍ଘ ଜୀବନ ପଡ଼ିରହିଛି । ଆଜିଠୁଁ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ?

ସିଦ୍ଧାର୍ଥ— ଆଚ୍ଛା ! ତା' ହେଲେ ଏଇ ମାନସିକ ଉଦ୍‌ବେଳରୁ ରକ୍ଷା ପାଇବାପାଇଁ ବରଂ ଅନ୍ୟ କାର୍ଯ୍ୟରେ ଲାଗିବା— ସେଇ ଦିଗ୍‌ବିଜୟର ବିଷୟ ନ ହେଲା ବା କାହିଁକି ? କାଲି ସକାଳୁ ପୁଣି ଆସିବ ତ— ଆଲୋଚନା କରିବା ସେ ବିଷୟରେ ।

ଆନନ୍ଦ— ହଉ ! ମୁଁ ଆସେ ତା' ହେଲେ । ଆପଣ ବିଶ୍ରାମ କରନ୍ତୁ ।

(ଆନନ୍ଦ ବାହାରିଗଲେ । ସିଦ୍ଧାର୍ଥ ଦୀପଟି ଲିଭାଇଦେଇ ଶଯ୍ୟାରେ ଲମ୍ବ ହୋଇ ପଡ଼ିଗଲେ । ଘର ଅନ୍ଧକାର । କିଛିକ୍ଷଣ ଗଲା ପରେ ଧୀରେ ଧୀରେ ଏକ ଆଲୋକ ଦେଖାଯିବ ଓ ସେ ଆଲୋକ ଭିତରେ ପୂର୍ବର ସେଇ ପ୍ରଶାନ୍ତବଦନ ସନ୍ନ୍ୟାସୀଙ୍କର ମୁଖ ଦେଖାଯିବ । ରଙ୍ଗମଂଚର ଏକ ପ୍ରାନ୍ତରେ ରହି ସେ ଶାୟିତ ସିଦ୍ଧାର୍ଥଙ୍କ ଆଡ଼କୁ ଅନାଇ ବାକ୍ୟାରମ୍ଭ କରିବେ । ସିଦ୍ଧାର୍ଥ ହଠାତ୍ ଘରଭିତରେ ଏକ ଆଲୋକ ଓ ଜଣେ ମନୁଷ୍ୟକୁ ଦେଖି ଚମକିଉଠି ପୁଣି ପଲଙ୍କରେ ବସିବେ ।)

ସିଦ୍ଧାର୍ଥ— ଆପଣ କିଏ ? ଏଠାକୁ ଆସିଲେ କିପରି ? କି ଉଦ୍ଦେଶ୍ୟ ବା ଆପଣଙ୍କର ?

ସନ୍ନ୍ୟାସୀ— ମୁଁ ଜଣେ ପରିବ୍ରାଜକ ମାତ୍ର । ଖୋଜୁଥିଲ ପରା ଯୁବରାଜ ? ତମକୁ ତମର କର୍ତ୍ତବ୍ୟର କଥା ସ୍ମରଣ କରାଇଦେବାକୁ ଆସିଛି ।

ସିଦ୍ଧାର୍ଥ— କି ମୋର କର୍ତ୍ତବ୍ୟ ? କେଉଁ କର୍ତ୍ତବ୍ୟକୁ ମୁଁ ଅବହେଳା କରିଛି ?

ସନ୍ନ୍ୟାସୀ– ଯୁବରାଜ, ଦେଖିଲ ତ ବାର୍ଦ୍ଧକ୍ୟର ଛବି, ଦେଖିଲ ତ ମୃତ୍ୟୁ, ଦେଖିଲ ତ ଅନାହାର, ଦୁର୍ବିପାକର କରୁଣ ଦୃଶ୍ୟ । ମନୁଷ୍ୟ ଜୀବଜନ୍ତୁପରି କେବଳ ଜନ୍ମୁଛି ଓ ମରୁଛି ଓ ଛାଡ଼ିଯାଉଛି ବଂଶଧର ସେହି ଜନ୍ତୁଲୀଳାର ଅଭିନୟପାଇଁ । ସେ ପଶୁପରି ଅଜ୍ଞାନ, ପଶୁପରି ଭ୍ରାନ୍ତ ଏବଂ ପଶୁପରି ଦୁଃଖକ୍ଲେଶମୟ ତା'ର ଜୀବନ । ସେ ତ୍ରିତାପରେ ଅହରହ ଦଗ୍ଧୀଭୂତ । ରାଜପୁତ୍ର ହୋଇ ମଧ ତୁମେ ସେ ତ୍ରିତାପରୁ ରକ୍ଷା ପାଇବ ନାହିଁ । ଏଇ ଯେ ସୁନ୍ଦର ତନୁ ତମର, ଏବେ ବି ତାହା କୋଟି କୋଟି ଅଦୃଶ୍ୟ ଘୃଣ୍ୟ କୀଟର ଆହାର ମାତ୍ର । ତମର ଓ ତମ ପତ୍ନୀର ଶରୀରର ନବଦ୍ୱାର ଦେଇ ଅହରହ ଘୃଣ୍ୟ କ୍ଳେଦ ନିଃସାରିତ ହେଉଛି । ଏହାହିଁ ତମର ଭ୍ରାନ୍ତି ଉପଭୋଗ, ଯୁବରାଜ । ଯୌବନର ଶେଷ ବାର୍ଦ୍ଧକ୍ୟରେ, ଜନ୍ମର ଶେଷ ମୃତ୍ୟୁରେ । କିନ୍ତୁ ଜୀବନର ପରିଣତି ପୂର୍ଣ୍ଣତାରେ । ହେ ସିଦ୍ଧାର୍ଥ ! ସେହି ପୂର୍ଣ୍ଣତାର ପଥ ଖୋଜ । କ୍ଷୁଦ୍ର ମାୟାମୋହ, ରୋଗ ବିକାର, ସୁଖ ଦୁଃଖର ଉପରକୁ ଉଠି ମନୁଷ୍ୟ କିପରି ପ୍ରଶାନ୍ତ, ମଧୁର, ସୁନ୍ଦର ଚେତନାର ସ୍ତରକୁ ଉଠିପାରେ ଯାଅ ତାହାରି ସନ୍ଧାନକର । ଉତିଷ୍ଠତ, ଜାଗ୍ରତ, ପ୍ରାପ୍ୟବରାନ୍ ନିବୋଧତ !

(ସନ୍ନ୍ୟାସୀ ଧୀରେ ଧୀରେ ବିଲୀନ ହୋଇଯିବେ । କକ୍ଷ ଧୀରେ ଧୀରେ ଅନ୍ଧକାର ହୋଇଯିବ ।)

ସିଦ୍ଧାର୍ଥ– (ଉଠିପଡ଼ି ଓ ସେହିଆଡ଼କୁ ଭାବାଭିଭୂତ ଭାବରେ ଦଉଡ଼ି) ଶୁଣନ୍ତୁ, ଶୁଣନ୍ତୁ, ମୋର ବହୁ ପ୍ରଶ୍ନ ପଚାରିବାକୁ ଅଛି, ଉତ୍ତର ଦେଇଯା'ନ୍ତୁ । (ଫେରି) ଚାଲିଗଲେ ! କି ଅଦ୍ଭୁତ ! କି ଶାନ୍ତିମୟ, ଜ୍ୟୋତିର୍ମୟ ମୁଖମଣ୍ଡଳ ! ଏଇ ବୋଧହୁଏ ସେହି ଜୀବନ, ଯାହା ତ୍ରିତାପର ଊର୍ଦ୍ଧ୍ୱରେ ରହିଛି ଶାଶ୍ୱତ ଶାନ୍ତି, ଅବାଧ ସୁଖ । ରାଜପ୍ରାସାଦର ପ୍ରାଚୀର ଡେଇଁ ମତେ ତାହାରି ସଂଧାନ ନେବାକୁ ହେବ– ତେବେ ଯାଇ ପ୍ରାଣରେ ଶାନ୍ତି । ଏଇ ମୋର କର୍ତ୍ତବ୍ୟ, ଏଇ ମୋର କର୍ତ୍ତବ୍ୟ, ଏଇ ମୋର କର୍ତ୍ତବ୍ୟ ।

(ଚିନ୍ତା କରି ଯାଉଁ ଯାଉଁ ପଟପତନ)

## (ପଞ୍ଚମ ଦୃଶ୍ୟ)

[କପିଳବାସ୍ତୁ ରାଜପ୍ରାସାଦର ଏକ ଅଙ୍ଗନ । ଚିନ୍ତିତ ଭାବରେ ଦୁଇ ହାତ ଛନ୍ଦାଛନ୍ଦି କରି ଛନ୍ଦକ ପ୍ରବେଶ କରି ଠିଆହେବ । ସେ କିଛି ସମୟ ଠିଆହେଲା ପରେ ଉପାଳୀର ପ୍ରବେଶ ।]

ଉପାଳୀ– ଛନ୍ଦିଆ, ଏଇପରା ମହାରାଜ ଆସୁଚନ୍ତି ।

ଛନ୍ଦକ– (ଚମକିପଡ଼ି) ସତେ ! ସେଇ କଥା ତ ଭାବିହେଉଛି, ଉପାଳୀଭାଇ । ମହାର୍ଜାଙ୍କୁ ମୁଁ କ'ଣ କହିବି ?

ଶୁଦ୍ଧୋଦନ— (ପ୍ରବେଶକରି) ଛନ୍ଦକ, ତୁ ପ୍ରକୃତରେ ଯୁବରାଜଙ୍କୁ କ'ଣ ଦେଖାଇଲୁ ?

ଛନ୍ଦକ— ମଣିମା, ମୁଁ କିଛି ଦେଖାଇନି— ସବୁ ବିଧାତା ଦେଖାଇବା କଥା ସିନା । ମୋର କିଛି ଦୋଷ ନାହିଁ ମଣିମା ! (ସାଷ୍ଟାଙ୍ଗପ୍ରଣାମ)

ପ୍ରଜାବତୀ— (ପ୍ରବେଶକରି) ଉପାଳି, ତାକୁ କହ ସେ ଉଠୁ—କ'ଣ ଘଟିଲା ସବୁ କଥା ଖୋଲି କହୁ ।

ଉପାଳୀ— ଉଠ୍ ଛନ୍ଦିଆ ! ସବୁ କଥା ଖୋଲି ଜଣାକର ।

ଛନ୍ଦକ— (ଉଠି) ମଣିମା, ସେ ସବୁ ବିଧାତାଘଟଣ । ମଣିମା ତ ପୂର୍ବଦ୍ୱାର ବନ୍ଦ କରି ଦେଇଥିଲେ । ମୁଁ ସେଥିପାଇଁ ସାନ ମଣିମାଙ୍କୁ ଭୁଲାଇ ଉତର ଦ୍ୱାରକୁ ନେଲି । ସେଠି ତ ଯାହା ଭୟକରିଥିଲୁ ସେୟା ଭେଟିଲୁ, କହିବୁ କାହାକୁ— କପାଳକୁ ସିନା ? ଆଈ ସେ ବୁଢ଼ୀକି ମୁଁ ଏ ଗାଁଗଣ୍ଡାରେ ଆଖି ଫିଟିଲାକାଳୁ ଦେଖିନି । ସିଏ କୁଆଡୁ ସେଠି ଜୁଟିଲା । ରଥୀ ଶେଠୀ ଏତେକାଳ ସୁକୁସୁକୁ ହେଉଥିଲା, ତା'ର ବା ସେତିକିବେଳେ ମରିବାର କି ଦରକାର ଥିଲା ? ସବୁ ବିଧାତାଘଟଣ ମଣିମା, ସବୁ ବିଧାତାଘଟଣ ।

ଉପାଳୀ— (ଅନତିଦୂରକୁ ଅନାଇ) ଏଇ, ଏଇ ସାନ ମଣିମା ଆସୁଛନ୍ତି ଏଣିକି । (ସମସ୍ତେ ସେ ଆଡ଼କୁ ଅନାଇ ସନ୍ତ୍ରମରେ ଅପେକ୍ଷାକଲେ)

ଶୁଦ୍ଧୋଦନ—କ'ଣ ଯେପରି ନିଜେ ନିଜେ କହିଲାପରି ବୋଧହେଉଛି । ସମସ୍ତେ ଟିକିଏ ଆଡ଼େଇ ହୋଇ ଯାଅ ତ, ଦେଖିବା...

(ରଂଗଭୂମିର ଏକ ପାଖରେ ଅନ୍ୟମାନେ ଅପେକ୍ଷା କରୁଥିଲାବେଳେ ସିଦ୍ଧାର୍ଥ ସମ୍ମୁଖ ଭାଗରେ ଧୀରେ ଧୀରେ ପଦଚାରଣା କରି ଆସିବେ । ତାଙ୍କର ହାବଭାବ ଯେପରି ଅର୍ଦ୍ଧସୁପ୍ତ ।)

ସିଦ୍ଧାର୍ଥ— ଏଇ ତେବେ ମନୁଷ୍ୟର ଜୀବନ । ଏଇ ହେଉଛି ଭୋଗ, ଆନନ୍ଦ ଆଉ ପ୍ରତିଷ୍ଠାର ଅହମିକା । ଏ ଜୀବନ ବୀଣାଶବ୍ଦପରି କାହୁଁ ଆସେ କାହିଁ ବା ମିଳାଇ ଯାଏ ? କଅଣ ବା ଏ ଜୀବନର ଅର୍ଥ ? ମହାମାରୀ, ଯୁଦ୍ଧ, ଦୁର୍ଭିକ୍ଷ, ଭୂମିକଂପରେ ମନୁଷ୍ୟର କି ଦୁର୍ଦ୍ଦଶା । ପୁଣି ବାର୍ଦ୍ଧକ୍ୟ, ରୋଗ, ଶୋକ, ଦାରିଦ୍ର୍ୟ, ମୃତ୍ୟୁ ! ତଥାପି ମନୁଷ୍ୟ ବଂଚିବାକୁ ଚାହେ । ନା, ନା, ବଂଚିବାକୁ ସେ ଚାହେନା ତ ସତ୍ୟରେ— ପ୍ରକୃତରେ ମନୁଷ୍ୟ ଏ ଜୀବନକୁ ଘୃଣାକରେ । ସେଥିପାଇଁ ତ ସେ ସହସ୍ର ସହସ୍ର ମୂକ ଜୀବକୁ ହତ୍ୟାକରି, ପୁରୋହିତକୁ ସ୍ୱର୍ଣ୍ଣ, ଗାଭୀ, ଶସ୍ୟର ଉତ୍କୋଚ ଦେଇ ସ୍ୱର୍ଗର ବାଟ ଖୋଜୁଛି । ସତେ କ'ଣ ସ୍ୱର୍ଗ ଅଛି ? ସତେ କ'ଣ ଈଶ୍ୱର ଅଛନ୍ତି ? ସତେ କ'ଣ ଈଶ୍ୱର ମନୁଷ୍ୟର ଦୁଃଖସୁଖ ପାଇଁ ଦାୟୀ ? ଏ ଜଗତରେ କୋଟି କୋଟି ନରନାରୀ ଦିବାରାତ୍ର ଖଟି ଖଟି ମଧ୍ୟ ଦିନରେ ମୁଠାଏ ଅନ୍ନ ପାଉନାହାନ୍ତି— ତଥାପି ଅଛି ଜୀବନ ପ୍ରତି ମାୟା । ଇଏ କି

ଜୀବନ, କି ସୃଷ୍ଟି ବା ଇଏ ? କ'ଣ ଯାର ରହସ୍ୟ ? ପ୍ରକୃତ ସତ୍ୟ, ପ୍ରକୃତ ପନ୍ଥା, ପ୍ରକୃତ ଧର୍ମ କାହିଁ ? କିଏ କହିବ ? କିଏ କହିବ ?

ଅଶରୀରୀ ବାଣୀ— ତମେଇ ତା'ର ଉତ୍ତର ଦେବ ସିଦ୍ଧାର୍ଥ । ପ୍ରସ୍ତୁତ ହୁଅ । କ୍ଷୁଦ୍ର ପରିଧିରୁ ବାହାରିପଡ଼ । ଆସ...ଆ....ସ...ଆ...ସ... ।

ସିଦ୍ଧାର୍ଥ— (ବ୍ୟସ୍ତହୋଇ ଊର୍ଦ୍ଧ୍ୱକୁ ଅନାଇଁ) ସେହି ବାଣୀ ! ସେହି ପରିବ୍ରାଜକର ବାଣୀ ! ଶୁଣ, ଶୁଣ, ମୁଁ ଯିବି, ମୁଁ ଯିବି, ଏଇ ବାହାରିଲି... (ପଳାୟନ)

ଶୁଦ୍ଧୋଦନ—(ରଂଗମଂଚର ସମ୍ମୁଖକୁ ଆସି ଓ ଦୀର୍ଘନିଶ୍ୱାସ ପକାଇ) ଆଉ ଆଶା ନାହିଁ । ସବୁ ସ୍ୱପ, ସବୁ କଳ୍ପନା ବୃଥାହେଲା । (ପ୍ରଜାବତୀ ରୋରୁଦ୍ୟମାନା । ତାଙ୍କ ଆଡ଼କୁ ଅନାଇ) କାହିଁକି କାନ୍ଦୁଛ ରାଣୀ, ଯାହା ଭାଗ୍ୟରେ ଥାଏ ତାହାହିଁ ଘଟେ । ପୁଅ ରାଜଚକ୍ରବର୍ତ୍ତୀ ହେବାର ଆଶା ତ ଛାଡ଼ିଲି, ଏବେ ଭଲରେ ଭଲରେ ଘରେ ରହନ୍ତା କି !

ପ୍ରଜାବତୀ—(କାନ୍ଦି କାନ୍ଦି) ସତେ ମୋ ପିଲା ମତେ ଛାଡ଼ିଯିବ ! ସତେ ମୋ ଗଳାକାଟି ଚାଲିଯିବ ! କେଉଁ ରଜାଘରେ ଏମିତି ହୋଇ ନ ଥିଲା, ମୋରି ପୋଡ଼ା କପାଳରେ ଏଇଯା ଥିଲା !

ଶୁଦ୍ଧୋଦନ—ଉପାଳି, ଠିଆହୋଇଛ କ'ଣ ? ଯାଅ, ଯାଅତ ଦେଖ ସେ କୁଆଡ଼େ ଗଲା । (ଉପାଳୀ ଗମନୋଦ୍ୟତ) ନାଁ, ମୁଁ ବି ଯାଏ । ଆସ, ରାଣୀ ତମେ ବି ଆସ । (ସମସ୍ତଙ୍କର ଧୀରେ ଧୀରେ ପ୍ରସ୍ଥାନ)

(ପଟପତନ)

## (ଷଷ୍ଠ ଦୃଶ୍ୟ)

[ସଂଧ୍ୟା । ଛନ୍ଦକର କୁଟୀରର ଅଗଣା । ପଟ ଉତ୍ତୋଳିତ ହେବା ମାତ୍ରେ ଛନ୍ଦକର କଳିହୁଡ଼ୀ ସ୍ତ୍ରୀ ଅଗଣା ଓଳାଉ ଓଳାଉ ରଂଗମଂଚରେ ପ୍ରବେଶକରି ଅଦୃଶ୍ୟ ଶତ୍ରୁମାନଙ୍କୁ ଲକ୍ଷ୍ୟକରି ଗାଳିଦେବାକୁ ଆରମ୍ଭ କରିବା ।]

ଛନ୍ଦକ ସ୍ତ୍ରୀ— ଏ ପୁତୁଖାଈଏ, ଏ ରାଣ୍ଡେ, ଏ ଘଇତାଖାଈଏ, ଏ ରକତଖିଆ ଝିଅମାନେ, ତମ ବଁଅଶ ପୋଡ଼ିଯାଉ ଲୋ । ତମ ଢିଅରେ ଦୁବଉଠୁ ଲୋ, ଦୁଦୁରାଗଛ ଉଠୁ ଲୋ । ତମ କୁଳରେ ବତି ଜାଳିବାକୁ କେହି ରହିବନି ଲୋ ରାଣ୍ଡେ । ତମକୁ ଅଚିହ୍ନା ବିଆଧି ଧରିବ ଲୋ ପୁତୁଖାଈଏ, ତମ ହାତ ଗୋଡ଼ ଛିଣ୍ଡିପଡ଼ିବ ଲୋ ଘଇତାଖାଈଏ, ତମ ପୁଅ ଘଇତେ ଦାଣ୍ଡରେ ପଡ଼ି ମରିବେ ଲୋ ଭେଦଶୋଈଏ । ମୋ ଜହ୍ନି ଭେଣ୍ଡି ଯିଏ ଖୁଆଇଲା, ତା' କୁଳ ବୁଡ଼ିଯାଉ ହେ ମାହାପ୍ରୁ । ମୋ କଖାରୁ ଯିଏ ନୁଚେଇ ନେଇଛି ତାକୁ ବଡ଼ରୋଗ ଧରୁ ଲୋ ମା ବୁରୁନ୍ଦାବତି ! ଏ ରାଣ୍ଡେ, ଏ ପୁତୁଖାଈଏ, ହେଡ଼ାଖାଈଏ,

ମୋ ଶାପ୍ୟ ନିଚେ ଫଳିବ ଲୋ ଘଇତାଖାଣ୍ଡିଏ, ଚୋରଣୀଏ । ମୋ କଖାରୁ ଖାଇବନି, ଖାଇବ ପୁଅ ଘଇତାଙ୍କ କଁଚା ମାଉଁସ—ମୋ ଶାଗ ଖାଇବନି, ଖାଇବ ଝିଅ ଜ୍ୱାଇଁଙ୍କ ରକତ । ମୋ ଜହ୍ନି ଖାଇବନି, ଖାଇବ ବାପାଦାଦିଙ୍କ ହାଡ଼....(ନେପଥ୍ୟେ–)–ଏ ମାଧିଆବୋଉ, କବାଟ ଫିଟା, ଏ ମାଧିଆବୋଉ...

(ଛନ୍ଦକର ସ୍ତ୍ରୀ ତରତରରେ ନେପଥ୍ୟକୁ ଯିବା ଓ ଛନ୍ଦକ ପଛେ ପଛେ ତା'ର ସ୍ତ୍ରୀର ପୁନଃ ପ୍ରବେଶ । ଛନ୍ଦକର କାନ୍ଧରେ ଗୋଟିଏ ଝୁଡ଼ି । )

ଛନ୍ଦକ—କିଲୋ, ଆଜିପରା ଦିନଟାରେ କାହାକୁ ଏମିତି ଗାଳି ଦେଉଛୁ ? ରଜାଙ୍କ ନାତି ହୋଇଚି ଯେ ରାଇଜଯାକ ପିଠାପଣା । ହୁଲୁହୁଲ ଆଜି । ଆଜିକ ପାଟି ବନ୍ଦକରି ଦେଲେ କ'ଣ ହବନି ?

ଛନ୍ଦକ ସ୍ତ୍ରୀ—ହଁ ରଜାର ନାତି ହେଲା କି ନାତୁଣୀ ହେଲା ମୋର କି ହେଇଗଲା ବା ? ତମେ ତ ବାରମାସୀ ଅଷ୍ଟକାଳୀ ସେଇ ରଜାଘର ଗାତରେ ପଶି ଘୋଡ଼ାଙ୍କ ନେଣ୍ଡି ପୋଛିବ । ଏ ରାଣ୍ଡେ, ପୁଅ ଘଇତାଖାଣ୍ଡିଏ ମୋ ବାଡ଼ିରୁ ଜହ୍ନି, କାକୁଡ଼ି ଚୋରିକରି ନେଇଯିବେ, ମୁଁ କହିଲେ କହୁଚ ପାଟି କଲି । ରଖ ତମ ଘର ଦ୍ୱାର ତେବେ, ମୁଁ ଯାଉଚି......(କିଛିଦୂର ଯିବା)

ଛନ୍ଦକ–(ସେଇପରି ଝୁଡ଼ିଧରି ଦଉଡ଼ି ଯାଇ ସ୍ତ୍ରୀକି ଫେରାଇ) ହଉ, ଶୁଣ, ଶୁଣ, ଆଜିପରାଦିନରେ ଏଇମିତି ହୁଅନ୍ତି ? ଏଇ ନିଅ ରଖିଲ, ଜେମା-ମଣିମା ତମପାଇଁ ମଠା, ଆଉ ପିଲାଙ୍କପାଇଁ ମିଠେଇ ପଠେଇ ଦେଇଚନ୍ତି । ରଖିଲ, ମତେ ପୁଉଣି ଉଆସକୁ ଯିବାକୁ ହବ । ମୁଁ ଏଇକ୍ଷଣି ସାନ ମଣିମାଙ୍କୁ ଖମାରରୁ ଆଣି ଉଆସରେ ଛାଡ଼ି ବାଟେ ବାଟେ ତ ଏଇ ଆସୁଛି ପରା । ଜହ୍ନି କଖାରୁ ଦି'ଟା କିଏ ନେଲା ତ ନେଲା, ଆଉ କ'ଣ କରିବା, ଆମର ଉଆସ ଅଛି ତ ସବୁ ଅଛି ।

ଛନ୍ଦକ ସ୍ତ୍ରୀ– (ଶାନ୍ତହୋଇ) ହଉ ରଖ ରଖ, ମୁଁ ଯାଏଁ, ଭିତରୁ ଜାଗା ଆଣେ । (ଯିବା ଓ ପୁଣି ଫେରିବା) ଦେଖେ କିମିତି ମିଠା । (ଛନ୍ଦକ ଝୁଡ଼ିକୁ ତଳେ ଥୋଇ ସେଥିରୁ ମଠା ଶାଢିଟିଏ ବାହାରକରି ସ୍ତ୍ରୀକି ଦେଲା) ରଜାଘର ନ ହେଲେ ଏ ଚିଜ ମିଳିବ କା'ହୁଁ ? କିଏ ବଡ଼ ମଣିମା ଦେଲେ ? ହଉ, ମୁଁ ଆଣୁଛି ଜାଗା, ତମେ ବସ ଟିକିଏ ।

(ସ୍ତ୍ରୀର ପ୍ରସ୍ଥାନ)

ଛନ୍ଦକ– (ନ ବସି, ଏଣେତେଣେ ଚାଲି) କାଳିସୀ କହିବାମତେ ଦିନ ବାର ତ ଜୁଟିଲାନି ଏ ଯାଏଁ । କେବେ ଯେ ଯୁଟିବ, କିଏ ଜାଣେ । କିନ୍ତୁ ଇୟା ପାଟି ତ ଦିନକୁ ଦିନ ଅଧିକରୁ ଅଧିକ ରାଉ ରାଉ ହେଲା । କ'ଣ କରିବି । ଯାରି ଯୋଗୁଁ ଖାଲି ସାଇ ପଡ଼ିଶାଙ୍କ ସଂଗେ ଅପଡ଼, ବଂଧୁବାଂଧବଙ୍କ ସଂଗେ ଅପଡ଼, ଘର ବିଷ, ଦୁଆର ବିଷ । ଇମିତି ଗାଳିରେ କୁ' ପଡ଼ିଶା ସମ୍ଭାଳିବ ? ନିଚେ କାଲି ସକାଳୁ ହାଟବସିବ ଏ ଗାଳିପାଇଁ । କେତେ ଏବେ ସମ୍ଭାଳିବି ? (କିଛି ଭାବି) ଦିନବାର ଥାଉ ପଛେ, ଦିଏଁ ତ କାଳିସୀର

ଗୁଣ୍ଡ ଆଜି ଏଇ ମିଠେଇରେ ମିଶେଇ, ଦେଖେଁ କିଛି ହେଲେ ଯଦି କାଟୁକରେ । ସବୁଦିନେ ନୁଚେଇ ନୁଚେଇ କେତେ ଏବେ ଏ ଗୁଣ୍ଡକୁ ରଖିଥିବି ଅଣ୍ଟିରେ ? ଦିଏ ଆଜି ଝାଡ଼ି, ଯାହା ହେବ ଦେଖିବା ।

(ଛନ୍ଦକ ଅଣ୍ଟାରୁ ଗୁଣ୍ଡର ପୁଡ଼ା ବାହାରକଲା । ଫିଟାଇଲା । ଏକ ହାତରେ ମେଲା ପୁଡାଟି ଧରି ଆରହାତର ଟିପରେ ଟିପେ ଟିପେ କରି ନେଇ ଟିକିଏ ବାହାରକୁ ଅନାଉଥାଏ, ଟିପେ ବିଁ ଛି ମିଠେଇ ଉପରେ ପକାଉଥାଏ । ଥରେ ଦୁଇଥର କହିଲା, 'ଏ କାଳିସୀ, ତୋ ମନ୍ତ୍ର କାଟୁକରୁ । ହେ ଦିଅଁ ଦେବତା ମତେ ଯା ଦାଉରୁ ରକ୍ଷା କର' । ଶେଷ ଟିପକ ପକାଇଲା ବେଳକୁ ସ୍ତ୍ରୀ ପ୍ରବେଶକଲା । )

ସ୍ତ୍ରୀ— ସେଗୁରା କ'ଣ ପକଉଚ ?

ଛନ୍ଦକ— ଏଇ ଗୋଟେ ପୁଡ଼ାରେ ଖଣ୍ଡ ଦେଇଥିଲେ ଅଲଗାକରି, ତାକୁଇ ବିଞ୍ଚିଦଉଚି ।

ସ୍ତ୍ରୀ— (ଆଣିଥିବା ଦୁଇ ତିନିଟି କଂସା ବାସନ ତଳେ ରଖି) ମିଠେଇ ଉପରେ ପୁଣି ଖଣ୍ଡ କ'ଣ ! ବୋଧେ ମସଲାଫସଲା କିଛି ହେଇଥିବ ।

ଛନ୍ଦକ— ହୋଇଥିବ— ମୁଁ କି ସେ ସବୁ କଥା ଜାଣେ ।

ସ୍ତ୍ରୀ— (ଝୁଡ଼ିରୁ ମିଠେଇ କାଢ଼ି ଭିନ୍ନ ଭିନ୍ନ ଜାଗାରେ ରଖିବା ଓ ମିଠେଇକି ବାରମ୍ବାର ଚାହିଁବା) ଏଁ, ଏଗୁରା କ'ଣ ନେଳିଆ ନେଳିଆ ଦିଶୁଛି ! ଏଗୁରା କି ମସଲାଗୁଣ୍ଡ ! ଏ'ତ ଖଣ୍ଡ ବି ନୁହେଁ । ଚାଖିଲ ଦେଖି । (ଗୋଟିଏ ମିଠେଇ ବଢ଼ାଇବା ।)

ଛନ୍ଦକ— ମୁଁ ପେଟେ ଖାଇ ଆସିଛି— ତମେ ଟିକିଏ ଚାଖି ଦେଖୁନା...ସେ ଖଣ୍ଡ । ରଜାଘରର କାରବାର, ଆମେ କ'ଣ ଜାଣିବା ଗରିବ ଲୋକ ? ହଉ, ମୁଁ ଯାଉଛି, ମଣିମା କାନେ କାନେ କହିଛନ୍ତି ଗୋଡ଼େ ଗୋଡ଼େ ଫେରିଯିବାକୁ ।

ସ୍ତ୍ରୀ— (ଇତିମଧ୍ୟରେ ଗୋଟିଏ ମିଠେଇ ଚାଖି ଓ ଫୋପାଡ଼ି) ଏଁ, ଏଗୁରା ଯେ ଅଟକାଳି ପିତା । ଏଗୁରା କି ମିଠେଇ ମ ! କି ଗୁଣ୍ଡ ପକେଇଲ ମ ତମେ । ସତେ ରଜାଘରୁ ଏ ଗୁଣ୍ଡ ଆଣିଚ ନାଁ ମତେ ବିଷ ଦଉଚ ? (ବୋବାଳିଛାଡ଼ିବା) ଯେ ମତେ ବିଷ ଦେଇ ମାରିଦେବାକୁ ବସଚି ଲୋ । ମୋ ମୁଣ୍ଡ ଝିମ୍‌ଝିମ୍ ହୋଇଯାଉଚି ଲୋ, ମୋ ଜିଭ ଶୁଖି ଶୁଖିଯାଉଚି ଲୋ, ମୋ ଅନ୍ତ ଦୁହିଁହୋଇଯାଉଚି ଲୋ !

ଛନ୍ଦକ— (ଆତଙ୍କିତହୋଇ) ମାଧିଆବୋଉ, ଏ ମାଧିଆବୋଉ, ଭଲା ମହତ ରଖ ମୋର, ପାଟି କରନି । ହେଲା, ଭଲ ମିଠେଇତକ ରଖ, ଗୁଣ୍ଡ ମିଶାତକ ଫିଙ୍ଗିଦେ । ମୁଁ ତତେ ବିଷ କାହିଁକି ଦେବି ? ଯାହା ହଉ ପଛେ ତୁ ଇମିତି ପାଟିକରି ପଡ଼ା ଭାଙ୍ଗନା, ମୋ ମହତ ସାରନା ।

ସ୍ତ୍ରୀ— (ହୁଙ୍କାରିଉଠି ଓ କଣରୁ ଛାଞ୍ଚୁଣି ଉଠାଇ) ରଇଜଳା, ତୋ ମହତ ବଡ଼ ନା ମୋ ଜୀବନ ବଡ଼ । ବୁଦାଶୁଆ, ଯା'ତୁ ରଜାଘର ଗାତରେ ପଶ୍ ଯାଇ । ଫେର୍ ତୁ ଏ ଦୁଆର ମାଡ଼ିଛୁ କି, ମୁଁ ଦେଖିବି । ଭାବିଥିଲୁ ବିଷଦେଇ ମତେ ମାରିବୁ, ନାଁ ? ମର୍

ବୁଦାଶୁଆ, ମର, ତୁ ନିଜେ ମର୍, ତୁ ନିଜେ ମର୍ । (କଥା ସଂଗେ ସଂଗେ ପ୍ରହାର । ଛନ୍ଦକ ଓ ସ୍ତ୍ରୀ ରଙ୍ଗମଞ୍ଚରେ ଚକ୍ରାକାରରେ ଆଗପଛ ଦଉଡ଼ି ସାରିଲା ପରେ, ଉଭୟର ଦଉଡ଼ି ଦଉଡ଼ି ପ୍ରସ୍ଥାନ) । (ପଟପତନ)

## (ସପ୍ତମ ଦୃଶ୍ୟ)

[ଗୋପାଙ୍କ ଶୟନକକ୍ଷ । ପିଲିସଜରେ ଦୀପ ଜଳୁଛି । ଗୋପା ଶାୟିତା । ପାଖରେ ଛୋଟ ନବଜାତ ଶିଶୁ ଶୋଇଛି । ଗୋପାଙ୍କ ଖଟତଳେ ନିଆଁ ଉହ୍ଲେଇ ଜଳୁଛି । କିଛିସମୟ ରଙ୍ଗମଞ୍ଚ ନିରବ ନିସ୍ତବ୍ଧ । ଧୀରେ ଧୀରେ ଅନ୍ତରାଳରୁ ତାରଯନ୍ତ୍ରରେ ଅନୁଚ୍ଚ କରୁଣ ଆଳାପ ଉତଥିତ ହେଲା । ଚିନ୍ତାମଗ୍ନ ସିଦ୍ଧାର୍ଥ ଧୀରେ ରଙ୍ଗମଞ୍ଚରେ ପ୍ରବେଶକଲେ ।]

ସିଦ୍ଧାର୍ଥ—ସେଇ ମୁହୂର୍ତ୍ତ କ'ଣ ଉପସ୍ଥିତ ? ଯଦି ସେଇ ପଥରେ ଯିବାର କଥା, ତେବେ ଏଇ ସେଇ ମାହେନ୍ଦ୍ର ବେଳା ନୁହେଁ କି ? କିନ୍ତୁ ଯଦି ସେ ପଥରେ ଯିବାର କଥା, ଏଠିକି ଆସିଲି କାହିଁକି ? ଏ ଯେ ଦୁର୍ବଳତା ! ଏ ଯେ ବନ୍ଧନ ! ଗୋପା ଜାଗ୍ରତ ଥିଲେ ମୋର ପାଦେ ଆଗକୁ ଯିବା ଅସମ୍ଭବ ! ତା' ପରେ ପୁଣି ନବଜାତ କୁମାର, ଯା'କୁ ପାଇ ସମଗ୍ର ରାଜ୍ୟ ଆଜି ଉତ୍ସବରେ ଅଧୀର । ପଥେ ପଥେ ନଗରବାସୀଙ୍କର ମୋ ପ୍ରତି ଆଜି କି ସମ୍ବର୍ଦ୍ଧନା, କି ଉନ୍ମାଦନା, କି ଆଶା । କିନ୍ତୁ (ଶାୟିତା ଗୋପାକୁ ଅନାଇଁ) ଗୋପା, ମତେ ଆଜି ଏ ସମସ୍ତକୁ ବଳେ ବଳେ ଛିନ୍ନକରି ଫିଙ୍ଗିଦେବାକୁ ହେଉଛି । ପ୍ରାଣର ଅନ୍ତରତମ ପ୍ରଦେଶରେ ତମରି ସୁନ୍ଦର ମୁଖ ଏବେ ବି ପୂଜିତ ହେଉଛି, ଗୋପା ! ମୁଁ ଜାଣୁଛି ମୋର ବିଚ୍ଛେଦରେ ତମର କୋମଳପ୍ରାଣ ଶତଧା ବିଦୀର୍ଣ୍ଣ ହେବ । କିନ୍ତୁ ମୋର ଯେ ଶାନ୍ତି ନାହିଁ ଜୀବନରେ । ସବୁ ଥାଇ ମଧ୍ୟ ମୋ ବକ୍ଷରେ ଅଶାନ୍ତିର ବହ୍ନି ଅହରହ ଜଳୁଛି । ଦୂରଦିଗ୍‌ବଳୟରେ ଅଜ୍ଞାତ ରହସ୍ୟ ମତେ ବାରମ୍ବାର ଆକର୍ଷଣ କରୁଛି । ଜୀବନର ନିଗୂଢ଼ତମ ପ୍ରଶ୍ନମାନଙ୍କର ଉତ୍ତର ନ ପାଇଲାଯାଏଁ ମୋ ଚିତ୍ତରେ ଶାନ୍ତି ନାହିଁ । ଧର୍ମର ପଥ, କଲ୍ୟାଣର ପଥ, ସାଧନାର ପଥ ତେଣୁ ମତେ ବାରମ୍ବାର ଡାକୁଛି, ସମସ୍ତ ପରିତ୍ୟାଗ କରି ନୂତନ ଜୀବନ, ନୂତନ ଆଲୋକର ସନ୍ଧାନପାଇଁ । ପ୍ରିୟା ଗୋପା, ମୁଁ ପୁଣି ଫେରିଆସିବି । ସତ୍ୟ ଲାଭକଲାପରେ ମୁଁ ତମରି ପାଖକୁ ପୁଣି ଫେରିଆସିବି ତା'ରି ସମ୍ବାଦ ଦେବାକୁ । ଭାବିବନି ମୁଁ ତମକୁ ଅନାଦରରେ ପରିତ୍ୟାଗ କରି ଯାଉଛି ବୋଲି । (ନବଜାତ ଶିଶୁଆଡ଼କୁ ଚଳି) ଆହା, ପ୍ରଣୟର ନବାଙ୍କୁର ନବଜାତ ଶିଶୁ ! ଏଇ ବକ୍ଷରେ ଥରେ ଥରେ ଜାକିଧରିବାକୁ ମୋର କି ପ୍ରବଳ ଇଚ୍ଛା ନ ହେଉଛି । ପ୍ରଣୟ-ସାନ୍ଦ୍ର ଆମ ଦୁଇ ପ୍ରାଣର ମିଳନ-ଭୂମିରୁ ଜାତ ଏହି ପ୍ରସ୍ଫୁଟିତ କୁସୁମ ! ତାକୁ ପ୍ରାଣଭରି ଆଘ୍ରାଣ କରିବିନି ଥରେ ? (ତା' ଆଡ଼କୁ ହାତ ବଢ଼ାଇବା) ନା, ନା, ଦୃଢ଼ ହୁଅ ସିଦ୍ଧାର୍ଥ । ଏଇ ସାମାନ୍ୟ ଦୁର୍ବଳତା, ଏଇ ସାମାନ୍ୟ ଜୀବକଣା, ତୁମକୁ ଏଇଠାରେ ଚିରକାଳପାଇଁ ବନ୍ଦୀ କରି ରଖିବ, ଜାଣ ? ନା, ନା, ମୋର ଆଉ ଏଠାରେ ବେଶି କ୍ଷଣ ରହିବା ଉଚିତ ବି ନୁହେଁ । ମୁଁ ଯାଏଁ ।

(ସିଦ୍ଧାର୍ଥ କିଛିଦୂର ଆଗକୁ ଗଲେ, ଠିଆହେଲେ, ପଛକୁ ଅନାଇଲେ ଓ ପୁଣି ଫେରି ଗୋପାର ମୁଖକୁ ସତୃଷ୍ଣ ନୟନରେ ଚାହିଁଲେ । ଗୋପା ନିଦ୍ରିତାବସ୍ଥାରେ କର ଲେଉଟାଇଲେ ଓ ବାଉଳିହେଲେ ''ତାଙ୍କୁ ଡାକ, ତାଙ୍କୁ ଡାକ, ନବଜାତ ପୁତ୍ରକୁ ଦେଖନ୍ତୁ, ଡାକ ।'' ସିଦ୍ଧାର୍ଥ ଆତଙ୍କିତ ହୋଇଉଠିଲେ ଓ ଏଥର ଦୃଢ଼ପଦକ୍ଷେପରେ ଆର୍ଦ୍ର ଚକ୍ଷୁକୁ ବାମ ହସ୍ତର ପାପୁଲିରେ ଆବୃତ କରି ରଙ୍ଗମଞ୍ଚରୁ ବାହାରିଗଲେ । କରୁଣ ସଂଗୀତ ମଧ୍ୟରେ ପଟପତନ)

## [ତୃତୀୟ ଅଙ୍କ]

### (ପ୍ରଥମ ଦୃଶ୍ୟ)

[ନେପଥ୍ୟରେ ତାର-ଯନ୍ତ୍ରରେ କରୁଣ ସଙ୍ଗୀତ । ଗୋପାର ଶୟନକକ୍ଷ । ଗୈରିକ ବସନା, ଆଲୁଳାୟିତକେଶା ଗୋପା ପଲଙ୍କରେ ବସିଥିବେ ଗାଲରେ ହାତ ଦେଇ । ତା' ପରେ ଉଠି କିଛି ସମୟ ଚିନ୍ତାରେ ଛଟପଟ ହେଲାପରି ଘରର ଚାରିଆଡ଼େ ବୁଲିବେ; ଫେର୍ ବସିବେ ଦୁଇ ହାତରେ ମୁଣ୍ଡ ଚିପି । ଟିକିଏ ଢଳିଯିବେ ପଲଙ୍କ ଉପରେ, ପୁଣି ଉଠିବେ କିଛିକ୍ଷଣ ପରେ ଓ ସମ୍ମୁଖସ୍ଥ ମେଜ ଉପରେ ମୁଣ୍ଡରଖି ଓ ଦୁଇ ବାହୁରେ ମୁଣ୍ଡକୁ ଘେରାଇ ଫୁଲି ଫୁଲି କାନ୍ଦିବେ ।.........ସେଇ ସମୟରେ ନେପଥ୍ୟରୁ ]

ଗୀତ

ବୃନ୍ତାରୁ ଝଡ଼ିଲା, ଫୁଲ ମରଇ ମଉନେ,<br>
କିବା ଆଉ ତା ମୂଲ୍ୟ ଜଗତେ<br>
ମରମ ଗହନ-କୁଞ୍ଜୁ ଫେରି ନିରାଶିତ,<br>
ପ୍ରଣୟିନୀ ରୋଦେ ବନପଥେ ।

ସୁଖନୀଡ଼ ଭାଙ୍ଗି ପ୍ରିୟ,<br>
ଛିଣ୍ଡାଇ ପ୍ରଣୟ-ଖିଅ,<br>
ଗଲେ ଛାଡ଼ି ହିମ କରି ହୃଦୟ ରକତେ ।୧।

ସୁକୁମାରୀ ପ୍ରଣୟିନୀ ରୋଦେ ବସି ବସି,<br>
ଶତ ମଧୁସ୍ମୃତି ଉଠେ ଭାସି,<br>
ସେ ସ୍ମୃତିରେ ଜଳେ ପ୍ରାଣ,<br>
ଶେଷ ମାନ, ଅଭିମାନ;<br>
ଶେଷ ମଧୁ ଅଭିଯାନ କୁସୁମିତ ପଥେ,<br>
ବିଶ୍ୱାସ ଅନାଏ ଆଖି-ଲୁହେ ପଛେ ପଛେ ।

(ଧୀରେ ଧୀରେ ପଟପତନ)

## (ଦ୍ୱିତୀୟ ଦୃଶ୍ୟ)

[ଅରଣ୍ୟ । ରଙ୍ଗମଞ୍ଚର ପଶ୍ଚାତ୍ ଦେଶରେ କେତେକ ବଡ଼ ଦ୍ରୁମ ଭିତରେ ଗୋଟିଏ ଅଶ୍ୱତ୍ଥ ବୃକ୍ଷ । ତାହାରି ମୂଳରେ ଯୁବରାଜ ସିଦ୍ଧାର୍ଥ ଧ୍ୟାନସ୍ଥ । ତାଙ୍କର ଚକ୍ଷୁଦ୍ୱୟ ମୁଦ୍ରିତ । ସେ ନୀରବ, ନିସ୍ପନ୍ଦ । ମସ୍ତକର କୃଷ୍ଣକେଶ ଆଲୁଳାୟିତ ଓ ମୁଖରେ ଶ୍ମଶ୍ରୁ । ସ୍କନ୍ଧରେ ଏକ ଗୈରିକ ଉତ୍ତରୀୟ ।

ପଟ ଉତ୍ତୋଳିତହେଲା ବେଳକୁ ଏକ ବତାସିର ସୂଚନା । କ୍ରମେ ବତାସି ବଢ଼ିବ । ବିଦ୍ୟୁତ୍ ଓ ବଜ୍ର । ମଝିରେ ମଝିରେ ବ୍ୟାଘ୍ର ଗର୍ଜନ । ରଙ୍ଗମଞ୍ଚ କ୍ରମେ ଅନ୍ଧାରାବୃତ ହୋଇ ଆସିବ । ପ୍ରକୃତିର ଏଇ ବିଭୀଷିକା ଭିତରେ ରଙ୍ଗମଞ୍ଚର ଦୁଇଦିଗରୁ ଶୁଣାଯିବ ନେପଥ୍ୟ ବାଣୀ । ବାମ ପାଖରୁ କହିବ ପ୍ରଲୋଭନକାରୀ ମାର, ଦକ୍ଷିଣପାଖରୁ କହିବ ବିବେକ ।]

ମାର—ତରୁଣ ନୃପକୁମାର, ଦେଖୁଛ କିପରି ପ୍ରକୃତିର ପ୍ରଳୟଙ୍କର ବିଭୀଷିକା । ମୁଁ ସେହି ମାର କହୁଛି । ଯେ ଦିନ ତୁମେ ସୁନ୍ଦର ପତ୍ନୀ, ନବଜାତ ପୁତ୍ର, ରାଜଭକ୍ତ ପ୍ରଜାପୁଞ୍ଜ ଓ ପ୍ରାସାଦର ସକଳ ବିଳାସ ପରିତ୍ୟାଗକରି କପିଳବାସ୍ତୁର ନଗର ଦ୍ୱାରରୁ ଅଶ୍ୱ ପୃଷ୍ଠରେ ବହିର୍ଗତ ହେଉଥିଲ, ସେହି ବୈଶାଖ ପୂର୍ଣ୍ଣିମାର ମଧୁର ଜ୍ୟୋସ୍ନାରେ ମୁଁ ତମକୁ ବିପଦସଂକୁଳ, ରୁକ୍ଷ, କଠୋର, ନିରର୍ଥକ ସନ୍ନ୍ୟାସ ପଥରେ ନ ଯିବାକୁ କେତେ ଅନୁରୋଧ କରିଥିଲି— ମାନିଲ ନାହିଁ । କିନ୍ତୁ ଏଇ ଦୀର୍ଘ ଛଅବର୍ଷ ଭିତରେ କ'ଣ ପାଇଛ ? ତୁମର ସତୀ ତରୁଣୀ ପତ୍ନୀ ତେଣେ ଅନଶନରେ ମୃତପ୍ରାୟ । ଏଇ କଅଣ ତା'ର ପ୍ରାଣମୟ ବିଶ୍ୱାସ, ଆଉ ପ୍ରଣୟର ପ୍ରତିଦାନ ? ଗୋପାକୁ ବିବାହ କଲ କାହିଁକି, ଯଦି ତୁମର ସନ୍ନ୍ୟାସ ଗ୍ରହଣ କରିବାର ବିକୃତ ବାସନା ଆଗରୁ ଥିଲା ? ରାଜପୁତ୍ରର ଏ ସନ୍ନ୍ୟାସ, ଏ କଦର୍ଥନା କାହିଁକି ? ରାଜ୍ୟଶାସନହିଁ ତୁମର ଶ୍ରେଷ୍ଠ ଧର୍ମ, ଦିଗ୍‌ବିଜୟ ତୁମର ପୁଣ୍ୟକୀର୍ତ୍ତି । ଛାୟାଲୋକମୟ ଏ ସୃଷ୍ଟି ଯୁବରାଜ । ଜୀବନରେ ଦୁଃଖ କଷ୍ଟ ନ ଥିଲେ ବଂଚିବାର ମୂଲ୍ୟ ଥାଆନ୍ତା କି ? ଗୋଟିଏ ବର୍ଣ୍ଣରେ କି ସୁଦୃଶ୍ୟ ଚିତ୍ର ହୋଇପାରେ ? ଜୀବର ମହତ୍ତ୍ୱ ଜୀବନରୁ ପଳାଇବା ନୁହେଁ ଯୁବରାଜ, ଜୀବନର ଅଂଧକାରକୁ ଜୀବନର ଆଲୋକାଂଶଦ୍ୱାରା ପରାଭୂତ କରିବା । ବୃଦ୍ଧ ପିତା ମାତା ଓ ତରୁଣୀ ପତ୍ନୀଙ୍କୁ କନ୍ଦାଇ କନ୍ଦାଇ ତୁମେ ମୁକ୍ତି ପାଇବ, ଯୁବରାଜ ? ଏ ଭ୍ରାନ୍ତ ପଥରୁ ଫେରିଯାଅ; ଫେରିଯାଅ କପିଳବାସ୍ତୁ । ତୁମର ସାମାନ୍ୟତମ ଭୃତ୍ୟ ଆଜିର ଏହି ବିଭୀଷିକାମୟ ରାତ୍ରିରେ ତୁମଠାରୁ ସହସ୍ରଗୁଣ ସୁଖରେ ମୁହୂର୍ତ୍ତ ଯାପନ କରୁଛି । ଉଠ ଯୁବରାଜ । ଧ୍ୟାନ ଭଂଗକର । ମୁଁ ଏହିକ୍ଷଣି କ୍ଷିପ୍ରଗତି ଅଶ୍ୱ ପହଞ୍ଚାଇଦେବି । ଏଇ ବିଭୀଷିକାମୟୀ ରଜନୀ ନ ପାହୁଣୁ ତୁମେ କପିଳବାସ୍ତୁର ନଗର ଦ୍ୱାରରେ ପହଞ୍ଚି ଯିବ । କଳ୍ପନାକର ସମଗ୍ର ରାଜ୍ୟରେ କି ଉତ୍ସବ ହେବ ତୁମକୁ ନେଇ । ବୃଦ୍ଧ ଶୁଦ୍ଧୋଦନ ପୁନର୍ଜନ୍ମ ଲାଭକରିବେ । ପିତାମାତା, ପତ୍ନୀ, ପ୍ରଜାପୁଞ୍ଜର ଆଶା ଉପରେ ପଦାଘାତ କରି ତୁମେ ଜୀବନରେ କେବେ ସୁଖଲାଭ କରିବ, ଭାବିଛ ? ଅସମ୍ଭବ ! ଅସମ୍ଭବ !

ଏଇଠାରେହିଁ ତୁମର ଏଇ ସୁନ୍ଦର ଶରୀର କୀଟପତଙ୍ଗର ଖାଦ୍ୟ ହେବ । କଥା ମାନ । ତୁମର ବିବେକ, ବିଚାର ଭ୍ରାନ୍ତ । ତୁମର ଅନଶନକ୍ଲିଷ୍ଟ ଶରୀରରେ ତାହା ସନ୍ନିପାତ ରୋଗୀର ପ୍ରଳାପ ପରି । ତାହା ଶୁଣନାହିଁ ଯୁବରାଜ । ଉଠ, ଆସ....

ବିବେକ— ପର୍ବତପରି ନିଶ୍ଚଳ ରହ, ସିଦ୍ଧାର୍ଥ । ଯେଉଁ ପଥ ବରିନେଇଛ ତା'ର ଲକ୍ଷ୍ୟ ସ୍ଥଳରେ ନ ପହଞ୍ଚିଲାଯାଏଁ ମୁଖ ଫେରାଅ ନାହିଁ । ଘରଚଟିଆର ଆଶ୍ରୟ ଚଷାର ଓଳିତଳ । କିନ୍ତୁ ବିରାଟ କୁରବଳ ସୀମାହୀନ ବ୍ୟୋମରେ ବିହାରକରେ ଓ ବଣର ଉଚ୍ଚତମ ବନସ୍ପତିର ଶୀର୍ଷତମ ଶାଖାରେ ବସା ନିର୍ମାଣକରେ । ଯୁବରାଜ, ତୁମର ଆଦର୍ଶ ଘରଚଟିଆର ଆର୍ଦଶ ନୁହେଁ । ଇତର ସାଧାରଣପରି ନାରୀ-କୈନ୍ଦ୍ରିକ ବୃତ୍ତ ତୁମକୁ ଆବଦ୍ଧ କରି ନ ପାରେ । ତୁମେ ସୁଧା-ସନ୍ଧାନୀ ଗରୁଡ଼ । ହେ ପର୍ଣ୍ଣଗ, ଚିରଉର୍ଦ୍ଧ୍ୱଗ ଗତିରେ ଅନ୍ତରୀକ୍ଷରେ ଗତି କଲାବେଳେ ତୁମର ପକ୍ଷଯୁଗ୍ମରେ ଇନ୍ଦ୍ରର ବଜ୍ର ଯେ ନିକ୍ଷିପ୍ତ ହେବ, ଏଥିରେ ବିସ୍ମିତ ହେବାର କିଛି ନାହିଁ । କିନ୍ତୁ ଭୟ ନାହିଁ । ଯେ ଅଭୟ, ଯେ ଏକାଗ୍ରବୁଦ୍ଧି, ତା'ର ସିଦ୍ଧିଲାଭ, ରାତ୍ରି ପରେ ଉଷାଗମ ପରି ନିଶ୍ଚିତ କଥା । ବିଚଳିତ ହୁଅ ନାହିଁ ଯୁବରାଜ । ଏହି ଝଡ଼ଝଞ୍ଜାର ଶେଷ ଅଛି । ଜାଗତିକ ସକଳ ସୁଖ ଓ ସକଳ ପ୍ରକାର ପ୍ରଲୋଭନ କ୍ଷଣସ୍ଥାୟୀ ମାତ୍ର । ଏ ସବୁକୁ ଅତିକ୍ରମ କରିଯାଅ । ତା' ପରେ ଯେଉଁ ଶାନ୍ତି, ଯେଉଁ ସୁଖ, ଯେଉଁ ସୁଧା ଲାଭକରିବ, ତା'ର ଯେ ଶେଷ ନାହିଁ । ସେ ଅକ୍ଷୟ, ଅମୃତ, ଅଖଣ୍ଡ ଜ୍ୟୋତି, ଅନନ୍ତ ନିର୍ବାଣ । ଆଉ ବେଶି ଦୂର ନୁହେଁ ସିଦ୍ଧାର୍ଥ । ସ୍ଥିର ହୁଅ, ଭୁଲ ନାହିଁ । ଯେଉଁ ଆସନ ଗ୍ରହଣ କରିଛ ସେଥିରୁ କେଶ ପ୍ରମାଣ ଘୁଞ୍ଚ ନାହିଁ । ହେ ମହାନ୍, ତୁମର ଲକ୍ଷ୍ୟ ମହାନ୍ । ତୁମର ସାଧନା ମଧ୍ୟ ମହାନ୍ ଆଦର୍ଶ ହୋଇ ରହୁ ।....

(ସେହି ପ୍ରଳୟାନ୍ଧକାର ରାତ୍ରି ଧୀରେ ଧୀରେ ଅପସୃତ ହୋଇଆସିବ— ପଟପରିବର୍ତ୍ତନ)

## (ତୃତୀୟ ଦୃଶ୍ୟ)

[ନେପଥ୍ୟେ କରୁଣ ସଙ୍ଗୀତର ମୂର୍ଚ୍ଛନା । କପିଳବାସ୍ତୁ ରାଜପ୍ରାସାଦର ଏକ କକ୍ଷ । ଏକ ଆସନରେ ପ୍ରଜାବତୀ ନୀରବରେ ମୁଣ୍ଡପୋତି ଗାଲରେ ହାତଦେଇ ବସିଛନ୍ତି ଓ ଅନ୍ୟ ଏକ ଆସନରେ ଶୁଦ୍ଧୋଦନ ଉପବିଷ୍ଟ । ମଝିରେ ମଝିରେ ଦୀର୍ଘନିଶ୍ୱାସ ଛାଡ଼ିବାର ଦେଖାଯାଉଅଛି । କିଛିସମୟ ପରେ ଧୀରେ ଧୀରେ ପୁରୋହିତ ରଙ୍ଗମଞ୍ଚ ଉପରେ ପ୍ରବେଶ କଲେ । ସେ ଚାରିଆଡ଼କୁ ଚାହିଁ ଟିକିଏ ହସି ରାଜା ଓ ରାଣୀଙ୍କୁ କିଛିକ୍ଷଣ ନିରୀକ୍ଷଣ କଲାପରେ କହିଲେ...]

ପୁରୋହିତ—ଏମିତି ବସି ବସି ଦିନ ରାତି ଭାବିହେଉଥିଲେ କି ଲାଭ ? ସେତେବେଳେ ଆମ କଥା ମନକୁ ଆସୁ ନ ଥିଲା । ଟୋକାଙ୍କୁ ମ୍ଳେଚ୍ଛ କଥା ସବୁ ଶିଖେଇଲ, ଆଖିରେ ଆଙ୍ଗୁଠିମାରି ଦେଖେଇଲେ ବି ଦେଖିଲ ନାହିଁ । ଆମ କହିବା କଥା ଘଟିଲା କି ନାହିଁ ?

ଏବେ ସକେଇ ହୋଉଛ ଯେ କିଏ ଆଉ ସାହା ପଡ଼ିବ ? ଯାଅ, ଟୋକାଙ୍କୁ ଅକ୍ଷର ଶିଖା ହେ, ସେଇ ତମକୁ ଉଦ୍ଧାର କରିବେ । ପୁଅ ତ ସେଣେ କୁ' ବଣ କଣରେ ପଡ଼ି ନ ଖାଇ ନ ପିଇ ମରିବାକୁ ବସିଲାଣି, ଏଠି ସକେଇ ହେଇ ଲାଭ କ'ଣ ? ଯାଅ ହେ ତାକୁ ଲେଉଟାଇ ଆଣ । ଧର୍ମ ନା ଫର୍ମ—ମସ୍ତିଷ୍କ ବିଗିଡ଼ି ଯାଇଛି ଅସଲ କଥା—ରଜାପୁଅଟା ନ ହେଲେ ଇମିତି ହୁଅନ୍ତା କିଆଁ ? ଅସଲ ସେଇ ମ୍ଳେଚ୍ଛାଚାର ଯୋଗୁଁ । କୁ'ଠି ବଣରେ ପଡ଼ିଥିବ, ଉଠେଇଆଣି ବୈଦ୍ୟ ଲଗେଇ ଚିକିତ୍ସା କରାଅ, ବସି କାନ୍ଦୁଛ କ'ଣ ? ସବୁଦିନେ ସେଇ କଥା କହୁଛି— ଶୁଣୁନା କାହିଁକି ? ଉଠ, ଉଠ....କହିବ ଯଦି ମୁଁ ସାଥିରେ ଯିବି ।...... ଫେର୍ ଆସୁଛି— (ଧୀରେ ପ୍ରସ୍ଥାନ)

## (ଚତୁର୍ଥ ଦୃଶ୍ୟ)

[କପିଳବାସ୍ତୁର ଏକ ଗଳି ରାସ୍ତା, ଛନ୍ଦକର ଘର । ଛନ୍ଦକର କୁଟୀରର ମେଲାଦ୍ୱାର ଦେଖାଯାଉଅଛି । ପଟ ଉତ୍ତୋଳିତ ହେବାର କିଛି ସମୟ ପରେ ଉପାଳୀ ପ୍ରବେଶକଲା । ସେ ବର୍ତ୍ତମାନ ବାଡ଼ି ଆଶ୍ରୟ କରିଛି । ତା'ର ଗତି ଦୁଃଖର ଭାରାରେ ଅତି ମନ୍ଥର । ମୁହଁ ତଳକୁ କରି କରି ଚାଲୁଛି, ଯେପରି ସବୁବେଳେ ଭାବୁଛି । ମୁଣ୍ଡରେ ଠେକା ଭିଡ଼ିଛି—ଯେପରି କି ଜ୍ୱରାକ୍ରାନ୍ତ । ତା'ର ବଚନ ଦୁଃଖରେ ଗଦ୍‌ଗଦ]

ଉପାଳୀ—ଓଃ, ଆମପରି ଦୀନ ଦରିଦ୍ର ଲୋକ କୁଡ଼ିଆ ଘରେ ଶାଗଭାତ ଖାଇ ମହାସୁଖରେ କାଳ କାଟୁଛନ୍ତି ପିଲାକବିଲାଙ୍କୁ ଧରି— ଆଉ ରାଜାପୁଅକୁ ଉଆସର ସୁଖ ପିତା ଲାଗିଲା ଯେ ସେ କଉପିନି ମାରି ପଳେଇଲା ! କି ଅଭାଗ୍ୟ କଥା ! କିଏ ଶୁଣିଥିଲା କେବେ ? କିଏ ବା ବିଶ୍ୱାସ କରିବ ? କେତେ ଆଶା, କେତେ ପାଞ୍ଚ ମନରେ କରିଥିଲୁଁ, ଆଖରକୁ ମୁହଁ ତଳକୁ ପୋତି ଚାଲିବାକୁ କପାଳରେ ଲେଖାଥିଲା ! କ'ଣ, ମା-ବାପରେ ଅଭାବ ? ବୋହୂଙ୍କ କଥା ତ ଛାଡ଼, କାଆଲି ପୁଅ ଜନ୍ମ ହୋଇଚି । ହୃଦକୁ ଏଡ଼େ ପଥର କଲ ମଣିମା, ସମସ୍ତଙ୍କୁ କନ୍ଦେଇ ଚାଲିଗଲ ! ପିଲାଟିଦିନୁ ଏ ଛାତିରେ ମୁଁ ତାଙ୍କୁ ବଢ଼େଇଥିଲି । ବଣର ବଣିଚଢ଼େଇଟିପାଇଁ, ଘରର ବିରାଡ଼ି ଛୁଆଟିପାଇଁ ଯା' ମନ ଏଡ଼େ କଅଁଳ, ସେ ନିଜ ରକ୍ତକୁ, ସାରା ରାଜ୍ୟକୁ କନ୍ଦେଇ କନ୍ଦେଇ ଚାଲିଗଲା ! କୁଆଡ଼େ ଗଲ ହେ ! (ଆଉ ସମ୍ଭାଳି ନ ପାରି କାନ୍ଦିପକାଇ) କୁଆଡ଼େ ଗଲ ମଣିମା ! କୁଆଡ଼େ ଗଲ ! (କିଛି ସମୟ ପରେ ନିଜକୁ ସମ୍ଭାଳିନେଇ) ଆରେ, ରାସ୍ତାଟା ଉପରେ ଠିଆହୋଇ କାନ୍ଦୁଛି ମୁଁ । ହଁ, ରାଜ୍ୟଯାକ ଆଖିରେ ତ ଲୁହ, ଘରେ ଘରେ କାନ୍ଦବୋବାଳି- କିଏ କ'ଣ କହିବ ? ଏଇ ତ ଛନ୍ଦିଆର ଘର । କାହିଁକି ଯେ ତା' ସ୍ତ୍ରୀ ଥରକୁ ଥର ଡକେଇଲାଗିଛି ! ଏ ଦୁଃଖ ଭିତରେ ବି ଆଉ କ'ଣ ଘଇତା ମାଇପଙ୍କ କଳି ଛାଡ଼ ପାଇନି ? ଡାକେଁ—ଏ ମାଧିଆ, ମାଧିଆରେ, ଆରେ ବାପାକୁ କହିଦେରେ ମୁଁ ଆସିଛି । ଡାକ୍, ଡାକ୍ ବେଗି, ମୋର ସେଣେ ଢେର୍ କାମ ପଡ଼ିଛି ।

(କୁଟୀର ଦ୍ୱାର ଦେଇ ଛନ୍ଦକ ସ୍ତ୍ରୀର ପ୍ରବେଶ । ଉପାଳୀକୁ ଜୁହାରକଲା ।)

ମାଧିଆବୋଉ, ଖବର କ'ଣ କି ? କାହିଁକି ଏତେ ଡକେଇପଠେଇଲ ? ଛନ୍ଦିଆ କାଇଁ ?

ସ୍ତ୍ରୀ—(କାନ୍ଦ କାନ୍ଦ ହୋଇ) ଉପାଳି ସାଆନ୍ତେ, ଭିତରକୁ ଟିକିଏ ଆସ । ମତେ ଭାରି ଭୟ ଲାଗିଲାଣି । ବାୟାପିରିକା ହଉଚିନି, ତୁଣ୍ଡରେ ତ ପନ୍ଦର ଦିନ ହେଲା ପାଣି ଟୋପାଏ ବି ଦେଲେନି । କରେ କ'ଣ ପିଲା ଛୁଆଙ୍କୁ ଧରି ! (କ୍ରନ୍ଦନ)

ଉପାଳୀ—ହଉ, ହଉ, ଚାଲ, ଚାଲ, ଭିତରକୁ ଚାଲ । କାନ୍ଦନି, କାନ୍ଦନି, ମାଧିଆବୋଉ । ଏଇକ୍ଷଣି ସାରା ସଂସାର କାନ୍ଦୁଛି, ବୋଧ ଦେବାକୁ କେହି ନାହିଁ । ଚାଲିଲ...

(ଉଭୟେ କୁଟୀର ଦ୍ୱାର ଦେଇ ଭିତରକୁ ଗଲେ । ଗଲା ପରେ ପଟ ଉତ୍ତୋଳିତ ହୋଇ କୁଟୀରର ଅଭ୍ୟନ୍ତର ଦେଖାଗଲା । ଛନ୍ଦକ ଭୀତତ୍ରସ୍ତ ହୋଇ କଣରେ କାନ୍ଥକୁ ଆଉଜି ଠିଆହୋଇଛି । ତା'ର ବେଶର ପୂର୍ବ ଶୃଙ୍ଖଳା ନାହିଁ । ଚେହେରା ରୋଗ-ଜୀର୍ଣ୍ଣ । ଦାଢି ଉଠିଯାଇଛି ମୁହଁରେ । ଗାଲ ପଶିଯାଇଛି ।)

ଉପାଳୀ—ଛନ୍ଦିଆ, ଉଆସକୁ ଯିବୁନି କିରେ ? ମହାର୍ଜା ଡକେଇଛନ୍ତି, ଆ ମୋ ସାଥିରେ ଯିବୁ ।

ସ୍ତ୍ରୀ—ଉପାଳୀ ସାଆନ୍ତେ ଡାକୁଛନ୍ତି ପରା— ଶୁଣୁନା କାହିଁକି ?

ଉପାଳୀ—କିରେ ଛନ୍ଦିଆ, ମତେ ଚିହ୍ନିପାରୁନୁ ? ମୁଁ ପରା ଉପାଳି ଭାଇ ! (ଟିକିଏ ନୀରବତା । କିଛିସମୟ ପରେ ଉପାଳୀ ଛନ୍ଦକ ନିକଟକୁ ଯାଇ ତାକୁ ଧୀରେ ଧୀରେ ହାତ ଧରି ଟାଣିଲେ) ଆ, ଆ, ଲୁଗାପଟା ପିଇନ୍ଧି, ଯିବା ।

ଛନ୍ଦକ—(ଉତ୍କ୍ଷିପ୍ତ ହୋଇ ହାତ ଛିଂଚାଡ଼ି, ବୋବାଳିଛାଡ଼ି) ନା, ନା, ମତେ ବାଡ଼େଇବେ । ମୋର ଦୋଷ ନାଇଁ— ମୁଁ ନିର୍ଦ୍ଦୋଷ । କେହି ବୁଝିବେନି, ମତେ ବାଡ଼େଇବେ । (ପଳେଇ ଯାଇ ପୁଣି ଭୟରେ ଥରି ଥରି ଗୋଟିଏ କୋଣରେ ଠିଆହେବା)

ଉପାଳୀ—(ପୁଣି ଯାଇ ଛନ୍ଦକକୁ ଆସ୍ତେ ଧରି) ଆ, ଛନ୍ଦିଆ, ଆ । ତତେ କେହି ମାରିବେନି । ତୁ ଦେଖିବୁନି, କେହି ତୋ' ଦିହରେ ଟିପ ଛୁଇଁବେନି । ଆ, କିଛି ଭୟ ନାଇଁ । (ଧୀରେ ଟାଣିବା)

ଛନ୍ଦକ— (ଛାଟିପିଟିହୋଇ, ପାଗଳ ପରି ଏଣେତେଣେ ଅନାଇ) ମଣିମା, ମଣିମା, ଏ କ'ଣ କରୁଛ, ଭିଖାରିର ଛିଣ୍ଡାକନା ପିନ୍ଧୁଛ ନିଜ ରାଜପୋଷାକ ଫିଙ୍ଗିଦେଇ । ହାଁ, ହାଁ, ହାଁ, ଏ କି କଲେ ! ଏଡ଼େ ସୁନ୍ଦର ବାଳକୁ କାଟିପକେଇଲେ ! ବୋହୂମଣିମା, ବୋହୂମଣିମା......ମତେ କି ଦେଖିବାକୁ ହେଲାରେ— ମୁଁ କାଇଁକି ସାଙ୍ଗରେ ଆଇଲିରେ ! ବିଧାତା କି କଲୁ ରେ ! (ଦୁଇ ପାପୁଲିରେ ମୁଣ୍ଡପୋତି ବ୍ୟାକୁଳ ଭାବରେ କ୍ରନ୍ଦନ । ଉପାଳୀ ଓ ଛନ୍ଦକର ସ୍ତ୍ରୀ କାନ୍ଦିବା)

ଉପାଳୀ—(କିଛି ସମୟ ପରେ ଆଖି ପୋଛି) ମାଧିଆବୋଉ, କାନ୍ଦନି । ମଣିମାଙ୍କୁ ଛାଡ଼ି ଆସିବାର ଦକାଟା ରହିଯାଇଛି । ନ ଖାଇ ନ ପିଇ ପିତ୍ତ ବି ଉଠିଯାଇଛି ଦେହରେ । ମୁଁ ଯାଉଚି— ବୈଦ୍ୟରାଜଙ୍କୁ ପଠେଉଚି । ସେ ହାତ ଦେଲେ ଏ ସବୁ ଛାଡ଼ିଯିବ । କିଛି

ଭାବନି । ମତେ ଫେର୍ ଡକେଇବ । ଏଇ ଅବସ୍ଥା ତ ସବୁରି ଘରେ— କାହାକୁ କହିବା ? ମୁଁ ଯାଏଁ । (ପ୍ରସ୍ଥାନ)

ଛନ୍ଦକ—(ମୁହଁଟେକି) ମୁଁ ବି ଯିବି, ମତେ ତମ ସାଥିରେ ନିଅ, ମୁଁ ସାନମଣିମାଙ୍କ ପାଖକୁ ଯିବି— ଏଠି ରହିଲେ ମତେ ବାଡ଼େଇବେ.....

(ପଳେଇବା, ଛନ୍ଦକର ସ୍ତ୍ରୀ ପଛେ ପଛେ ଧାଇଁବା ।)

(ପଟପତନ)

## (ପଞ୍ଚମ ଦୃଶ୍ୟ)

[ସେହି ବଣ । ସିଦ୍ଧାର୍ଥ ସେହିପରି ନିଶ୍ଚଳ ଧ୍ୟାନସ୍ଥ । ବର୍ତ୍ତମାନ ପ୍ରଭାତ ।]

ମାର— (ନେପଥ୍ୟରୁ) ହେ ନାରୀ, ଯାଅ, ଯେଉଁ ମାୟାରେ ତମେ ସୃଷ୍ଟିର ପ୍ରାରମ୍ଭରୁ ପୁଂସକୁ ଆକର୍ଷିତ କରି ସୃଷ୍ଟିକୁ ପ୍ରବହମାନ କରି ରଖିଛ, ଯେଉଁ ଶୋଭା ଓ ସମ୍ମୋହନ ପଦତଳେ ଯୁଗେ ଯୁଗେ ଜ୍ଞାନୀ, କବି, ତପସ୍ୱୀ ସେମାନଙ୍କର ସାଧନା ଓ ପ୍ରତିଭାକୁ ଜଳାଞ୍ଜଳି ଦେଇଅଛନ୍ତି, ଯାଅ ସେହି ମାୟା ଏହି ତରୁଣ କ୍ଷତ୍ରିୟ ନିକଟରେ ପ୍ରୟୋଗ କର । ଜ୍ୟୋତ୍ସ୍ନାଧୌତ ଚୈତ୍ର ସନ୍ଧ୍ୟାରେ ଯେତେବେଳେ ମଳୟର ପେଲବ ସ୍ପର୍ଶରେ ସଦ୍ୟପ୍ରସ୍ଫୁଟିତ ମଲ୍ଲିକାର ସୌରଭ ବାତାୟନ ଦେଇ ଭାସିଆସେ, ସେତେବେଳେ ପୁଷ୍ପାଭରଣଭୂଷିତା ତରୁଣୀ ତା'ର ବଚନ, ସ୍ପର୍ଶ ଓ ମାଧୁର୍ଯ୍ୟରେ ପୁରୁଷକୁ କି ସ୍ୱର୍ଗ ଦେଇପାରେ, ତାହା ଏହି ରୁକ୍ଷପଥଚାରୀ ତରୁଣକୁ ସ୍ମରଣ କରାଇଦିଏ । ଏହି ଦାମ୍ଭିକ ଯୁବକ ଏପରି ଏକ ମାର୍ଗ ଖୋଜୁଛି ଯାହାଯୋଗୁଁ ସମାଜ ଉଚ୍ଛନ୍ନ ହେବ । ସେ ନିଜେ ସୁଖର ନୀଡ଼ ଭାଙ୍ଗି ଦେଇ ଆସିଛି । ତାକୁ ଫେରାଅ ଗୃହ ସଂସାରର ପରିଧି ଭିତରକୁ । ସୃଷ୍ଟି ତମଠୁଁ ଏହାହିଁ ଆଶାକରେ । ଏହାହିଁ ତମର କର୍ତ୍ତବ୍ୟ । ଯାଅ.....

(ଧୀରେ ଧୀରେ ମଧୁର ସଂଗୀତ ଧ୍ୱନି ଶୁଣାଯିବ । ପରେ ପରେ ନର୍ତ୍ତକୀ ପଦର ନୂପୁର ଶବ୍ଦ । କ୍ରମେ କ୍ରମେ ଚାରିଟି ନର୍ତ୍ତକୀ ଉଭୟ ଦିଗରୁ ନୃତ୍ୟ କରି କରି ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହେବେ । ସେମାନଙ୍କ ବକ୍ଷ ଓ ମସ୍ତକରେ ପୁଷ୍ପାଭରଣ ।)

### ଗୀତ

ପୀରତିମଧୁର, ଚୁମ୍ବନବିଧୁର<br>
ହୃଦୟ-ବଧୂର ମରମ ଛାଡ଼ି<br>
କମଳ-କୋମଳ ସ୍ୱର୍ଣ୍ଣ ହୃଦସ୍ଥଳ,<br>
ଅଧୀର ଅଧର ଦୂରେ ପୋପାଡ଼ି-<br>
ହେ ଯୁବାରତନ, କିପାଁ ଏ କଷଣ ?<br>
ମଧୁ ଆଲିଙ୍ଗନ ତିଆଗି ଦୂରେ,

ଚଇତି ଜ୍ୟୋସ୍ନାରେ, ନୀରବ ବିହାରେ,
ପେଲବ ହିୟା ଯେ ପରଶ ଝୁରେ ।

ନୁହେ ତୁମ ପାଇଁ ରୁକ୍ଷ ବଣ ଭୂଇଁ,
କୋମଳ ତଳପ ଅନାଇ ରହେ;
ଉଠ ଯୁବରାଜ, ରୂପସୀ ସମାଜ,
ଓଠେ ଓଠେ ମଦ ଧରି ଚାହିଁଛନ୍ତି
ମଧୁ ବିରହେ ।

(ପଟପତନ)

## (ଷଷ୍ଠ ଦୃଶ୍ୟ)

[ଏକ ବନପଥ, ରଙ୍ଗମଞ୍ଚ ଶୂନ୍ୟ, ପଟ ଉତ୍ତୋଳିତ ହେବାର କିଞ୍ଚିତ ପୂର୍ବରୁ ରଙ୍ଗମଞ୍ଚରେ ଡାହାଣପଟୁ ଏକ ଶଗଡ଼ିଆର ଗୀତ ଶୁଣାଯାଉଛି—ଯେପରି ଶଗଡ଼ ବାହି ନେଇ ଯାଉଛି ।]

ଗୀତ

ଏ...ଏ..ରାମ ଯେ ଲଇକ୍ଷଣରେ
ଗଲେ ମୃଗ ମାରି
ପତ୍ର କୁଡ଼ିଆରେ ସୀତୟା
ରହନ୍ତି ମନମାରି ଯେ ଏ.....

ରହନ୍ତି ମନ ମାରି ଯେ ସୀତୟା
ଦୁଆରେ ପାଦ ଶବ୍ଦ,
ଫେରିଲେ କାନ୍ତ କି ମୋ, ଅନାଉଁ
ଦେଖିଲେ ବ୍ରହ୍ମଚାରୀ ଯେ ଏ....
ହ, ହ, ହ, ହ.....

ଏ...ଏ... କପଟ ବ୍ରହ୍ମଚାରୀ ମାଗଇ
ଭିଖ ଗୋ ଦିଅ ମତେ
ବହୁତ ବାଟ ଭ୍ରମି ଆସିଛି
ଭୋଖେ ତ ଜଳେ ପେଟ ଯେ
କ୍ଷୁଧା ତ ଜାଳେ ପେଟ ଯେ ସୁନ୍ଦରୀ.....

(ଦ୍ୱିତୀୟ ପଦ ଆରମ୍ଭ ହେବା ମାତ୍ରେ ବିପରୀତ ଦିଗରୁ ଆଉ ଏକ ଶଗଡ଼ିଆ ବ୍ୟସ୍ତତାର ସହିତ ରଙ୍ଗମଞ୍ଚ ଉପରକୁ ଦଉଡ଼ିଆସିଲା । ଗୀତଆଡ଼କୁ ଲକ୍ଷ୍ୟକରି ସେ କାନରେ ହାତଦେଇ ଉଚ୍ଚ ସ୍ୱରରେ ଡାକିବାକୁ ଲାଗିଲା.....)

ଦ୍ୱିତୀୟ ଶଗଡ଼ିଆ– ଏ, ଏ ରସିକ.....ଏ ଭାଲୁଆଭାଇ......ଏ,ଏ । କ'ଣ ଶୁଣିବା ଜନ୍ତୁ ସେ ! ......ଏ ଭାଲୁଆନ୍ନା....

ପ୍ରଥମ–(ନେପଥ୍ୟେ) ହ, ହ, ହ, ଚୁ, ଚୁ, ଚୁ,.....ହହ... କ'ଣରେ ? କ'ଣ କହୁଚୁ ବା ?

ଦ୍ୱିତୀୟ–ଆରେ କେମ୍ପା, ବଇକୁଣ୍ଠିଆର ଶଗଡ଼ଟା ପରା କାଦୁଅରେ ପଡ଼ି ତୁମ୍ଭି ପରନ୍ତେ ପଂକରେ ପଶିଲାଣି ! ତୁ ଭଲା ଆ ଟିକିଏ ଦଉଡ଼ି.....

ପ୍ରଥମ–(ପ୍ରବେଶକରି) ସେ କଥା କହୁନୁ ମତେ । ତୁ ଏଠି ଠିଆହୋଇ ବେକ ଫଟେଇ ପାଟି କଲେ କ'ଣ ହବ ? ତୁ ଟିକିଏ ଗୋଡ଼ କାଢ଼ି ମୋ ପାଖକୁ ଧାଇଁଯାଇଥେଲେ ହେଇ ନ ଥା'ନ୍ତା ?

ଦ୍ୱିତୀୟ– ମୁଁ ତ ତତେ ପହରେ ହେଲା ଡାକ ଛାଡ଼ିଛି । ତୁ'ତ ଗୀତରେ ଭୋଳ ଯେ କୁ' କଥା କାନକୁ ତୋର ଯାଉନି– ତତେ ଡାକିଥା'ନ୍ତି କ'ଣ ?

ପ୍ରଥମ–ହଉ, ହଉ, ଆ.....ଆ......କିମିତି ଶଗଡ଼ଟା ପଙ୍କରେ ପଡ଼ିଗଲା....ବଳଦ ଫିଟେଇ ଦେଇଚୁ ତ ? ହଉ ହଉ ତୁ ଯା ମୋ ଶଗଡ଼ଟା ଜଗିଥା....ମୁଁ ଯାହା କରିବାର କରୁଛି ଏଣେ...(ଦୁହେଁ ଦୁଇ ଦିଗରେ ପ୍ରସ୍ଥାନ) (ପଟ ପତନ)

## (ସପ୍ତମ ଦୃଶ୍ୟ)

[ସେହି ବଣ । ସିଦ୍ଧାର୍ଥ ସେହିପରି ନିଶ୍ଚଳ ଧ୍ୟାନସ୍ଥ । ପ୍ରଭାତ ହୋଇଆସୁଛି । ଦୂରରୁ ବଂଶୀରେ ପ୍ରଭାତ ରାଗର ଆଳାପ । ନୂତନ ବୁଦ୍ଧି ଲାଭର ଦୈବତ ଆନନ୍ଦରେ ସିଦ୍ଧାର୍ଥଙ୍କ ମୁଖମଣ୍ଡଳ ଭାସ୍ୱର । ଏଇ ସମୟରେ ସ୍ୱର୍ଗରୁ ତାଙ୍କ ଉପରେ ପୁଷ୍ପବୃଷ୍ଟି ହେବାର ଦେଖାଯିବ ଓ ତିନୋଟି ଅପ୍‌ସରା ବୁଦ୍ଧ ବନ୍ଦନା ଗାଇ ଗାଇ ରଂଗମଂଚରେ ଅବତୀର୍ଣ୍ଣ ହେବେ ଓ ନୃତ୍ୟ ଗୀତରେ ବୁଦ୍ଧଙ୍କୁ ବନ୍ଦନାକରି ଫେରିଯିବେ ।]

ଗୀତ

(ଗୁରୁଲଘୁ ନିୟମ)

ଜୟ ବିଶ୍ୱବନ୍ଧ୍ୟ ଜୟ ବୁଦ୍ଧ,
ଜୟ ମୃତ୍ୟୁଞ୍ଜୟ ଜୟ ଶୁଦ୍ଧ,
ଜୟ ଦୁଃଖବିନାଶକ ଜ୍ଞାନବିଧାୟକ
କରୁଣାଘନ, ଅ-ଲୁବ୍ଧ । (ଘୋଷା)

ଯୁଗ ଯୁଗ ଭ୍ରାନ୍ତିର ଶର୍ବରୀ ଶେଷ,
(ତବ) ବୁଦ୍ଧି ମହୋଜ୍ଜ୍ୱଳ କିରଣେ
ମାର ଦମିତ କରି ହେ ବିଜୟୀବର,
ଗରବିତ କଲ ନର-କରମେ,
କଲ, ନିର୍ଭୟ, ଅମଳ, ଅ-ରୁଦ୍ଧ
ଜୟ ବିଶ୍ୱବନ୍ଧ୍ୟ ଜୟ ବୁଦ୍ଧ ।୧।

ହିଂସ୍ର କଠିନ ବହୁ ଧର୍ମର ପନ୍ଥା,
କଲ ଗଳୁ ଯୁକ୍ତିର ପରଶେ,
ହେ ନବ-ଦ୍ରଷ୍ଟା, ମାନବ ସୃଷ୍ଟି
ପୁଲକିତ, ମୁକ୍ତିର ହରଷେ ।
ନିରବାଣ-ବିମଳ-ମଧୁ-ମୁଗଧ
ଜୟ ବିଶ୍ୱବନ୍ଦ୍ୟ, ଜୟ ବୁଦ୍ଧ ।୨।

(ସେମାନେ ପ୍ରସ୍ଥାନ କଲା ପରେ କିଛିକ୍ଷଣ ନୀରବତା । କିଛିକ୍ଷଣ ପରେ ବୁଦ୍ଧ ଗୌତମ ନେତ୍ର ନିମୀଳିତ କରି ଚାରିଆଡ଼କୁ ଚାହିଁଲେ । ତାଙ୍କ ମୁଖରେ ଅପୂର୍ବ ଜ୍ୟୋତି ଓ ଶାନ୍ତି । କ୍ରମେ ସେ ଦଣ୍ଡାୟମାନହେଲେ ଓ ଧୀରେ ଧୀରେ ପଦଚାରଣକଲେ ।)

ବୁଦ୍ଧ— ଭ୍ରମିଅଛି ବହୁଦିନ ।
ବାସନା ଶୃଙ୍ଖଳେବଦ୍ଧ ଜନ୍ମଜନ୍ମାନ୍ତରେ
ଖୋଜିଅଛି ବୃଥା !
କେଉଁଠାରୁ ଆସେ ଏହି ଅଶାନ୍ତି ନରର ?
ଅଂହକାର, ବେଦନାର କାରଣ କେଉଁଠି ?
ଅସହ୍ୟ ସଂସାର,
ଦୁଃଖ, ମୃତ୍ୟୁ ଘେରିଛି ମନୁଷ୍ୟେ ।
ପାଇଛି ମୁଁ, ପାଇଛି ମୁଁ ଏବେ,
ଅସ୍ମିତାର ମୂଳ ତୁହି, ତୁହିରେ ଆସକ୍ତି,
ନ ଚାହେ ମୁଁ ତତେ ଆଉ ।
ଭଗ୍ନ ଏବେ ପାପାଗାର,
ଦୂରୀଭୂତ ଯେତେକ ଉଦ୍‌ବେଗ,
ନିର୍ବାଣେ ପ୍ରବିଷ୍ଟ ଚିତ୍ତ
ଆକାଙ୍‌କ୍ଷାରେ କରି ପରାଜୟ ।

(କିଛିକ୍ଷଣ ନୀରବ ରହିବା ପରେ) କି ଅଭୂତପୂର୍ବ ଆନନ୍ଦ, କି ଶାନ୍ତି, କି ନିଷ୍ପାପ ନିଷ୍କଳୁଷ ସୁଖ ମୋ ପ୍ରାଣରେ । ଜନ୍ମଜନ୍ମାନ୍ତରର ସମସ୍ତ ତୃଷ୍ଣା ନିର୍ବାଣ ଲାଭକରିଛି । ମୁଁ ଆଜି ମୁକ୍ତ । ମୁଁ ଆଜି ପ୍ରପଞ୍ଚ ଜଞ୍ଜାଳରୁ ସ୍ୱାଧୀନ । ମୋର ବନ୍ଧନ ନାହିଁ, କାରଣ ମୋର ଆଉ କାମନା ନାହିଁ । ମୁଁ ବୁଦ୍ଧ ! ମୁଁ ଜୀନ ! କିନ୍ତୁ ଏହି ଅପୂର୍ବ ଆନନ୍ଦର ସ୍ୱାଦ ମୁଁ କ'ଣ ଏକା ଏକା ଭୋଗକରିବି ? ସମଗ୍ର ସୃଷ୍ଟି ଦୁଃଖରେ ଦଗ୍‌ଧୀଭୂତ । ସଂସାରକୁ ଏହି ଆନନ୍ଦର ପଥ, ମୁକ୍ତିର ପଥ ଦେଖାଇବାକୁ ବାହାରିବି କି ? ଲୋକେ କ'ଣ ଶୁଣିବେ ମୋର କଥା ? ଲୋକେ କ'ଣ ବୁଝିବେ ମୋର ବାଣୀ ? ଲୋକେ କ'ଣ ଗ୍ରହଣ କରିବେ ମୋର ପନ୍ଥା ? କାହାନ୍ତି ବା ମୋର ସେହି ପୂର୍ବ ବଂଧୁଗଣ, ପୂର୍ବ ତପସ୍ୟାର ସାଥୀ ?

ଓଁକାରନାଥ, ବିପ୍ରଜିତ୍ ଓ କୋଣ୍ଡିୟାନ ପ୍ରଭୃତି କେଉଁଠାରେ ଏବେ ? ପ୍ରଥମେ ସେଇମାନଙ୍କୁ ଖୋଜି ବାହାରକରେ—ତାଙ୍କୁଇ ଆଗେ ମୋର ନୂତନ ସତ୍ୟର ସଂବାଦ ଦିଏଁ । ସେମାନେ ଆଗେ ଗ୍ରହଣ କରିସାରିଲା ପରେ, ସେଇମାନେ ଯଦି କହନ୍ତି, ତେବେ ଏହା ଜନସମାଜରେ ପ୍ରଚାର କରିବି । ଯାଏଁ ଏବେ ତାଙ୍କରି ସଂଧାନରେ ।
(ଧୀରେ ଧୀରେ ପସ୍ଥାନ) (ପଟପତନ)

## [ ଚତୁର୍ଥ ଅଙ୍କ ]

### (ପ୍ରଥମ ଦୃଶ୍ୟ)

[ରାଜପଥ । ସେହି ଶଗଡ଼ିଆ ଦୁଇଜଣଙ୍କର ଅଗ୍ରପଶ୍ଚାତ୍ ପ୍ରବେଶ । ମୁଣ୍ଡରେ ଠେକା, କାଖରେ ପାଞ୍ଚଣ ବାଡ଼ି, ଗୋଡ଼ଯାକ କାଦୁଅ । ଉଭୟେ ଗୁଆ କାଟି, ପାନରେ ଚୂନଲଗାଇ କଥା ହୋଇ ଯାଉଛନ୍ତି ।]

ପ୍ରଥମ— (ଗୁଣ୍ଡି ପାଟିରେ ପକାଇ ପକାଇ) ଯାହାହେଉ ତପୁଆ, ବଳଦୁଟା ପ୍ରାଣରେ ବଞ୍ଚିଗଲା । ହେଲେ, ମୁଁ ମନରେ କରିଥିଲି ଶଗଡ଼ ତ ଗଲା, ତା' ପରା ବଳଦଟା ବି ନଷ୍ଟହୋଇଗଲା । ମା ବରୁଣେଇ ରଖିଲେ ଜାଣ ।

ଦ୍ୱିତୀୟ— ଭାଲୁଆ ଭାଇ, ତମକୁ ମୁଁ ଦେଶରୁ ଗୋଡ଼ କାଢିଲାବେଳୁ ନଗେଇଛି, କୁଶୁନିଆର ବଳଦକୁ ଆଣନି କି ତମ ହଳିଆ କେଳାକୁ ନିଅନି ସାଙ୍ଗରେ । ବଳଦ ତରଙ୍ଗାକୁ ହଳିଆ ମଠୁଆ । ଟିକିଏ ନିଘା କରିଥିଲେ ଏତେ ବାଟକୁ କଥା ଯାଇଥା'ନ୍ତା ? ଖର୍ବ ଖର୍ବ ଶଗଡ଼ ତ ପୁଣି ସେଇ ବାଟେ ବାଟେ ଯାଉଛି ? ସେଇଟା ତ ଖାଲି ଖାଇବ, ଘୁଁଘୁଡ଼ି ମାରିବ ।

ପ୍ରଥମ— କାଇଁ, ଚୂନ ଲଗାଇ ସାରିଲୁଣି—ଆଣ୍, ଆଣ୍ (ପାନର ଆଦାନ ପ୍ରଦାନ)—ହେଲେ କୁଶୁନିଆଁ—ବଳଦକୁ ତୁ ନିନ୍ଦାକରନା ତପୁଆ । ଶଗଡ଼ ବାହି ବାହି ବାଳ ପାଚିଲା, ବଳଦ ଚିହ୍ନିଲିନି ? ଲାଙ୍ଗୁଡ଼ ଲମ୍ୱା, ଶିଙ୍ଗ ସରୁଆ, କିଣୁବୁ ତାକୁ ବେପରୁଆ । ତୋ ବଳଦ ହାତୀପରି ହେଇଚିନି— ଏ ପିଠି ଉଠେଇ ପାରିଥା'ନ୍ତେ ? କଥାଗୁରା ଆଉ କହନା ବାହାପିଆକରି—ଆଉ କା' ଆଗରେ କହିବୁ....ହଉ ତୁ ଯା'ତ, ଧୋଧା ହୋଇ ଆ । ଫେର୍ ବଳଦଙ୍କୁ ଧୋଧାକରି କୁଣ୍ଡା ତୋରାଣି ଢୋକେ ଢୋକେ ଦେଇ ବେଳ ଗଡ଼ିଲା ବେଳକୁ ବାହାରିପଡ଼ିବା ।

ଦ୍ୱିତୀୟ— (ଯାଉଁ ଯାଉଁ ଫେରି) ଏ ନୁଣ ବେପାରରେ ନାଭ ନାହିଁ କିଛି ଭାଇ । ବଳଦଙ୍କୁ ବଡ଼ ବାଧା ପଡୁଛି । ଆରବର୍ଷକୁ ହଳଦୀ ଆଣିବା—ଏକା ନାଭ, କାମଟି ନିଝାଟିଆ....କ'ଣ କହୁଛୁ ? (ଫେର୍ ଯାଉ ଯାଉ ସ୍ତମ୍ଭୀଭୂତ ହୋଇ) ହେ ଭାଲୁଆ ଭାଇ, ଜଣେ ବାବାଜୀ ଠିଆହୋଇଚିନି, ଦେଖିଲୁଣି । ଆମ ଆଡ଼ିକି ଅନିଶା କରିଚିନି ସେ ।

ପ୍ରଥମ— (ନିର୍ବାକଭାବରେ) ସତେ ତ ।

ଦ୍ୱିତୀୟ– ବାବାଜିର ମୁହଁରୁ କି ତେଜ ବାହାରୁଛି !

ପ୍ରଥମ– ଚା'ରେ ଚା'ରେ, ତାଙ୍କୁ ଭେଟି ଗୋଡ଼ତଳେ ଗୋଟେ ଗୋଟେ ମୁଣ୍ଡିଆମାରିବା । ବାବାଜି ଆଶ୍ରୀପାଦ କରିବେ ।

ଦ୍ୱିତୀୟ– ସେ ଯେ ଆମଆଡ଼କୁ ଆଉଚିନି ।

(ଦୁହେଁ ରଙ୍ଗମଞ୍ଚର ଏକ ପାର୍ଶ୍ୱରେ ସସମ୍ଭ୍ରମେ ଠିଆହୋଇ ରହିଲେ)

ବୁଦ୍ଧ– (ପ୍ରବେଶକଲେ । ସେ ବର୍ତ୍ତମାନ ସ୍ନାତ ଓ ପରିଷ୍କୃତ । ମୁଖମଣ୍ଡଳ ସଂସ୍କୃତ । ନବୀନ ହାରିଦ୍ର ବସ୍ତ୍ରରେ ଶରୀର ମଣ୍ଡିତ) ତୁମ୍ଭେମାନେ କିଏ ? କେଉଁ ଦେଶର ଲୋକ ? (ଉଭୟେ ଭୂମିଷ୍ଠ ପ୍ରଣାମକଲେ । ବୁଦ୍ଧ ଆଶୀର୍ବାଦ ଦେଇ) ଉଠ, ଉଠ ।

(ଉଭୟେ ଉଠିଲେ)

ପ୍ରଥମ– ଆମେ କଳିଙ୍ଗର ବେବସାଇ । ନୁଣ ଶଗଡ଼ ନେଇ ଏଇ ଗୋହରୀରେ ଯାଉଁ ଯାଉଁ ଆମର ଗୋଟେ ଶଗଡ଼ କାଦୁଅରେ ଲାଖିଗଲା । ତାକୁ ଉଠାଉଠି କରି ନଈରେ ଧୋଧା ହେବାକୁ ଯାଉଛୁ । ଆପଣଙ୍କର କିଛି ସେବା କରିପାରିବୁ ?

ଦ୍ୱିତୀୟ– ଆରେ କହୁଚୁ କ'ଣ ଭାଲୁଆଭାଇ ଓଲାଙ୍କ ପରି ! ଯା' ଦଉଡ଼ି ଯା', ଚୁଡ଼ା, ଆରିଶା ପିଠା ଝଟ୍ ନେଇଆ । ପିତଳଥାଳିଟା ମାଜି ଆଣି ବାବାଜୀଙ୍କ ଆଗରେ ଭୋଗ ଥୋଇ ଦେ । ସେ ସାରିଲେ ଯାଇ ଆମର ଯୁ' କଥା ନା ! ତୁ ଯା ତ ।

ବୁଦ୍ଧ– ମୁଁ ତୁମର ଖାଦ୍ୟ ଗ୍ରହଣକରିବି; କିନ୍ତୁ ମୋର ଯାହା ଦେବାର ଆଗ ଦିଏ । ମନୁଷ୍ୟ ଏଇ ଦୁଃଖମୟ ସଂସାରରୁ ଉଦ୍ଧାର ପାଇବାର ନୂତନ ମାର୍ଗ ମୁଁ ଆବିଷ୍କାର କରିଛି । ତୁମକୁ ସେହି ମାର୍ଗ ମୁଁ ବତାଇ ଦେବାକୁ ଚାହେ । ତମର ଆପତ୍ତି ନାହିଁ ତ ?

ଉଭୟେ– ସେ ଯେ ଆମର ପରମ ଭାଗ୍ୟ ! ମହାପୁଣ୍ୟ !

ପ୍ରଥମ– ବିଜେହୁଅନ୍ତୁ ସେଇ ଗଛ ମୂଳେ..... ଆମେ ଆପଣଙ୍କର ସବୁ ବେବସ୍ତା କରି ଦେଉଛୁଁ । ବିଜେ ହୁଅନ୍ତୁ । କି ଭାଗ୍ୟ ଆମର ଆଜି ! ମୁଁ ଯାଉଛି ପିଠା ଚୁଡ଼ା ଆଣୁଛି । ତୁ ତପୁଆ ଯା'ତ ସମତଙ୍କୁ ଡାକିଆଣିବୁ ନଈରୁ, କେମ୍ପା, ବଇକୁଣ୍ଠିଆ, ଯଦୁଆ, ଭଗତା, ସଅମସ୍ତଙ୍କୁ......

(ଯାଉ ଯାଉ) କି ଯୋଗରେ ଘରୁ ବାହାରିଥିଲେ ରେ......ଶଗଡ଼ ପଂକରେ ପଡ଼ିଲା ବୋଲି ସିନା..... । (ଉଭୟେ ଦୁଇ ଦିଗରେ ପ୍ରସ୍ଥାନ)

ବୁଦ୍ଧ– ସୁଦୂର କଳିଂଗ ଦେଶରୁ ଏଇ ମୋର ପ୍ରଥମ ଶିଷ୍ୟ । ସେହି ଦେଶ ସଂଗେ ମୋ ଧର୍ମର ନିବିଡ଼ ଭବିଷ୍ୟତ୍ ସମ୍ବନ୍ଧହିଁ ଏହା ସୂଚିତ କରୁଛି । (ପଟପତନ)

## (ଦ୍ୱିତୀୟ ଦୃଶ୍ୟ)

(ଜଙ୍ଗଲ ଭିତରେ ଏକ ଆଶ୍ରମ । ସମ୍ମୁଖରେ ପରିଷ୍କୃତ ଭୂମିରେ ଜଣେ ଶିଷ୍ୟ ବେଦୀ ସଜାଡ଼ିବା, ସମିଧ କାଷ୍ଠ ଆଣି ଥୋଇବା ଇତ୍ୟାଦି ହୋମର ଆୟୋଜନ । ସବୁ ସଜାଡ଼ିଲା

ପରେ ସେ ଦୁଇଖଣ୍ଡ କାଠ ଧରି ଘଷିବ ଓ ବାଡ଼େଇବ । ଅଗ୍ନି ଜାତ ପାଇଁ ବାତଉ ବାତଉ କହିବ, ''ଆରେ ଆରଣି କ'ଣ ଓଦା ହୋଇଯାଇଛି ନା କ'ଣ ? ସବୁଦିନେ ତ ଚଟ୍‌କରି ନିଆଁ ବାହାରେ– ଆଜି ଏତେ ବିଳମ୍ବ କାହିଁକି ?'' କହି, କାଠକୁ ପିଟୁ ପିଟୁ ନିଜ ହାତକୁ ପିଟିପକାଇବା ଓ କାଠ ଦୁଇଖଣ୍ଡ ଫିଙ୍ଗିଦେଇ ହାତକୁ ଆଉଁଶି ଆଉଁଶି ତଳେ ଗଡ଼ି ''ମରିଗଲି ଲୋ.... ବାପା ଲୋ'' ଇତ୍ୟାଦି ଡାକ ଛାଡ଼ିବ । ଠିକ୍ ଏଇ ସମୟରେ ଜଟିଳମସ୍ତକ, କମଣ୍ଡଳୁଧାରୀ ଆଶ୍ରମର ଆଚାର୍ଯ୍ୟ ନଈରୁ ଗାଧୋଇ ସଦ୍ୟସ୍ନାତ ଭାବରେ ଆସିବାର ଦେଖାଯିବେ । ଚେଲା ତାଙ୍କ କଠାଉ ଶବ୍ଦରେ ଚମକିପଡ଼ି ହଠାତ୍ ଉଠି ପୁଣି ପୋପାଡ଼ିଥିବା କାଠକୁ ଗୋଟାଇବାକୁ ଯିବ ।)

ଆଚାର୍ଯ୍ୟ– (ପ୍ରବେଶକରି ଓ ଚାରିଆଡ଼କୁ ଅନାଇ) କି ବିପ୍ରଜିତ୍, ହବନର ଆୟୋଜନ ଆଜି ବିଳମ୍ବ କାହିଁକି ?

ବିପ୍ରଜିତ୍– ଆଜ୍ଞା, ଆରଣିରୁ ଅଗ୍ନି ଜାତହେଉ ନାହିଁ । (କାଠ ଦେଖାଇ)

ଆଚାର୍ଯ୍ୟ– ଆରଣିରୁ ଅଗ୍ନି ଜାତହେଉ ନାହିଁ ଆଜି ଏ ମହାତିଥିରେ ! ଏ ଯେ ଅଶୁଭ ସୂଚନା !

ବିପ୍ରଜିତ୍– ଆଜି ତ ଦଶମୀ, ଚୈତ୍ର କୃଷ୍ଣ ଦଶମୀ । ସେପରି କିଛି ପୁଣ୍ୟ ଦିନ ତ ନୁହେଁ । ବ୍ୟସ୍ତ ହୁଅନ୍ତୁ ନାହିଁ ।

ଆଚାର୍ଯ୍ୟ– ନା, କାଲି ମଧ୍ୟରାତ୍ରରେ ଧ୍ୟାନରେ ମୁଁ ଜାଣିପାରିଛି ଯେ ଆଜି ମୋର ଇଷ୍ଟ ଦର୍ଶନ ହେବ, ବିପ୍ରଜିତ୍ ।

ବିପ୍ରଜିତ୍– (ହାତଯୋଡ଼ି ବିନୟ ଓ ବିରକ୍ତି ମିଶ୍ରିତ ସ୍ୱରରେ) ଆଜ୍ଞା, ଏଣେ ଯେ ଗୋଷ୍ଠୀ ଭାଂଗିବାକୁ ବସିଲାଣି । ସୁଧାନନ୍ଦ କହିଲେଣି ସେ ଆଉ ମାସ ମାସ ଧରି ନିମ୍ବପତ୍ର ଖାଇ ରହିପାରିବେନି । ଓଁକାରନାଥ କହିଲେଣି ଓଁ ଓଁ କରି ତାଙ୍କ କାନ ଭାଁ ଭାଁ ହେଲାଣି । ତିନିବର୍ଷ ହେଲା ଆଖି ବୁଜି ବୁଜି ତାଙ୍କୁ ଆଲୁଅକୁ ଭୟଲାଗିଲାଣି; କିନ୍ତୁ ଫଳ କାଇଁ ? ଏଣେ ଯଜ୍ଞକୁ ଦୈନିକ ହବ୍ୟ ଆଉ ଲୋକେ ଦେଉନାହାନ୍ତି । ବହୁ କଷ୍ଟରେ ଗାଁ ଗାଁ ବୁଲି କିଛି କିଛି ସଂଗ୍ରହ କରି ଆଣୁଛି ବୋଲି ସିନା ।

ଆଚାର୍ଯ୍ୟ– ତାହାହେଲେ ସେମାନଙ୍କୁ କହିଦିଅ ସେମାନେ ଶାକ୍ୟ ଗୌତମ ପାଖକୁ ଫେରି ଯାଆନ୍ତୁ ।

ବିପ୍ରଜିତ୍– ଆଜ୍ଞା, ସମସ୍ତେ ତ ସେଇ କଥା କହୁଛନ୍ତି । ସମସ୍ତେ କହୁଛନ୍ତି ଯେ ଆମେ ଶାକ୍ୟ ଗୌତମକୁ ତ ଛାଡ଼ି ପଳେଇଅଇଲେ– କିନ୍ତୁ ମାସ ମାସ ଧରି କୃଚ୍ଛ୍ର ସାଧନା କରି ପାଇଲେ କ'ଣ ? ଆଜ୍ଞା ସତ କହିଲେ ଉରୁବିଲ୍ୱରେ ଲୋକେ ଶାକ୍ୟ ଗୌତମକୁ ଶ୍ରଦ୍ଧାକରି ଅଯାଚିତ ଭାବରେ ପଦାର୍ଥମାନ ଅଜାଡ଼ି ଯାଉଥିଲେ । ଏବେ ତ ଦେଖା ଦର୍ଶନ ମିଳୁନି କା'ର । ଲୋକେ ଦେଖିଲେ ଆମକୁ ବାଟ ଛାଡ଼ି ପଳାଉଛନ୍ତି । ଆଜି ତ ଚନ୍ଦନପୁରର ଶ୍ରେଷ୍ଠୀ, ବଳି, ଭୋଜ୍ୟ ଆଦି ଯଜ୍ଞ ସାମଗ୍ରୀ ସବୁ ଆଣିବ ବୋଲି କହିଥିଲା କିନ୍ତୁ କାଇଁ ?

ନେପଥ୍ୟେ— ଆସ ଶ୍ରେଷ୍ଠୀ ଆସ । ବାହକମାନେ ପଦାର୍ଥ ରଖନ୍ତୁ । (ଆଚାର୍ଯ୍ୟ ଓ ବିଶ୍ୱଜିତ୍ ଟିକିଏ ବିସ୍ମିତ ହୋଇ ସେଇ ଆଡ଼କୁ ଅନେଇଲେ) ।

ଆଚର୍ଯ୍ୟ— ତୁମେ କହୁଥିଲ, ସୁଧାନନ୍ଦ ଆଉ ଓଁକାରନାଥ ଚାଲିଯିବା ଉପରେ । ସେ ଦୁହେଁ ଯେ ଶ୍ରେଷ୍ଠୀଙ୍କୁ ଏଇ ଧରି ଆଣୁଛନ୍ତି ।

(ଆଉ ଦୁଇଜଣ ଜଟାଜୁଟମଣ୍ଡିତ ତପସ୍ୱୀ ଓ ତାଙ୍କ ପଛରେ ଜଣେ ପୌରଜନର ପ୍ରବେଶ । ତପସ୍ୱୀ ଦୁହିଁଙ୍କୁ ଦ୍ୱିତୀୟ ଓ ତୃତୀୟ କୁହାଯିବ । ପୌରଜନ ଆଚାର୍ଯ୍ୟଙ୍କ ପଦତଳେ ପ୍ରଣାମକଲେ ।)

ଆଚାର୍ଯ୍ୟ— ଉଠ ଶ୍ରେଷ୍ଠୀ, ଉଠ । (ଶ୍ରେଷ୍ଠୀ ଉଠିଲେ)

ଦ୍ୱିତୀୟ ତପସ୍ୱୀ— ଶ୍ରେଷ୍ଠୀ ସବୁ ଯଜ୍ଞ ସାମଗ୍ରୀ ଆଣିଛନ୍ତି । ତାଙ୍କର ଲୋକେ ଓ ପଦାର୍ଥ ସବୁ ବାହାରେ ଅଛନ୍ତି ।

ଶ୍ରେଷ୍ଠୀ— ଆଜ୍ଞା, ବଳି ବି ପଛରେ ଆସୁଛି ।

ଆଚାର୍ଯ୍ୟ— କିଓ ବିପ୍ରଜିତ୍, କହୁଥିଲ କ'ଣ ? ଆଜିର ଏ ଆୟୋଜନ ଆସିଲା କୁଆଡୁ ? ତା' ହେଲେ ଆଜିଇ ମୋର ଇଷ୍ଟଦେବ ଦର୍ଶନ ହେବ ।

ତୃତୀୟ ତପସ୍ୱୀ— ଇଷ୍ଟଦେବ !

ଆଚାର୍ଯ୍ୟ— ହଁ, କାଲି ରାତ୍ରିର ଧ୍ୟାନରେ ମୁଁ ଜାଣିପାରିଛି ଯେ, ଆଜିହିଁ ମୋର ଇଷ୍ଟଦେବ ଦର୍ଶନ ହେବ ।

ଶ୍ରେଷ୍ଠୀ— ମହାଭାଗ ! ଏ ଅଧମ କ'ଣ ଚର୍ମଚକ୍ଷୁରେ, ଏ ପାପ ନେତ୍ରରେ ତାଙ୍କୁ ଦେଖି ପାରିବ ? ଆପଣଙ୍କରହିଁ କୃପା....... (ପଦତଳେ ପଡ଼ିଲେ)

ଆଚାର୍ଯ୍ୟ— (ଇତିମଧ୍ୟରେ ଅଗ୍ନି ଉତ୍ପାଦନ ଓ ସମିଧ ସଂଗ୍ରହରେ ଲାଗିଯାଇଥିବା ବିପ୍ରଜିତ୍‌କୁ ଖୋଜି) କ'ଣ କରୁଛ ବିପ୍ରଜିତ୍ ? ଅଗ୍ନି ଜଳିଉଠିଲାଣି ଯେ । ଶ୍ରେଷ୍ଠୀ, ଉଠ ଉଠ (ଶ୍ରେଷ୍ଠୀ ଉଠିଲେ)

ବିପ୍ରଜିତ୍—ଆଜ୍ଞା, ସେଇ ଆରଣି, ସେଇ ଆରଣି ଘଷିଘଷି ଶୁଣୁ ନ ଥିଲା, ଏବେ ଜଳି ଉଠିଲା ଛୁଇଁଲା ମାତ୍ରକେ ! ସାମଗ୍ରୀ ଆସିଗଲାଣି, ଆଉ ବିଳମ୍ବ କାହିଁକି ?

ଆଚାର୍ଯ୍ୟ— ନା ବିଳମ୍ବ ନାହିଁ । କିନ୍ତୁ ଗୋଟିଏ କଥା......(ସମସ୍ତେ ଆଚାର୍ଯ୍ୟଙ୍କ ଆଡ଼କୁ ଅନାଇଁ ରହିଲେ)

ସମସ୍ତେ— କି କଥା ?

ଆଚାର୍ଯ୍ୟ— ଓଁକାରନାଥ, ସୁଧାନନ୍ଦ, ବିପ୍ରଜିତ୍ ତମେ ସମସ୍ତେ ଉଚ୍ଛନ୍ନ ଯେ ବର୍ଷ ବର୍ଷ ଧରି କୃଚ୍ଛ୍ର ସାଧନା କରି ମଧ କିଛି ଫଳ ହେଲା ନାହିଁ । ଆଉ କଥାକଥାକେ ତମେ ସବୁ ଶାକ୍ୟ ଗୌତମର ନାମ ଉଚ୍ଚାରଣ କରୁଛ । କହିରଖୁଛି ଯେ, ଶାକ୍ୟ ଗୌତମର ନାମ ଯେ ଏଠି ଉଠାଇବ, ସେ ଏଠୁ ଯିବ, ନ ହେଲେ ମୁଁ ଏଠୁ ଯିବି । ଶାକ୍ୟ ଗୌତମ ପରି ଯେଉଁମାନେ ଶରୀରସର୍ବସ୍ୱ, ଯେଉଁମାନେ ପାୟସାନ୍ନ ଖାଇ ତପସ୍ୟା କରିବାକୁ ଚାହାନ୍ତି ସେମାନେ ଫେରିଯାଇପାରନ୍ତି ତା' ପାଖକୁ ।

ଶ୍ରେଷ୍ଠୀ–(ବିସ୍ମିତ ଭାବରେ ନେପଥ୍ୟଆଡ଼କୁ ଆଙ୍ଗୁଠି ଦେଖାଇ) ଏ' କିଏ ! କି ସୁନ୍ଦର ଦିବ୍ୟକାନ୍ତି ଆକୃତି ! କିନ୍ତୁ କାନ୍ଧରେ ଗୋଟିଏ ଛାଗ କାହିଁକି ବୋହୁଛି ! ହୁଏତ ଯଜ୍ଞରେ ବଳିଦେବାକୁ । ବୋଧହୁଏ ମାନସିକ କିଛି ଥିଲା ଯେ, ଏଠି ଯଜ୍ଞ ହେଉଛି ଶୁଣି ଆସୁଛି ।

ବିପ୍ରଜିତ୍– ନାଁ, ଏ ଯେ ଶାକ୍ୟ ଗୌତମ ନିଜେ ।

ଅନ୍ୟ ତପସ୍ୱୀ ଦ୍ୱୟ– ସତ୍ୟରେ ଏଯେ ଶାକ୍ୟ ଗୌତମ । ଖାଇ ପିଇ ବେଶ୍ ମୋଟାମୋଟି ହୋଇଛି ତ । ବାଟରୁ କାହାର ଛାଗ ଆଣୁଛି ଚୋରିକରି, ହୁଏତ କେଉଁଠି ପଳାନ୍ନ ପ୍ରସ୍ତୁତ କରି ଖାଇବ !

ଆଚାର୍ଯ୍ୟ–ବାସ୍ତବିକ ଶାକ୍ୟ ଗୌତମ ! କି ଅନିଷ୍ଟ ଉପସ୍ଥିତ ! ବିପ୍ରଜିତ୍, ହୟଂଗବୀନ ଆଣ । ସମସ୍ତେ ଯଥାସ୍ଥାନରେ ବସିଯାଅ । ଦେଖ, ଶାକ୍ୟ ଗୌତମ ଏଠି ଆସି ଡାକ ଛାଡ଼ିଲେ ମଧ କେହି ଅନେଇବ ନାହିଁ । ଯେ ତାକୁ ସମ୍ମାନ ପ୍ରଦର୍ଶନ କରିବ ତା'ର ଏଠି ସ୍ଥାନ ନାହିଁ । ଶ୍ରେଷ୍ଠୀ ତୁମେ ଯାଅ, ବଳି ନେଇ ଆସ ।

(ଆଚାର୍ଯ୍ୟ ଓ ଅନ୍ୟମାନେ ବସିଗଲେ । ଶ୍ରେଷ୍ଠୀ ବାହାରକୁ ଚାଲିଗଲେ ଓ ତପସ୍ୱୀମାନେ ଗମ୍ଭୀର ସ୍ୱରରେ 'ଓଁ' ଉଚ୍ଚାରଣ କରି ଅଗ୍ନିରେ ଘୃତ ନିକ୍ଷେପ କଲାପରେ ବିପରୀତ ଦିଗରୁ ବୁଦ୍ଧ ସ୍କନ୍ଧଦେଶରେ ଏକ ଛାଗ ବହନ କରି ଉପସ୍ଥିତ ହେଲେ । ସମସ୍ତେ ତାଙ୍କ ଆଡ଼କୁ ସ୍ତବ୍ଧ ହୋଇ ଅନାଇ ରହିଲେ । କ୍ଷଣକର ସ୍ତବଧ୍ ନୀରବତା । ତା' ପରେ ମନ୍ତ୍ରମୁଗ୍ଧ ପରି ଆଚାର୍ଯ୍ୟ ସହିତ ସମସ୍ତଙ୍କର ଦଣ୍ଡାୟମାନ ଓ ବୁଦ୍ଧ ପାଦତଳେ ଦଣ୍ଡବତ ପ୍ରଣାମ ।)

ବୁଦ୍ଧ– ଯଜ୍ଞାନନ୍ଦ, ତୁମର କାମନା ପୂର୍ଣ୍ଣ କରିବାପାଇଁ, ତୁମର ଇଷ୍ଟଲାଭ କରିବାପାଇଁ, ଏଇ ନିରୀହ ମୂକ ଜୀବଟିକୁ ହତ୍ୟା କରିବ କାହିଁକି ? ମତେଇ ହତ୍ୟାକର । ମୁଁ କ'ଣ ତ'ମ ଆଖିରେ ସାମାନ୍ୟ ଛାଗଳଠାରୁ ଭଲ ବଳି ମଧ ହୋଇପାରିବି ନାହିଁ !

ଆଚାର୍ଯ୍ୟ– (ଉଠି ନତଜାନୁ ହୋଇ) ମହାଭାଗ, କ୍ଷମାକରନ୍ତୁ !

ବୁଦ୍ଧ– ସମସ୍ତେ ଉଠ । ମୁଁ ଦେବତା ନୁହେଁ, ମୁଁ ତମରିପରି ସାମାନ୍ୟ ମନୁଷ୍ୟ, –ଏକ ତପସ୍ୟାର–ଏକ ସାଧନାର ସାଥୀ ଏବଂ ମୁଁ ତମମାନଙ୍କୁ କ୍ଷମାଦେବା ଆଗରୁ, ଯଜ୍ଞାନନ୍ଦ, ତୁମେ ଏଇ ନିରୀହ ଛାଗଟିକୁ କ୍ଷମାଦେଉଛ ତ ? (ସମସ୍ତେ ଉଠିଲେ)

ଆଚାର୍ଯ୍ୟ– (ନିଜ ହାତରେ ଛାଗଟିକୁ ବୁଦ୍ଧଙ୍କ ସ୍କନ୍ଧରୁ ଉଠାଇନେଇ ଓ ବାହାରକୁ ଛାଡ଼ିଦେଇ) ସେ ବର୍ତ୍ତମାନ ମୁକ୍ତ ଏବଂ ଅଧିକ ମୁକ୍ତ ଆମେ ପାଷାଣ୍ଡ, ଯେଉଁମାନେ ମହାଭାଗଙ୍କୁ ଛାଡ଼ି ପଳେଇ ଆସିଥିଲୁ । ମହାଭାଗଙ୍କ ଦର୍ଶନ ପରେ ଆମର ଆଉ କୌଣସି ବଳି, କୌଣସି ଯଜ୍ଞର ପ୍ରୟୋଜନ ଅଛି ବୋଲି ବୋଧହେଉନାହିଁ । ମହାଭାଗଙ୍କ ମୁଖରେ ଦିବ୍ୟ ଜ୍ୟୋତି । ମହାଭାଗ ସତ୍ୟର ଏବଂ ତତ୍ତ୍ୱର ଦର୍ଶନ ପାଇସାରିଛନ୍ତି । ଆମ୍ଭମାନଙ୍କୁ କୃପାକରି ସେଇ ଅମୃତର ଆସ୍ୱାଦନ ଦିଅନ୍ତୁ ।

(ଇତିମଧ୍ୟରେ ବିପ୍ରଜିତ୍ ଓ ଶ୍ରେଷ୍ଠୀ ସସଂକୋଚ ବାହାରୁ ଆସି ସେମାନଙ୍କ ସାଥିରେ ମିଶିଗଲେ ।)

ବୁଦ୍ଧ— ବଂଧୁବର୍ଗ, ମୁଁ ଯାହା ଅନ୍ୱେଷଣରେ ପିତା, ମାତା, ପତ୍ନୀ, ପୁତ୍ର, ରାଜସିଂହସନ ପରିତ୍ୟାଗ କରି ଅନିଶ୍ଚିତ ପଥର ଯାତ୍ରା ଆରମ୍ଭ କରିଥିଲି ତାହା ପାଇଛି ଏବଂ ତାହାହିଁ ତୁମ୍ଭମାନଙ୍କୁ ଶୁଣାଇବାପାଇଁ ଏଠାକୁ ଆସିଛି । ତୁମ୍ଭେମାନେ ମତେ ପରିତ୍ୟାଗ କରି ଚାଲିଆସିଛ ବୋଲି ଲଜ୍ଜିତ ବା ଦୁଃଖିତ ହେବାର କୌଣସି କାରଣ ନାହିଁ । ସଦ୍ଧର୍ମର ଆବିଷ୍କାର ପରେ ମୁଁ ତୁମ୍ଭମାନଙ୍କୁହିଁ ମୋର ପ୍ରଥମ ଶିଷ୍ୟରୂପେ ସ୍ମରଣକରିଛି । ଏଇ ନୂତନ ସତ୍ୟ ତୁମ୍ଭେମାନେ ଶୁଣିବାକୁ ପ୍ରସ୍ତୁତ ତ ?

ସମସ୍ତେ— ପ୍ରସ୍ତୁତ ତଥାଗତ, ପ୍ରସ୍ତୁତ ।

ବୁଦ୍ଧ— ଶୁଣ ବଂଧୁଗଣ, ଯାଗଯଜ୍ଞ, ବ୍ରାହ୍ମଣ ପରିତୋଷ, ବଳିଦାନ, ପ୍ରାର୍ଥନା ବା ଯେକୌଣସି ବାହ୍ୟିକ ଅନୁଷ୍ଠାନ, ଏ ସମସ୍ତହିଁ ଏକାନ୍ତ ନିରର୍ଥକ ଓ ଯୁକ୍ତିହୀନ । ସମସ୍ତ ସୃଷ୍ଟି ସହିତ ଏହି ମାନବ ଜୀବନ ମଧ ଅଲଂଘ୍ୟ ନିୟମମାନଙ୍କଦ୍ୱାରା ଚାଳିତ ଓ ପ୍ରତିଷ୍ଠିତ । ପୁରୋହିତଙ୍କୁ ସନ୍ତୁଷ୍ଟ କରିବାରେ କିମ୍ବା କୌଣସି ଅଦୃଶ୍ୟ ଦେବତାଙ୍କୁ ପ୍ରାର୍ଥନା ନାମରେ ଗଟୁକଥା କହିବାରେ ବା ନିଜର ଦେହକୁ ବୃଥା ନିର୍ଯାତିତ କରିବାରେ ସେହି ଶାଶ୍ୱତନିୟମ ପରମ୍ପରାକୁ ପରିବର୍ତ୍ତିତ କରିବାର ଆଶା ବାତୁଳତା ମାତ୍ର । ବଂଧୁଗଣ, ପ୍ରତ୍ୟେକ କାର୍ଯ୍ୟ ପଛରେ କାରଣ ନିହିତ ଅଛି । ଆମର ଏବର ସୁଖ ଦୁଃଖର କାରଣ-ବୀଜ ନିହିତ ଅଛି ଅତୀତରେ; ବର୍ତ୍ତମାନର କାର୍ଯ୍ୟହିଁ ଭବିଷ୍ୟତ ସୁଖ ଦୁଃଖର ବୀଜ । ମନୁଷ୍ୟର ସୁଖଦୁଃଖପାଇଁ ମନୁଷ୍ୟହିଁ ଏକମାତ୍ର ଦାୟୀ । ମନୁଷ୍ୟର ସର୍ବ ଦୁଃଖର ବୀଜ ହେଉଛି ତୃଷ୍ଣା । ଯଶ, ଧନ, ନାରୀ, ପଦ, ସୁଖ, ମର୍ଯ୍ୟାଦା, ଅଧିକାର—ଏହିପରି ନାନାବିଧ ତୃଷ୍ଣାରେ ପ୍ରତ୍ୟେକ ମନୁଷ୍ୟ ନିରନ୍ତର ବ୍ୟାକୁଳିତ । ତୃଷ୍ଣାବ୍ୟାକୁଳ ଜୀବର ଶାନ୍ତି କି ସମ୍ଭବ ? ବଂଧୁଗଣ, ସ୍ୱର୍ଗ ଉପରେ ନାହିଁ, ନରକ ମଧ ତଳେ ନାହିଁ— ସ୍ୱର୍ଗ ଓ ନରକ ଉଭୟ ଏଇ ମନୁଷ୍ୟ ଭିତରେ । ତୃଷ୍ଣାବିଷାକ୍ତ ଚିତ୍ତହିଁ ନରକ ଏବଂ ଯେଉଁ ମନ ତୃଷ୍ଣାର ଉପରେ, ଯିଏ ସକଳ କାମନା ଓ ଲାଳସାର ମାୟାଜାଲରୁ ନିଜକୁ ମୁକ୍ତକରିପାରିଛି ସେହି ପ୍ରଶାନ୍ତ, ନିଷ୍କଳୁଷ । ଉଦାରଚିତ୍ତହିଁ ସ୍ୱର୍ଗ । ବଂଧୁଗଣ, ସମସ୍ତ ତୃଷ୍ଣା, ସମସ୍ତ ପ୍ରଲୋଭନରୁ ମୁକ୍ତ ହୋଇଥିବାରୁହିଁ ମୁଁ ଆଜି ବୁଦ୍ଧ । ମୁଁ ନିରବଚ୍ଛିନ୍ନ ଭାବରେ ସ୍ୱର୍ଗୀୟ ଆନନ୍ଦ ଭୋଗକରୁଛି । ଏହାହିଁ ନିର୍ବାଣ ଏବଂ ବଂଧୁଗଣ, କେବଳ ମୁଁ ନୁହେଁ, କେବଳ ତୁମେ ନୁହଁ, ସୃଷ୍ଟିର ପ୍ରତ୍ୟେକ ଜୀବ, ଧରାର ପ୍ରତ୍ୟେକ ମାନବର ଏଇ ନିର୍ବାଣ-ସ୍ୱର୍ଗ ଲାଭ କରିବାର ଶକ୍ତି ଅଛି, ଅଧିକାର ମଧ ଅଛି । କେବଳ ବ୍ରାହ୍ମଣ ବା ରାଜପୁତ୍ରର ନାହିଁ, ଅଛି ଶୂଦ୍ରର, ଅଛି ପଥର ଭିଖାରିର, ଅଛି ଚଣ୍ଡାଳର ବୁଦ୍ଧ ହେବାର ଅଧିକାର । ତଥାଗତ— ଆବିଷ୍କୃତ ସ୍ୱର୍ଗଦ୍ୱାର ସୃଷ୍ଟିର ସକଳ ଜୀବପାଇଁ ଉନ୍ମୁକ୍ତ । ପୁରୋହିତର ଦରକାର ନାହିଁ, ପଶୁହତ୍ୟା ଦରକାର ନାହିଁ, ଅର୍ଥବ୍ୟୟ, ତୀର୍ଥଯାତ୍ରା, ପ୍ରାର୍ଥନା, ଉପାସନା ବା ଦାନଦକ୍ଷିଣା କିଛି ଦରକାର ନାହିଁ । ଦରକାର କେବଳ ଜାତି-ଧର୍ମ-

ନିର୍ବିଶେଷରେ ଦୁଃସ୍ଥ ଜୀବ ଓ ମାନବକୁ କଲ୍ୟାଣ ବିତରଣ; ଦରକାର ନିଷ୍କଳୁଷ, ସାଧୁ, ନୈତିକ ଜୀବନ—ଯାହା ଫଳରେ ସକଳ ତୃଷ୍ଣା ହୁଏତ ଲୋପହୋଇଯିବ ବା ଲୁହା ପରିଣତ ହେବ ସୁନାରେ । ବଂଧୁଗଣ, ତୃଷ୍ଣାଛ ବିନାଶ ଓ ନିର୍ବାଣ ଲାଭପାଇଁ ଆଠଟି ପଥ ଆବିଷ୍କାର କରିଛି । ପରେ ସେହି ଆର୍ଯ୍ୟ ଅଷ୍ଟାଙ୍ଗ ମାର୍ଗର କଥା ବିସ୍ତାରିତ କରି ବୁଝାଇବି । ବର୍ତ୍ତମାନ ଉଠ, ସକଳ ବାହ୍ୟିକ ଆଚାର ପରିତ୍ୟାଗ କର । ଯାଗ ଯଜ୍ଞ ପରିହାର କର; ଶରୀରକୁ ନିରର୍ଥକ କ୍ଲେଶ ନ ଦେଇ ବରଂ ଧର୍ମସାଧନାର ଉପଯୋଗୀ କର । ବଦ୍ଧପରିକର ହୁଅ ଗଭୀର ଆତ୍ମବିଶ୍ୱାସରେ ଏବଂ ଦୃଢ଼ଚିତ୍ତରେ ଥରେ ଉଚ୍ଚାରଣ କରିଉଠ ଯେ, "ଆତ୍ମସାଧନାରେ ସମସ୍ତ ତୃଷ୍ଣା, ସମସ୍ତ ଲାଳସାକୁ ଛିନ୍ନ କରି ମୁଁ ହେବି ମୁକ୍ତ, ମୁଁ ହେବି ଜୀନ, ମୁଁ ହେବି ବୁଦ୍ଧ ।" ସମଗ୍ର ମାନବ ଜାତି ପ୍ରତି ଏହାହିଁ ତଥାଗତଙ୍କ ନବ ଆବିଷ୍କୃତ ନୂତନ ଆଶାର ବାଣୀ । ଏହି ନୂତନ ମାର୍ଗର ମର୍ମ ବୁଝିଲ ତ ?

ଆଚାର୍ଯ୍ୟ—(ଜାନୁପାତ କରି) ହେ ବୁଦ୍ଧ, ଆପଣ ସତ୍ୟରେ, ସତ୍ୟର ସନ୍ଧାନ ପାଇଅଛନ୍ତି । ନବଲବ୍ଧ ଆଲୋକରେ ଆପଣଙ୍କର ସମଗ୍ର ଶରୀର ଦେଦୀପ୍ୟମାନ । ଆମ୍ଭେମାନେ ସମସ୍ତେ ପ୍ରଭୁ ବୁଦ୍ଧଙ୍କର ଧର୍ମର ଶରଣାଗତ ହେଲୁଁ ।

(ଅନ୍ୟ ସମସ୍ତେ ନତଜାନୁ ହୋଇ) ବୁଦ୍ଧଂ ଶରଣଂ ଗଚ୍ଛାମି !

(ପଟ ପତନ)

## (ତୃତୀୟ ଦୃଶ୍ୟ)

(ଗ୍ରାମ ପଥ । ଜଣେ ବ୍ରାହ୍ମଣୀର ରଙ୍ଗମଞ୍ଚ ଉପରକୁ ବ୍ୟସ୍ତତାସହ ପ୍ରବେଶ ଓ ଏପଟ ସେପଟ ଦଉଡ଼ା ଦଉଡ଼ି କରି ଚିତ୍କାର)

ବ୍ରାହ୍ମଣୀ— ହଇଏ କୁଆଡ଼େ ପଶିଲ ବା ! ଶୁଣୁଚ । ଏ ଶଉରୀ, ଏ ଚୁଲୀ, ଏ ରାଣ୍ଡ, ଆଲୋ ବାପାକୁ ଟିକେ କହିଦେ ଲୋ, ଭାଇନା ପଳେଇଲା । ଏ ରାଣ୍ଡ କ'ଣ ଶୁଣିବ ? ମୁଁ କ'ଣ କରିବି ଲୋ, ମୋ ପିଲା ଘରଛାଡ଼ି ପଳାଇଗଲା ଯେ...(ବିଳାପ)

(ବ୍ରାହ୍ମଣୀର ସ୍ୱାମୀ ଓ ସଂଗରେ ଆଉ ତିନିଜଣ ବ୍ରାହ୍ମଣଙ୍କ ପ୍ରବେଶ । କାନ୍ଧରେ ଖଣ୍ଡେ ଖଣ୍ଡେ ମଇଳା ଗାମୁଛା । ପିନ୍ଧିଛନ୍ତି ଆଣ୍ଠୁ-ନ-ଲୁଚା ଖଣ୍ଡେ ଖଣ୍ଡେ ଗାମୁଛା, ମୁଣ୍ଡରେ ଶିଖା—କାହାର ଚୂଡ଼ାକୃତି ବନ୍ଧାହୋଇଛି, କାହାର ବା ଝୁଲୁଛି ।)

ବ୍ରାହ୍ମଣୀର ସ୍ୱାମୀ— କ'ଣ କିଓ, କ'ଣ ହେଲା ଆଗେ କୁହ, କାନ୍ଦୁଛ କାହିଁକି ? କହିଲେ ସିନା କ'ଣ କରିବୁ !

ପ୍ରଥମ ବ୍ରାହ୍ମଣ— ଶଉରୀବୋଉ, କଥାଟା କହ ! ଜାଣିଲେ ସିନା ପ୍ରତିକାର କରିବା ?

ବ୍ରାହ୍ମଣୀ— (ଗଦ୍‌ଗଦ ସ୍ୱରରେ) ମୋ ପିଲା ଖାଗପୁତ୍ରିଆ ହୋଇଗଲା ପରା, ଆଉ କ'ଣ କହିବି । ଏଇ ଅଧା ବାଟରେ ହୋଇଥିବ । ଗଡ଼କୁ ଧାଇଁଛି । ଧାଇଁ ଅଟକାଇ ଆଣ ଭଲା ।

ଦ୍ୱିତୀୟ ବ୍ରାହ୍ମଣ— (ଶିଖା ହଲାଇ) ଏଇ କଥା ? ଭାଇନା, ଯାଉଛି, ତମେ ଏଇଠେ ଠିଆ ହୋଇଥିବ, ମୁଁ ତାକୁ ବାନ୍ଧିଆଣିବି । ତମ ହଳିଆ କାଇଁ ? ଆଚ୍ଛା ଆଚ୍ଛା, ମୁଁ ତାକୁ ବାରିରୁ ଧରି ନେଉଛି । (ଦ୍ରୁତ ଗତିରେ ପସ୍ଥାନ)

ପ୍ରଥମ ବ୍ରାହ୍ମଣ— କାନ୍ଦୁଛ କାହିଁକି ଶଉରୀବୋଉ, ଯାଅ, ଭିତରକୁ ଯାଇ ଘରକାମ କର । ଏ ଶାକପୁତ୍ରିଆଦଳ ଯୋଗୁଁ ତ ସଂସାର ଉଚ୍ଛନ୍ନ ହେବାକୁ ବସିଲାଣି । ଏଇ ନାଟ ତ ସବୁରି ଘରେ । (ବ୍ରାହ୍ମଣୀର ପ୍ରସ୍ଥାନ)

ତୃତୀୟ ବ୍ରାହ୍ମଣ— (ଅନୁନାସିକ ସ୍ୱରରେ) ସତରେ ଏଇ ଶ୍ରମଣ ଗୌତମଟା ଯେ ଆସିଛି, ସେଉଟା ଶ୍ରମଣ ନୁହେଁ, ସେଉଟା ସାକ୍ଷାତ୍ ଶମନ । ବୋହୂମାନଙ୍କୁ ରାଣ୍ଡକରୁଛି, ବାପମାନଙ୍କୁ ଅପୁତ୍ରକ କରୁଛି, ଘରେ ଘରେ ତା' ପାଇଁ କାନ୍ଦବୋବାଳି । ଚାଲ ହେ ଚାଲ ସମସ୍ତେ ଏକାଠି ହୋଇ ମହାରାଜାଙ୍କୁ କହିବା, ନ ହେଲେ ଏ ସଂସାର ରହିବ କି ?

ବ୍ରାହ୍ମଣୀର ସ୍ୱାମୀ— ହଁ, ରାଜାଙ୍କୁ କହିବ ! କ୍ଷତ୍ରିୟ କ୍ଷତ୍ରିୟ ଯୋଡ଼ହୋଇଗଲେଣି ବାବା.... ବ୍ରାହ୍ମଣର ଦୁର୍ଦ୍ଦଶା ବୁଝିବ କିଏ ? ଯେତେ ସନ୍ନ୍ୟାସୀ ହେଲେ ବି କ୍ଷତ୍ରିୟ ତ ? କହୁଛନ୍ତି ପଶ୍ଚିମର କୌଣସି ରାଜାର ପୁଅ ସେ ।

ପ୍ରଥମ ବ୍ରାହ୍ମଣ— ନାହିଁ ହେ, ସତେ ରଜାର ପୁଅ ବୋଲି ତମେ ଭାବିଛ ? ଅନ୍ତରପନ୍ତର କିଛି ହୋଇଥିବ —ପ୍ରଚାର କରୁଛି ନା ରାଜାପୁଅ ବୋଲି । ରଜା ପୁଅର ଢଙ୍ଗ ନିଆରା ! ରଜା ପୁଅ ହେଲେ ବ୍ରାହ୍ମଣକୁ ମର୍ଯ୍ୟାଦା କରନ୍ତାନି ? ଯା ନା ଗୋଟିଏ କଥା ?

ଦ୍ୱିତୀୟ ବ୍ରାହ୍ମଣ— ଆହେ ସେଟା ଯାହାର ପୁଅ ହେଉ, ତା'ର ମସ୍ତିଷ ଠିକ୍ ନାହିଁ ପରା । ଦେବତା ବ୍ରାହ୍ମଣଙ୍କୁ ମାନୁନି, କହୁଛି ପୁଣି ସଂସାରରେ ଭଗବାନ ନାହାନ୍ତି । ନାହିଁ ମାନୁଛି ବେଦ, ନାହିଁ ମାନୁଛି ଜାତି । ପାଣ, ହାଡ଼ି, କଂସାରୀ, ତନ୍ତୀ, ବ୍ରାହ୍ମଣ ସମସ୍ତଙ୍କୁ ଏକାକାର କରିସାରିଲାଣି । ସଂସାରରୁ କ'ଣ ଧର୍ମ ସତରେ ଉଭେଇଗଲା କିହୋ ? ଆମ ଆଖିଆଗରେ ଏଇମିତି ଦେଖି ଦେଖି ସବୁ ସହୁଥିବା ? କେତେ କେତେ ରଥୀ ଉଡ଼ିଯାଇଛନ୍ତି, ଆଉ ଏ ଛାର ଶାକପୁତ୍ରିଆଟା ବଳିଯିବ ?

ପ୍ରଥମ ବ୍ରାହ୍ମଣ— ଆଉ ବେଶିଦିନ ନୁହେଁ ଯେ, ଆଉ ବେଶି ଦିନ ନୁହେଁ । ହଜାର ହଜାର ଶିଷ୍ୟ ଜୁଟିଲେ, ରଜା ଆସିଲେ, ଆସିଲେ ମନ୍ତ୍ରୀ, ଶାକପୁତ୍ରିଆର ମୁଣ୍ଡ ମୋଟା ହୋଇ ଯାଇଛି ! ବେଦ ବ୍ରାହ୍ମଣଙ୍କୁ ଅପମାନ କରିବାର ମହାପାପ ତାକୁ ଗ୍ରାସିବଇ ଗ୍ରାସିବ । ଶୁଣିଛ କି ନାହିଁ— କାଲି ପଅରଦିନ କୁଆଡ଼େ ନିଜେ ମହାରାଜା ସେ ବେଧୁଆକୁ ଖାଇବାକୁ ଡାକିଥିଲେ । ଭୋଜନ ବିଷୟରେ ବେଶ୍ ଚୌରସ ଯେ, ପାୟସାନ୍ନ ନ ହେଲେ ଶ୍ରମଣଙ୍କର ବକତ ପୂର୍ଣ୍ଣ ହୁଏନା । କିନ୍ତୁ ତାକୁ ଫେରାଇଦେଇ—ଶୁଣ ଶୁଣ, ତା'ର ଗୁଣ ଶୁଣ ହେ ! ସେ ବେଧୁଆ ଶାକଶୁତ୍ରିଆ ଯାଉଛି ପରା ଆମ୍ରପାଳୀ ବେଶ୍ୟା ଘରକୁ ।

ବ୍ରାହ୍ମଣୀର ପତି ଓ ତୃତୀୟ ବ୍ରାହ୍ମଣ— ସତେ !

ତୃତୀୟ ବ୍ରାହ୍ମଣ—ମହାରାଜାଙ୍କ ଘରକୁ ଖାଇବାକୁ ନ ଯାଇ, ଯାଉଛି ବେଶ୍ୟା ଘରକୁ ? ଏ ଲୋକେ କ'ଣ ପାଗଳ ହୋଇଗଲେ କିଓ ! ଏ ଲୋକଙ୍କୁ କ'ଣ ସେ ଭୋଜବିଦ୍ୟା କରିଛି କିଓ ! ହଇ ହେ, ଏପରି ଦୁଃଶ୍ଚରିତ୍ର ପାପିଷ୍ଠଟା ପାଖକୁ ପୁଣି ହଜାର ହଜାର ଲୋକ ଧାଇଁଛନ୍ତି ! (ଦ୍ୱିତୀୟ ବ୍ରାହ୍ମଣର ସସବ୍ୟସ୍ତେ ପ୍ରବେଶ) କିଓ ! ଧରିପାରିଲ ନି ? ପଳେଇଗଲା ?

ଦ୍ୱିତୀୟ ବ୍ରାହ୍ମଣ—(ନୈରାଶ୍ୟ ଦେଖାଇ) କହନା, କହନା ସେ କଥା ଭାଇ, ତାକୁ ତ ବୁଦ୍ଧଭୂତ ଲାଗିଛି, ତାକୁ ଅଟକେଇବ କିଏ ? ତା' ଦେହରେ ସତେ ଯେପରି ସିଂହର ବଳ ଏଇକ୍ଷଣି । ଦି' ଜଣ ଲୋକକୁ ମାରି ଗଡାଇ ପିଟି ପଳାଇଲା କୌଣସିମତେ । ଖାଲି କହୁଛି 'ବୁଦ୍ଧ ଶରଣ', 'ବୁଦ୍ଧ ଶରଣ' । ପୁଣି ଗୋଡ଼େଇଥିଲୁ, —ଗୋଡ଼େଇ ଗୋଡ଼େଇ ଥକିଗଲୁ । ଆଉ କ'ଣ କରିବୁ ?

ବ୍ରାହ୍ମଣୀର ସ୍ୱାମୀ— ଆମ ଯାଗ ଯଜ୍ଞ ସାରିଲା । ବେଦ ବ୍ରାହ୍ମଣ ବିରୁଦ୍ଧରେ ଲୋକଙ୍କୁ ମତେଇଲା । ସବୁ ଜାତିକି ଏକାକାର କଲା; ଏବେ ଆମ କୁଳ ନଷ୍ଟ କରିବାକୁ ବସିଲା । ଆଉ କ'ଣ ଭାବୁଛ ଭାଇନା ? ରାଜା ତ ବୁଝିବନି । ରାଜା ନ ବୁଝିଲେ ଆସ ଆମେ ବୁଝିଦେବା । କ'ଣ କହୁଛ ?

ଦ୍ୱିତୀୟ ବ୍ରାହ୍ମଣ—ନିଶ୍ଚେ ବୁଝିଦେବା । ଗାଁବାଲାଙ୍କୁ ଆଜି ସଂଧ୍ୟାବେଳେ ଡାକ, ସବୁ କଥା ପକାଅ । ଯେ ଯୁଠି ପାରିବା ଶାକପୁତ୍ରିଆଙ୍କୁ ଛେଚିବା, ଶେଷରେ ସ୍ୱୟଂ ଶ୍ରମଣ ଗୌତମ.....

ତୃତୀୟ ବ୍ରାହ୍ମଣ— ଆଗ ଏ ସାରିଆପୁଅ, ମୁଗୁଲିପୁଅ ଦିହିଁକି ଦେଖିନେଲ ! ଏ ଗାଁରେ ସେଇ ଦିହେଁ ତ ପ୍ରଥମେ ଏ ପାପ ପୂରେଇଲେ । ତାଙ୍କର ଦେଖାଦେଖି ଆଉ ଟୋକାଏ ସେଠିକି ଧାଉଁଛନ୍ତି ।

ଦ୍ୱିତୀୟ ବ୍ରାହ୍ମଣ—ଆଚ୍ଛା, ସେ ଭାର ମୁଁ ନେଲି । ସାରୀପୁଅ ମୋ ପଡ଼ିଶା । ତାକୁ ଆଜି ଦେଖୁଛି ମୁଁ ।

ବ୍ରାହ୍ମଣୀର ସ୍ୱାମୀ—(ଯିବାର ଉଦ୍ୟମ ଭିତରେ) ଆଗ ଏ ଦୁଇ ପ୍ରେତଙ୍କୁ କିଳିସାର ତେବେ ବଡ଼ ପ୍ରେତଙ୍କର କଥା ଦେଖିବା— ନାଁ କ'ଣ କହୁଛ ?

ଅନ୍ୟମାନେ—(ଅନୁଗମନ କରୁ କରୁ) ନିଶ୍ଚୟ ନିଶ୍ଚୟ, ତା' ଠିକ୍, ତା' ଠିକ୍....

(ସମସ୍ତଙ୍କର ପ୍ରସ୍ଥାନ)

(ପଟ ପତନ)

## (ଚତୁର୍ଥ ଦୃଶ୍ୟ)

[ଗଣିକା ଆମ୍ରପାଲୀର ପ୍ରାସାଦର ବହିର୍ଦ୍ଦେଶ । ବୁଦ୍ଧଙ୍କୁ ସ୍ୱାଗତ କରିବାପାଇଁ ଦୁଇ ପୂର୍ଣ୍ଣକୁମ୍ଭ ସ୍ଥାପିତ ହୋଇଛି । ସୁସଜ୍ଜିତ କାଷ୍ଠାସନଟିଏ ରଖାଯାଇଛି, ତା' ନିକଟରେ ଜଳପୂର୍ଣ୍ଣ ସ୍ୱର୍ଣ୍ଣଘଟୀ ।

ଧୂପ ଦୀପ ଜଳୁଛି । ଆମ୍ରପାଳୀ ଓ ଜଣେ ପରିଚାରିକା ବୁଦ୍ଧଙ୍କ ଆଗମନକୁ ଅପେକ୍ଷା କରୁଅଛନ୍ତି ।]

ଆମ୍ରପାଳୀ—ସତେ ଶାରୀକା, ସେ ମହାପୁରୁଷ ଏ ପାପିନୀ ଘରେ ତାଙ୍କର ପାଦରଜ ଦେବେ ! କଥା ଦେଇଥିଲେ ମଧ୍ୟ, ମୋର ପରତେ ହେଉନି ।

ପରିଚାରିକା—ସାନ୍ତାଣୀ, ସେ ମହାତ୍ମା । କଥା ଦେଇଛନ୍ତି ଯେତେବେଳେ କଥା ନିଶ୍ଚେ ରଖିବେ । ଆପ୍ଣମାନଙ୍କର ପରମ ଭାଗ୍ୟ । ତମ ଯୋଗୁଁ ଆମର ବି ଭାଗ୍ୟ ହେଲା, ସେ ମହାପୁରୁଷଙ୍କୁ ଏ ପାପ ନେତ୍ରରେ ଦେଖିବୁ ।

ଆମ୍ରପାଳୀ— ସବୁ ଠିକ୍‌ଠାକ୍ ଅଛି କି ନାହିଁ ? ରୋଷେଇ ଘରେ ଫେରେ ଆଖିପକେଇ ଆସ୍ ତ ।

ପରିଚାରିକା— ମା, ସବୁ ଠିକ୍ ଅଛି । ରୋଷେଇଆମାନେ ରନ୍ଧାରନ୍ଧି କରି ବଟୁଆ ଖୋଲି ପାନଖାଉଛନ୍ତି । ଶ୍ରମଣମାନେ ଆସିଲେଇ ପତ୍ରପକେଇବେ ।... ଏଇ ଆସିଲେଣି ମା...

ଆମ୍ରପାଳୀ— (ବ୍ୟସ୍ତତାର ସହିତ) ଫୁଲମାଳ କୁ'ଠି ରଖିଛୁ ?

(ପରିଚାରିକା କୋଣରୁ ଏକ ଥାଳିଆରେ ଫୁଲମାଳ ଦେବା)

ଆମ୍ରପାଳୀ— ମୁଁ ସେବା କଲାବେଳେ ତୁ ଶଂଖ ବଜେଇବୁ ଆଉ ଧୂପ ଦେବୁ ।

(ଧୀରେ ବୁଦ୍ଧ ଓ ପାଂଚଜଣ ଶ୍ରମଣଙ୍କର ପ୍ରବେଶ) ସମସ୍ତେ ହାରିଦ୍ରବସନଧାରୀ । ଆମ୍ରପାଳୀ ବୁଦ୍ଧଙ୍କ ଗଳାରେ ଫୁଲମାଳ ଲମ୍ବାଇଦେଇ ପଦବନ୍ଦନାକଲେ । ସ୍ୱର୍ଣ୍ଣ ଘଟୀରୁ ପାଣିନେଇ ପାଦ ଧୋଇ ନିଜର ଦୀର୍ଘ କେଶ ରାଶିରେ ସେହି ବରେଣ୍ୟ ପଦଯୁଗ୍ମକୁ ପୋଛୁ ପୋଛୁ ଉଚ୍ଛ୍ୱସିତ କଣ୍ଠରେ ଏକ ଗୀତ ଗାଇଲେ । ଗାଇଲାବେଳେ ଆମ୍ରପାଳୀର ଗଣ୍ଡଦେଶ ଅଶ୍ରୁସିକ୍ତ ହେଲା । ପରିଚାରିକା ଆରତି କରିସାରି ସଂଗୀତ ଯନ୍ତ୍ର ବାଦନ କରିବା)

ଗୀତ

ପର ଦୁଃଖ ପାଇଁ ଘର ସୁଖ ତେଜି
ବିତର କରୁଣା ବାରି,
ନ ହେଲେ କିପରି ଏ ପୁଣ୍ୟ ଚରଣ
ସେବନ୍ତା ପତିତା ନାରୀ,
ମହାମହିମ ହେ,
ପତିତପାବନ ବୋଲି
ପଦ ପାଶେ ତବ କୋଟି ପାପୀ-ତାପୀ ହେଉଛନ୍ତି କୋଳାକୋଳି ।୧।
ଦଳିତ ଲାଞ୍ଛିତ ଅବହେଳିତଙ୍କ
ପାଇଁକି ମୁକତି ବାଟ
ଖୋଲି ଦେଇଅଛ କରୁଣାବାରିଧି

ମେଲିଛ ନିର୍ବାଣ-ହାଟ,
ମହାମହିମ ହେ,
ତୁମ୍ଭର୍ କରୁଣା-ସ୍ରୋତ,
ରବି ଶଶୀଠାରୁ ମୂକ ପଶୁ ଯାଏଁ ବହୁଅଛି ଓତପ୍ରୋତ ।୨।
ତୁମ୍ଭ ଛଡ଼ା ପ୍ରଭୁ ପାପିନୀକି କୃପା
ବିତରନ୍ତା କେ ଜଗତେ
ପାପମୟ ଦେହ, ପାପମୟ କର
ପାପ ଚିନ୍ତା ଚିତ୍ତପଟେ,
ମହାମହିମ ହେ,
ତୁମ୍ଭଙ୍କୁ ପୂଜିବା ପାଇଁ
ଅନୁତାପ-ନୀର-କ୍ଷାଳିତ ପାତକ ବିନା କିଛି ମୋର ନାହିଁ । ୩ ।
(ଗୀତ ଶେଷରେ ଆମ୍ରପାଳୀ ଅଶ୍ରୁ ପୋଛି ପୋଛି ଠିଆହେଲେ ।)

ବୁଦ୍ଧ— ମା, କାନ୍ଦ ନାହିଁ ।

ଆମ୍ରପାଳୀ— ମହାଭାଗ, ଆପଣଙ୍କ ଏ ପୁଣ୍ୟ ପାଦ ଯେ ଏ ପାତକୀ କୁଟୀରରେ ପଡ଼ିଲା ତାହା ମୋର ଜନ୍ମଜନ୍ମାନ୍ତରର ପୁଣ୍ୟ । ମହାଭାଗ, ମୁଁ ଏକେ ନାରୀ, ଦ୍ୱିତୀୟରେ ଜୀବିକା ପାଇଁ ନଟୀ ବୃତ୍ତି ଆଶ୍ରୟ କରିଛି । ଅଗଣିତ ଯୁବକର କୁଳକୁଟୁମ୍ବ ମୋ ଯୋଗୁଁ ଉଚ୍ଛନ୍ନ ହୋଇଛି । ମହାଭାଗ, ମୋର କି ମୁକ୍ତି ଅଛି ?

ବୁଦ୍ଧ— ନିଶ୍ଚୟ ଅଛି ଆମ୍ରପାଳୀ । ତମର ଅନୁତାପ ଯଦି ଆନ୍ତରିକ, ତମେ ଯଦି ଏହି ଜୀବନକୁ ପରିତ୍ୟାଗ କରିବାକୁ ଓ ସଦ୍ଧର୍ମର ଆଶ୍ରୟ ନେବାକୁ ପ୍ରସ୍ତୁତ, ତେବେ ମୁକ୍ତି ସୁନିଶ୍ଚିତ ।
(ବୁଦ୍ଧ ଆଶୀର୍ବାଦକଲେ)

ଆମ୍ରପାଳୀ— ବୁଦ୍ଧଂ ଶରଣଂ ଗଚ୍ଛାମି ।

ଶ୍ରମଣମାନେ—(ସ୍ୱର ସହିତ)

ବୁଦ୍ଧଂ ଶରଣଂ ଗଚ୍ଛାମି
ଧମ୍ମଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି ।
(ଗାଉ ଗାଉ ପଟ କ୍ଷେପଣ)

## (ପଞ୍ଚମ ଦୃଶ୍ୟ)

[ଗ୍ରାମ୍ୟପଥ । ଦୂରରୁ ଶୁଭୁଥିବା ଶ୍ରମଣମାନଙ୍କ କଣ୍ଠରେ "ବୁଦ୍ଧଂ ଶରଣଂ ଗଚ୍ଛାମି" ଇତ୍ୟାଦି ଧ୍ୱନି ଗମ୍ଭୀରଭାବରେ ଭାସିଆସୁଅଛି । ଇତିମଧ୍ୟରେ ସହସା ବିପରୀତ ଦିଗରୁ

ମୃତଶିଶୁକୁ ବକ୍ଷରେ ଧରି କୀଶା ରଙ୍ଗମଞ୍ଚରେ ପ୍ରବେଶକରି ଇତସ୍ତତଃ ବ୍ୟସ୍ତତାର ସହିତ ଅନାଇଲେ । ସେ ଆଲୁଳାୟିତକେଶା, ମଳିନବସନା । ଶ୍ରମଣମାନଙ୍କ କଣ୍ଠସ୍ୱର ଦୂରରୁ ନିକଟତର ହେଲା । କ୍ରମେ ସେମାନେ ଦୃଶ୍ୟସ୍ଥଳୀକୁ ପ୍ରବେଶକଲେ । ସେମାନଙ୍କ ଆଗେ ଆଗେ କରୁଣାମୟ ବୁଦ୍ଧ । କୀଶା ଅତି ଉତ୍କଣ୍ଠା ସହ ବୁଦ୍ଧଦେବଙ୍କୁ ଦେଖିଲାମାତ୍ରେ ଜାନୁପାତ କରି—]

କୀଶା— ସିଦ୍ଧଭାଇ ! ସିଦ୍ଧଭାଇ ! ସହସ୍ର ଜନଙ୍କୁ ଉଦ୍ଧାର କରୁଛ ଶୁଣୁଛି ! ମୁଁ ବି ତମର ଶରଣ ଯାଉଛି, ମତେ ଆଶ୍ରାଦିଅ ।

ବୁଦ୍ଧ— କେ, କୀଶା ଯେ ! ତମେ ଏ ବାଟ ମଧରେ ! ଓଃ ବୁଝିଲି, ତମର ଶଶୁରଘର ଏଇ ନିକଟ କୌଣସି ଗ୍ରାମରେ,ନା ? ମୁଁ ତୁମର କି ଉପକାର କରିପାରେ, କୀଶା ! କ'ଣ ଚାହୁଁଛ ତୁମେ ?

କୀଶା— ଦେଖିପାରୁନା, ମତେ ପୁଣି ପଚାରୁଛ ସିଦ୍ଧଭାଇ ! ତମେ ଆଜି ମହାପୁରୁଷ, ମହାତ୍ମା । ମୁଁ ତୁମର ଦରିଦ୍ର ଭଗିନୀଟିଏ । ତା'ର ଏକମାତ୍ର ଏଇ.....କ୍ରନ୍ଦନ) । କୋଟି କୋଟି ଲୋକର ଉପକାର କରୁଛ....

ବୁଦ୍ଧ— ମୁଁ ଆଉ କ'ଣ କରିପାରେ ? ତମେ ଚାହ ମୁଁ ତାକୁ ବଂଚାଇଦେବି ପୁଣି ? ତାହା କି ସମ୍ଭବ ? ତମେ ପାଗଳ ନା କ'ଣ ?

କୀଶା— ମତେ ଭଣ୍ଡାଅନି, ସିଦ୍ଧଭାଇ ! ତମେ ଦୟାକଲେ ସବୁ ସମ୍ଭବ । ତମ ଗୋଡ଼ ଧରୁଛି ସିଦ୍ଧଭାଇ— ମୋ ପିଲାକୁ ଜୀବଦାନ ଦିଅ....ନ ହେଲେ ଏ ଜୀବନ ଧରି ମୁଁ ରହିପାରିବିନି ।

ବୁଦ୍ଧ— କୀଶା, ତମେ ବିଶ୍ୱାସ କର, ମୁଁ ଜଣେ ସାଧାରଣ ମନୁଷ୍ୟ । ମୁଁ ଭେଲିକି ବିଦ୍ୟା ଶିଖିବାକୁ ଘର ଛାଡ଼ି ଯାଇ ନ ଥିଲି—ଶିଖି ନାହିଁ ମଧ । ମୁଁ ଶିଖି ଆସିଛି ମୃତ୍ୟୁକୁ ଜୟ କରିବାର ପନ୍ଥା, କିନ୍ତୁ ମୃତକୁ ବଂଚାଇବାର ଉପାୟ ତ ମୋତେ ଜଣା ନାହିଁ, କୀଶା !

କୀଶା— (ସେଇପରି ଶୋକାକୁଳ କଣ୍ଠରେ) ସିଦ୍ଧଭାଇ, ମୁଁ ଏ ସବୁ କିଛି ବୁଝିପାରୁନି । ମତେ ନିରାଶ କରନି । ମୋ ସଂପଦକୁ ଫେରାଇଦିଅ ମତେ । ନ ହେଲେ ତମରି ନାଁରେ ମୁଁ ପ୍ରାଣ ହାରିଦେବି ।

ବୁଦ୍ଧ— (କିଛିକାଳ ନୀରବ ରହି) ଆଚ୍ଛା ! ଶୁଣ କୀଶା, ଉଠ, ଗୋଟିଏ ଦ୍ରବ୍ୟ ଖୋଜି ଆଣି ଦେଇ ପାରିବ ?

କୀଶା— (ଉଠି) ସିଦ୍ଧଭାଇ, ଯାହା କହିବ ମୁଁ ଆଣିଦେବି, ମୋ ଜୀବନ ଦେଇ ଆଣିବି । ମୋ ପିଲା କିମିତି ବଂଚିଉଠୁ ।

ବୁଦ୍ଧ— ସାମାନ୍ୟ କଥା— ଜୀବନ ଦେବାକୁ ପଡ଼ିବ ନାହିଁ । ମୁଠାଏ ସୋରିଷ । ଯାଅ ଆଣ ।

କୀଶା— ଏ କଥା ମୋତେ ଏ ଯାକେଁ କାହିଁକି କହି ନ ଥିଲ ! ତୁମେ ଏଇଠି ଠିଆହୋଇଥା । ମୁଁ ଦଉଡ଼ିଯାଇ ନେଇ ଆସୁଛି,—ଆମରି ଘରେ ତ ନୂଆ ସୋରିଷ ଅମଳ ହୋଇ ଗଦା ହୋଇଛି । (ଯିବାକୁ ଉଦ୍ୟତ)

ବୁଦ୍ଧ— ନାଁ, ସେ ସୋରିଷ ହେବନି । ମାରାହୋଇଗଲାଣି । ଏପରି ଘରୁ ମୁଠିଏ ସୋରିଷ ଆଣ, ଯେଉଁଠି କି କେହି ଲୋକ କେବେହେଲେ ମରିନାହାନ୍ତି ।

କୀଶା— ହଉ, ହେଲା ଏବେ । ଖୋଜିଲେ କ'ଣ ସେମିତି ସୋରିଷ ମିଳିବନି ? ମୁଁ ଯାଏଁ, ନିଶ୍ଚେ ପାଇବି ।

ବୁଦ୍ଧ— ହଉ ଯାଅ । (କୀଶାର ମୃତ ଶିଶୁକୁ ଧରି ପ୍ରସ୍ଥାନ) ମୋହଗ୍ରସ୍ତା ବାଳିକା ! ଯାହା ସାର୍ବଜନୀନ, ଯାହା ନିଜେ ସେ ଦିନେ ଭୋଗକରିବ, ତା'ର ମା, ବାପା, ଦାଦି, ଖୁଡ଼ୀ ଯାହା ଭୋଗିସାରିଛନ୍ତି, ତାହା ତା'ର ବାଳକକୁ କାହିଁକି ନ ହେବ, ଏଇ ସାମାନ୍ୟ କଥାଟା ସେ ଭାବିପାରୁନାହିଁ । ଭିକ୍ଷୁଗଣ, ଏହାହିଁ ମୋହ, ଏହାହିଁ ଦୁଃଖ ।

ଜଣେ ଭିକ୍ଷୁ— ମହାଭାଗ ଅସାଧାରଣ ଚତୁରତାର ସହିତ ସେହି ଶୋକାତୁରା ବାଳିକାକୁ ଫେରାଇଦେଇଛନ୍ତି । ଅଳ୍ପକ୍ଷଣ ପରେ ତା'ର ଯେ ତତ୍ତ୍ୱଜ୍ଞାନ ଆସିବ ଏଥିରେ ସନ୍ଦେହ ନାହିଁ ।

ବୁଦ୍ଧ— ଚାଲ, ସେ ନିଶ୍ଚୟ କାଲି ଉତରୋଦ୍ୟାନରେ ଖାଲି ହାତରେ, କିନ୍ତୁ ପୂର୍ଣ୍ଣଜ୍ଞାନରେ ଆମକୁ ଭେଟିବ । ଚାଲ—(ପ୍ରସ୍ଥାନ) (ପଟପତନ)

## (ଷଷ୍ଠ ଦୃଶ୍ୟ)

[କପିଳବାସ୍ତୁ । ପ୍ରାସାଦର ସମ୍ମୁଖ ଭାଗ । ପଟ ଉତ୍ତୋଳିତ ହେଲାବେଳକୁ ଏକ ପାଖରେ ଶୁଦ୍ଧୋଦନ ଓ ଛନ୍ଦକ, ଅନ୍ୟ ପାଖରେ ଭିକ୍ଷାପାତ୍ରଧାରୀ, ହାରିଦ୍ରବସ୍ତ୍ରଶୋଭିତ ବୁଦ୍ଧ ଓ ଶ୍ରମଣ ଦଳ ।]

ଶୁଦ୍ଧୋଦନ— ଏ କି କଥା ବାପା ! ତମରି ଘର, ତମରି ରାଜ୍ୟ, ତମରି ନଗର, ତୁମେ ଆସୁଛ ଭିକ ମାଗି ? ଶେଷରେ ପୁଣି ଏ ଅପମାନ ଭୋଗ କରିବାକୁ ଥିଲା ମତେ ଏ ବୃଦ୍ଧବୟସରେ ? ଯାହା ଘରେ ପ୍ରତ୍ୟହ ସହସ୍ର ସହସ୍ର ଭୋଖୀ, ଉପାସୀ ଖାଇ ଯାଉଛନ୍ତି, ତା'ଦ୍ୱାରେ ତା'ର ନିଜର ପୁଅ ଭିକମାଗୁଛି ? ଏ କେବଳ ମୋର ଅପମାନ ନୁହେଁ ବାବା, ଏ କୁଳର ଅପମାନ, ବଂଶର ଅପମାନ ! ଶାକ୍ୟ ବଂଶରେ କେହି କେବେ ଭିଖ ମାଗିଥିଲା, ବାବା ?

ବୁଦ୍ଧ— ମହାରାଜ, ଏହାହିଁ ମୋ ବଂଶର ଚିରାଚରିତ ବୃତ୍ତି ।

ଶୁଦ୍ଧୋଦନ— (ବିସ୍ମିତ ହୋଇ) ତମ ବଂଶର ଭିକ୍ଷା ଚିରାଚରିତ ବୃତ୍ତି ! ଆମ ବଂଶର କଥା କ'ଣ ମୋତେ ଜଣା ନାହିଁ ?

ବୁଦ୍ଧ— ମହାରାଜ, ଆପଣଙ୍କ ବଂଶର କଥା ମୁଁ କହୁନାହିଁ— ମୁଁ ବୁଦ୍ଧ ବଂଶର କଥା କହୁଛି । ଜଗତରେ ଯେତେ ବୁଦ୍ଧ ଜନ୍ମଗ୍ରହଣ କରିଛନ୍ତି, ସେମାନେ ମୋରି ପରି ଭିକ୍ଷାନ୍ନରହିଁ ଆଶ୍ରୟ ନେଇଛନ୍ତି, କାରଣ ସେମାନଙ୍କର ନିଜର ବୋଲି କିଛି ନ ଥାଏ ।

ଶୁଦ୍ଧୋଦନ— ହଉ ହେଲା, ଯଦି ଭିକ୍ଷାନ୍ନ ଛଡ଼ା ଅନ୍ୟ କିଛି ଗ୍ରହଣ କରିବ ନାହିଁ, ଦୟାକରି ବାବା, ନିଜ ରାଜଧାନୀରେ ଘର ଘର ବୁଲି ଭିଖ ମାଗନି । ମୁଁ ତମର ସମସ୍ତ ସଂଘର ଭରଣପୋଷଣପାଇଁ ଯଥେଷ୍ଟ ଭିକ୍ଷା ଦେବି । ଉତ୍ତର ଉଦ୍ୟାନରେ ସେମାନଙ୍କର ରହିବା ଓ ଖାଇବାର ସମସ୍ତ ବ୍ୟବସ୍ଥା କରିସାରିଛି । ଭିକ୍ଷାପାତ୍ରଟି ମୋତେ ଦେ ବାବା, ମତେ ଆଉ ଅଧିକ ଅପମାନିତ ଓ ଦୁଃଖିତ କରାନା ।

ବୁଦ୍ଧ— ହଉ ବାବା ନିଅ । (ଭିକ୍ଷାପାତ୍ରଟି ଶୁଦ୍ଧୋଦନ ନେଇଯିବା)

ଶୁଦ୍ଧୋଦନ— ଆ, ତୋରି ଘର ଭିତରକୁ ଆ ବାବା !.....

ଏଇ ତୋ ମା' ଅଇଲାଣି ।

(ସସବ୍ୟସ୍ତରେ ପ୍ରଜାବତୀଙ୍କର ପ୍ରବେଶ)

ପ୍ରଜାବତୀ— (ଭାବାକୁଳତାରେ ବୁଦ୍ଧଙ୍କ କାନ୍ଧରେ ଢଳିପଡ଼ି) ବାପାରେ ମୋର, ମୋ ସିଦ୍ଧାର୍ଥରେ, ତତେ ଦେଖିବି ବୋଲି ଆଉ ଆଶାରଖିଥିଲି କିରେ ! (ରୋଦନ । ଶୁଦ୍ଧୋଦନ, ଉପାଳୀ ପ୍ରଭୃତି ମଧ୍ୟ କାନ୍ଦିଲେ ।)

ବୁଦ୍ଧ— (ଛଡ଼ାଇ) ମା, ବ୍ୟସ୍ତ ହୁଅନା । ମୁଁ କହିଥିଲି, ସତ୍ୟର ଅନୁସଂଧାନ ସରିଲେ ଫେରି ଆସିବାକୁ । ଏଇତ ଦେଖୁଛ ଫେରିଆସିଲି— ବ୍ୟସ୍ତ ହେଉଛ କାହିଁକି ?

ପ୍ରଜାବତୀ— (ଲୁହ ପୋଛି ପୋଛି) ଆଉ ଫେର୍ ଚାଲିଯିବୁ ନିତରେ ଧନ ? (ହାତଧରି) ଆଉ ଯା'ନା । ମୋ ରାଣ, ତୁ ମତେ ଛାଡ଼ି ଯା'ନା ରେ ।

ବୁଦ୍ଧ— ମା, କପିଳବାସ୍ତୁ ଶାସନ କରିବାକୁ ତମର ଅନ୍ୟ ପୁତ୍ର ଅଛନ୍ତି । ମୁଁ ତ ଅନ୍ୟ ଗୋଟାଏ ରାଜ୍ୟରେ ବାସକଲିଣି, ଫେର୍ ଆଉ ଏଠିକି ଲେଉଟିବି କାହିଁକି ? ମତେ ତ କହୁଛ ତମକୁ ନ ଛାଡ଼ି ଯିବାକୁ— ତମେ ଯେ ମତେ ଦିନେ ଛାଡ଼ି ଚାଲିଯିବ ? ଏ ସଂସାରରେ ପ୍ରତ୍ୟେକ ନର ନାରୀର ପଥ ସ୍ୱତନ୍ତ୍ର । ପ୍ରତ୍ୟେକେ ନିଜନିଜର କର୍ମ ଭୋଗ କରିବେ— ନିଜେ ନିଜ କର୍ମ ପାଇଁ ଦାୟୀ । ମା, ବ୍ୟସ୍ତ ହୁଅନାହିଁ । ଏଠାରେ ଯେତେ ଦିନ ରହିବି ତମ୍ଭକୁ ସଦ୍ଧର୍ମର ମହିମା ବୁଝାଇବି । ସେ ସବୁ ଶୁଣିଲା ପରେ ମତେ କହିବ ମୁଁ ରହିବି ନା ଯିବି ।.....କି ଛନ୍ଦକ ? କି ଆନନ୍ଦ ? କିପରି ଅଛ ? ସବୁ ଭଲ ତ ?

ଆନନ୍ଦ— ତଥାଗତ ସ୍ମରଣ ରଖିବା ଉଚିତ ଯେ ତଥାଗତ କପିଳବାସ୍ତୁ ଛାଡ଼ିଲା ଦିନୁ କାହାରି ମନରେ ସୁଖ ନାହିଁ ।

ଛନ୍ଦକ— (ଗୋଡ଼ତଳେ ପଡ଼ି) ମଣିମା, ଆପଣ ଯୁଆଡ଼େ ଯିବେ ଏ ଅଧୀନକୁ ସେଆଡ଼େ ଯିବାକୁ ଅନୁମତି ଦିଅନ୍ତୁ । ମଣିମା ଗଲାଦିନୁ ମତେ ଭାତ ରୁଚୁନି । ମୁଁ ଆଉ କାହାକୁ ସେବାକରିବି ?

ବୁଦ୍ଧ— ଉଠ୍ ଉଠ୍ ଛନ୍ଦକ ! ଆଚ୍ଛା, ମୋ ସାଥିରେ ତୁ ରହିବୁ । ଯା, ତୋ ଘରୁ ତୁ ଅନୁମତି ନେଇ ଆ । (ଛନ୍ଦକ ଉଠିଲା) ଗୋପା କାହିଁ ? ତାଙ୍କୁ ଏଠାରେ ଦେଖୁନି ଯେ ?

ପ୍ରଜାବତୀ– (କାନ୍ଦି କାନ୍ଦି) ବୋହୂକୁ ଆଉ କ'ଣ ଦେଖିବୁ ? କାନ୍ଦି କାନ୍ଦି କଣ୍ଠା ହୋଇଗଲାଣି । ତୁ ଛାଡ଼ିଲା ଦିନୁ ତା' ମୁଣ୍ଡ ତେଲ ପାନିଆ କ'ଣ ଜାଣିନି । ମୁଠେ ଖାଇ ଢୋକେ ପିଇ କେବଳ ବଂଚିରହିଛି ଯାହା । ଆଇଲାବେଳେ ଡାକିଲି, ''ଆସ ବୋହୂ, ପୁଅକୁ ଭେଟିବା ।'' ସେ କହିଲା, ''ତମେ ଯାଅ ମା' ! ମୋର କିଛି ମୂଲ୍ୟ ଥିଲେ ସେ ମୋ ପାଖକୁ ବଳେ ଆସିବେନି ?''

ବୁଦ୍ଧ– ଗୋପା ଠିକ୍ ଉତ୍ତର ଦେଇଛନ୍ତି । ଚାଲ ମା', ସମସ୍ତେ ତାଙ୍କ ନିକଟକୁ ଯିବା । (ସମସ୍ତଙ୍କର ପ୍ରସ୍ଥାନ) (ପଟପତନ)

## (ସପ୍ତମ ଦୃଶ୍ୟ)

(ସେହି ରାଜପଥ । ଦେବଦତ୍ତ ଓ ପୁରୋହିତର ଆଗ ପଛ ହୋଇ ପ୍ରବେଶ । ସେମାନଙ୍କ ମୁଖମଣ୍ଡଳ ବିରକ୍ତି ଓ କ୍ରୋଧରେ ପୂର୍ଣ୍ଣ ।)

ଦେବଦତ୍ତ–ଅସମ୍ଭବ ! ସମସ୍ତେ କାହିଁକି ସିଦ୍ଧାର୍ଥର ଶିଷ୍ୟ ହେବାକୁ ଯିବେ ? ଏ ରାଜାଦେଶ ମୁଁ ପାଳନ କରିବି ନାହିଁ ।

ପୁରୋହିତ–ନିଶ୍ଚୟ ଦେବଦତ୍ତ, ନିଶ୍ଚୟ ପ୍ରତିରୋଧ କର । ମୁଁ ତୁମକୁ ଭୁଲବୁଝିଥିଲି । ତମଠି ଯାହାହେଉ ବର୍ତ୍ତମାନ ବୈଦିକ ଧର୍ମର ଏକମାତ୍ର ଆଶା । ଏ କୁଳାଙ୍ଗାରଟା ଜନ୍ମ ହୋଇ କେବଳ ଏ ରାଜ୍ୟଟାକୁ ନୁହେଁ ସାରା ଆର୍ଯ୍ୟାବର୍ତ୍ତକୁ ନଷ୍ଟକରିଦେଲା । ଓଃ, ଦୁଧ ଦେଇ ଯାହା ନାଗସାପକୁ ପୋଷିଥିଲୁ ! ଅପଦାର୍ଥଟାଠି କେତେ ଆଶା ରଖିଥିଲୁ, ବୃଥାଟାରେ ହେ !

ଦେବଦତ୍ତ– ରାଜାଙ୍କ ପୁଅ ବୋଲି ତ ସମସ୍ତେ ମୁଣ୍ଡରେ ମୁଣ୍ଡାଇଥିଲ; ଏତେବେଳେ ଭାବି ହେଉଛ କିଆଁ ? ମୁଁଇ ତାକୁ ପିଲାଦିନୁ ଜାଣିଆସିଛି, ସେ କେତେ କଡ଼ାରେ ଗଣ୍ଡେ । ସେଇଥିପାଇଁ ତ ମୁଁ ସମସ୍ତଙ୍କର ବିଷ ଦୃଷ୍ଟିରେ ଥାଏ ।

ପୁରୋହିତ– ଛାଡ଼ ସେ ଗତ କଥା, ଦେବଦତ୍ତ ! ବର୍ତ୍ତମାନ ତମର ଏକମାତ୍ର କର୍ତ୍ତବ୍ୟ ହେଉ ସିଦ୍ଧାର୍ଥର ବିଧର୍ମୀ ସଂଘକୁ ଭାଙ୍ଗିବା । ଯେପରି ଦେଖାଯାଉଛି ତା ସୁଅରେ ସାରା ସୃଷ୍ଟି ଭାସିଯାଉଛି । ଏ ରାଜ୍ୟରେ ଜଣେ କେହି ପ୍ରତିରୋଧ କରିବାକୁ ନାହିଁ ।

ଦେବଦତ୍ତ–ମତେ ଆଶୀର୍ବାଦ କରନ୍ତୁ ପୁରୋହିତେ, ମୁଁ ସେ ଅହଂସର୍ବସ୍ୱ ସିଦ୍ଧାର୍ଥର ସଂଘ ଫଘ ସବୁ ଉଡ଼ାଇଦେବି । ଦେଖିଲ, ତ ଯୁଦ୍ଧଫୁଦ୍ଧ ତା' ହାତରେ ହେବନି; ବାହାର କରିଛି ଏ ଗୋଟେ ପନ୍ଥା ଲୋକଙ୍କ ପୂଜା ପାଇବାପାଇଁ, ଆଉ କ'ଣ ?

ପୁରୋହିତ–ପ୍ରାଣପୂର୍ଣ୍ଣ ଆଶୀର୍ବାଦ ଦେଉଛି । ଯାଅ ବତ୍ସ, ବିଧର୍ମୀ ସିଦ୍ଧାର୍ଥର ପଛେ ପଛେ ଯାଅ । ତା'କୁ ଅନୁଧାବନକର । ତା'ର ସଂଘକୁ ଟିକି ଟିକି କରି ଫଟାଅ । ଏ କପିଳବାସ୍ତୁରେ ଆଉ ମୁଁ ରହିବି ନାହିଁ । ଏ ପାପଗ୍ରସ୍ତ ରାଜ୍ୟରେ ବ୍ରାହ୍ମଣର ସ୍ଥାନ ନାହିଁ ।

ହେ ଅଗ୍ନି— ତୁମେ ଯାକୁ ଗ୍ରାସକର, ହେ ବରୁଣ— ତୁମେ ଯାକୁ ଗ୍ରାସକର, ହେ ଇନ୍ଦ୍ର— ତୁମେ ଯାକୁ ଧ୍ୱଂସ କର । (ଅଭିଶାପ ଦେଉଦେଉ ପ୍ରସ୍ଥାନ) (ପଟପତନ)

## (ଅଷ୍ଟମ ଦୃଶ୍ୟ)

(ସହସା ପଟ ଉତ୍ତୋଳିତ ହେଲାବେଳେ ଏକ କକ୍ଷର କୋଣରେ ଆଲୁଳାୟିତକେଶା, କ୍ଷୀଣାଙ୍ଗୀ, ଧୂସରବସନା ଗୋପା ଦଣ୍ଡାୟମାନା । ପ୍ରଥମେ ବୁଦ୍ଧ ଓ ଅନ୍ୟମାନେ ସ୍ତବ୍ଧ ଭାବରେ କିଛିକ୍ଷଣପାଇଁ ଦଣ୍ଡାୟମାନହେଲେ । ତା' ପରେ ଗୋପା ବୁଦ୍ଧଙ୍କ ଚରଣ ବନ୍ଦନା କରି ପୁଣି ଠିଆହେଲେ ଓ ଅଭିମାନ ବ୍ୟଞ୍ଜିତ ସ୍ୱରରେ କହିଲେ—)

ଗୋପା— କପିଳବାସ୍ତୁକୁ ଆଉ ନ ଫେରିଥିଲେଇ ହୋଇଥାଆନ୍ତା । ପଳାଇ ତ ଯାଇଥିଲ, ଅଇଲ ପୁଣି କାହିଁକି ?

ବୁଦ୍ଧ— ଗୋପା, ମୁଁ ଯେ ସତ୍ୟର ଅନୁସଂଧାନପାଇଁ କିପରି ବ୍ୟାକୁଳ ଥିଲି ତା ତୁମକୁ ଅଜଣା ନ ଥିଲା । ସେହି ସତ୍ୟର ସଂଧାନ ପାଇଲା ପରେ ଫେର୍ ଫେରିଆସିଛି, ତୁମକୁ ତା'ର ମହାନ୍ କଲ୍ୟାଣର ଆସ୍ୱାଦରେ ଭାଗୀ କରିବାପାଇଁ ।

ଗୋପା— ଯେଉଁ ସତ୍ୟ ଭୀରୁ, ପଳାୟନପନ୍ଥୀ, ତା'ର କଲ୍ୟାଣ ମୋର ଦରକାରନାହିଁ ।

ବୁଦ୍ଧ— ପଳାୟନପନ୍ଥୀ ! ତଥାଗତଙ୍କର ସଦ୍ଧର୍ମରେ ପଳାୟନର ସ୍ଥାନ ନାହିଁ । ଏହା ବୀରତ୍ୱର, ବିଚାରର, ବିଜୟର ଧର୍ମ । ପୁଣି ପ୍ରେମ, ମୈତ୍ରୀ, କରୁଣାର ଧର୍ମ । ଏହାର କଲ୍ୟାଣ ବିଶ୍ୱବ୍ୟାପୀ—ଶତ୍ରୁକୁ ମଧ୍ୟ ଏହା କଲ୍ୟାଣ ବିତରଣ କରେ ।

ଗୋପା— ତମର ବିଶ୍ୱରେ ବୋଧହୁଏ ଗୃହର ସ୍ଥାନ ନାହିଁ । ତେଣୁ ତମର ଧର୍ମଲାଗି ତମକୁ ନବଜାତ ପୁତ୍ର ଓ ନବପ୍ରସୂତି ପତ୍ନୀକୁ ଅସହାୟ କରି ଘରଛାଡ଼ି ପଳେଇବାକୁ ପଡ଼ିଲା ।

ବୁଦ୍ଧ— ଗୋପା, ମୁଁ ତୁମକୁ ଘୃଣାରେ, ଅବସନ୍ନତାରେ ଛାଡ଼ି ପଳାଇଯାଇ ନାହିଁ । ଯେଉଁ ରାତ୍ରିରେ ମୁଁ ଏହି ପଥରେ ପାଦ ଦେଲି, ସେତେବେଳେ ତମେ ମୋ ନିକଟରେ ସବୁଠାରୁ ପ୍ରିୟତମ, ସବୁଠାରୁ ଲୋଭନୀୟ ହୋଇଉଠିଥିଲ । ସତ୍ୟାନ୍ୱେଷଣର ସୁଦୂର ଆହ୍ୱାନରେ ମତେ ତମର ନିବିଡ଼ ବଂଧନକୁ ବଳେ ବଳେ ଟିକି ଟିକି କରି ଛିଣ୍ଡାଇବାକୁ ପଡ଼ିଥିଲା । ସେ ନିବିଡ଼ ଯନ୍ତ୍ରଣା ର କଥା ତ ତମକୁ କହିନି, ତମେ ଜାଣିବ କିପରି ? ତମେ ଯେପରି ଅକାତରେ ନିଜ ଦେହର ରକ୍ତ କ୍ଷୟ କରିଛ ଶିଶୁରତ୍ନର ଲାଭପାଇଁ, ମତେ ସେହିପରି ସତ୍ୟରତ୍ନର ଲାଭପାଇଁ ମୋର ଯାହା ପ୍ରିୟତମ ତାକୁ ତ୍ୟାଗ କରିବାକୁ ପଡ଼ିଲା—ଅନ୍ତତଃ କିଛି କାଳପାଇଁ । ଯାହା ପାଇଛି ସେ କେବଳ ମୋର ନୁହେଁ ଗୋପା, ସେ ତମର, ଏ ସମସ୍ତଙ୍କର, ସମଗ୍ର ବିଶ୍ୱର ।

ଗୋପା— ତଥାଗତଙ୍କର ଏଇ ନୂତନ ରାଜ୍ୟରେ କ'ଣ ଗୋପା ସେହି ପୂର୍ବପରି ସହଧର୍ମିଣୀର ଅଧିକାର ଦାବି କରିପାରେ ?

ବୁଦ୍ଧ— ଗୋପା ତଥାଗତଙ୍କୁ ଶତ ଶତ ଜନ୍ମରେ ଧର୍ମ ମାର୍ଗରେ ସାହାଯ୍ୟ କରିଆସିଛନ୍ତି । ସେ ମୋର ଜନ୍ମଜନ୍ମାନ୍ତରର ସଂଗିନୀ ।

ଗୋପା— (ଭାବାକୁଳତାରେ ପଦତଳେ ପଡ଼ିବାକୁ ଯାଇ) ମତେ କ୍ଷମାକର ଓ ନବ ଜୀବନରେ ଆଶ୍ରୟ ଦିଅ ।

(ବୁଦ୍ଧ ଗୋପାଙ୍କୁ ଧରୁ ଧରୁ ପଟପତନ)

---

# ଦୁର୍ଭିକ୍ଷ

## ଭୂମିକା

ଓଡ଼ିଶାର ସୁବିଦିତ ନଅଙ୍କ ଦୁର୍ଭିକ୍ଷର ପଶ୍ଚାତ୍‌ପଟ ଉପରେ ଗୋଟିଏ ମହାପ୍ରାଣର ମହନୀୟ, ପବିତ୍ର, ମଧୁର ବିକାଶହିଁ ଏଇ ଛୋଟ କାବ୍ୟ-ନାଟିକାଟିର ପ୍ରାଣ-କଥା ।

ଦୁର୍ଭିକ୍ଷକୁ ଆମେ ବୁଝୁଁ ବ୍ୟାପକ ଖାଦ୍ୟାଭାବ । ଯେଉଁମାନଙ୍କର ଦୁଇବେଳା ଦୁଇଥର ରୁଚି-ଅନୁଯାୟୀ ପେଟ ପୂରେଇ ନେବାର ସୌଭାଗ୍ୟ ବରାବର ରହିଆସିଛି, ସେମାନଙ୍କ ନିକଟରେ ଏଇ ଦୁର୍ଭିକ୍ଷ ବା ବ୍ୟାପକ ଖାଦ୍ୟାଭାବ, ଦୂରରେ ରହି, ଖବରକାଗଜରୁ ଯୁଦ୍ଧର ଖବର ପଢ଼ିଲା ପରି, କେବଳ ଏକ ମାନସିକ ଅନୁଭୂତି ହୋଇ ରହିବ; କିନ୍ତୁ ଅନ୍ନାନ୍ନ ଓ ନିରନ୍ନ ରହି ଜଠରାଗ୍ନିରେ ନିଜେ ଜଳୁଥିବାବେଳେ ନିଜର ପିତା, ମାତା, ପତ୍ନୀ, ପୁତ୍ର, କନ୍ୟା, ଭାଇ ଭଉଣୀମାନଙ୍କର ପ୍ରାହରିକ ଜୀବନ୍ତ ମରଣ ଦିନ ଦିନ ଧରି ଦେଖୁଥିବା ଯେ ପ୍ରଖର ଅନୁଭୂତିସମ୍ପନ୍ନ ମନୁଷ୍ୟ ନାମକ ପ୍ରାଣୀ ନିକଟରେ କି ପ୍ରକାର ମାନସିକ ଓ ଆତ୍ମିକ ଯନ୍ତ୍ରଣା ହୋଇପାରେ, ତାହା ଯିଏ ନ ଭୋଗିଛି ବା ନ ଦେଖିଛି, ତା' ପକ୍ଷରେ କଳ୍ପନା କରିବା କଷ୍ଟକର କଥା ନ ହୋଇପାରେ; କିନ୍ତୁ ପ୍ରକୃତ ଅବବୋଧ ନିଶ୍ଚୟ ସହଜ ହେବନାହିଁ ।

କ୍ଷୁଧା ମନୁଷ୍ୟର ବା ଅନ୍ୟ ସକଳ ପ୍ରାଣୀର ବହୁ ସହଜାତ ପ୍ରବୃତ୍ତିମାନଙ୍କ ଭିତରୁ ଏକତମ ଏବଂ ଆଦ୍ୟତମ ଓ ପ୍ରଧାନତମ । କ୍ଷୁଧା ଓ ଜୀବନ ସହଯାତ୍ରୀ । ଶିଶୁ ଜନ୍ମ ହେଲାମାତ୍ରେ ମାତୃସ୍ତନ୍ୟରୁ ତା'ର ଖାଦ୍ୟ ସେ ଖୋଜି ବାହାରକରିନିଏ । କ୍ଷୁଧାଗ୍ନି ଲିଭି ଆସିବା ଆଗମନୀ ମୃତ୍ୟୁର ଲକ୍ଷଣ ।

କ୍ଷୁଧା ଓ ଅନ୍ୟାନ୍ୟ ପ୍ରବୃତ୍ତି, ଅନ୍ୟାନ୍ୟ ସମସ୍ତ ଜୀବପରି ମନୁଷ୍ୟର ମଧ୍ୟ ସହଜାତ ହେଲେହେଁ, ସେସବୁ ଏକାନ୍ତରେ ପ୍ରାଣିଜୀବନର ପରିଚାଳକ ଓ ପରିଚାୟକ । ମନୁଷ୍ୟ କେବଳ ପ୍ରବୃତ୍ତିର ଦାସତ୍ୱରେ ସୀମିତ ନ ହୋଇ, ପ୍ରବୃତ୍ତିର ସର୍ବଗ୍ରାସୀ ବନ୍ଧନକୁ ଛିନ୍ନକରି, ବିଚାର ଓ କଳ୍ପନାର ଯୁଗ୍ମ ପକ୍ଷରେ ଉଡ଼ିବାକୁ ଶିଖିଛି ବୋଲି, ଧର୍ମ-କଳା-ସାହିତ୍ୟ-ବିଜ୍ଞାନ-ସମୃଦ୍ଧ ଏଇ ବିରାଟ ମାନବ-ସଭ୍ୟତା ସମ୍ଭବ ହୋଇପାରିଛି । ନଚେତ୍ ମନୁଷ୍ୟ ଏପର୍ଯ୍ୟନ୍ତ ଅନ୍ୟ ପ୍ରାଣୀମାନଙ୍କ ପରି ଯୁଗ ଯୁଗ ଧରି କେବଳ ଆତ୍ମରକ୍ଷା ଓ ବଂଶରକ୍ଷା ମାତ୍ର କରି ଆସୁଥା'ନ୍ତା । ତା ଗର୍ଭରୁ ଖ୍ରୀଷ୍ଟ ଓ ବୁଦ୍ଧ ବାହାରିବାର ତ ଦୂରର କଥା, ସାଧାରଣ କୃଷକ, ତନ୍ତୀ ବା କୁମ୍ଭାର ମଧ୍ୟ ବାହାରି ନ ଥା'ନ୍ତେ ।

ପ୍ରାଣୀତ୍ୱ ଓ ନରତ୍ୱର ପ୍ରକୃତ ପରୀକ୍ଷା ତେଣୁ ଏଇସବୁ ପ୍ରବୃତ୍ତିଗୁଡ଼ିକର ହାତରେ । ଆମ୍ଭେମାନେ ଯେପର୍ଯ୍ୟନ୍ତ ଜଠର-କ୍ଷୁଧା, ଯୌନ-କ୍ଷୁଧା ପ୍ରଭୃତି ପ୍ରବୃତ୍ତିମାନଙ୍କର

ସୁବିଚାରଶୂନ୍ୟ ଦାସ, ସେପର୍ଯ୍ୟନ୍ତ ଆମ୍ଭେମାନେ ପ୍ରାଣୀ ସ୍ତରରେ । ଆମ୍ଭମାନଙ୍କର ମନୁଷ୍ୟତ୍ୱର ବିକାଶ ଆମ୍ଭମାନଙ୍କର ପ୍ରବୃତ୍ତି-କର୍ତ୍ତୃତ୍ୱରୁ ସ୍ୱାଧୀନତା ଲାଭ ସଙ୍ଗେ ସଂପୂର୍ଣ୍ଣ ଆନୁପାତିକ ।

ବସ୍ତୁତଃ ମନୁଷ୍ୟ ଜୀବନରେ ପ୍ରକୃତ ସଂକଟ ଏଇ ପ୍ରବୃତ୍ତିମାନଙ୍କର ଆକ୍ରମଣର ସମ୍ମୁଖୀନ ହେବା । କ୍ଷୁଧାର ତାଡ଼ନା, ଯୌନପ୍ରଲୋଭନ, ଆତ୍ମପ୍ରତିପତ୍ତି ପ୍ରଭୃତି ଯେତେବେଳେ ଆମ୍ଭମାନଙ୍କର ବ୍ୟକ୍ତିତ୍ୱକୁ ଆକ୍ରାନ୍ତ କରନ୍ତି, ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣ ସେ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଉଠନ୍ତି ? ଖୁବ୍ କମ୍ ଲୋକ ଆତ୍ମକର୍ମକୁ ନିରପେକ୍ଷଭାବରେ ନିରୀକ୍ଷଣ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ କଲେ ଦେଖିବେ ଯେ, ଆମ ଭିତରୁ ଅଧିକାଂଶ, ଦିନର ନାନା ଛୋଟବଡ଼ ଘଟଣାରେ, କେବଳ ପ୍ରବୃତ୍ତି-ପରିଚାଳିତ-ଭାବରେ କର୍ମ କରି ନିଜକୁ ପ୍ରାଣୀ ସ୍ତରରେହିଁ ବାନ୍ଧିରଖନ୍ତି । ଆମର ନବ-ଦଶମାଂଶ କେବଳ ବର୍ବର ପ୍ରାଣୀତ୍ୱ । ବାକୀ ଏକ-ଦଶମାଂଶ ଯାହା ପ୍ରାଣୀଠାରୁ ଆମକୁ ପୃଥକ୍ କରେ ତାହା ମଧ୍ୟ ବହୁଳଭାବରେ ଆମର ପ୍ରାଣୀଭାବଦ୍ୱାରା ପ୍ରଭାବିତ ।

ବିଭୀଷିକାମୟ ନଅଙ୍କ ଦୁର୍ଭିକ୍ଷର ବୀଭତ୍ସ ରଙ୍ଗଭୂମିରେ କେନ୍ଦ୍ରାପଡ଼ାର ବାଳକ ସନାତନର ଛୋଟ ଅଭିନୟଟି ମାନବିକତାରେ ଯେପରି କାରୁଣ୍ୟମୟ, ନରତ୍ୱର ମହିମାରେ ସେହିପରି ଅପୂର୍ବ । ସନାତନର ମହିମାମୟ କାହାଣୀଟି ମୁଁ ପ୍ରଥମେ ଏକ ବଙ୍ଗଳା ପାଠ୍ୟପୁସ୍ତକରେ ପଢ଼ିଥିଲି । ସେତେବେଳେ ମୁଁ ଖୋର୍ଦ୍ଧା ହାଇସ୍କୁଲର ଏକ ତଳ ଶ୍ରେଣୀର ଛାତ୍ର— ଆଜକୁ ପ୍ରାୟ ଚାଳିଶବର୍ଷ ତଳର କଥା । ସନାତନ ସେଇଦିନୁଁ ମୋର ମନୋଭବନର ଏକ ପୂଜାପୂତ କୋଣରେ ପ୍ରତିଷ୍ଠିତ । ସନାତନ ମୋ ଆଖିରେ ବରାବର ରହିଆସିଛି ଏକ ବୀର, ଏକ ଜୀନ ଭାବରେ । ଯେଉଁ ଦୈନନ୍ଦିନ ପ୍ରାବୃତ୍ତିକ ସଂଗ୍ରାମରେ ମୁଁ ଦିନ ଦିନ ପରାସ୍ତ, ଭଗ୍ନାବୟବ, ପଙ୍ଗୁ, ଭୂପତିତ, ଲାଞ୍ଛିତ, ବାଳକ ସନାତନ ସେଠି ଅଶ୍ରୁତପୂର୍ବଭାବରେ ଜୟୀ । ପୁଣି ସେ ଜୟ, ଯୋଗୀର ଦୃଢ଼ ଅହମିକାରେ ରୁକ୍ଷ ନୁହେଁ, କରୁଣ, ରସାଳ, ଉପଭୋଗ୍ୟ ମାନବିକ ପ୍ରେମରେ ତାହାରସମୟ ଏବଂ ସୌରଭମୟ । ସନାତନଠାରେ ପ୍ରବୃତ୍ତିର ଘୋର ପରାଭବ, ନିବୃତ୍ତିର କଠୋର ସାଧନା ଦେଇ ନୁହେଁ, ତାହା ଘଟିଥିଲା ପ୍ରେମର, ସ୍ନେହର, ମାୟାର ଉଦାର, ରସାଳ, ପବିତ୍ର ବନ୍ଧନଦେଇ । ସନାତନ ତେଣୁ ମୋର ଆତ୍ମିକ ଜୀବନର ଆଦର୍ଶ ହୋଇ ରହିଆସିଛି ।

ନଅଙ୍କ ଦୁର୍ଭିକ୍ଷର କଥା ମୁଁ ପିଲାଦିନୁଁ ଶୁଣିଆସିଛି । ନଅଙ୍କ ବେଳକୁ ମୋର ଗୋସେଇଁମା' ଆମ ଘରେ ତରୁଣୀ ନବବଧୂ । ପ୍ରତ୍ୟହ ଘରର ବାସନ ବର୍ତ୍ତନ, ଅଳଙ୍କାରାଦି ନିକଟବର୍ତ୍ତୀ ଗାଁର କୁମୁଟି ମହାଜନଘରେ ବନ୍ଧା ବା ବିକ୍ରି ହୋଇ ସଞ୍ଜବେଳକୁ ମାଣିଆ ଆସେ, ଆଉ ଗୋସେଇଁମା' ତାକୁ ଘୋରି ଜାଉ କରି ସମସ୍ତଙ୍କୁ କଂସାଏ କଂସାଏ ଦେଇ ଦୁଇବର୍ଷକାଳ ପରିବାରକୁ କିପରି ବଞ୍ଚେଇରଖିଥିଲେ, ଗୋସେଇଁମା'ଙ୍କ ମୁହଁରୁ ବହୁବାର ଶୁଣିଛି । ଆମ ପିଲାଦିନେ ଗୋସେଇଁମା ଓ ଅନ୍ୟ ବୁଢ଼ୀମାନେ ତୋଟା ଜଟାରୁ ନାନାପ୍ରକାର ବନ୍ୟଶାଗ

ଆଣି ଥରେ ଥରେ ରାନ୍ଧନ୍ତି, ଯାହାକି ମୁଁ ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ଖାଇନାହିଁ । ଗୋସେଇଁମା' କହୁଥିଲେ, ଏସବୁ ଶାଗ ସେ ମଧ୍ୟ ଆଗେ ଆଦୌ ଜାଣି ନ ଥିଲେ, ନଅଙ୍କବେଳେ ପ୍ରଥମେ ଖାଇଶିଖିଥିଲେ ।

ନଅଙ୍କ ଭୋଗିଥିବା ବୁଢ଼ାମାନେ ବି ଆମ ପିଲାବେଳେ ଗାଁରେ ଥିଲେ । କୌଣସି ଲୋକ ପତ୍ନୀ ଓ ପୁତ୍ରକୁ ମଶାଣିରେ ଫିଙ୍ଗିଦେଇ, ବାଟରେ ଆସୁ ଆସୁ ପାଣିରେ ବୁଡ଼ିଥିବା ଧାନବିଲର୍ ନିର୍ବିକାରରେ ମାଛ ଧରି ପୋଡ଼ି ଖାଇଥିବାର ବର୍ଣ୍ଣନା ମୁଁ ଏକାଧିକ ମୁଖରୁ ଶୁଣିଛି । ବହୁ ବର୍ଷ ପରେ କଟକ ଜିଲ୍ଲାର ଜଣେ ବୃଦ୍ଧଙ୍କ ମୁଖରୁ ମାଆ ନିଜର ମୁମୂର୍ଷୁ ସନ୍ତାନକୁ ଖାଇବାପାଇଁ କୁଟାନିଆଁରେ ତାକୁ ପୋଡୁଥିବାର ନିଜ ଆଖିରେ ଦେଖିଥିବାର ବର୍ଣ୍ଣନା ମଧ୍ୟ ଶୁଣିଛି ।

ଏଇସବୁ ବିଭୀଷିକାମୟ, ବୀଭତ୍ସ, ନିଷ୍ଠୁର ପଶ୍ଚାତ୍‌ପଟ ଉପରେ ସନାତନର ବରେଣ୍ୟ ଆତ୍ମତ୍ୟାଗର ବର୍ତ୍ତିକା କ୍ରମେ ମୋ ମାନସ-ଲୋକରେ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ଉଠୁଥାଏ । ତାହାପ୍ରତି ମୋର ଏଇ କ୍ରମବର୍ଦ୍ଧମାନ ପୂଜା ଓ ସମ୍ମାନକୁ ମୁଁ କି ପ୍ରକାରେ ପ୍ରକାଶ କରିବି, ଏହା ଅନେକ ଦିନ ଧରି ଭାବୁଥାଏଁ । ଏଇ ସମୟରେ କବିବନ୍ଧୁ ଶ୍ରୀ ପ୍ରାଣକୃଷ୍ଣ ସାମଲ ମତେ ଦିନେ ଏଇ ପ୍ରସଙ୍ଗରେ ଜଣାଇଲେ ଯେ, ନଅଙ୍କ ଦୁର୍ଭିକ୍ଷ ଭୋଗିଥିବା ଜଣେ ଓଡ଼ିଆ ଖ୍ରୀଷ୍ଟାନ୍ ହୋଇ ତାଙ୍କର ଆତ୍ମଚରିତ ଓଡ଼ିଆ ପଦ୍ୟରେ ଲେଖିଯାଇଛନ୍ତି । ସେ ତାହା ପଢ଼ିଛନ୍ତି । ମୁଁ ସେତେବେଳେ ଆଠଗଡ଼ରେ ଥାଏ । ବହୁ ଅନୁସନ୍ଧାନ ପରେ ଏ ପୁସ୍ତକଟି ମୁଁ ପାଇଲି । ଡକ୍‌ଟର ଆଇଜାକ୍ ସାନ୍ତ୍ରାଙ୍କ ସମ୍ପାଦିତ 'ପ୍ରଭାତ' ପତ୍ରିକାର ଏକ ସଂଖ୍ୟାରେ (୧୯୩୭ ସାଲ, ଅଗଷ୍ଟ) ଏଇ 'ଅନନ୍ତ ଦାସଙ୍କ ଆତ୍ମଜୀବନୀ'ଟି ପ୍ରକାଶିତ ହୋଇଛି । ଏଇ ପତ୍ରିକାଟି ଉତ୍କଳ ଖ୍ରୀଷ୍ଟାନ୍ ସମ୍ପ୍ରଦାୟର ମୁଖପତ୍ରରୂପେ ପୂର୍ବେ ବାହାରୁଥିଲା— ବହୁଦିନୁ ଏହା ମୃତ । 'ଅନନ୍ତ ଦାସଙ୍କ ଆତ୍ମଜୀବନୀ' ନଅଙ୍କ ଦୁର୍ଭିକ୍ଷର ଏକ ବଳିଷ୍ଠ ପ୍ରାମାଣିକ ଦଲିଲ ହେଲେହେଁ ଓଡ଼ିଶାର ଶିକ୍ଷିତ ମହଲରେ ତାହା ଏକପ୍ରକାର ଅଜ୍ଞାତ କହିଲେ ଚଳେ ।

ମୁଁ ନଅଙ୍କ ଦୁର୍ଭିକ୍ଷ ସମ୍ପର୍କରେ ଲୋକମୁଖରୁ ଯାହା ଶୁଣିଥିଲି, ଅନନ୍ତ ଦାସଙ୍କ ଆତ୍ମଜୀବନୀ ପ୍ରମାଣ କଲା ଯେ ସେଥିରେ ଅତିରଞ୍ଜନ ନାହିଁ, ବରଂ ଦୁର୍ବଳ ଅନନ୍ତ କ୍ଷୁଧାର ତାଡ଼ନାରେ ଯେପରି କର୍ମସବୁ କରିଯାଇଛନ୍ତି ଏବଂ ଯାହାସବୁ ମୁକ୍ତପ୍ରାଣରେ ସ୍ୱୀକାର କରିବା ଭିତରେ ମୁଁ ତାଙ୍କ ବ୍ୟକ୍ତିତ୍ୱର ସାରଲ୍ୟ ଓ ମାନବିକତାମୟ ଖ୍ରୀଷ୍ଟଧର୍ମର ପୂଣ୍ୟ ପ୍ରଭାବ ଦେଖିପାରୁଛି । ସେଥିରେ ତାଙ୍କୁ ସେଇ ନଅଙ୍କ କାଳର ଲକ୍ଷ ଲକ୍ଷ କ୍ଷୁଧାକବଳିତ କାଙ୍ଗାଳମାନଙ୍କର ପ୍ରତୀକ ବୋଲି ଧରିନେଲି । ଏଇ ହତଭାଗ୍ୟ କ୍ଷୁଧାଗ୍ରସ୍ତ କାଙ୍ଗାଳଦଳ ଆମ୍ଭମାନଙ୍କର ଅନ୍ତରତମ ପ୍ରଦେଶର ଗଭୀରତମ କରୁଣା ଓ ସହାନୁଭୂତିର ପାତ୍ର, ସେମାନେ ଘୃଣାର ପାତ୍ର ନୁହନ୍ତି । ଆମେ ସମସ୍ତେ ସେହି ଅବସ୍ଥାରେ ଠିକ୍ ତାଙ୍କରି ପରି ବ୍ୟବହାର କରିଥା'ନ୍ତେ । ଆମ୍ଭେମାନେ ସମସ୍ତେ ପ୍ରାଣୀ । ଆମେ ସମସ୍ତେ ଅନନ୍ତ ଦାସ । ସଦ୍ୟ-ମୃତ ମନୁଷ୍ୟ-ଶବ ପାଖରେ ରୁଣ୍ଡୀଭୂତ ଓ ଯୁଧ୍ୟମାନ ଗୃଧ୍ର-ଶୃଗାଳ-କୁକୁରମାନଙ୍କଠାରୁ ଆମେ ଭିନ୍ନ ନୋହୁଁ । ଅନନ୍ତ

ଦାସ ସେଇମାନଙ୍କ ପରି ବ୍ୟବହାର କରିଛି । ଆମେ ମଧ୍ୟ ସେଇଆ କରିଥା'ନ୍ତେ । କିନ୍ତୁ ଆମ ଭିତରେ ଏକମାତ୍ର ମନୁଷ୍ୟ ହେଉଛି ସନାତନ— ଯାହାର ଆତ୍ମା ସ୍ନେହଲାଗି, ପ୍ରେମଲାଗି, କର୍ତ୍ତବ୍ୟଲାଗି ଏକ ସର୍ବଗ୍ରାସୀ ପ୍ରବୃତ୍ତିର ସହସ୍ର ବିଷଦନ୍ତର ଅଜସ୍ର ଦଂଶନକୁ ମଧ୍ୟ ଗ୍ରାହ୍ୟ କରି ନ ଥିଲା, ଯେ ଜୟୀ, ଯେ ଜୀନ, ଯେ ମୁକ୍ତ । ସନାତନର ସେହି ଉଜ୍ଜ୍ୱଳ, ଉନ୍ନତ ନରତ୍ୱ ପରିସ୍ଫୁଟ କରିବାପାଇଁହିଁ ଏ ପୁସ୍ତକଟି ରଚିତ ।

ଦୁର୍ଭିକ୍ଷଗ୍ରସ୍ତ, ବୁଭୁକ୍ଷୁ କାଙ୍ଗାଳମାନଙ୍କୁ ନେଇହିଁ ଏଇ ନାଟିକାଟି ଲିଖିତ । ଏ ଦିଗରେ ମୋ ଭାଷାରେ ପଥପ୍ରଦର୍ଶକ କେହି ନାହିଁ । ମୋର 'କମଳାୟନ' କାବ୍ୟର ପ୍ରଥମ ଅଧ୍ୟାୟରେ ମୁଁ ଡଭାରରେ ୧୯୧୯ର ଦୁର୍ଭିକ୍ଷର ବର୍ଣ୍ଣନା ଦେବାକୁ ଚେଷ୍ଟା କରିଛି । ଏ କିନ୍ତୁ ମୁମୂର୍ଷୁ କାଙ୍ଗାଳମାନଙ୍କର ବଚନିକା ସମ୍ବଳିତ ଏକ ଛୋଟ କାବ୍ୟ-ନାଟିକା । କି ଢଙ୍ଗରେ, କି ଭାଷାରେ କିପରି ପ୍ରକାଶ କଲେ, ବକ୍ଷମାଣ ବିଷୟଟି ଯେତେଦୂର ସମ୍ଭବ ସ୍ୱାଭାବିକ ଓ ସାବଲୀଳ ବୋଧହେବ, ତାହା ମୁଁ ବହୁତ ଭାବିଛି । ଯାହା ଫଳ, ତାହା ପାଠକପାଠିକା ନିଜେ ଦେଖିବେ ଏବଂ ଯଦିବା ମନେକରନ୍ତି ଦିଅଁ ଗଢୁ ଗଢୁ ମାଙ୍କଡ଼ହିଁ ବାହାରିଛି, ତେବେ ଦୟାକରି ଏତିକି ମନେକରିବେ ଯେ, ଏଇ ଲେଖକ ଦିଅଁ ଗଢ଼ିବାକୁହିଁ ଚେଷ୍ଟାକରୁଥିଲା ।

ପୁସ୍ତକ ଭିତରେ ସନାତନ କେବଳ ଜଣା ଲୋକ, ଆଉସବୁ କାଳ୍ପନିକ । ସନାତନ ମଧ୍ୟ ଏକ ପ୍ରତୀକ— ମାନବିକ ଦୁର୍ବଳତାକୁ ପରାଜିତ କରିବାର, ତ୍ୟାଗର, ପ୍ରେମର, କର୍ତ୍ତବ୍ୟଜ୍ଞାନର ଏକ ପ୍ରତୀକରୂପେ ମାତ୍ର ତାକୁ ଦେଖିବାକୁ ପାଠକମାନଙ୍କୁ ଅନୁରୋଧ । ଅନ୍ୟ ସମସ୍ତେ ସେହି ପ୍ରତୀକର ବୈପରୀତ୍ୟ-ସୂଚକ ପଶ୍ଚାତ୍‌ପୀଠିକା ମାତ୍ର ।

'ଅନନ୍ତ ଦାସଙ୍କ ଆତ୍ମଜୀବନୀ' ବର୍ତ୍ତମାନ ପର୍ଯ୍ୟନ୍ତ ଏକାବେଳକେ ଅଜ୍ଞାତ ଥିଲେହେଁ ଏହା ଯେ ଓଡ଼ିଆ-ସାହିତ୍ୟର ଏକ ମୂଲ୍ୟବାନ୍ ସମ୍ପଦରୂପେ ଗଣିତହେବ, ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ସାହିତ୍ୟିକ ବନ୍ଧୁ ଓ ସାଧାରଣ ପାଠକ-ପାଠିକାମାନଙ୍କ ଗୋଚରାର୍ଥେ ଏବଂ ସନାତନ ସଙ୍ଗେ ଅନନ୍ତଙ୍କର ତୁଳନାପାଇଁ ମୁଁ ବହୁ ଚିନ୍ତା କରି ଏଇ ପୁସ୍ତକର ପରିଶିଷ୍ଟରୂପେ ଅନନ୍ତ ଦାସଙ୍କ ଆତ୍ମଜୀବନୀଟିକୁ ଏହା ସହିତ ପ୍ରକାଶ କଲି । (ପରିଶିଷ୍ଟ ରୂପେ ପ୍ରଦତ୍ତ) । ଇତି ।

*ମାୟାଧର ମାନସିଂହ*

## (ପ୍ରଥମ ଦୃଶ୍ୟ)

[ଗୋଟିଏ ପଲ୍ଲୀରେ ଏକ ବ୍ରାହ୍ମଣ ପରିବାରର କୁଟୀରର ଅଭ୍ୟନ୍ତର । ଆସନ୍ନ ସନ୍ଧ୍ୟା । ପିତା ପିଣ୍ଡା ଉପରେ ବସିଛନ୍ତି, ବୃଦ୍ଧା ମାତା ନିକଟରେ ଦଣ୍ଡାୟମାନା ।]

ମାତା— ବର୍ଷ ପରେ ବର୍ଷ ଯାଏ; କହିଲେ ଶୁଣୁ ନା;
ଆଣିବନି ବୋହୂ ଘରେ ? ବାପଘରେ ଝିଅ
ବଡ଼ହୋଇ ରହିଲାଣି ତିନି ପୂରି ଚାରି;
ନାହିଁ ସଙ୍ଖୁଳିଲ କେବେ, ନ ଭାବ ସେ କଥା,
ଉଠାଇ ବସାଇ ଏଣେ ନ ଦିଅନ୍ତି ଗ୍ରାମେ
ମାଇପିଏ ତୋଠେ, ଘାଟେ, ତୋଟାମାଳେ ମତେ ।

ପିତା— ମୁଁ କି ତା ଭାବୁନି ମନେ, ବିଚାରୁଛ ଏହା ?
ଗତ ସନେ ଫଗୁଣକୁ ଆଣିଥା'ନ୍ତି ନିଶ୍ଚେ;
ଖେତ ତ ଭଣ୍ଡୁର କଲା, ଛୁଟିଲା ନି ପାଣି,
ଦେଖୁଛ ତ ଟାଣୁଟୁଣୁ ରହିଅଛି ଲାଗି
ସାରା ବର୍ଷ । ଆମ କଥା ଆମେ ଅସମ୍ଭାଳ,
କି ସାହସେ ବୋହୂଟିଏ ଆଣି, ଏ ଜଞ୍ଜାଳେ
ହଇରାଣେ ହଇରାଣ ମିଶାଇବି ପୁଣି ?
ଦେଖ ଏ ବର୍ଷକ—
ଖନ୍ଦ ତ ଏ ଯାକେ କରେ ଆଶାର ସଂଚାର,
ଫସଲ ହୋଇଲେ ଭଲ, ବୋହୂ ଆଣିବାରେ
ଆପତ୍ତି କି ଥାଇପାରେ ?

ମାତା— ଲକ୍ଷ୍ମୀ ବୋହୂ ମୋର,
ପାଦ ଦେଲେ ଘରେ ମୋର ଜାଣେ ମୁଁ ନିଶ୍ଚିତ
ଘରେ ମୋର ନାହିଁ ହେବ ଅନ୍ନର ଅଭାବ ।
ଯିଏ ଆସେ ସେ ଗାଆଁରୁ ସେ କରେ ପ୍ରଶଂସା—
ରୂପରେ ଜଳନ୍ତା ଦୀପ, ଗୁଣେ ଶଙ୍ଖଚିଲ ।
ବୁଢ଼ୀ ହୋଇଗଲି କ୍ରମେ, ଅନ୍ଧ ହୋଇ ଆସେ
ନେତ୍ର ଦୁଇ । ବିଧାତା ତ ନେଇଛି ଗୋଟାକୁ;
ଆରଟାର ଦେଖି ମରେ ହେଲେ ସଉଭାଗ୍ୟ,
ସେଇତକ ଶୀଘ୍ର ଯଦି କରନ୍ତ ବ୍ୟବସ୍ଥା !
କେତେ ଦିନ ବଞ୍ଚିବି ବା ? ବଞ୍ଚିବାର ଆଶା

କାହିଁ ଛି ବା ହୃଦେ ମୋର ?
ଏଇ ମୋ ସଙ୍ଗାଳି ।
ଶତାୟୁଷ ଦେଇଥାଉ ଗାଆଁ ବରୁଣାଇ ।

(ନେପଥ୍ୟେ)

କମଳି ଲୋ, ଏ କମଳି ! ନେଏ, ନେଏ ଭୋଗ ।

(ସନାତନର ପ୍ରବେଶ– ସୁନ୍ଦର, ସୁଠାମ କିଶୋର ବ୍ରାହ୍ମଣ ସନ୍ତାନ ।)

ପିତା– କାହିଁ ଯାଇଥିଲୁ ତୁଇ ? କିସ ଏ ଆଣିଛୁ ?

ସନାତନ– ବଳଦେବ ମନ୍ଦିରରେ ନୂତନ ସନ୍ୟାସୀ
ବେଦାନ୍ତର ମନୋହର କରୁଛନ୍ତି ବ୍ୟାଖ୍ୟା ।
ଦଳ ଦଳ ଲୋକ ହେଉଛନ୍ତି ରୁଣ୍ଡ ତହିଁ,
ଆସୁ ଆସୁ ବସିଗଲି ନ ପାରିଲି ଉଠି,
ମୁଗ୍ଧ ହୋଇ ଶୁଣୁଥାଏ ସନ୍ୟାସୀ ବଚନ ।
ସାଥେ କିଛି ଆଣିଛି ଏ ଭୋଗ ରସାବଳି–
କମଳୀ ନାହିଁ କି ବୋଉ ? କୁଆଡ଼େ ଯାଇଛି ?

ମାତା– ଟୋକୀଟା ତ କଥା ଆଉ ନ କରେ ଖାତିରି,
ବୁଲେ ସାରା ଦି'ପହର କାହିଁ ତୋଟାମାଳେ
ଗାଆଁର ଟୋକୀଙ୍କ ସାଥେ, ନାହିଁ ଖିଆ ପିଆ ।
ବାପ ପୁଏ ଦୁହେଁ ମିଶି କରୁ ଅଲିଅଳ,
ଅତି ଗେଲେ ପୋଡ଼ାମୁହାଁ ହେଉଛି ତେଣ୍ଟେଇ,
ଖୁଣ୍ଟା ଖାଇ ମରିବ ସେ ଜାଣେ ଶାଶୁଘରେ ।
ବିଭାଘର କଥା ତା'ର କେହି ହେଲେ କେବେ
ପାଟିରେ ଧରୁନା ମିଶେ ।– ଏଇ, ଅଲକ୍ଷଣୀ
ଆଇଲାଣି ବୁଲି ବୁଲି ।

କମଳୀ– (ପାଞ୍ଚ ଛ ବର୍ଷର ବାଳିକା । କ୍ରୀଡ଼ାରେ ଧୂଳିଧୂସର । ଦଉଡ଼ି ଆସି ସନାତନକୁ ଧରିବା ।)
ଭାଇନା, ଭାଇନା ।
ଆଣିଚ ନା କହିଥିଲ ? ଦିଅ, ଦିଅ ମତେ
କି ରଖିଚ ଏ ପୁଡ଼ାରେ ?

ମାତା– ଯାଆ, ବାରି କୂଏ
ଧୋଇଧାଇ ହୋଇ ଆସ, ତା'ପରେ ଖାଇବୁ ।

ସନାତନ—ଆଚ୍ଛା, ଆଚ୍ଛା, ଦେଖା ତୋର କେଡ଼େ ବଡ଼ ହାଁ-ଆଁ
(କମଳୀ ପାଟି ଆଁକରି ଆନନ୍ଦରେ ରହିବା)
ଏଇ ନେ, ଗୋଟାକ ଆଗ ଖାଇ ଖାଇ ଯାଆ
(ପାଟିରେ ଭର୍ତ୍ତି କରିଦେବା)
ତା'ପରେ ଆସିବୁ ହୋଇ ସଫାସଫି ପରେ
ମାଗିବୁ ବୋଉକୁ । ସବୁ ତୋପାଇଁ ଆଣିଛି ।
(କମଳୀ ଖାଇ ଖାଇ ପଳାଇବା)

ପିତା— ଦେଖ ଯାଇ ବାରିଆଡ଼େ କୁଆଡ଼େ ସେ ଗଲା ।
(ମାତାଙ୍କର ପ୍ରସ୍ଥାନ)
ସନାତନ— ଫେଏରେ ତ ଖନ୍ଦ ନଷ୍ଟ ହେବାକୁ ବସିଲା,
ବର୍ଷା ନାହିଁ କେଉଁଆଡ଼େ, ସୁନ୍ଦର ସବୁଜ
ଧାନଖେତ ଜଳିବାକୁ ହେଲାଣି ଆରମ୍ଭ,
ଚଷାପୁଅ ବୁକୁ ଫାଟିଯାଏ ଚାହିଁ ଚାହିଁ,
ସେଇ କଥା ଯହିଁ ତହିଁ ହୋନ୍ତି କୁହାକୁହି ।
ପିତା— ତା' ହେଲେ ଏ ସାଲେ କାଳ ପଡ଼ିଲା ନିଶ୍ଚୟ,
ଲୋକ, ପ୍ରାଣୀ ମରିଯିବେ ପୋକମାଛି ପରି ।
ନା, ନା,— ତା' କି ହୋଇପାରେ ? ଦିଅଁ ଦେବତା କି
ଶୁଣିବେନି ଲୋକ କଷ୍ଟ ? ଦେଖୁ ସେ ନାହାନ୍ତି
ପିତଳ, ପଥର ନେତ୍ରେ, ଘଟେ ଯା ଧରାରେ ?
ଏକା ତ ନରେନ୍ଦ୍ର ଖୋଲେ ଯଦି ତା ଅମାର
ପୋଷିହୋଇଯିବେ ବର୍ଷସାରା ଏ ମୁଲକ ।
କୁମ୍ପାନୀ କରିବ କିଛି ବ୍ୟବସ୍ଥା ନିଶ୍ଚୟ,
ନ ହେଲେ ତା' ପ୍ରଜାକୁଳ ବଞ୍ଚିବେ କିପରି ?
ସନ୍ନ୍ୟାସୀ ସେ, କହୁଥିଲେ,—
ସନାତନ— କହୁଥିଲେ ସେ ଯେ
ସଂସାରରେ ଦୁଃଖ ଖାଲି ସୁଖର ସେ-ପାଖ,
ଦୁଃଖ ଆରପାଖେ ପୁଣି ସୁଖ ଲୁକ୍‌କାୟିତ ।
ଗୃହୀଜନେ ସୁଖେଦୁଃଖେ ନ ହୋଇ ବିଭୋର
ଧୀରଚିତ୍ତେ କାଟିବାର ଜୀବନ ଉଚିତ,

ସକଳ ସମର୍ପିଦେଇ କାୟେ ଆଉ ମନେ
ପରଂବ୍ରହ୍ମ ପଦତଳେ ।

(ଦୂରରେ ଗ୍ରାମମନ୍ଦିରର ସନ୍ଧ୍ୟା-ଆରତିର ଘଣ୍ଟାଧ୍ୱନି ଶୁଭିଲା)

ପିତା— ନମସ୍କାରକର
ସେଇ ପରଂବ୍ରହ୍ମେ, ବାପା ! ତାଙ୍କରି ଏ ଲୀଳା—
ଜନ୍ମ, ମୃତ୍ୟୁ, ଜୀବନର ଅବୋଧ୍ୟ ସୁଆଙ୍ଗ,
ସୁଖ, ଦୁଃଖ, ସୌଭାଗ୍ୟର ବିଚିତ୍ରାଭିନୟ—
ମନୁଷ୍ୟର ଅହମିକା ପରାଜିତ ତହିଁ ।
କରି କରାଉଛି ସେହି, ମାରି ଜନ୍ମାଉଛି,
ଆମେ ଖାଲି ଗୋପୀ-ନାଟେ କ୍ରୀଡ଼ା-ପୁତ୍ତଳିକା ।
ସେହି ସେ ତ୍ରିଗୁଣାତ୍ମକେ ଆତ୍ମ-ରାଜେ ନମଃ ।

(ପିତା ଓ ପୁତ୍ର ଧ୍ୟାନସ୍ଥ)

## (ଦ୍ୱିତୀୟ ଦୃଶ୍ୟ)

[କେନ୍ଦ୍ରପଡ଼ା ବଳଦେବ ମନ୍ଦିରର ସମ୍ମୁଖ ମଣ୍ଡପ । ତରୁଣ ସନ୍ୟାସୀ ଜୀବାନନ୍ଦ ଜାନୁପାତ କରି ପ୍ରାର୍ଥନାରତ । ତାଙ୍କର ଚକ୍ଷୁଦ୍ୱୟରୁ ଅଶ୍ରୁଧାରା ବୋହିଯାଉଛି ।]

ଜୀବାନନ୍ଦ— ଶିଶୁର ଜନମ ଆଗୁଁ ଜନନୀର ବକ୍ଷେ
ତୁମେ ନା ରଖ ହେ ପ୍ରଭୁ ଯତନେ ସଜାଡ଼ି
ପ୍ରାଣଦାୟୀ ସ୍ତନ୍ୟଧାରା ? ତୁମେ ନା ଜୀବର
କ୍ଷୁଧାଗ୍ନି ଶମିବାପାଇଁ ଋତୁ-ଆବର୍ତ୍ତନେ
ପଠାଅ ବାରିଦମାଳେ ଜୀବନ-ବର୍ଷଣେ,
ଯେଉଁ ସେ ଅମୃତ ସ୍ପର୍ଶେ ରୁକ୍ଷ ଏ ମୃତ୍ତିକା
ହସିଉଠେ ହେମଶସ୍ୟେ ହେମନ୍ତେ ଅନାଇ,
ଶସ୍ୟର ଯେ ସ୍ୱର୍ଣ୍ଣ-କଣେ ଉଠଇ ଆଲୋକି
ଦୈନ୍ୟ-ଅନ୍ଧାରିତ କୋଟି କୁଟୀ କୃଷକର ?
ଆକାଶର ଆଶ୍ରାହୀନ ଅୟୁତ ବିହଗ,
ଜଳର ଅଗଣ ପ୍ରାଣୀ, ସ୍ଥଳେ ଜୀବଗ୍ରାମ—
ସମସ୍ତଙ୍କ ଲାଗି ତୁମେ ଜୀବୁଁ, ଉଦ୍ଭିଦରୁ
କରିଛ କରୁଣାମୟ ଅନ୍ନ ଆୟୋଜନ,

ଦୈନନ୍ଦିନ ପ୍ରଶମନେ ଜଠର ବହ୍ନିର ।
ସେଇ ତୁମେ, ହୋଇଅଛ, ସେଇ ସେ ଦେବତା
ପାଷାଣରୁ ନିଷ୍କରୁଣ; ଆଖି ଆଗେ ତବ
ଅନ୍ନବିନା ମରୁଛନ୍ତି ବୀଭତ୍ସ ମରଣ
ଶତ ଶତ ମହାପ୍ରାଣୀ,— ଦେଖୁଛ ନିଶ୍ଚିନ୍ତ ?
ଅନଶନ-ଅଶକତ ଜନକ ଜନନୀ
ଦୁର୍ବଳ ସ୍କନ୍ଧରେ ବୋହି ଶିଶୁ ପୁତ୍ରକନ୍ୟା
କଙ୍କାଳ-ମାତ୍ରକ, ସ୍ଫୀତ-ଉଦର-ଚରଣ,
ଚାଲିଛନ୍ତି ପଥେ ପଥେ ଅନ୍ନର ସଂଧାନେ
ଧୀରେ ଧୀରେ ଗ୍ରାମେ, ବିଲେ, ବଣେ, ଶ୍ମଶାନରେ,
ଖୋଜୁ ଖୋଜୁ ପଡୁଛନ୍ତି ଟଳି ପଥଧାରେ !
ବୀଭତ୍ସ, କରୁଣ ଏହି କ୍ଷୁଧା ଅଭିନୟେ
ବକ୍ଷ ମୋର ଯାଏ ଫାଟି ! ବୋଲାଇ ଦେବତା
କିପରି ରହିଛ ତୁମେ ନିର୍ମମ, ନିଶ୍ଚିନ୍ତ ?
ବାର୍ତ୍ତା ଦିଅ, କଥା କହ, ବଞ୍ଚାଅ ମନୁଷ୍ୟେ,
ବଞ୍ଚାଇବା ପଥ ଅବା ବତାଅ, ଈଶ୍ୱର !
ବୃଷ୍ଟି ଦିଅ, ଦିଅ ଶସ୍ୟ, ନିବାର ମୃତ୍ୟୁରେ,
ନାହିଁ କର ଏ ଧରାକୁ ନରକ ଭୀଷଣ ।
ହେ ଦେବ, ହେ ଦୟାମୟ.....

(ଗୁରୁଦେବ ସ୍ୱାମୀ ଶିବାନନ୍ଦଙ୍କର ପ୍ରବେଶ । ସେ କିଛିକ୍ଷଣ ଠିଆହୋଇ ଜୀବାନନ୍ଦଙ୍କୁ ନିରୀକ୍ଷଣ କରି ରହିଲେ ।)

ଶିବାନନ୍ଦ— କି ହୋଇଛି ତବ ?
କାନ୍ଦୁଛ ଯେ ଜୀବାନନ୍ଦ !

ଜୀବାନନ୍ଦ— (ଅଶ୍ରୁ ପୋଛି ପୋଛି ଠିଆହୋଇପଡ଼ି)
କିଛି ନାହିଁ, କିଛି...
ଏଇ, ଏଇ ଉପାସନା କରୁଥିଲି ମାତ୍ର ।

ଶିବାନନ୍ଦ— ଲୁଚାଅ ନି, କହ ଖୋଲି ! ଅଶ୍ରୁ ଆସେ ଗଳି
ହୃଦୟ ବିକ୍ଷୁବ୍ଧ ହେଲେ ଗୁରୁ ବେଦନାରେ,
ଅଥବା ଦୁର୍ଲଭ ସୁଖେ, ଲବ୍ଧ ବହୁ କ୍ଳେଶେ,
କି କାରଣେ ନେତ୍ରେ ଅଶ୍ରୁ, କହ ବତ୍ସ, ଖୋଲି !

ଜୀବାନନ୍ଦ— ଏଇ ଗୁରୁଦେବ ଏଇ ଦୁର୍ଭିକ୍ଷର କଥା
ଭାବୁ ଭାବୁ ନ ସମ୍ଭାଳିପାରୁଁ ହୃଦାବେଗ
ପ୍ରାର୍ଥନାରେ ହୋଇଗଲା ଅଶ୍ରୁ ବିଗଳିତ ।

ଶିବାନନ୍ଦ— ଦୁର୍ଭିକ୍ଷ କରୁଣା ଦୃଶ୍ୟେ ତରୁଣ ହୃଦୟ
ହେବା ଅଶ୍ରୁ-ବିଗଳିତ, ସ୍ୱାଭାବିକ ଅତି ।
କିନ୍ତୁ ତୁମେ ସନ୍ନ୍ୟାସୀ ଯେ, ସଂସାର-ବିରାଗୀ !
ସୁକାଳ, କୁକାଳ ସେ ତ ମାୟା ପ୍ରପଞ୍ଚର !
ତୁମେ ତା'ର ଊର୍ଦ୍ଧ୍ୱେ ରହି ମୁକ୍ତି-ସାଧନାରେ
କରିବାକୁ ନିୟୋଜିତ, ବରିଛ ସନ୍ନ୍ୟାସ,
ତୁମେ କିପାଁ ଜନତାର କି ହେଲା ନ ହେଲା
ସେଥିରେ ନିଜକୁ କର ଅଯଥା ବିବ୍ରତ ?
ଜୀବାନନ୍ଦ— ଯେ ମୁକ୍ତି ରୋଧଇ ସ୍ୱାଭାବିକ ସ୍ନେହ-ଧାରା
ମାନବ ମାନବ ମଧ୍ୟେ, ତେଜିବାକୁ ଅଶ୍ରୁ
ଯେ ସାଧନା ନାହିଁ ଜାଣେ ଦୁଃଖେ ମାନବର,
କରୁଣାରେ ପୋଛିବାକୁ ଅବା ଦୀନ-ଗଣ୍ଡ,
ଯେ ତପସ୍ୟା ଦୁଃଖ-ଦଗ୍ଧ ନର-ନାରାୟଣେ
ପିଠି କରି ପଶେ ବନେ, ଈଶ୍ୱର-ସନ୍ଧାନେ,
ବିଧାତାର ଦୃଶ୍ୟମାନ ବିରାଟ ସୃଷ୍ଟିରେ
ନ ଦେଖି ଯେ ଭଗବାନ, ଖୋଜେ ବୁଜି ଆଖି,
ଲୋଡ଼ା ନାହିଁ ଗୁରୁଦେବ, ସେ ଧର୍ମ ମୋହର ।
କରୁଣାର ଜନ୍ମସ୍ଥଳ ଜନନୀର ବକ୍ଷ
ଶୁଷ୍କ ଆଜି ଦୁର୍ଭିକ୍ଷର ବୀଭତ୍ସ ପରଶେ—
ମୁମୂର୍ଷ ସନ୍ତାନେ ଟାଣି ଶୁଷ୍କ ତା ବକ୍ଷୋକୁ
ପୋଡ଼ାଇ ଆପଣା-ହସ୍ତ-ପ୍ରସ୍ତୁତ-ବହ୍ନିରେ
କରୁଣ ତୃପ୍ତିରେ ମାଆ ଖାଏ ଦଗ୍ଧ ମାଂସ ।
ଏହି ଯଦି ସୃଷ୍ଟି, ଏହି ମୂକସ୍ରଷ୍ଟା ତା'ର,
ଲୋଡ଼ା କିଛି ନାହିଁ ମୋର ତାକୁ ଖୋଜିବାରେ !
ଶିବାନନ୍ଦ— ଅତି ଉଦ୍‌ବେଳିତ ମୁଁ ଯେ ଦେଖୁଛି ତମକୁ !
ଶାନ୍ତ ହୁଅ ଜୀବାନନ୍ଦ ! ଶୁଣ ବତ୍ସ, ବାଣୀ !
ସାରା ଦିନ ଥିଲା ଆଜି ସୌରକରୋଜ୍ଜ୍ୱଳ
ଏବେ ଦେଖ ମାଡ଼ିଆସେ ରଜନୀର ଛାୟା ।
ଦଣ୍ଡେ ପରେ ବାହାରକୁ ଯିବାକୁ ପହଣ୍ଡେ
ହେବ ମନେ ବିଭୀଷିକା । ହେବେ ପ୍ରୟୋଜନ
ସାଙ୍ଗ ସାଥୀ ଯିବାପାଇଁ ସେହି ପଥେ, ସ୍ଥାନେ

ଦିବାଲୋକେ ଥିଲା ଯାହା ଅତି ପରିଚିତ,
ଏକାନ୍ତରେ ନିରାପଦ, ଅତ୍ୟନ୍ତ ଆତ୍ମୀୟ ।
ତଥାପି ଲୋଡ଼ା ଏ ରାତ୍ରି । ତୀବ୍ର ସୌର ତେଜେ
ପୋଛିଦେଇ, କୃଷ୍ଣା ନିଶି କର୍ମକ୍ଳାନ୍ତ ଜୀବେ
ଶୀତଳ ତା ପକ୍ଷତଳେ ଦିଅଇ ଶୁଆଇ—
ଦୈନନ୍ଦିନ ଏ ଧରାର ନୀରସ ଜୀବନ୍ନୁଁ
ନେଇଯାଏ ଚିତ୍ତେ ସୁଖଲୋକେ ସ୍ୱପନର ।
ଏଣେ ପୁଣି ଆକାଶର ପ୍ରଶାନ୍ତ ଗମ୍ବୁଜେ
ଚକ୍ରବାଳୁଁ ଚକ୍ରବାଳେ ଅନନ୍ତ ପ୍ରାଚୁର୍ଯ୍ୟେ
ଦେଖାଏ ସେ ଚିତ୍ରପଟ ଜ୍ୟୋତିଷ୍କରାଶିର ।
ବିଧାତାର ସୃଷ୍ଟିଗଢା, ବାବା, ଏଇପରି
ବିପରୀତ-ଧର୍ମାତ୍ମକ ଅଗଣିତ ଯୁଗ୍ମେ,
ଆଲୋକ ଛାୟାର କ୍ରୀଡ଼ା, ଦିବସ ରାତ୍ରିର,
ଜୀବନ ମୃତ୍ୟୁର, ଦୁଃଖ-ସୁଖ-ଯନ୍ତ୍ରଣାର,
ଲାଗିଅଛି ଅହରହ ପଟ ପଟାନ୍ତର ।
ଏକ ପଟେ ସମ୍ଭବହିଁ ନୁହେଁ ଏ ସଂସାର,
କେବଳ ଉତ୍ତମେ ହେବ ଜୀବନ ଅସହ୍ୟ ।
ଲୋଡ଼ା ନିତ୍ୟ ନବ ନବ ଭିନ୍ନ ଅନୁଭବ,
ଲୋଡ଼ା ଜନ୍ମ, ଲୋଡ଼ା ମୃତ୍ୟୁ, ଅଶ୍ରୁ, ପରିହାସ,
ପ୍ରେମର ମାଧୁର୍ଯ୍ୟ ଆସେ ବିରହ-ମନ୍ଥନୁଁ ।
ବୁଝାଇଛି ପୁଣି ଆଗୁଁ ଦୃଶ୍ୟମାନ ଏହି
ଆକାଶୁଁ ଭୂତଳଯାଏ ବିରାଟ ବ୍ରହ୍ମାଣ୍ଡ,
ବିରାଟ ଧରଣୀ ଏହି,—ଧରିତ୍ରୀ ଶରୀରେ
ମାନବର ଏ ସଭ୍ୟତା, ସମାଜ, ସାମ୍ରାଜ୍ୟ,
ପ୍ରାସାଦ, ଉଦ୍ୟାନ, ସେତୁ, କୁଟୀ, ଦେବାଳୟ,
ବସନ, ଭୂଷଣ, ଧନ, ଯୌବନ, ବିବାହ—
ଏ ସମସ୍ତ କେବଳହିଁ ବାୟୁ-ବିକମ୍ପିତ
ଉପର ତରଙ୍ଗମାଳା ବ୍ରହ୍ମ-ବାରିଧିର;
କିନ୍ତୁ ସେ ବିକ୍ଷୋଭ ତଳେ ଅଗାଧ ଗଭୀରେ
ଶାନ୍ତ ସୁଖେ ସୃଷ୍ଟି-ମୂଳ ସ୍ଥିତ ଆପଣାର
ଜ୍ୟୋତିର୍ମୟ ଭୁବନର ଉଦାର ପ୍ରସାରେ ।

ଉର୍ମି ଯେହ୍ନେ ନୁହେଁ ସିଂଧୁ, ଜୀବନ ମୃତ୍ୟୁର
ଏ ଯେଉଁ ଲହରୀ ଲୀଳା ପ୍ରତି ମୁହୂର୍ତ୍ତରେ
ଉଠୁଛି ପଡୁଛି ଜୀବ-ମାନବ ସମାଜେ,
ସେ ନୁହେଁ ଈଶ୍ୱର; ନୁହେଁ ସୃଷ୍ଟି-ପରିମାପ ।
ଜୀବନ ମରଣ ପାରେ ମହାଜୀବନର
ଯଦି ଚାହ ପରିଚୟ, ଦୁର୍ଭିକ୍ଷ-ସୁଭିକ୍ଷ,
ଦୁଃଖ-ସୁଖ, ଜନ୍ମ-ମୃତ୍ୟୁ, ଦାରିଦ୍ର୍ୟ-ସୌଭାଗ୍ୟ,
ଏ ସର୍ବ ବିଚାର କରି ନିବୃତ୍ତ, ନିରୁଦ୍ଧ
ସମର୍ପିତ ଚିତ୍ତ କର ସାଧନ ପନ୍ଥାରେ ।

ଜୀବାନନ୍ଦ— ବିକ୍ଷୁବ୍ଧ ଉର୍ମିର ଜୀବ ମୁଁ ଯେ ଗୁରୁଦେବ,
ଉର୍ମିକୁ ବୁଝିବି ଆଗେ, ଚେଷ୍ଟିବା ଆଗରୁ
ଲଭିବାକୁ ପରିଚୟ ଅତଳ ସିନ୍ଧୁର ।
ଉର୍ମି ଯେ ସିଂଧୁର ଅଂଶ,—ଜୀବନ-ମରଣ,
ସୁଖ-ଦୁଃଖ, ହାସ୍ୟ-ଅଶ୍ରୁ ସେ ଏକା ଈଶ୍ୱର
ନ ହେବ କିପରି କହ ? ସୃଷ୍ଟି ଆଉ ସ୍ରଷ୍ଟା
ଭିନ୍ନ ଭିନ୍ନ ହେବା ଖାଲି ନୈୟାୟିକ ଯୁକ୍ତି ।
ଯେ ଦିନ ଗୃହସ୍ଥ ଘରେ ଆକ୍ରମଇ ବ୍ୟାଧି
ରୋଗୀ ଆଉ ସମଦୁଃଖୀ ଆତ୍ମୀୟ ଜନର
ଚକ୍ଷେ ନାହିଁ ପାରେ ଦେଇ ଯେହ୍ନେ ସୁଖ-ନିଦ୍ରା
ଏ ଶୀତଳ ନିଶୀଥିନୀ,—ନିରନ୍ନ ଚିତ୍କାରେ,
ହୃଦୟ-ପଞ୍ଜର-ଭେଦି କରୁଣ କ୍ରନ୍ଦନେ
ଆସନ୍ନ-ମରଣେ ଅନ୍ନ-ଅନ୍ୱେଷୀ ଯୁବାର;
ଉଦର-ଜ୍ୱାଳାରେ ସାଧ୍ୱୀ ଉଚ୍ଚକୁଳ-ବାଳା
ଦେଖି ଯେ ନ ଥିଲେ ଦିନେ ନିଜ ଗ୍ରାମଦାଣ୍ଡ
ବୁଲିବାରେ ସେଇ ଆଜି ଗ୍ରାମୁଁ ଗ୍ରାମାନ୍ତରେ
ଅଭକ୍ଷ୍ୟ ତଣ୍ଡୁଳ ଆଶେ ପଣନ୍ତ ପତାଇ,
ଦେଖିବାରେ ସ୍ନେହମୟୀ ଜନନୀ ଶେଷରେ
ବହୁ ଦିନ କ୍ଷୁଧାକ୍ଲେଶେ ଫିଙ୍ଗି ସନ୍ତାନରେ
ପଡ଼ିଯିବା ପଥପ୍ରାନ୍ତେ ମରଣ-ଅବଶେ
ଶୁଣି ନ ଶୁଣିଲା ପରି ଶିଶୁର କ୍ରନ୍ଦନ;
ଗୁରୁଦେବ, ଶାସ୍ତ୍ରର ଏ ଚିଦାନନ୍ଦ ସିଂଧୁ

ପୁଣି ଆଉ ତୁଙ୍ଗ ତତ୍ତ୍ୱ ସେହି ସମ୍ବନ୍ଧିକ
ଉଡ଼ିଯାଏ ବାଷ୍ପ ହୋଇ, ନ ଛୁଅଇଁ ପ୍ରାଣେ ।
ଶୁଣି କି ଅଛନ୍ତି ଦେବ, ସନାତନ କଥା ?
ସନାତନ—ସେ ସୁନ୍ଦର ବ୍ରାହ୍ମଣତନୟ
ଆସେ ବହୁ ଦିନ ଯିଏ ଆରତିର ବେଳେ;
ଆଣେ ମଧ୍ୟ ବେଳେ ବେଳେ ନିଜ ତୋଟାଗଛୁଁ
ସୁନ୍ଦର କୁସୁମ ଫଳ ନଇବେଦ୍ୟ ଲାଗି—
ତାକୁ ଆଜି ଦେଖିଲି ମୁଁ, —ଅନାହାର-ଶୀର୍ଣ୍ଣ,
ବିବର୍ଣ୍ଣ, ବିସ୍ଫୀତ-ପଦ, ଯଷ୍ଟିହସ୍ତ, ଚାଲେ
ଆଣିବାକୁ କେଉଁଠାରୁ ତଣ୍ଡୁଳ ସାମାନ୍ୟ ।
ଡାକିଲି ମୁଁ ଦେଖି ତାକୁ, 'ଆସ ସନାତନ,
ଆସ ଭାଇ, ଦେଉଳରେ ପାଇ ଯା ପ୍ରସାଦ ।'
ନିଷ୍ଠା ନାସ୍ତି କଲା ସେହୁ, କହିଲା ବିନୟେ,
'ଘରେ ମୋର ପାଞ୍ଚ ପ୍ରାଣୀ, ନନା, ମା, ଭଗିନୀ,
ମୁଠିଏ ଚାଉଳ ନେଲେ ପାଣି ପେଜ କରି
ସମସ୍ତେ ପାଇବେ ହେଲେ ମୁନ୍ଦିଏ ମୁନ୍ଦିଏ ।
ଦେଇ ତ ପାରିବ ନାହିଁ ଏତେ ଲୋକେ ଭୋଗ ?
ସେମାନେ ଉପାସେ ଥାଉଁ ଖାଏ ମୁଁ କିପରି ?
ଯାଉଛି ମୁଁ ଏଇବାଟେ, ଶୁଣୁଛି ନରେନ୍ଦ୍ର
ବାଣ୍ଟୁଛନ୍ତି ଆଜି ପରା ଚାଉଳ, ପଇସା,—
ଦେଖେ କି ଭାଗ୍ୟରେ ଅଛି । ସ୍ୱାମୀଜୀଙ୍କି ମୋର
ସାଷ୍ଟାଙ୍ଗ ଜଣାଇଦେବ, ଜଞ୍ଜାଳରେ ପଡ଼ି
ଯାଇ ତ ପାରୁନି ଆଉ'—

'ଗଲା ଚାଲି କହି,

ସ୍ତମ୍ଭୀଭୂତ ହୋଇ ଠିଆ ରହିଲି ସେଠାରେ ।
ଗୁରୁଦେବ, ସନାତନେ ଜାଣନ୍ତି ଆପଣେ
ବିଶୁଦ୍ଧ ଚରିତ୍ର ତା'ର, ଧାର୍ମିକ ସ୍ୱଭାବ;
ସେହି ସନାତନ ଆଜି ମରେ ନିରାହାରେ
ପିତା, ମାତା, ଭଗ୍ନୀ ଘେନି । ମୋପରି ଅଧମ
ଦେବାଳୟ-ଅନ୍ନ ଖାଇ କେମନ୍ତେ ନିଶ୍ଚିନ୍ତେ
କରିବ ବେଦାନ୍ତ ଚର୍ଚ୍ଚା ?

ବୁଲୁଛନ୍ତି ତେଣେ
ଖ୍ରୀଷ୍ଟାନ୍ ପାଦ୍ରିର ଦଳ ନଗରେ ନଗରେ,
ଦଳ ଦଳ ହିନ୍ଦୁ ଆଜି ଦୁର୍ଭିକ୍ଷର ଦାଉ
ନ ସମ୍ଭାଳି ଆଶ୍ରୁଛନ୍ତି ଖ୍ରୀଷ୍ଟୀୟ ପ୍ରାଚୁର୍ଯ୍ୟ ।
ସବୁ ଦେଖି, ସବୁ ଶୁଣି କେମନ୍ତେ-ସ୍ୱାମିଜୀ,
ନିଶ୍ଚିନ୍ତରେ ବସି ଏଥି ମୁମୁକ୍ଷୁ ସାଧନା
କରିବା ଏ ଦେବାଳୟେ ?

ଶିବାନନ୍ଦ—କହୁଛ ଯା ବତ୍ସ,
ଦେଖୁଛି ତା ଅର୍ଥଯୁକ୍ତ । ଅନ୍ଧକାରେ ସୁପ୍ତ—
ମନୁଷ୍ୟ-ନୟନେ ଯଦି ପଡ଼ଇ ସହସା
ପ୍ରଦୀପ୍ତ ଆଲୋକଧାରା, ସେ ଯେହ୍ନେ ହୁଅଇ
ଅନ୍ଧୀଭୂତ କେତେ କ୍ଷଣ ଆଲୋକ-ଔଜ୍ଜ୍ୱଲ୍ୟେ,
ତୁମର ଏ ବିନାଶର କରୁଣ ବର୍ଣ୍ଣନା
ଏକ ଦିଗେ କ୍ଷୁବ୍‌ଧଚିତ୍ତ, ଅନ୍ୟେ ହତବୁଦ୍ଧି
କରି ପକାଉଛି ମତେ । ସୂକ୍ଷ୍ମ ମୋ ବେଦାନ୍ତ
ଦୈନ୍ୟର ଶୀତରେ ହୋଇଆସେ ଜଡ଼ୀଭୂତ;
ଭାବିନାହିଁ ପାରେ ମୁହିଁ ଦେବି କି ଉତ୍ତର;
କି ଅବା କର୍ତ୍ତବ୍ୟ ମୋର !

ତେବେ ତୁମେ ଯାଅ,
ଯାଅ ବତ୍ସ ଜୀବାନନ୍ଦ, କର ଜୀବସେବା,
ଦୁର୍ଭିକ୍ଷର ଦନ୍ତାଘାତୁଁ ରକ୍ଷା ଯାଇ କର
ପାର ଯେତେ ହତଭାଗ୍ୟ ଶିଶୁପୁତ୍ରକନ୍ୟା,
ମୁମୂର୍ଷୁର ମୁଖେ ଦିଅ ଢାଳି ଶେଷ ଜଳ,
ଶାନ୍ତିରେ ମରୁ ସେ ହେଲେ ବନ୍ଧୁହୀନ ଯେହୁ
ନିଃସମ୍ବଳ, ନିଃସହାୟ; ହୁଅ ଜୀବାନନ୍ଦ,
ଦେବତାର ଦୂତରୂପେ ଠିଆ ତା ସମୀପେ,
ପୋଛିଦିଅ ଅଶ୍ରୁଧାର, ସଂଚାଳ ଅଙ୍ଗୁଳି
ରୁକ୍ଷ କେଶେ ନିରନ୍ତର, ନ ଦିଅ ବା କିଛି ।
ଜାଣନ୍ତୁ ସେ ଦୀନେ ହେଲେ ଶେଷ ନିଃଶ୍ୱାସରେ,
ମାନବର ଅନୁକମ୍ପା ପ୍ରତିବେଶୀ ପ୍ରତି ।
ଯାଅ ବତ୍ସ, ନିଃସ୍ୱ ହସ୍ତେ କରିବାକୁ ମୃତ୍ୟୁ

ସ୍ନେହସ୍ନିଗ୍ଧ ତାହାଙ୍କର ଜୀବନ ଯାଙ୍କର
ହୋଇଅଛି ନିଃସ୍ୱ, ରିକ୍ତ, ରୁକ୍ଷ, ହାହାମୟ ।
ସେଇ ତବ କର୍ମଯୋଗ, ଜ୍ଞାନ ସାଧନାର
ପ୍ରଥମ ପାବଚ୍ଛଶ୍ରେଣୀ, ମୁକ୍ତିର ଆଗରୁ
ସେବାଧର୍ମେ ବଂଧନର ସୂକ୍ଷ୍ମ-ଉନ୍ମୋଚନ ।
ଯାଇଥିଲି ଭୁଲି,
ତରୁଣର ଅଙ୍ଗ ଚାହେ କର୍ମପରମ୍ପରା—
ବିରୋଧ, ସଂଗ୍ରାମ, ସୃଷ୍ଟି, ଜୟ, କୋଳାହଳ—
ଜରାର ମନନ—ଧ୍ୟାନ ନୁହେଁ ତା ସାଧନା,
ତାରୁଣ୍ୟକୁ ସୁକର୍ମରେ କରିବା ପ୍ରେରିତ
ବାର୍ଦ୍ଧକ୍ୟର ଶ୍ରେଷ୍ଠ କର୍ମ, ଶେଷ କରଣୀୟ ।
ଯାଅ ଫେରି ସୁଖ ଦୁଃଖ କର୍ମର ସଂସାରେ
ପାପେ, ଅନ୍ଧକାରେ, ଦୈନ୍ୟେ, ଭେଟ ଯା ସଂଗ୍ରାମେ;
ସମାଜକୁ ମହତ୍ତର, ଧରିତ୍ରୀ ସୁନ୍ଦର
କରି, ମାରି ଜୟଟୀକା ଭାଲେ ନରତ୍ୱର
ଆସ ଫେରି, ସେହି ତବ ପ୍ରଥମ ସାଧନା,—
ସୃଷ୍ଟି ସ୍ରଷ୍ଟା ଯହିଁ ବ୍ୟସ୍ତ ନିରସ୍ତ ସଂଗ୍ରାମେ,
ଆଦ୍ୟନ୍ତ ବିହୀନ ଏଇ ନିତ୍ୟ ବିବର୍ତ୍ତନେ
ଅ-କର୍ମ କିପରି ହେବ ସାଧନାର ପନ୍ଥା ?
ଯାଅ ବତ୍ସ, କର କର୍ମ, କର ପ୍ରତିଷ୍ଠିତ
ଆଲୋକର, ଆନନ୍ଦର, ନ୍ୟାୟର ବିଜୟ ।
ଆଲୋକହିଁ ଆନନ୍ଦହିଁ ରୂପ ବିଧାତାର ।

## (ତୃତୀୟ ଦୃଶ୍ୟ)

[ଦୁର୍ଭିକ୍ଷଗ୍ରସ୍ତ ଏକ ପଲ୍ଲୀର ଦାଣ୍ଡ । ଯେଉଁମାନେ ଏପର୍ଯ୍ୟନ୍ତ କୌଣସି ପ୍ରକାରେ ଦି' ମୁଠା ଖାଇ ବଞ୍ଚିଛନ୍ତି ଏପରି ଦୁଇଟି ଲୋକର ପ୍ରବେଶ । ସେମାନେ କଙ୍କାଳାବଶେଷ ନ ହେଲେହେଁ ତାଙ୍କର ଦେହ ମୁହଁରେ ଖାଦ୍ୟାଭାବର ଛାପ ସ୍ପଷ୍ଟ ।]

ନନ୍ଦ— କୁଆଡ଼େ ଯାଉଛୁ କାଶୀ ?
ଆସୁ ମୁଁ ଯେ, ଦେଖିଲି ବାଟରେ
ଭାଇ ତୋର, କୁଣ୍ଡୁନିଆ ଦେଉଳର ପଛ-କାନ୍ଥତଳେ

ଆଁ-ଆଁ କରି ଧକାଉଛି, ଜିଭ ତା'ର ପଡ଼ିଛି ବାହାରି ।
ଯାଉଅଛି ଘୁଷୁରି ଘୁଷୁରି,
ସ୍ଥାନେ ସ୍ଥାନେ ଛିଣ୍ଡି ତେଣୁ ଦେହ
ରକତରେ ଦିଶେ ବିକଳାଙ୍ଗ,
ଭଲଗ୍ନ ସେ କହିଲେ ତ ଚଳେ ।
ଯାଅ ଯା, ଫେରି ଯା ତୁରେ
ପାଟିରେ ତା ଦିଏ ମନ୍ଦେ ପାଣି
ଯେତେ ଭିନେ ହେଲେ ମିଶେ
ଭାଇ ତ ସେ—ଜନ୍ମ ଏକ ପେଟୁ !

କାଶୀ— କା କଥା ବୁଝିବି କକା ?
ଯେଝା କଥା ତାକୁ ତ ଅଥୟ,
ଦେଖୁଛ ତ ଆଖି ଆଗେ ନିଜେ
ମନିଷ ମନିଷ-ମାଂସ ଖାଉଛି ଏ କାଳେ ।
ଖାରା ଦୁଇ ଦିନ ହେଲା ପଡ଼ି ନାହିଁ ମିଶେ ମନ୍ଦେ ପାଣି
ଏ ପେଟରେ ମୋର କକା,
ଶେଷ ଥାଳିପଟ ବିକି କୃଷ୍ଣ ସାହୁଠାରୁ
ଆଣିଥିଲି ପୋଷେ ଯାହା ଫୁଟାଇ ତାହାକୁ
କିଛି କିଛି ପାଇଥିଲୁଁ ପାଣି ପେଜ କରି
ସାତପ୍ରାଣୀ ପ'ରଦିନ ।
ଭାରିଯା ସେ ନାହିଁ ଖାଇ କିଛି,
ସବୁ ଦିଏ ଢାଳି ପିଲା-ମୁଖେ,
ଏବେ ତେଣୁ ବହୁ ନିରାହାରେ
ଧରିଲାଣି ମଲା-ଶେଯ ।
କହ କକା, ଏଥିରେ ମୁଁ
ବୁଝିଥା'ନ୍ତି କେତେବେଳେ ଯାଇ
କୃଷ୍ଣନିଆ କି କରେ ତା ଘରେ ।

ନନ୍ଦ— କି କାଳ ଦେଖିଲୁ ସତେ !
ଭାରିଯା ତୋହର
ନିଜ ପେଟ ମାରି ହେଲେ ଖୁଆଏ ଛୁଆଙ୍କୁ,
ବଟିଆର ସ୍ତିରୀ
ବଟିଆକୁ ଗଣ୍ଡେ ହେଲେ ଦେଲାନି ଖୁଆଇ

ଶାନ୍ତିରେ କୌଣସି ଦିନ ।
ସବୁବେଳେ ଝିଙ୍ଗାସିବ
କରିବ ଚିତ୍କାର
'ଖାଇଗଲା' 'ଖାଇଗଲା' 'କି ଦେବି ପିଲାଙ୍କୁ',
ଶେଷେ ଆଜି ସହି ନାହିଁ ପାରି ତା କଟୂକ୍ତି
ବଟିଆ ଦେଇଛି ତାକୁ ଖାଇବାର ଛାଡ଼ି
ଏଷା ମାଡ଼,
ଦରମରା ହୋଇ ସେ ପଡ଼ିଛି ।
ପିଲାଗୁରା ଥୋକେ ବେଳ ଛାଡ଼ିଲେ ବୋବାଳି
ତା'ପରେ ଗଲେ ସେ ସବୁ କାହିଁ କେ କୁଆଡ଼େ,
ଘର ଏବେ ଶୂନ୍‌ଶାନ୍ ।
କାଶୀ– ଭୁଶୁଡ଼ି ଯାଉଛି ଯହିଁ ମାଆ-ପୁଅ ସ୍ନେହ
ସ୍ୱାମୀ-ସ୍ତ୍ରୀର କଥା ତହିଁ ଆଣ ବିଚାରକୁ ?
ଭଗିଆ ତା' ଝିରୀଟାକୁ ଓଟାରି ଓଟାରି
ଫିଙ୍ଗିଦେଲା ମଶାଣିରେ, ମଲା ବେଙ୍ଗ ପରି,
ସେହିଠାରୁ ଫେରି ନିର୍ବିକାର
ମାଛ ମାରି ପାଖ ନାଳୁଁ
ପୋଡ଼ି ଖାଇ ଶାନ୍ତ କଲା ସଦ୍ୟ ଜଠରାଗ୍ନି ।
କି କରନ୍ତା ଆଉ ? କି କରନ୍ତା କହ କକା ?
ନନ୍ଦ– ଶୁଣିଛୁ ନା ଆର ଗାଆଁ ବ୍ରାହ୍ମଣର କଥା ?
ମହନ୍ତର ଭୟେ,
ବୀର ପଣ୍ଡା, କାଳେ ତାର କୁଟୁମ୍ବରୁ କେହି
ଯିବେ ଛତ୍ରେ ଅବା ନୀଚ ଘରେ ଯିବେ ଖାଇ,
ଏଥିଲାଗି ସମସ୍ତଙ୍କୁ ରୁଣ୍ଡ କରି ଘରେ
ପକାଇ ଦେଇଛି ତାଲା,
ଗୋରୁ ଯେହ୍ନେ ରଖନ୍ତି ଗୁହାଳେ ।
ପେଟର ଜ୍ୱାଳାରେ କେହି ଚେଷ୍ଟା କରେ ଯଦି
ଲୁଚି ଗଳି ଯିବ କାହିଁ,
ଧରି ଆଣି ପୁଣି
ଠେଙ୍ଗେଇ ନିଷ୍ଠୁରେ
ପୂରାଉଛି ପୁଣି ଘରେ !

ଶୁଣିଛି ତଥାପି,
ଏସବୁ ଆକଟ ସତ୍ତ୍ୱେ ଏକ ତା ଝିଅାରୀ
ଆଉ ଜଣେ ପୁଣି ତା'ର ବିଧବା ଭାଉଜ
ଖସି ଭାଗିଲେଣି କାହିଁ,
ଦେହ ବିକି ରଖିବେ ବା ପ୍ରାଣ
ଦୂରେ କାହିଁ ରେଙ୍ଗୁନେ, ଗଞ୍ଜାମେ ।
କାଶୀ— ଦଶରା ରାତ୍ରରେ ଗାଆଁ ଦାଣ୍ଡ ଚମକାଏ
ଯିଏ ବୀର ପାହୁଲରେ—ମାଲ ମାଗୁଣିଆ,
ବାଧ ହୋଇ ଗଲା କାଲି ଖାଇବାକୁ ଛତ୍ର ।
ଦଳାଇ ତ ପ୍ରତିନିତ୍ୟ ବିକି କଂସା ଥାଳି
କେଉଁମତେ କାଟେ କାଳ ଖୁଦ କାଞ୍ଜି ଖାଇ ।
ଶନିଆ, ଭଗତା, ଦୀନା, ଶାମ, ବଉଳୁଆ
ଚାଲୁଥିଲେ ଷଣ୍ଢପରି ଫୁତ୍‌କାରି ଯେ ଦାଣ୍ଡେ,
ବାଡ଼ି ଧରି ଚାଲୁଛନ୍ତି, ଫୁଲା ହାତ ମୁହଁ,
କେତେକ କଟକ, ପୁରୀ ଗଲେଣି ପଳାଇ,
କପାଳରେ ଥିଲା ଶେଷେ ହେବାକୁ ଭିଖାରି ।
ସରିଲାଣି ବିଲରୁ କନକା,
କଇଁମୂଳ, କଇଁନାଡ଼ ଯେତେ ଯାହା ନାଳେ ଗାଡ଼ିଆରେ
ସବୁ ଶେଷ, କିଛି ନାହିଁ କି ଖାଇ ବଞ୍ଚିବା?
ବସୁନ୍ଧରା ବନ୍ଧ୍ୟା ହେଲା ଅଭାଗ୍ୟ କାଳକୁ ।
ନନ୍ଦ— ମୋ କଥା କହିବି କିସ ? ଭଉଣୀ-ଭିଣୋଇ-
ଦୟାରେ ମୋ କାଳ ସିନା ଯାଉଅଛି ଚଳି,
ନ ହେଲେ ଏ କାଳେ
ବୁଡ଼ନ୍ତାଣି କେଉଁ ଦିନୁଁ ନାମ ଧାମ କୁଳ
ନନ୍ଦ ନାହାକର ।
ଏବେ, ଯାଉଛୁ କୁଆଡ଼େ ?
କାଶୀ — ଯାଉଛି ମୁଁ ପୁଣି ସେହି କୃଷ୍ଣ ସାହୁ ପାଖେ,
ଦେବି ବଂଧା କୂଅପାଖ ସାନ ତଳିଖଣ୍ଡି,
ନେଇ ଯଦି ଦିଏ କିଛି ଚାଉଳ ମାଣିଆ
ବଂଚି ରହୁ ଏ ପ୍ରାଣ ଆଉ ଦିନା କେତେ,
ବଂଚୁ ବଂଚୁ ଏହିପରି ଯାଉ କେତେ କାଳ ।

କି ଉପାୟ ଅଛି ଆଉ ?
ଗୋଡ଼ ହାତ ଚଳୁ ନାହିଁ, ଦି'ଦିନ ଉପାସ,
ମଝିଆଁ ଟୋକାଟା ଭୋଖେ ଛାଡୁଛି ଯେ ରଡ଼ି
ସେ କଥା ପଡ଼ିଲେ ମନେ, ହୁଅଇ ଭାବନା
ଏଇକ୍ଷଣି ତେଜ୍ୟା କରି ଦିଅନ୍ତି ଏ ପ୍ରାଣ ।
କି ପାପର ଫଳ ଏ ଯେ
କେଉଁ ଜନ୍ମେ କା'କୁ
ଭୋଖେ ମାରିଥିଲୁ ଅବା, ପାଉଛୁ ତା ଫଳ ।
ମାରିବେ ତାରିବେ ସେହି କରିଛନ୍ତି ବିଜେ
ପଥର ଘରରେ ଯେହୁ ପାଉଛନ୍ତି ପୂଜା ।

(ଦୁହେଁ ନିଷ୍କ୍ରାନ୍ତ । ପଛେ ପଛେ ଦଳେ କଙ୍କାଳମାତ୍ରାବଶେଷ କାଙ୍ଗାଳଙ୍କର ପ୍ରବେଶ ।)

ପ୍ରଥମ କାଙ୍ଗାଳ— ଦେଖୁଛୁ ପବନାଭାଇ, କିଛି ନାହିଁ ପାଇ
ଦାନ୍ତେଇ ଦାନ୍ତେଇ ଚୋପା ଏଇ ତାଳଟାରୁ,
ଏଇ ଦେଖ୍ ସଫା କରି ଦେଇଛି କିପରି,
ମୂଷା ବି ନ ଥାନ୍ତେ ପାରି !

ଦ୍ୱିତୀୟ କାଙ୍ଗାଳ— ଆଜି ମୁଁ ଖାଇଛି ଘାସ,
ପିଇଅଛି ପଙ୍କ,
ଦାମିଆର ଗାଈ ସାଥେ
ଠିକ୍ ଗୋରୁ ପରି ।
ପେଟ ଏବେ ଆସୁଛି ଓଲାରି
ବାନ୍ତି-ବାନ୍ତି ମାଡୁଅଛି ଖାଲି ।

ତୃତୀୟ କାଙ୍ଗାଳ— ତୋଠେ ତୋଠେ ବାରିପଟେ
କିଛି ଦିନ ହେଲା
ଅଇଁଠାହିଁ ଥିଲା ମୋର ଏକାନ୍ତ ସମ୍ବଳ ।
ଆଉ ମୁଁ ତ ଦେଖୁ ନାହିଁ ଅଇଁଠା ବି କାହିଁ
କେମନ୍ତେ ଉଦରେ
ହେବ ମୋର ଅଗ୍ନି ଶାନ୍ତ ?

ଚତୁର୍ଥ କାଙ୍ଗାଳ— ଆଜି ମୁଁ କରିଛି ଏକ ନୂତନ ପରୀକ୍ଷା,
ଦଳେଇର ବାରିପଟେ ଦେଖିଲି ପଡ଼ିଛି
ବିରାଡ଼ିର ମଲା ଦେହ ।
କାଠି କୁଟା ଆଣି କିଛି ଜଳି ଟିକେ ନିଆଁ,

ଦେଲି କରି ସେକାସେକି । ଛଡ଼ାଇ ଚମଡ଼ା
ଧୀରେ ଅଧାସିଝା ମାଂସ ଖାଇଲି ଛଡ଼ାଇ ।
ଦଳାଇର ଛୋଟଛୋଟ ପିଲେ,
ଦୂରେ ହୋଇ ଠିଆ, କହୁଥା'ନ୍ତି କରି ପାଟି
'ନିଧିଆଟା ବାୟା ହେଲା, ଖାଇଲା ବିରାଡ଼ି ।'

ପଞ୍ଚମ କାଙ୍ଗାଳ— ଧିକ୍ ଏ ଉଦରଜ୍ୱାଳା,
ନାହିଁ ଥିଲେ କରି ମହାପାପ
କେଉଁ ଜନ୍ମଜନ୍ମାନ୍ତରେ,
ହୁଅନ୍ତା ମନୁଷ୍ୟ କିପାଁ ଏତେ ହନ୍ତସନ୍ତ ?
ଛୋଟ ମୋର ପିଲା-ମୁଖୁଁ ଖାଇଲି ଛଡ଼ାଇ
ସାମାନ୍ୟ ଗଣ୍ଡିଏ ଖୁଦ କ୍ଷୁଧା ଅତ୍ୟାଚାରେ ।
କାନ୍ଦିବାରୁ ପିଲା
ମାଇଲି ମୁଁ ପୁଣି ତାକୁ ନିଷ୍ଠୁରେ ବାଡ଼ିରେ ।
ସେଇ କଥା ଭାଳି ଭାଳି ହୁଅଇ ଆଉଟି
ପ୍ରାଣଟା ମୋହର ଆଜି ।
ନାହିଁ ଖାଇ କିଛି
ପ୍ରାଣଟା ଯାଉ ବା ଚାଲି ଧୀରେ କାହିଁ ପଡ଼ି
ଆଉ ଅନ୍ନପାଇଁ କାହିଁ ଯିବି ନାହିଁ ଖୋଜି ।

ପ୍ରଥମ କାଙ୍ଗାଳ— ଘରେ ବସି ଯାଆ ତୁ କାନ୍ଦିବୁ,
ଦେଖାଇବୁ ପୁଅରେ ମମତା ।
ଏଠିକି ଆସିବା ତୋର କିବା ଦରକାର ?
ଶୁଣ ଭାଇ,
ଧର ମୋର ସାଥି,
ଆସ ଯିବା ମେଣ୍ଟ ବାଂଧି କୃଷ୍ଣ ସାହୁ ଘରେ
ସମସ୍ତ କାଙ୍ଗାଳଯାକ ଘେରିବା ତାହାରେ
ଆଣିବା ବାଡ଼େଇ ପିଟି ଯା' ଥିବ ତା' ଘରେ ।
ଅମାର ଅମାର ଧାନ ରହିଅଛି ଛନ୍ଦା
ଦେଖୁ ଦେଖୁ ମରିବା ନା କ୍ଷୁର ଅନାହାରେ ?

ପଞ୍ଚମ କାଙ୍ଗାଳ ବ୍ୟତୀତ ଅନ୍ୟ ସବୁ—
ଭଲ କଥା, ଭଲ କଥା, ଚାଲ, ଚାଲ, ଭାଇ !

(ଏଇ ସମୟରେ ହଠାତ୍ ସନାତନର ପ୍ରବେଶ । କାଙ୍ଗାଳ ଦଳ ଟିକିଏ ଥମକିଗଲେ । ସନାତନର ଦେହ ଶୀର୍ଣ୍ଣ, ଅକାଳଜରାଗ୍ରସ୍ତ, କାଂଧରେ ଗୋଟିଏ ବୁଜୁଳା ।)

ପ୍ରଥମ କାଙ୍ଗାଳ— କୁଆଡୁ ଆସିଲ ଭାଇ, ଯାଉଛ କୁଆଡ଼େ ?

ସନାତନ— ଭିକ୍ଷା ମାଗି ମାଗି ବହୁ ଗ୍ରାମ ବୁଲି ବୁଲି
ଫେରୁଛି ମୁଁ, ଯିବି ପୁଣି ପୂରା ତିନି କ୍ରୋଶ ।

ଦ୍ୱିତୀୟ କାଙ୍ଗାଳ— ପାଇଛ କିଛି ନା ?
ଏବେ ମଧ୍ୟ ମିଳୁଛି କି ଭିକ୍ଷା
ସେସବୁ ଗ୍ରାମରେ କାହିଁ ?

ସନାତନ— ସବୁଠି ସମାନ ଦଶା ।
ବହୁ ଘୁରି ଘୁରି
ପାଇଛି ଦି'ମୁଠା ଏଇ ।
ଘରେ ତେଣେ ମୋର
ଚାହିଁଥିବେ ପାଞ୍ଚ ପ୍ରାଣୀ ଭୋଖେ ଆଟୁପାଟୁ ।
ଥାଅ ଭାଇ, ଯାଏଁ ମୁହିଁ
ଆଉ ବହୁ ଦୂର
ଗଲେ ଯାଇଁ ଗ୍ରାମ ମୋର ।

ତୃତୀୟ କାଙ୍ଗାଳ— ନାହିଁ ଯାଅ, ଶୁଣ କଥା, ଧର ଆମ ସାଥ୍
ସଂଗେ ସଂଗେ ପାଇବ ବହୁତ ।
ଦିନଯାକ ଘୁରି ଘୁରି ନାହିଁ ଯା ପାଇଛ
ଦଣ୍ଡକେ ମିଳିବ । ଯାହା ନ କରିଛ ଆଶା—
ଘରେ ବସି ଖାଇବ ମାସକ ।

ସନାତନ— ସଦାବ୍ରତ ଦେଉଛି କେ କାହିଁ ?
ଏ କଥା ତ ପଡ଼ି ନାହିଁ କାନେ ।
ଏଠାରୁ ସେ କେତେ ବାଟ ?
ଯିବା ତେବେ ଚାଲ ।

ଚତୁର୍ଥ କାଙ୍ଗାଳ— ଯିବା, କିନ୍ତୁ ଲୋଡ଼ା ଟିକେ ମନର ସାହସ ।
ନିଜପାଇଁ ନ ସାଇତି ଓଲୁ କେ ସେ ବାଣ୍ଟିବ ଚାଉଳ
ନଅଣ୍ଟିଆ ଏ କାଡାରେ ? ଆଜ ଏକ କରୁଛୁଁ ମସୁଧା ।
ଆମେ ଏଇ ଯାଉଥିଲୁଁ କୃଷ୍ଣ ସାହୁ ଘରେ,
ଆମ ଗାଁର ଧନିଷ୍ଠ ସାଧୁ ତ—
ଭର୍ତ୍ତି କରି ରଖିଅଛି ଅମାର ଅମାର,

ଏବେ ସେ ନ ପାଏ ବେଳ ଭରିବାକୁ ପେଡ଼ି
ସୁନାରେ, ଭୋଖିଲା-ହାତୁଁ ନିଏ ଯା' ସାଉଁଟି ।
ଚାଲ ଆମେ ଯିବା ସବୁ କାଙ୍ଗାଳର ଦଳ,
ଘେରିବା ତାହାର ଘର, କରିବା ଚିତ୍କାର,
ଲୁଟିବା ଭଣ୍ଡାର, ଖଳା ।
କରେ ଯଦି ପିଟାପିଟି, ମଲେ ବା ମରିବା,
ନ ଖାଇ ତ ମରିବାକୁ ଯାଉଅଛେ ପୁଣି ?

ସନାତନ — ନାହିଁ ଭାଇ, ଏ କାମ ମୁଁ ନାହିଁ କରିପାରେ ।
ସାମାନ୍ୟ ପେଟର ଲାଗି ହେବି ଡକାଇତ ?
କ୍ଷୁଧାପାଇଁ କରିବି ଅଧର୍ମ ?
ନନା ମୋର ନୈଷ୍ଠିକ ବ୍ରାହ୍ମଣ,
ପିଲାଦିନୁଁ ଅଛନ୍ତି ଶିଖାଇ,
ପରଦ୍ରବ୍ୟ ପରନାରୀ ନ କରିବ ଲୋଭ ।
ଭଗବାନ ସଭିଙ୍କ ଭରସା,
ମାରୁଛନ୍ତି ତାରୁଛନ୍ତି ସେହି ।
କୃଷ୍ଣ ସାହୁ-ବାପ କାଲି ମାଗୁଥିଲା ଭିଖ,
ଲକ୍ଷ୍ମୀ ଆଜି ବିଜେ ତାର ଘରେ ।
ଆଜି ଯେହୁ ପଥର କାଙ୍ଗାଳ
କାଲି ପୁଣି ହୋଇପାରେ ପ୍ରାସାଦ-ନିବାସୀ ।
ଭାଗ୍ୟଚକ୍ର ଉଠୁଛି ପଡ଼ୁଛି—
ଡକାଇତି, ଅପକର୍ମ କରିବି କିପାଇଁ ?

ପ୍ରଥମ କାଙ୍ଗାଳ — ବ୍ରାହ୍ମଣ ତ କଥା କହେ ଅତି ବଡ଼ ବଡ଼ ।
ଶୁଣ୍ ବଟୁ, ଧର୍ ଆମ ସାଥ;
ନଚେତ୍ ବାଂଧିଛୁ ଯାହା ବୁଜୁଳାରେ କାନ୍ଧେ,
ଏଇଠାରେ ଦେଇଯାଆ ।
ଆମେ ଏ ଅଞ୍ଚଳ ଲୋକେ, ଆମେ ଯାଉଁ ମରି
ତୁ ପୁଣି କିପାଇଁ ଆସିଥିଲୁଁ ଏ ଇଲାକେ ?
ଏଠୁ ଯା' ଗୋଟାଇ ନେଉ
ସେସବୁ ଆମର ।
ଏ ବଟିଆ, ଆରେ ଦୀନା, ଏ ନୀଳକଣ୍ଠିଆ,
ଧର ତାକୁ, ନ ହେଲେ ସେ କହିବ ପୁଲିସେ
କୁମ୍ପାନୀ ନାଚିବ ଆସି ଗୋଟି ଗୋଟି କରି ।

ଦ୍ୱିତୀୟ ଓ ତୃତୀୟ କାଙ୍ଗାଳ— ଠିକ୍ ଠିକ୍ । ଅଟକାଅ ।

(ସନାତନକୁ ଧରିପକାଇ ତା ବୁଜୁଳିଟା ଉଠାଇନେଲେ ।)

ପ୍ରଥମ କାଙ୍ଗାଳ— ଦେଖୁଛ ନା ଏ ବଟୁକୁ, ବହିନେଇଯାଏ
କେଯାଏ ଚାଉଳ ଆମ ଆଖି ଆଗେ ଆଗେ ।

ସନାତନ— ହାତଯୋଡ଼ି କହେ ଭାଇ, ଦିଅ ଛାଡ଼ି ମତେ
ତିନି ଦିନ ହେଲା ଘରେ ଘୋର ଉପବାସେ,
ପଡ଼ିଛନ୍ତି ନନା ବୋଉ ମୋର,
ମୋ ପେଟରେ ଅନ୍ନଦାନା ପଡ଼ି ନାହିଁ ଜମା
ବହୁ ଦିନ ଧରି ଜାଣ ।
ନିଏଁ ଯାହା ମୁଁ ଗୋଟାଇ
ସେମାନଙ୍କୁ ନିଜ ହାତେ ଦେବି ରାନ୍ଧି ବାଢ଼ି,
ସେମାନେ ଖାଇଲେ ଭାତ, ପିଇବି ମୁଁ ପେଜ ଟିକେ ମାତ୍ର;
ବ୍ରାହ୍ମଣକୁ ଉପବାସେ ମରାଇବ ଭାଇ ?
ଭୋଖିଲା କି ଭୋଖିଲାର କଷ୍ଟ ନାହିଁ ଜାଣେ ?

ପ୍ରଥମ କାଙ୍ଗାଳ— (ସନାତନର ବୁଜୁଳି ଖୋଲୁ ଖୋଲୁ)
ମାର୍ ତୋ ବ୍ରାହ୍ମଣ ।
ଜୀବ ଗଲାବେଳେ, ଆମ୍ଭ ଛଟପଟ ବେଳେ
ନିଆଁ ଚୁଲୀ ଧର୍ମକଥା ଶୁଣାଉଛି ଟୋକା ।

(ସହସା ଦୁଇଟି ଖ୍ରୀଷ୍ଟାନ୍ ପାଦ୍ରୀର ଗୀତ ଗାଇ ଗାଇ ପ୍ରବେଶ । କାଙ୍ଗାଳ ଦଳ ସନାତନକୁ ଛାଡ଼ିଦେଇ ଠିଆହେଲେ ।)

ପାଦ୍ରୀଦ୍ୱୟ— (ଗାନ)

ପ୍ରଭୁ ଯୀଶୁ ଦେବେ ପରିତ୍ରାଣ
ଆସ ପାପି, ଆସ ତାପି,
ଯିଏ ଯହିଁ ମାନବ ସନ୍ତାନ ।
ପାପ ଲାଗି କର ଅନୁତାପ
କ୍ଷମା ଦେବେ ସ୍ୱର୍ଗସ୍ଥ ସେ ବାପ,
ପ୍ରାପ୍ତ ହେବ ସକଳ କଲ୍ୟାଣ ।
ଆଶ୍ରା ଧର ପ୍ରଭୁ ଯୀଶୁଙ୍କର
ସବୁ ଭାରା ନେବେ ସେ ତୁମ୍ଭର
ତାଙ୍କଠାରେ ନାହିଁ ପ୍ରତ୍ୟାଖ୍ୟାନ ।

ପ୍ରଥମ ପାଦ୍ରୀ – ଶୁଣ ଭାଇ, ଆସ, ବୁଝ, ଯୀଶୁଙ୍କର ଅପାର ମହିମା;
ତାଙ୍କର ଆଶ୍ରୟ ନିଅ,
ସବୁ ଦୁଃଖ ହେବ ଦୂର—ଦୈହିକ, ଆତ୍ମିକ ।
ପ୍ରଥମ କାଙ୍ଗାଳ— ଚାହଁ ତମେ ହେବୁଁ କୀରସ୍ତାନ ?
ଜାତି କୁଳ ସାତପୁରୁଷର
ଛାଡ଼ି ଆମେ ପଶିବୁଁ ଅକୁଳେ ?
ଦ୍ୱିତୀୟ କାଙ୍ଗାଳ— କି କି ଲାଭ ମିଳିବ ଆମକୁ
କୀରସ୍ତାନ ହେଲେ ଧର୍ମ୍ମ ଛାଡ଼ି ?
ପ୍ରଥମ ପାଦ୍ରୀ – ଉତ୍ତମ ମନୁଷ୍ୟ ହେବ,
ପିଲାମାନେ ହୋଇବେ ଶିକ୍ଷିତ,
ନାହିଁ ଥିବ ଜାତି ଅତ୍ୟାଚାର,
ନାହିଁ ଥିବ ବ୍ରାହ୍ମଣ-ଠକାମି—
କାଠ ପଥରକୁ ନାହିଁ ଡାକି ଜଗନ୍ନାଥ,
ପ୍ରକୃତ ଉଦ୍ଧାରକର୍ତ୍ତା ଈଶ୍ୱରଙ୍କ ପୁତ୍ର
ଯୀଶୁଙ୍କ ଶରଣ ନେବ,
ବଞ୍ଚିବାକୁ ହେବ
ବିଶୁଦ୍ଧ ଜୀବନ ଯୀଶୁ-ଅନୁଚରରୂପେ ।
ତୃତୀୟ କାଙ୍ଗାଳ— ହଇରେ ପବନା,
ଏ ତ ମନ୍ଦ କଥା ନୁହେଁ,
କେତେ ତ ଡାକିଲେ ଗାଆଁ ଦେବୀ-ଦେବତାରେ;
ଚାଲ ଥରେ ମାରିବା ମୁଣ୍ଡିଆ
ନୂଆ ଏ କ୍ରୀସ୍ତାନୀ ଦିଅଁ ଯୀଶୁ ପାଦତଳେ ।
ନ ଖାଇ ମରିବା ଯେବେ ବାଟେ ଅବାଟରେ—
ମେହେନ୍ତର ଆସି
ଘୋଷାଡ଼ି ଫୋପାଡ଼ିଦେବେ ବିଲୁଆଙ୍କ ପାଇଁ ।
ଜାତି, ଧର୍ମ୍ମ, କୁଳ ଆଉ କାହିଁ ?
ଦୁର୍ଭିକ୍ଷରେ ଆଜି
ସମସ୍ତେ ତ ଏକାକାର,
କେ ପଚାରେ କା' କୁ ?
ଚାଲ ହେବା କୀରସ୍ତାନ,
କି କହ ରେ ସବୁ ?

ସନାତନ— ପେଟ-ଭୋଖ ପାଇଁ
ଛାଡ଼ିଦେବ ସାତ ପୁରୁଷର
ଜାତି-ଧର୍ମ, ଦେବ-ଦେବୀ ?
ବୁଢ଼ା ବୁଢ଼ା ହୋଇ
ଏଇ ବୁଦ୍ଧି ହେଲା ଶେଷେ ?
ଅମର କି ହେବ ଖାଇ କୀରସ୍ତାନୀ ଭାତ ?
କୀରସ୍ତାନ ହେଲେ ଯାଇ ମନୁଷ୍ୟର ଡାକ
ଶୁଣିବେ ବିଧାତା,
ନ ହେଲେ ନ ହୁଏ, ଏହା କଲ କି ବିଶ୍ୱାସ ?

ପ୍ରଥମ ପାଦ୍ରୀ— (ସନାତନଙ୍କୁ ଲକ୍ଷ୍ୟ କରି)
ଅନ୍ୟ ହିନ୍ଦୁ ହେଲେ ଖ୍ରୀଷ୍ଟିଆନ
ବ୍ରାହ୍ମଣର ବୁଡ଼ିବ ଯେ ଭେକ ।
ତୁମେ ଯଦି ରଖିବାକୁ ଚାହ
ଏ ସକଳେ ନିଜ ଧର୍ମେ,
ବଞ୍ଚାଅ ଏହାଙ୍କୁ ।
ଏଇ କି ତୁମର ଦିଅଁ, ଏଇ ତୁମ ଶାସ୍ତ୍ର
ମରୁଛନ୍ତି ସ୍ତ୍ରୀ-ବାଳକ ପୋକଜୋକ ପରି
କାତରେ ଡାକିଲେ ମିଶେ ନ ଶୁଣଇ କେହି ?

ପ୍ରଥମ କାଙ୍ଗାଳ— ଠିକ୍ ! ଠିକ୍ !
ବଞ୍ଚା ତ ବ୍ରାହ୍ମଣ,
ତେବେ ଯାଇ କହ ଧର୍ମ, ଦେବଦେବୀ କଥା ।
ନିଜ ପ୍ରାଣ ନିଜକୁ ଅରକ୍ଷ
ବେଟା ବୁଝାଉଛି ଧର୍ମ !

ସନାତନ— କରଯୋଡ଼ି କହୁଛି ମୁଁ ଭାଇ,
ସାତ ଦିନ ଉପାସୀ ମୁଁ, ଘରେ ମୋର କୁଟୁମ୍ବ ଉପାସୀ
ତଥାପି ଏ କଷ୍ଟ-ଲବ୍‌ଧ ଭିକ୍ଷାର ତଣ୍ଡୁଳ
ନିଅ ବାଣ୍ଟି, ହେଉ ତବ କ୍ଷୁଧା ପରିଶ୍ରାନ୍ତ ।
କ୍ଷୁଧା ଶାନ୍ତି ପରେ,
ସ୍ଥିରମନେ ଭାବି ଯଦି କରିବ ନିଶ୍ଚୟ
ତେଜିବାକୁ ନିଜ ଧର୍ମ, କର ଯାଇ ତେବେ ।
ମୁହିଁ ଗଲି ମୋ ବାଟରେ ।

(ସନାତନ ତା'ର ଚାଉଳବୁଜୁଲା ଛାଡ଼ିଦେଇ ଚାଲିଗଲା ।)

ପଞ୍ଚମ କାଙ୍ଗାଳ– (ସନାତନ ଆଡ଼କୁ ଅନାଇ)

ଶୁଣ ଭାଇ, ଶୁଣ ଭାଇ,
ମୁହିଁ ଯିବି ତୁମରି ସଙ୍ଗତେ ।
କ୍ଷୁଧା ମତେ ଅତୀତରେ ଯା କରିଅଛି ପଶୁ,
ଆଉ ଯେହ୍ନେ ନ କରେ ତା ।
ମରିବି ପଛକେ ପଥେ ତୁମରି ସଙ୍ଗରେ
ମରିବି ମନୁଷ୍ୟ ପରି,
ଅନ୍ୟ ଭୋଖିଲାର ମୁଖୁଁ ନ ଛଡ଼ାଇ ଅନ୍ନ
ମୋ ଉଦର ଶାନ୍ତିପାଇଁ । (ପ୍ରସ୍ଥାନ)

ପ୍ରଥମ କାଙ୍ଗାଳ– କଅଣ କହୁଛ ଏବେ ? ଯିବା କେଉଁ ଦିଗେ–

ସେ ବାଟେ ନା ଏ ବାଟରେ ?

(ସନାତନଆଡ଼କୁ ଓ ପାଦ୍ରୀଆଡ଼କୁ ନିର୍ଦ୍ଦେଶ କରି ।)

ଦ୍ୱିତୀୟ ଓ ତୃତୀୟ କାଙ୍ଗାଳ– କ୍ଷୁଧା ! କ୍ଷୁଧା !

ଭୋଖେ ଭାଇ, ଜଳୁଛି ଏ ପିଣ୍ଡ !
ଧର୍ମାଧର୍ମ ଥାଉ; ଥାଉ କେ ଭଲ, କେ ମନ୍ଦ,
ଚାଲ ଭାଇ , ସେଇ ସ୍ଥାନେ, ମିଳିବ ଯେଉଁଠି
ସିଝା ଭାତ ଗଣ୍ଡେ ଗଣ୍ଡେ ।
ଅନ୍ନମୟ ପିଣ୍ଡ,
ଅନ୍ନବିନା ହୁଏ ଆଟୁପାଟୁ,
ଅନ୍ନ ଆଗେ ପରେ ସବୁ
କହନ୍ତି ଯେ ଧର୍ମଫର୍ମ, ଜଗିଛନ୍ତି ଜାତି,
ଅନ୍ନ ତାଙ୍କୁ କରିଛି ନିଶ୍ଚିନ୍ତ ।
ଅନ୍ନରୁ ଦେବତା ଜାତ,
ଅନ୍ନହିଁ ପରମେଶ୍ୱର ଭୋଖୀ କାଙ୍ଗାଳର ।
ଚାଲ ଭାଇ ସେ ଦେବତା ପାଶେ,
ଯିଏ ଶୁଣେ ଭୋଖିଲାର ଡାକ ।

ପାଦ୍ରୀଦ୍ୱୟ– (ଗାନ)

ପ୍ରଭୁ ଯୀଶୁ ଦେବେ ପରିତ୍ରାଣ... (ଇତ୍ୟାଦି)

(ପାଦ୍ରୀଙ୍କ ପଛେ ପଛେ କାଙ୍ଗାଳମାନଙ୍କର ପ୍ରସ୍ଥାନ ।)

## (ଚତୁର୍ଥ ଦୃଶ୍ୟ)

[ସନାତନ ଓ ପଞ୍ଚମ କାଙ୍ଗାଳ ଏକ ପଲ୍ଲୀରାସ୍ତାରେ କଷ୍ଟେମଷ୍ଟେ ବାଡ଼ିଧରି ଚାଲିଛନ୍ତି ।]

ପଞ୍ଚମ କାଙ୍ଗାଳ— ବେଶି ଦୂର ନାହିଁ ଆଉ,
ଏଇ ସେ ଯେ ଡେଙ୍ଗା ତାଳଗଛ
ସେଇ ତ କାଞ୍ଚନପୁର ।
ବାବାଜୀର ଛତ୍ର
ସେଇଠାରେ ହୋଇଅଛି ଖୋଲା
ଏଇ ପହଞ୍ଚିଲେ ଜାଣ,
ଏଇକ୍ଷଣି ମିଳିବ ଭୋଜନ ।

ସନାତନ— ଚାଲି ଆଉ ପାରୁ ନାହିଁ ଭାଇ,
ଶକ୍ତି ନାହିଁ ଚାଲିବି ପହଣ୍ଡେ,
ନ ପାରିବି ଯାଇ ମୁଁ ଛତ୍ରରେ ।
ମୋ ଖାଇବା କଥା ଭାଇ ତୁଣ୍ଡେ କିପାଁ ଧରୁ,
ମୋ ପେଟ ମୁଁ ଭାବୁନିରେ କେବେ;
ନନା ବୋଉ, ଛୋଟ ସେଇ ଭଉଣୀଟି ମୋର
ତାଙ୍କୁଇ ସ୍ମରଣ କରି ବିକଳ ମୁଁ ହୁଏଁ,
ତାଙ୍କରି ଚିନ୍ତାରେ ଅଧେ ହୁଏଁ ମୁଁ ଅବଶ ।
ଭିକ୍ଷା ଖୋଜି ବହୁ ଦୂର ଆସିଅଛି ଚାଲି,
ଫେରିବାର ଆଶା ନାହିଁ ଖାଲିହାତେ ମଧ ।
ମରିଯିବି ରାସ୍ତାକଡ଼େ, ଶାଗୁଣା, ବିଲୁଆ
ଖାଇବେ ମୋ ହାଡ଼ ମାଂସ—
ନନା ବୋଉ ପ୍ରାଣ ଧରି ଥିବେ ଯଦି ବଞ୍ଚି
ଶୁଣିଲେ ଏ କଥା,
ଠିଆ ଠିଆ ଦେବେ ପ୍ରାଣହାରି ।
ବଞ୍ଚିବେ ବା କିପରି ଏକାଳେ ?
ବୃଦ୍ଧକାଳେ ମୁଁ ତାଙ୍କର ଏକଇ ସମ୍ବଳ ।
ପାଞ୍ଚବର୍ଷ ତଳେ
ହଇଜାରେ ମଲେ ମୋ ଭାଇନା,
ବୋଉ ମୋର କାନ୍ଦି କାନ୍ଦି ହୋଇଅଛି ଅନ୍ଧ,
ସେଇଦିନୁଁ ପଡ଼ିଛି ମୋ ଛୋଟ କାନ୍ଧ ପରେ
କୁଟୁମ୍ବ ସକଳ ଭାର ।

ଛୋଟ ଭଉଣୀଟି
ପ୍ରାଣର ସଂଖାଳି ମୋର,
ଫେରିଲେ ମୁଁ ଘରେ
ଦ୍ୱାରଦେଶେ ଧାଇଁଆସି ଆଗୁଳି ଦି ହାତେ
କହିବ ସେ ପ୍ରତିବାର,
'କି ଆଣିଛୁ ଭାଇନା, ମୋ ଲାଗି ?'
ସେଇ ଆଜି ଶୁଖି ଶୁଖି ମରୁଅଛି ଘରେ,
ବହୁ ଦୂରେ,
ମୁଁ ମରୁଛି ଏଣେ ରାସ୍ତା କଡ଼େ ।

ପଞ୍ଚମ କାଙ୍ଗାଳ— ବ୍ୟସ୍ତ ନାହିଁ ହୁଅ ବାପା !
ଅଳ୍ପ ବାଟ ଆଉ,
ନ ପାରିଲେ ଚାଲି ତୁମେ
ଟେକି ନେବି କାନ୍ଧେ ।
ଫେରିଯିବ ଗ୍ରାମେ,
ଧରିବ କୋଳରେ ପୁଣି ଛୋଟ ଭଉଣୀକୁ,
ଅନ୍ନ ଭୁଞ୍ଜି ବାପା ବୋଉ ହୋଇବେ ସନ୍ତୋଷ ।

ସନାତନ— ନ ଖାଇବା ଯାଏ
ନନା , ବୋଉ, ଭଉଣୀଟି,
ନ ଛୁଇଁବି ପାଣି ।
ନିଜ ପେଟ ଦେଖିଥିଲେ ମରୁଥା'ନ୍ତି କିଆଁ ?
ଭିଖ ଯେବେ ସେ ଅଞ୍ଚଳେ ହୋଇଲା ଦୁର୍ଲଭ,
ଯାହା ଗଣ୍ଡେ ପାଏଁ ତାହା ତାଙ୍କୁ ଦିଏଁ ରାନ୍ଧି,
ବଣ ଶାଗମୂଳ ଖାଇ ଶମିଲି ମୋ କ୍ଷୁଧା ।
ଭିଖ ଯେବେ ନ ମିଳିଲା ଆଉ,
ତହୁଁ ସିନା ବାହାରିଲି ଦୂରୁଁ ଦୂରାନ୍ତର,
ଦିନେ ଦିନେ ଏକ ଏକ ନୂଆ ଗ୍ରାମ ଡେଇଁ,
ଆସୁ ଆସୁ ହେଲା ଏଇ ଦଶା,
ବିଚ୍ଛିନ୍ନ ହୋଇଲି ଏବେ ନନା ବୋଉଠାରୁ,
ଯିବୁ ମରି ପଡ଼ି ଅନାହାରେ
କେ କାହାରେ ନାହିଁ ପାରି ଦେଖି ।

ପଞ୍ଚମ କାଙ୍ଗାଳ—ଦେଖିବ, ଦେଖିବ ବାପ !
ନିଶ୍ଚୟ ଦେଖିବ ।
କିନ୍ତୁ ଛତ୍ରେ ନିଜେ ଗଣ୍ଡେ ନିଅ ଆଗେ ଖାଇ ।
ଯଦି ଚାହ ବଞ୍ଚିବେ ସେମାନେ,
ତୁମେ ଆଗେ ନିଜେ ବଞ୍ଚ ବାପା !

ସନାତନ— ସତ କଥା ଭାଇ,
କେ ତାଙ୍କୁ ପୋଷିବ, ମୁହିଁ ମରିଯାଏଁ ଯଦି ?
କେତେ ଥର ଅନ୍ନଗୁଣ୍ଡା ଆଣିଛି ମୁଁ ମୁଖେ
କ୍ଷୁଧାର ଜ୍ୱାଳାରେ ଭୁଲି,
କିନ୍ତୁ ପ୍ରତି ଥର
ଛୋଟ ସେ ଭଉଣୀ-ମୁହଁ ଉଠଇ ଚିତ୍ତରେ
ପ୍ରାଣ ଡାକିଉଠେ ମୋର 'ସେ ଅଛି ଭୋକିଲା ।'
ଖାଦ୍ୟଗୁଣ୍ଡା ଖସିପଡ଼େ ହାତରୁ ମୋହର ।
ଆହା ମୋ କମଳି,
କମଳିରେ, ଧନ ମୋର
ପ୍ରାଣର ସଂଖାଳି
ସଂଖାଳି ମୋ ନନା ବୋଉଙ୍କର,
ତୁହି ପୁଣି ମରୁ ଛଟପଟେ
ଅଣହେଳେ, ଅନାହାରେ !
ଏହା ପୁଣି ଦେଖିବାକୁ ଥିଲା ମୋ କପାଳେ !
ରାଜକନ୍ୟା ଜନ୍ମିଥିଲୁ ଦରିଦ୍ର-କୁଟୀରେ,
ସୁନାର ତୋ ଅଙ୍ଗଲତା ଦେଖି
ଯାହା ଫେରି ଚାହୁଁଥିଲେ
ଦେଖଣାହାରୀଏ, ତାହା ବିକୃତ ବୀଭତ୍ସ
ନ ପାଇ ପେଟକୁ ମୁଠେ ସାମାନ୍ୟ ଆହାର !
ଧିକ ଏ ଦରିଦ୍ର ଜନ୍ମ, ଧିକ୍ ଏ କପାଳ
(ସନାତନ ବସିପଡ଼ି କ୍ରନ୍ଦନ କଲା)
ଦେଇ ନ ପାରିଲି ମୁଠେ ଭାତ, ଟିକେ ପାଣି
ବୃଦ୍ଧ ପିତା ମାତା ଛୋଟ ଭଗିନୀର ମୁଖେ !

ପଞ୍ଚମ କାଙ୍ଗାଳ— ବାପା, ବାପା, ବ୍ୟସ୍ତ ନାହିଁ ହୁଅ ।
ପାଗଳ ହେଲଣି ତୁମେ ।

ତୁମ କଥା ଶୁଣିବିନି ଆଉ,
କାନ୍ଧେ ମୋର ନିଶ୍ଚେ ନେବି ଟେକି
ଖୁଆଇବି ବାବାଜୀ ଛତ୍ରରେ ।
(ସନାତନଙ୍କୁ ଦୁଇ ହାତରେ ଉଠାଇବାକୁ ଯିବା)

## (ପଞ୍ଚମ ଦୃଶ୍ୟ)

[ସେହି ପଲ୍ଲୀପଥ । ପଞ୍ଚମ କାଙ୍ଗାଳ ଓ ସନାତନ ଅନ୍ନଛତ୍ରରୁ ଫେରୁଛନ୍ତି । ସନାତନର କାନ୍ଧରେ ଖାଦ୍ୟର ଦୁଇଟି ବୁଜୁଳି ଦୁଇ ପାଖରେ ଝୁଲୁଛି ।]

ସନାତନ— ଘୋର ଖରା, ବଇଶାଖ ଝାଞ୍ଜି
ଜଳୁଅଛି ଗୋଡ଼ତଳ ମାଟି,
ହୋଇଲାଣି ଆସି ଦ୍ୱିପ୍ରହର
ପାଦ ଆଉ ନାହିଁ ମାନେ ବୋଲ ।
ବହୁ ଦୂର ଗ୍ରାମ ମୋର
ଯାଇ ସତେ ପାରିବି ମୁଁ ଆଜି ?
କ୍ଷୁଧା-ଶୁଷ୍କ ବାପାବୋଉ ମୁଖେ
ଦେଇ ଏଇ ଅନ୍ନ ମୁଠେ ମୁଠେ
ପାରିବି କି ସନ୍ତୋଷି ପରାଣ ?
କମଳିରେ, ଧନ ମୋର.... (ବିଳାପ)

ପଞ୍ଚମ କାଙ୍ଗାଳ— ଶୁଣ ବାବା, କଥା ମୋର ଶୁଣ,
ନିଜେ ଗଣ୍ଡେ ପକାଇ ପାଟିରେ
ତେବେ ସିନା ଲୋକେ ଆପଣାର
ଭେଟିବ ଏ ଅନ୍ନ ନେଇ ?
ପାଞ୍ଚଦିନ ଉପବାସେ ଭ୍ରମି ଗ୍ରାମୁଁ ଗ୍ରାମେ
ତୁମେ ଯାହା ହେଲଣି ଅଶକ୍ତ,
କେମନ୍ତେ ଚାଲିବ ପୁଣି ଆଉ ତିନି କୋଶ ?
ଯଥେଷ୍ଟ ତ ଅଛି ଖାଦ୍ୟ
ତୁମ ପାଇଁ, କୁଟୁମ୍ବଙ୍କ ପାଇଁ,
ସନ୍ନ୍ୟାସୀଏ ଚିହ୍ନିଲେ ତୁମକୁ
ଏତେ ସେ କହିଲେ ଘରେ ଦେବେ ପହଞ୍ଚାଇ
ଯେତେ ଲୋଡ଼ା ଚାଉଳ ପଇସା

କିଛି ଶୁଣିଲନି କଥା ।
ବଡ଼ ଅବାଗିଆ !
ସନାତନ— ସବୁ ମୁଁ ବୁଝୁଛି ଭାଇ !
କିନ୍ତୁ ବାପା ବୋଉ,
ପ୍ରାଣର ସେ ଛୋଟ ଭଉଣୀଟି
ଉପାସରେ ହୋନ୍ତି କଲବଲ
ଜାଣି ଜାଣି କେମନ୍ତେ ମୁଁ ଭୁଞ୍ଜିବି ସୁଖରେ—
ପାଟିକି ତ ନାହିଁ ଯାଏ ହାତ ।
ଯାହା ଗାଳି ଦିଅ ମତେ
ଜୀବନେ ତ କରିନାହିଁ ତାହା,
କରିନାହିଁ ପାରେ ଏବେ......
(ହଠାତ୍)
ଭାଇ, ଧର୍ ଧର୍ ମତେ
ଧରିନିଅ ଖାଦ୍ୟ ଦୁଇ ପୁଡ଼ା ।
ଭାରି ଯେ ଅବଶ ଲାଗେ,
ଠିଆ ହୋଇ ନାହିଁ ପାରେ,
ପ୍ରାଣ ଯେହ୍ନେ ଛାଡ଼ିଆସେ,
ନେଇ ଚାଲ ଗଛମୂଳେ କାହିଁ....

(ପଞ୍ଚମ କାଙ୍ଗାଳ ସନାତନକୁ ସସବ୍ୟସ୍ତରେ ଧରି ଟେକିନେବାର ଚେଷ୍ଟା କଲାବେଳକୁ ହଠାତ୍ ଏକ ସ୍ରସ୍ତକୁନ୍ତଳା ମଳିନବସନା ତରୁଣୀର ପ୍ରବେଶ ।)

ତରୁଣୀ— ମତେ ଦିଅ, ମତେ ଦିଅ,
ବୋହି ନେବି ଦୂର ତାଙ୍କ ଗୃହେ,
କାନପାରି ବସିଛନ୍ତି ଯହିଁ
ତାଙ୍କ ପଦଶବ୍ଦ ପାଇଁ ବୃଦ୍ଧପିତାମାତା
ବିହଗ-ଶାବକ ଯେହ୍ନେ ରହନ୍ତି କୁଲାୟେ
ଉନ୍ନେତ୍ରେ ଅପେକ୍ଷି ମାତା-ପକ୍ଷୀର ଆସିବା
ଖାଦ୍ୟ ଘେନି ଊର୍ଦ୍ଧ୍ୱାକାଶେ ।
ପଞ୍ଚମ କାଙ୍ଗାଳ—କିଏ ତୁମେ ମାଆ ? କି ଚାହୁଁଛ ସତେ ?
ତରୁଣୀ— (ନିକଟକୁ ଆସି ଓ ପଞ୍ଚମ କାଙ୍ଗାଳ ସହିତ ସନାତନକୁ କୋଳରେ ଧରି)
ମୁଁ ତାଙ୍କର ଧର୍ମପତ୍ନୀ ।
ବାଲୁତ ବୟସେ

ବହୁ ବର୍ଷ ତଳେ କେବେ ଦେଖିଥିବେ ଅବା
ବିବାହେ, ସ୍ମରଣେ ଅବା ନାହିଁ ଥାଇପାରେ ।
ମୁଁ ତାଙ୍କୁ ଦେଖିଛି କିନ୍ତୁ ପରିପୂର୍ଣ୍ଣ କରି
ବାତାୟନ ଅନ୍ତରାଳୁଁ ଗ୍ରାମ୍ୟସଖୀ ମେଳେ ।
ସେହି ଦିନୁଁ ସିଏ ମୋର ହୃଦୟଦେବତା
ମୋ ପ୍ରାଣର ସରଗ-ସଂପଦ ।
ତାଙ୍କର ଏ କଷ୍ଟକଥା କର୍ଣ୍ଣେ ପଡ଼ୁଁ ମୋର
ଘର ଛାଡ଼ି, ଛାଡ଼ି ପିତାମାତା,
ପଥ ଆଶ୍ରା କରିଅଛି
ଖୋଜି ଖୋଜି ତାଙ୍କୁ ।
ଏଇ ମୋର ଛୋଟ ପରିଚୟ,
ଆଉ କିଛି ନାହିଁ ପଚାରନ୍ତୁ,
ବେଳ ନୁହେଁ ପ୍ରଶ୍ନ ଉତ୍ତରର,
ଧରନ୍ତୁ ଉଠାଇନେବା ଏହାଙ୍କୁ ଯତନେ
ନିକଟର ସେହି ଛତ୍ରେ,
ସେଇ ଛତ୍ରୁଁ ପାଇ ମୁଁ ସଂଧାନ
ଧାଇଁଛି ଏ ପଥେ ପଥେ ।

ସନାତନ— (ଅସ୍ପଷ୍ଟ ସ୍ୱରରେ)
ଅନ୍ନପୂର୍ଣ୍ଣା, ଅନ୍ନପୂର୍ଣ୍ଣା !
ସତ୍ୟ ନା କୁହୁକ ?
ସତେ କି ସମ୍ଭବ ଏହା ?
କାହିଁ ଘେନି ଯିବ ମତେ ?
ନେଇ କି ପାରିବ ?
ଆସନ୍ନ ମୃତ୍ୟୁର ଭାରେ ଅତି ଭାରୀ ମୁହିଁ
ଭାରୀ ପୁଣି ଜୀବନ-ଜଂଜାଳେ ।
ଧର ମତେ ବକ୍ଷେ ତବ,
ସେହି ଯେ କୋମଳ ନାରୀବକ୍ଷ ସମ୍ଭାଳଇ
ନରର ଦୁର୍ବହ ଭାର ।
ଜନନୀ ମୋ ଦୂରେ ଥିବେ ଚାହିଁ,
ପ୍ରାଣଦାୟୀ ବକ୍ଷେ ତାଙ୍କ ଶେଷ ଥର ପାଇଁ
ନ ପାରିଲି ଦେଇ ଶିଶୁମୁଖ,

ଦ୍ୱିତୀୟା ଜନନୀ ତୁମେ
ଆସିଅଛ ଶେଷ ମୁହୂର୍ତ୍ତରେ
ଦିଅ ମତେ ଶେଷ ଶଯ୍ୟା ।

(ପଞ୍ଚମ କାଙ୍ଗାଳ ଓ ତରୁଣୀ ସନାତନକୁ ଧରିନେଇ ସେଇଠାରେ ବସିପଡ଼ିଲେ ।)

ତରୁଣୀ— ଚାଲିଯିବ ଧନ,
ଏତେ ଶ୍ରମ ବୃଥା ଯିବ ମୋର—
ଜୀବନେ ମୋ ଏ ଦୀର୍ଘ ପ୍ରତୀକ୍ଷା ?
ଭାବିଥିଲି ତୋଳିନେଇ ପଥପ୍ରାନ୍ତୁ କାହିଁ,
ଝାଡ଼ି ଧୂଳିମଳି ଅଙ୍ଗୁ
ପିନ୍ଧାଇଣ ସୁବାସ ଯତନେ,
ଭୁଂଜାଇଣ ନିଜ ପକ୍ୱ ଭୋଜ୍ୟ
ନିଜ ଗୃହେ ଦେଇଥା'ନ୍ତି ନୂତନ ଜୀବନ,
ନିଜର ପ୍ରତିମା ଗଢ଼ି
ପୂଜିଥା'ନ୍ତି ବସି
ଏକାନ୍ତ ଆପଣା କରି ।
ରହ ଧନ, ବଂଚି ରହ ଖାଲି,
ମୋରି ପାଇଁ ହେଲେ ରହ ବଂଚି ।
ଚଣ୍ଡାଳୁଣୀ ଜାଣିଥିଲେ ଆଗହୁଁ ଏ ଦଣ୍ଡ
ଘରୁ ଗୋଡ଼କାଢ଼ିବାକୁ ଦେଇ ମୁଁ ନ ଥା'ନ୍ତି ।
ବଂଚି ରହ, ସବୁ ଭାର ନେବି ମୁଁ ଏଥର
ପ୍ରାଣର ସଂପଦ ମୋର....

ସନାତନ— (ପ୍ରଳାପକରି)
ଅନ୍ନ, ଅନ୍ନ, ଅନ୍ନ—ଗଲି , ଗଲି, ଜମଳିରେ, ବାପା, ବୋଉ, ଅନ୍ନ..... (ପ୍ରାଣତ୍ୟାଗ)

ତରୁଣୀ— (ସନାତନର ଶବକୁ ଉଠାଇ ନିଜ ଦେହରେ ପକାଇ ଠିଆ ହୋଇ ପଡ଼ିଲେ ।)
ହବନି ତା !
ମତେ ଛାଡ଼ି ଯାଇ ନ ପାରିବ ।
ତୁମ ଲାଗି ଛାଡ଼ିଛି ଯା ଘର
ଆଣ୍ଡିଥିଲି ପଥ ସଂସାରର,
ଆଉ ମୁଁ ନ ଫେରେଁ ଘରେ
ନ ଫେରେ ସଂସାରେ ।

ତୁମ ପଥ ମୋରି ପଥ,
ଜୀବନେ ନ ହେଲା ଯଦି
ହେବ ସେ ମରଣେ,
ନିଅ ମତେ ସାଥେ ।

(ଉଭୟଙ୍କର ଭୂପତନ । ତରୁଣୀର ମୃତ୍ୟୁ । ପଞ୍ଚମ କାଙ୍ଗାଳ ସ୍ତମ୍ଭୀଭୂତ ହୋଇ ଚାରିଆଡ଼କୁ ଅନାଇ ରହିଲେ ।)

## (ଷଷ୍ଠ ଦୃଶ୍ୟ)

[ସନାତନର ପଲ୍ଲୀଗୃହ । ଭିତର ବାରଣ୍ଡାରେ ସନାତନର ବୃଦ୍ଧ ପିତା ଓ ମାତା ବସିଛନ୍ତି ମୁହଁ ତଳକୁ ପୋତି । ଜନନୀଙ୍କର ଜରାଜୀର୍ଣ୍ଣ ଦେହ ଛିନ୍ନ କନ୍ଥାରେ ଆବୃତ । ତାଙ୍କ କୋଳରେ ଛଅ ବର୍ଷର ମୁମୂର୍ଷ-ପ୍ରାୟ କନ୍ୟା କମଳା ।]

ପିତା— କାହିଁ ଗଲା ସନାତନ ?
ଫେରିବନି ଆଉ ?
ଚାରିଦିନ ଗଲାଣି ଯେ ବିତି
କିଏ ଆସି ଦେବ ବା ଖବର;
ମୁଁ ବି ଆଉ ଉଠି ନାହିଁ ପାରେ ।

ମାତା— (ରୋରୁଦ୍ୟମାନା)
ଦୁଇ ଖଣ୍ଡ ହାଡ଼ ମାତ୍ର ବାକୀ ଥିଲା ଦେହେ
ଫୁଲି ଆସିଥିଲା ମୁହଁ ହାତ;
ଚାଲିବାକୁ ଲାଗୁଥିଲା କଷ୍ଟ ।
କହୁଥିଲି 'ବାପା ମୋର, ଲୋଡ଼ା ନାହିଁ ଆଉ;
ମରିବାରେ ଏ ମାଟିରେ ଏକାଠି ସମସ୍ତେ;
ନାହିଁ ଯାଅ ଭିକ୍ଷା ପାଇଁ;
କାହିଁ ଯାଇ ନ ପାରିବୁ ଫେରି,
ରାସ୍ତାଧାରେ ଅସହାୟେ...' (କ୍ରନ୍ଦନ)

ପିତା— ପିଲାଦିନେ ଥିଲା ଦୁଷ୍ଟ; ମାରିଛି ତାହାକୁ;
ଏ କାଳକୁ ହେଲା ମୋର ଅନ୍ଧର ଲଉଡ଼ି ।
କେଜୁ ଚାଲିଗଲା ପରେ କି ହେଲା କେଜାଣି;

ନିଠୁର ବୈଶାଖ ପରେ ବର୍ଷାକାଳ ପରି
ସବୁ ତା'ର ବଦଳେ ସହସା;
ସେଇ ଦୁଷ୍ଟ ସନା ଆଜି କୁଟୁମ୍ବସମ୍ବଳ ।
ମୁଁ ବି କରିଥିଲି ମନା
'ଯାହାହେବ, ଆଉ ତୁ ଯାଆନା'
ମୁଁ ବି ତାକୁ କହିଥିଲି, ସେଦିନ ସେ ଯେବେ
ଫେରିଲା ଘଡ଼ିଏ ରାତ୍ରେ, ଦେଢ଼ ଦିନ ପରେ,
ରାନ୍ଧି ଭାତ, ଖୁଆଇଲା ପୁଣି ।
ମାଆ-ପକ୍ଷୀ' ନୀଡ଼ସ୍ଥ ଶାବକେ
ଦୂର ଦୂରାନ୍ତରୁ ଆଣି ଥଣ୍ଟରେ ଆହାର
ଖୁଆଇ ପାଳିଲା ପରି, ପାଳୁଛି ଆମକୁ ।
ତଥାପି ସେ କହିଲା ସେଦିନ—
'ଆଉ ନନା, ଚାଲିବାକୁ କଷ୍ଟ ହୁଏ ବେଶି,
ଭିଖ ଆଉ ମିଳୁଛି ବା କାହିଁ ?
କେତେ ଅବା ଦେବେ ଥିଲା-ଲୋକେ ?
ଯହିଁ ଯାଅ ଭିଖାରିର ପଲ,
ଶତ ଶତ, ସହସ୍ର ସହସ୍ରେ,
କିଏ କେତେ ଦେଇପାରେ ?
ଦୁର୍‌ଦୁର୍‌ କରନ୍ତି ସମସ୍ତେ ।
ବହୁ କଷ୍ଟେ ବହୁ ଗ୍ରାମ ବୁଲି ବୁଲି ଅବା
ମିଳିବ ପୁଳାଏ,ପୋଷେ, ଭାଗ୍ୟେ ଯଦି ଥାଏ ।
କଷ୍ଟକୁ ଚାହିଁଲେ ନନା, କିଇବା ସେ ଲାଭ ?
କେତେ ଗାଳି, କେତେ ସେ ଫଜିତ୍‌,
ଶୁଣିବାକୁ ହୁଏ ନନା, ଭିକ୍ଷା ମୁଠେ ପାଇଁ ।
ଦ୍ୱାରେ ଦ୍ୱାରେ ଠିଆହେବା ପାଟି କରି କରି
ବାର ଜାତି ଭିଖାରିଙ୍କ ତୁଲେ
ବଡ଼ ସେ ଲାଞ୍ଛନା ନନା !'
ସବୁ ତ କହିଲା; କିନ୍ତୁ ଉଠି ପାହାନ୍ତାରୁ
କାହିଁ ଗଲା ସନାତନ ?
ଭଉଣୀର କାହିଲି ଅବସ୍ଥା

ଦେଖି ବୋଧେ ଘର ଛାଡ଼ି ଗଲା ଚାଲି ତାକୁ,
କେଉଁ ମତେ ବଞ୍ଚାଇବା ପାଇଁ ।
ମାତା— ଭଉଣୀଟି ଜୀବନ ତାହାର,
ନିଶ୍ଚେ ସେ ଆସିବ ଫେରି ଦେଖିବାକୁ ତାକୁ ।
ପିତା— କେ ଜାଣି ବା !
ଫେରନ୍ତାଣି ଫେରିବାର ଥିଲେ,
ଏତେ ଦିନ ରହି ନାହିଁ କେବେ ସେ ବାହାରେ ।
ମାତା— ଘରେ ଘରେ ନାଟକରେ ଯମ,
ଘରେ ପଶି ଖାଇଲେଣି ବିଲୁଆ, ଶାଗୁଣା
ଦିନଟାରେ ବାସି ମଢ଼ ।
ଯାଇଥିଲି କାଲି ନଈକୂଳେ,
କେଉଁମତେ ଘୋଷାରି ଘୋଷାରି,
ଘାଟଠାରୁ ଛାଡ଼ି କିଛି ଦୂର
ଦେଖିଲି ପଡ଼ିଛି କାହ୍ନୁ ରଥ ସେ ସାହିର,
ଝୁଣ୍ଟୁଛନ୍ତି ଶାଗୁଣା, କୁକୁର ।
ଲୋକଟା ଜୀଇଛି କିନ୍ତୁ,
ବାଧିବାରୁ ଯନ୍ତ୍ରଣା ସେ ଥରେ
ଲେଉଟିଲା ଦୂମ୍ କରି,
ଛିନ୍ନଛତ୍ରେ ଧାଇଁଲେ କୁକୁରେ,
ଡେଣା ଛାଟି ଉଠିଲେ ଶାଗୁଣା,
ଭୟେ ଭୟେ ପଶିଲି ମୁଁ ଘରେ ।
ଚାରିଆଡ଼ ଲାଗେ ଝମ୍ ଝମ୍,
ଦିନଟାରେ ଆତ୍ମା ମାଡ଼ିପଡୁଛି ଆତଙ୍କେ,
ସଞ୍ଜ ହେଲେ ବାରିପଟେ ଖେଳୁଛନ୍ତି ଆସି
ଦଳ ଦଳ ଚିରିଗୁଣି ।
କାହିଁ କାହିଁ ମଲାଲୋକ ଜୀଇଉଠି ପୁଣି
ବୁଲିଲେଣି ଦାଣ୍ଡେ ଦାଣ୍ଡେ,
ଶୁଣାଯାଏ ପୁଣି
କେତେକ ମାଇପୀ ଭୋଖେ କଲେଣି ଆରମ୍ଭ
ତଣ୍ଟିଚିପି ଖାଇବାର ଛୋଟ ଛୋଟ ପିଲା ।
(ହଠାତ୍ ନେପଥ୍ୟରୁ ଏକ ବେପଥୁମତ୍ ଜରାଜୀର୍ଣ୍ଣ କଣ୍ଠସ୍ୱର ।)

କମିବୋଉ, କମିବୋଉ
ଅଛଟିକି ଘରେ !
ମାତା— ପିତେଇନାନୀର ସ୍ୱର !
ସେ ଆସଇ କିଆଁ !
ଝିଅ ତୋଇଁ ମରିଯିବା ପରେ
ଶୁଣୁଛି ସେ ହୋଇଛି ପାଗଲୀ ।
(ବୀଭତ୍ସଦର୍ଶନା ବୃଦ୍ଧା ପୀତେଇ ନାନୀର ଯଷ୍ଟିହସ୍ତରେ ପ୍ରବେଶ ।)
ପୀତେଇନାନୀ— କଅଣ କରୁଛ ବସି ?
ସନାତନ କାହିଁ ?
ଖାଇଛ ନା ଆଜି କିଛି ?
କମଳୀ ନା କୋଳେ ?
ମାତା— କମଳୀ, ପୀତେଇନାନୀ, ଶୋଇଛି ଜରରେ
ଖାଇ ନାହୁଁ ଆମେ କିଛି । ନାହିଁ ସନାତନ ।
ପୀତେଇନାନୀ— ଶୋଇଛି କହୁଛ ତୁମେ ! ମଲାଣି ନା କ'ଣ !
ଆଉ କ'ଣ ବଞ୍ଚିବ ସେ ?
ଦିଅ, ମତେ, ଦିଅ.....
ମୋ କାମରେ ଲାଗୁ ହେଲେ (ମାଡ଼ିଆସିବା)
ମାତା ଓ ପିତା— (ଉଭୟେ ଚିତ୍କାରକରି)
ହାଁ-ହାଁ, ହାଁ-ହାଁ, ଏ କି କରୁ ?
ମାତା— (ଉଠିପଡ଼ି)
ଚିରିଦେବି ରାଣ୍ଡି ତତେ ଛୁଇଁଲେ ଏ ଦେହ ।
ପିତା— ଚାଲି ଯା ଏଠାରୁ ରାଣ୍ଡି !
ନ ହେଲେ ମୁଣ୍ଡରୁ
ଦହି ଦେବି କାଢି ଇଲେ ।
(ସହସା ଜୀବାନନ୍ଦ ଓ ପଞ୍ଚମ କାଙ୍ଗାଳର ପ୍ରବେଶ)
ଜୀବାନନ୍ଦ— ଚିତ୍କାର ନ କର ଭାଇ, ଆଣିଛି ଯଥେଷ୍ଟ—
ପଠାଇଛି ସନାତନ— ଏଇ ନିଅ, ରଖ ।
ମାତା— (କାନ୍ଦିପକାଇ)
କାହିଁ ମୋ ସଂଖାଳି ?
କାହିଁ ମୋର ନୟନ-ପିତୁଳି ?

ପୀତେଇନାନୀ– (ମାଡ଼ିଆସି)
କି ଆଣିଛ ମତେ ଆଗେ ଦେଲ !
ପେଟ ମୋର ଜଳେ ହୁ-ହୁ କରି ।

ପିତା– ଦିଅ ତାକୁ,
ଯାଉ ସେ ଏଠାରୁ ଆଗେ ।
କାହିଁ ସନାତନ ?

ଜୀବାନନ୍ଦ– ଆଚ୍ଛା, ତାକୁ ଏଠାରୁ ବିଦାୟ
ଦେଇ, ପରେ ହେବା କଥାଭାଷା ।

ପଞ୍ଚମ କାଙ୍ଗାଳ– (ପୀତେଇନାନୀକୁ କିଛି ଖାଦ୍ୟ ଦେଲେ ।)

ପୀତେଇ ନାନୀ– (ରାକ୍ଷସୀ ପରି ଖାଇ ଖାଇ)
ଯାଉଛି କମଳୀ ବୋଉ
ଫେଏର୍ ଆସିବି,
ଚାଖିଲିଣି ଯେଉଁ ଦିନୁଁ ଛୋଟ ପିଲା ମାଂସ
ଭାତ, ଭୁଜା ଲାଗେ ମତେ ପାଣିଚା-ପାଣିଚା ।
(କହି କହି ପ୍ରସ୍ଥାନ)

ଜୀବାନନ୍ଦ– ଛୋଟ ପିଲା ମାଂସ !
ଆସିଥିଲା ପିଲା ନେଇ ଖାଇବାକୁ ବୁଢ଼ୀ !

ପିତା– ଆସିଥିଲା ସତେ ପରା,
ଅଟକାଇ ରଖୁଁ କରି ପାଟି
ଆପଣେ ଆସିଲେ ଭାଗ୍ୟେ ।
କାହିଁ ସନାତନ ?

ଜୀବାନନ୍ଦ– ଏସବୁ ଆହାର୍ଯ୍ୟ
ପଠାଇଛି ସନାତନ,
ଆଣିଛି ମୁଁ ଦୁଧ, ଅଉଷଧ
ଛୋଟ ତା ଭଉଣୀ ପାଇଁ ।
ଦିଅ ତାକୁ ଦୁଧ ଟିକେ,
ଖୁଆଅ ଔଷଧ,
ଖାଇ ପିଇ ତାଜା ଟିକେ ହୁଅନ୍ତୁ ଆପଣେ,
ତା'ପରେ ସମସ୍ତ କଥା କହିବୁଁ ନିଶ୍ଚିନ୍ତେ
ଏଇ କଥା ସନାତନ କହିଛି ପଠାଇ ।

ମାତା— ପୋଡ଼ିଯାଉ ଆମ ଖିଆ,
କହ ଆଗ ମତେ,
କାହିଁ ମୋ ସଂଖାଳି, ଧନ,
କାହିଁ ସନାତନ ? (କ୍ରନ୍ଦନ)

ପିତା— ଚାରି ଦିନ ହେଲା ଆମେ ରହିଛୁଁ ଅନାଇ
ସନାର ଆସିବା ପାଇଁ ।
ଦୁଇ ଦିନ ହେଲା ତା'ର ମାଆ
ଅନ୍ଧ ନେତ୍ରୁଁ ନିଗାଡୁଛି ଜଳ
ସନାତନ କଥା ସ୍ମରି ସ୍ମରି ।
ବଡ଼ ତ ଯାଇଛି ଚାଲି ପାଞ୍ଚ ବର୍ଷ ତଳେ,
ଝିଅର ତ ଦେଖୁଛ ଅବସ୍ଥା,
ବୃଦ୍ଧକାଳେ ସନାତନ ଏକାନ୍ତ ଆଶ୍ରୟ ।

ଜୀବାନନ୍ଦ—ସନାତନ !
ସନାତନ !
ସେ ଯେ.... ସେ ଯେ...ଧୈର୍ଯ୍ୟ ଧର ମାଆ...

ମାତା— ବାପା ମୋର ! ଧନ ସଂପଦରେ.....
(ମୂର୍ଚ୍ଛିତ ହୋଇ ତଳେ ପଡ଼ିଲେ)

ଜୀବାନନ୍ଦ— (ପଞ୍ଚମ କାଙ୍ଗାଳ ପ୍ରତି)
ଦୀନବନ୍ଧୁ,
ଧର କମଳାକୁ,
ଦିଅ ତାକୁ ଦୁଧ, ଅଉଷଧ ।
ମୁଁ କରେଁ ମାଆଙ୍କ ସେବା ।

(ଦୀନବନ୍ଧୁ କମଳାକୁ ଓ ଜୀବାନନ୍ଦ ସନାତନର ମାଆକୁ ଟେକି ଘର ଭିତରକୁ ନେଲେ । ପିତା ସେମାନଙ୍କର ଅନୁସରଣକଲେ ।)

## (ସପ୍ତମ ଦୃଶ୍ୟ)

(ପୂର୍ବର ସେହି ଦେବାଳୟ— ସମୟ ସକାଳ)

ଜୀବାନନ୍ଦ— ଗୁରୁଦେବ,
ବୁଢ଼ା ବୁଢ଼ୀ ରଖି ନ ପାରିଲୁଁ,
ସାନ ଭଉଣୀଟି କିନ୍ତୁ ବଞ୍ଚିବାର ଆଶା,

ଘେନିଆଣି ରଖାଇଛି ଆଶ୍ରମେ ଆମ୍ଭର,
ତତ୍ତ୍ୱ ତା'ର ନେଉଛନ୍ତି ଲୋକେ ।
ଶିବାନନ୍ଦ—ତୁମେ କିଛି କାଳ ନିଅ ବିଶ୍ରାମ ଏଠାରେ,
ଦିଶ ବଡ଼ ପରିଶ୍ରାନ୍ତ । ଭାଙ୍ଗିଯିବ ଦେହ
ବେଳୁଁ ନ ଜଗିଲେ ସ୍ୱାସ୍ଥ୍ୟ ।
ଜୀବାନନ୍ଦ —କି ବିଶ୍ରାମ କରିବି ସ୍ୱାମିଜୀ ?
କି କର୍ମ କରିବି ଅବା ଏ ବିଶ୍ରାମୁଁ ଫେରି ?
ଜୀବନର ବୀଭତ୍ସତା ଦେଖିଲି, ଦେଖୁଛି
ଯାହା ଏହି ଅଳ୍ପ କାଳେ, ଭାବେଁ ମନେ ମନେ
ଜୀବନ-ମୃତ୍ୟୁର ଏହି କ୍ରୂର ଆବର୍ତ୍ତନୁ
ମାୟାଚ୍ଛନ୍ନ ଅଭିନୟ ଏହି ସଂସାରର
ଊର୍ଦ୍ଧ୍ୱକୁ ଯିବାହିଁ ଏକମାତ୍ର ସତ୍ୟ ଲକ୍ଷ୍ୟ ।
କେ ପଠାଏ ପ୍ରତିଦିନ ଏ ଧରଣୀପରେ
ସହସ୍ର ସହସ୍ର ଶିଶୁ ଜନନୀ-ଜଠରୁ ?
କି ଉଦ୍ଦେଶ୍ୟ ତାଙ୍କ ଆସିବାରେ ?
କି ଉଦ୍ଦେଶ୍ୟ ଧରାପରେ ହୋଇ କଲବଲ
ବଞ୍ଚିବା ଜୀବନ ଘୋର ପ୍ରବଞ୍ଚନାମୟ,
ମରିବା ଶେଷରେ ପୁଣି ଅତି ଅନିଚ୍ଛାରେ
ଛିନ୍ନମୂଳ ବୃକ୍ଷପରି ଛାଡ଼ି ଗୃହ, ଜନ ?
ଶିବାନନ୍ଦ— ସେହି ଅନ୍ଧକାରେ, ସେହି ବୀଭତ୍ସ ସଂସାରେ
ଦେଖୁ ନା କି ଶତ ଶତ ଦୀପ୍ତ ଦୀପ-ଶିଖା ?
ଦେଖୁ ନା କି ନରତ୍ୱର ମଧୁର ମହିମା ?
ଗନ୍ଧହୀନ ରୂକ୍ଷ ଗୁଳ୍ମେ ହସିଉଠେ ଦିନେ
ବର୍ଣ୍ଣୋଜ୍ଜ୍ୱଳ କୁସୁମର ସୁରଭି ଉତ୍ସବ,
ଭୁଲିଯା'ନ୍ତି ଲୋକେ ଗୁଳ୍ମ ପୂର୍ବ ବିରୂପତା
କୁସୁମର ଚିତ୍ତଜୟୀ ବର୍ଣ୍ଣମୟ ହସେ ।
ଭୁଲିଯା'ନ୍ତି କୃଷିକୁଳ ଋତୁ ଅତ୍ୟାଚାର
କେଦାରରେ କର୍ଦ୍ଦମାକ୍ତ ସ୍ୱିନ୍ନ ପରିଶ୍ରମ,
କାଟି ବହିନିଏ ଯେବେ ଘରେ ସୁନାଶିଁସା ।

ସହସ୍ର ଏ ପଶୁଧର୍ମୀ ବୁଭୁକ୍ଷୁର ଦଳୁଁ
ଦେଖାପଡ଼େ ଯଦି କାହିଁ ଜଣେ ସନାତନ
ନରତ୍ୱର ମହିମାରେ ପରମ ମଣ୍ଡିତ !
ସେହି ସେ ଜ୍ୱଳନ୍ତ ଦୀପ, ଘୋର ଅଂଧକାରେ
ଦେଖାଏ ମନୁଷ୍ୟ-ଲକ୍ଷ୍ୟ, ଦୀର୍ଘ ଆବର୍ତ୍ତନେ
ପଶୁତ୍ୱରୁ ଉଠିବାର ଊର୍ଦ୍ଧ୍ୱେ ସ୍ତରେ ସ୍ତରେ ।
ଲୀଳାବ୍ୟପଦେଶେ,
ସୂକ୍ଷ୍ମ ଚିଦାନନ୍ଦ ହୁଏ ଜଡ଼େ ପରିଣତ,
ଜଡ଼ ପୁଣି ଜନ୍ମେ ଜନ୍ମେ ବିବର୍ତ୍ତନ-ଚକ୍ରେ
ହୁଏ ସୂକ୍ଷ୍ମ ଚିଦାନନ୍ଦ । ତେଣୁ ଏ ସଂସାରେ
ଜଡ଼, ପଶୁ, ନର, ଦେବ ଭେଦେ ସ୍ତରେସ୍ତରେ
ରହିଛନ୍ତି ଜୀବଗ୍ରାମ । ଚାଲିଛି ସଂଘର୍ଷ
ଜଡ଼, ଜନ୍ତୁ, ନର, ଦେବେ ଜଗତେ ନିରତ;
କେବଳ ଜଗତେ ନୁହେଁ ପ୍ରତିର ଅନ୍ତରେ
ପଶୁତ୍ୱ ଓ ଦେବତ୍ୱର, ତମ-ଆଲୋକର,
ନିତ୍ୟ ସଂଗେ ଆପାତର, ଚାଲିଛି ସଂଗ୍ରାମ
ଅହରହ ଅଜ୍ଞାତରେ । ସେହିହିଁ ମନୁଷ୍ୟ,
ପୂର୍ଣ୍ଣ-ବିବର୍ତ୍ତିତ ପ୍ରାଣୀ, ଧରାସ୍ଥ-ଦେବତା,
ଯେ କରେ ଅନ୍ତଃସ୍ଥ ତମେ ଜୟ ନିଜାଲୋକେ,
ପଶୁକୁ ସଂହାର କରି ଫୁଟାଏ ନରତ୍ୱ
ନିମ୍ନାତ୍ମାର ଭସ୍ମପରେ ଜଗାଏ ମହାତ୍ମା
ତାହାହିଁ ପ୍ରମାଣ କଲା କରୁଣ ଆଖ୍ୟାନେ
ସନାତନ, ସେହି ଆତ୍ମା-ବିବର୍ତ୍ତନଧାରା ।
ଯିଏ ଦେବ ସେହି ପଶୁ, ସେ ବୃକ୍ଷ, ପାଷାଣ,
ସେହି ଜନ୍ମ, ସେହି ମୃତ୍ୟୁ, ଅଶ୍ରୁହାସ୍ୟ ସେହି,
ଧନୀର ବିଭବ ସେହି, ଦୁଃଖ ଦରିଦ୍ରର,
ସେହି ବେଳେ ହାସ୍ୟମୟୀ ଲକ୍ଷ୍ମୀ ଜନପଦେ,
ସେହି ପୁଣି ଦୁର୍ଭିକ୍ଷର କ୍ରୂର ବୀଭତ୍ସତା,
ଦୁର୍ଭିକ୍ଷପାଇଁ କି ତୁମେ ନିନ୍ଦୁଛ ସ୍ରଷ୍ଟାରେ ?
ମନେକଲ ନର-ନାମୀ ଭୀଷଣ ସେ ପ୍ରାଣୀ,

ବଞ୍ଚେ କେତେ ଜୀବନର ବିକଳ ସଂହାରେ
ରଖିବାକୁ ମନୁଷ୍ୟର ସ୍ୱାର୍ଥ-କେନ୍ଦ୍ରି-ପ୍ରାଣ
ପ୍ରପୀଡ଼ିତ କେତ୍ନେ ଏହି ନିଖିଳ ପ୍ରକୃତି,
ଜଳେ, ସ୍ଥଳେ, ନଭେ ମରେ ମୂକ ଜୀବଗ୍ରାମ,
ଧରଣୀର ଦେହ କେତ୍ନେ ଉସନ୍ନ, ବିକ୍ଷତ ।
ସେହି ନର ଗୋଟା କେତେ ନପାଉଁ ଆହାର
ତୁମେ ଆଜି କ୍ଷୁବ୍‌ଧଚିତ୍ତ ! ଏ ସମବେଦନା
କାହିଁ ଥାଏ ଯେବେ ତୁମ ଚକ୍ଷୁ ସମକ୍ଷରେ
ମରୁଥା'ନ୍ତି ମୂକଜୀବ ବିକଳ ଚିତ୍‌କାରେ
ମେଣ୍ଟିବାକୁ ମନୁଷ୍ୟର ରସନା ଲାଳସା ?
ଦେଖିବାକୁ ଚେଷ୍ଟା କର ବତ୍ସ, ସବୁବେଳେ
ସୃଷ୍ଟିରେ ସମଗ୍ର ଭାବେ । ସମଗ୍ର ଏ ସୃଷ୍ଟି,
ଜଡ଼, ଜୀବ, ଉଦ୍‌ଭିଦର ଏ ମହା ସଂଘଟ,
ସଂଚାଳିତ ଓତପ୍ରୋତେ ଏକହିଁ ନିୟମେ ।
କ୍ଷୁଦ୍ରର ପୀଡ଼ାରୁ ଆସେ ଦୁଃଖ ବିରାଟର ।
ସେହି ସେ ବିରାଟ ପିତା, ବିଧାତା ସୃଷ୍ଟିର,
ସମସ୍ତେ ସନ୍ତତି ଯା'ର—ଜଡ଼, ବୃକ୍ଷ, ଜୀବ-
ଯେ କେବଳ ଦେଖୁଛନ୍ତି ସୃଷ୍ଟିରେ ସମଗ୍ରେ,
ସ୍ନେହଶୀଳ ପିତା ସମ ସେହି ସେ ଜାଣଇ
ସୁଖଦୁଃଖ ଛାୟାଲୋକ ପ୍ରକୃତ ରହସ୍ୟ ।
ଧରା, ବ୍ୟକ୍ତି, ଜନତାର କେଉଁ କାଳେ, ସ୍ଥାନେ,
କିପାଇଁ ବା ଦୁଃଖସୁଖ ହୁଏ ଆତଯାତ
ତାହାର ଗୋପନ ମର୍ମ ସେହି ସେ ଜାଣନ୍ତି ।
କହ ଏବେ ଆଉ କିଛି ସନାତନ କଥା,
ପରେ ପୁଣି ହେବ ତବ ପ୍ରଶ୍ନ ଆଲୋଚନା ।

ଜୀବାନନ୍ଦ— ଆଶ୍ରମେ ଆସିଲାବେଳେ ନିତାନ୍ତ ଦୁର୍ବଳ
ହେଲେହେଁ ଥିଲା ସେ ସମ୍ପୂର୍ଣ୍ଣରେ ସଚେତନ—
ତତ୍‌କ୍ଷଣେ ଚିହ୍ନିଲା ମତେ,
ଆଣିଦେଲି ଅନ୍ନ ଓ ବ୍ୟଞ୍ଜନ ।
କିନ୍ତୁ ଦେଖି ସେସବୁରେ କହେ ନିର୍ବିକାରେ
"ଦିଅ ବାଂଧି ବୁଜୁଲାରେ ନେବି ମୁହିଁ ଘରେ ।"

କହିଲି ମୁଁ ''ସନାତନ, ତୁମେ ନିଅ ଖାଇ,
ତା'ପରେ ଯଥେଷ୍ଟ ଦେବି ଘରକୁ ତୁମର ।''
ଶୁଣିଲାନି କେଉଁ ମତେ, କହିଲା କେବଳ
''ନନା ବୋଉ ଅନାହାରେ ଥିବେ ଯେ ଅନାଇ,
ତାଙ୍କ ମୁଖେ ନାହିଁ ଦେଇ ଅନ୍ନ,
ଖାଇ ମୁଁ ପାରିବି ନାହିଁ ।''
ଶେଷେ ବାଧ ହୋଇ
ବାନ୍ଧିଦେଲୁଁ ଖାଦ୍ୟ ଦ୍ରବ୍ୟ ବୁଜୁଲିରେ ତା'ର,
ତାକୁ ନେଇ ଧୀରେ ଧୀରେ ଛାଡ଼ିଲା ଆଶ୍ରମ,
ସଙ୍ଗେ ତା'ର ଦେଲୁଁ ଲୋକ ।
କଷ୍ଟେ ମଷ୍ଟେ ଗଲା କୋଶେ ଖଣ୍ଡେ,
ଆଉ ନ ପାରିଲା ଚାଲି, ଖରା ହୋଇ ଆସିଲାଣି ତେଜ,
ଶୁଣିଲି ମୁଁ ପଡ଼ିଗଲା ଅନାୟତ୍ତେ ପଥେ,
ଅଳ୍ପ କିଛି କାଳ ମଧେ ଗଲା ଛାଡ଼ି ପ୍ରାଣ ।
ଶେଷ ନିଶ୍ୱାସର କାଳେ ଶୁଣିଲୁଁ ତା ପତ୍ନୀ
ଆସି ସେହିଠାରେ ପଡ଼ି ମୃତଦେହେ ତା'ର
ତେଜିଲା ତା ଶେଷ ବାୟୁ ।

ଶିବାନନ୍ଦ— ଅତ୍ୟନ୍ତ କରୁଣ ଚିତ୍ର ! କିନ୍ତୁ ସତ୍ୟ, ଧର୍ମ
କରୁଣହିଁ ସବୁକାଳେ, ସର୍ବଦା ନିଷ୍ଠୁର ।
କ୍ଷଣିକର ଆସ୍ୱାଦନେ ମଗ୍ନ ନରନାରୀ,
ଆପାତର ମାୟାଜାଲେ ସୁଖେ ବଦ୍ଧ ସର୍ବେ ।
ଶରୀର-କେନ୍ଦ୍ରିକ ଏହି ପଶୁ-ସୁଖ-ଲୋକୁଁ
ଉଠିବା ଆତ୍ମାର ଲୋକେ, ସେହିହିଁ ନରତ୍ୱ,
ସେହିହିଁ ପରମ ଲକ୍ଷ୍ୟ ନର-ଜନମର ।
ନାମ ତା'ର ଥିଲା ସନାତନ,
ଜୀବଧର୍ମେ ନ ବୁଡ଼ି ସେ ଚିରନ୍ତନେ ନଗଲା ବିସ୍ମୃତ,
ଭୁଲି ସେ ନ ଗଲା କେବେ
ନିତ୍ୟ-ଆପାତର ଜ୍ଞାନ, ମନୁଷ୍ୟର ପରମ ପରୀକ୍ଷା ।
ନରେନ୍ଦ୍ରର ଅହମିକାମୟ
ରାଶି ରାଶି ସ୍ୱର୍ଣ୍ଣଦାନ, ଭୋଜ୍ୟଦାନ ସାଧୁ ସନ୍ନ୍ୟାସୀରେ
ସନାତନ କର୍ମ ସଂଗେ ତୁଳନୀୟ ନୋହିପାରେ କେବେ ।

ଯଥେଷ୍ଟ ଭୋଜନ ପରେ ଫିଙ୍ଗିଦେଇ ପାତ୍ର-ଅବଶେଷେ
ବୋଲାଇବା ଦାନବୀର, ସମାଜର ଦୃଶ୍ୟ ସାଧାରଣ ।
ବୁଭୁକ୍ଷୁ ତା କଷ୍ଟଲବ୍ଧ ଅନ୍ନ ଦେବା ଥୋଇ
ଅନ୍ୟର ସନ୍ତୋଷ ପାଇଁ ସେହିଁ ନରତ୍ନ ।
ଚାଲ ଯିବା ଶ୍ମଶାନକୁ । ଆଉ କିଛି ପୁଷ୍ପ ବଗିଚାରୁ,
ସନାତନ ଭସ୍ମପରେ ସମର୍ପି ସେସବୁ
ପ୍ରାର୍ଥନା ମୁଁ କରିବି କିଞ୍ଚିତ ।
କୋଟି କୋଟି ଜୀବିତଙ୍କଠାରୁ
ତା ଶବ-ପାଉଁଶ ଅଟେ ଅଧିକ ଜୀବନ୍ତ ।

(ଏକ ପରେ ଏକ ପ୍ରସ୍ଥାନ)

---

# ବୁଦ୍ଧ-ଦୂତୀ

## (ପ୍ରଥମ ଦୃଶ୍ୟ)

**କଥା–** କଳିଙ୍ଗ ରାଜଧାନୀ ଦନ୍ତପୁର ନଗରୀର ଶୃଙ୍ଗାଟକରେ ସ୍ମାରକ ସ୍ତୂପ ଦଣ୍ଡାୟମାନ । ଏହି ସ୍ତୂପରେ ବୁଦ୍ଧଙ୍କ ପରିନିର୍ବାଣ ପରେ ତତ୍‌କାଳୀନ କଳିଙ୍ଗ ରାଜା ବୁଦ୍ଧ ଭସ୍ମରୁ ଆଣିଥିବା ପବିତ୍ର ବୁଦ୍ଧଦନ୍ତ ରକ୍ଷିତ ଓ ପୂଜିତ । କଳିଙ୍ଗର କୃଷକ, ସୈନିକ, ବଣିକ, ନାରୀ ସମସ୍ତେ ଏଇ ସ୍ତୂପ ନିକଟକୁ ଆସି ପବିତ୍ର ବୁଦ୍ଧ ସ୍ମୃତିକୁ ସମ୍ମାନ ଦାନକରନ୍ତି । ଆସନ୍ତି ମଧ୍ୟ ରାଜା ଓ ରାଣୀ ।

କିନ୍ତୁ ସମଗ୍ର କଳିଙ୍ଗ ରାଜ୍ୟରେ ପ୍ରଧାନ ବୁଦ୍ଧ-ଭକ୍ତ ହେଉଛନ୍ତି ରାଜଜେମା ହେମମାଳା ।

ଆଜି ବୁଦ୍ଧପୂର୍ଣ୍ଣିମା । ଦନ୍ତପୁରର ଶୃଙ୍ଗାଟକରେ ଜନତାର ସମାବେଶ । ଦଳ ଦଳ ଲୋକ ସ୍ତୂପ ନିକଟରେ ପୁଷ୍ପାର୍ପଣ କରି ବୁଦ୍ଧସ୍ମୃତିକୁ ସମ୍ମାନ ଦାନ କରି ଫେରୁଛନ୍ତି । ସଂଧ୍ୟା ଆଗତପ୍ରାୟ । ରାଜା ଓ ରାଣୀ ଓ ପାରିଷଦବର୍ଗ ମଧ୍ୟ ଆସିଲେ ଓ ସମ୍ମାନ ପ୍ରଦର୍ଶନ କରି ଫେରିଗଲେ ।

ଶେଷରେ ଆସିଲେ ସଖୀ ସହ ଜେମା ହେମମାଳା—ପ୍ରଭୁ ବୁଦ୍ଧଙ୍କର ପରମୋପାସିକା । ସେ ନାରୀଜନର ସକଳ ଗୁଣରେ ଭୂଷିତା । ସେ ଗାୟିକା ଓ ନର୍ତ୍ତକୀ । ଭାବର ଆବେଗରେ ସେ ବୁଦ୍ଧଙ୍କ ସ୍ମୃତି ଉଦ୍ଦେଶ୍ୟରେ ନୃତ୍ୟାଞ୍ଜଳି ଅର୍ପଣ କଲେ ।

### ଗୀତ (ଗୁରୁଲଘୁ ନିୟମ)

ଜୟ ବିଶ୍ୱବନ୍ଦ୍ୟ ଜୟ ବୁଦ୍ଧ
ଜୟ ମୃତ୍ୟୁଞ୍ଜୟ ଜୟ ଶୁଦ୍ଧ
ଜୟ ଦୁଃଖ ବିନାଶକ ଜ୍ଞାନ ବିଧାୟକ
କରୁଣାମୟ ଅଲୁବ୍ଧ ।

(୧)

ଯୁଗ ଯୁଗ ଭ୍ରାନ୍ତିର ଶର୍ବରୀ ଶେଷ,
(ତବ) ବୁଦ୍ଧି ସମୁଜ୍ଜ୍ୱଳ କିରଣେ,
ମାର ଦମିତ କରି ହେ ବିଜୟୀବର
ଗରବିତ କଲ ନର କରମେ ।

କଲ ନିର୍ଭୟ,
ଅମଳ, ଅରୁଦ୍ଧ,
ଜୟ ବିଶ୍ୱ-ବନ୍ଦ୍ୟ ଜୟ ବୁଦ୍ଧ ।
(୨)
ହିଂସ୍ର ଜଟିଳ ଯେତେ ମୁକ୍ତିର ପନ୍ଥା
କଲ ଋଜୁ ଯୁକ୍ତିର ପରଶେ,
ହେ ନବ-ଦ୍ରଷ୍ଟା, ମାନବ ସୃଷ୍ଟି
ପୁଲକିତ ପ୍ରଜ୍ଞାର ହରଷେ ।
ନିର୍‌ବାଣ-ବିମଳ-ମଧୁ-ମୁଗ୍ଧ,
ଜୟ ବିଶ୍ୱବନ୍ଦ୍ୟ ଜୟ ବୁଦ୍ଧ ।
(ବୁଦ୍ଧ ନାଟକରୁ ଗୃହୀତ)

## (ଦ୍ୱିତୀୟ ଦୃଶ୍ୟ)

**କଥା**— ବୌଦ୍ଧଧର୍ମର ଜନପ୍ରିୟତା ବୈଦିକମାନଙ୍କର ଈର୍ଷା ଓ କ୍ରୋଧର କାରଣ ହୋଇଉଠିଲା । ସେମାନଙ୍କର ଯାଗଯଜ୍ଞାଦି ଏକାବେଳକେ ଅଚଳ ହୋଇଉଠିଲା । ସେମାନେ କ୍ରୋଧରେ ଜନତାକୁ ଅଭିଶାପ ଦେବାକୁ ଲାଗିଲେ ଓ ନାନା ବିପତ୍ପାତର ବିଭୀଷିକା ଦେଖାଇଲେ । ସେମାନେ ମଧ ରାଜ୍ୟ ବାହାରୁ ଆକ୍ରମଣକାରୀମାନଙ୍କୁ ଡାକି ଆଣିବାକୁ ଗଲେ ।

### ଗୀତ (ମାତ୍ରାବୃତ୍ତ)

ଶଙ୍କର, ତୋ- ବିଷାଣ କାହିଁରେ ?
ଡମ୍ବରୁ ତୋର କାହିଁ ?
ରୁଦ୍ର ହେ ତବ ଯାଏ ଗୌରବ,
ତାଣ୍ଡବ କାହା ପାଇଁ ?
ଡମ୍ବରୁ ଡିମି ଡିମି ବାଜୁ ହେ
ସଂହାର ସଂସାରେ ରାଜୁ ହେ,
ବଜ୍ର ବିଜୁଳି ଖସୁ ବିଧର୍ମୀ ଦଳ ନାଶୁ
ବେଦ, ଦେବତାର ଉଷା ଜାଗୁ ହେ ।
**ଶଙ୍କର......**

ଧ୍ୱଂସ ଆସୁ
ପ୍ରଳୟ ଆସୁ
ଆସୁ ବିପଦ ବନ୍ୟା,

ଶାସ୍ତ୍ର-କେତନ
　　ରହୁ ଉଡ୍‌ଡୀନ,
　　　　ଧରିତ୍ରୀ ହେଉ ଧନ୍ୟା
　　　　　　ଶଙ୍କର.....

| | |
|---|---|
| | ଶଙ୍କର..... |
| ନରକେ | ଜଳିବେ |
| କାନନ | ପରି ସେ |
| | ଯଜ୍ଞର ବିଦ୍ରୋହୀ, |
| ଶଙ୍କର ତୋର | ବାଜୁରେ ବିଷାଣ |
| ବିପ୍ଳବ-ବାଣୀ | ବୋହି । |
| | ଶଙ୍କର...... |

## (ଦ୍ବିତୀୟ ଦୃଶ୍ୟ)

**କଥା**— ମଧ୍ୟରାତ୍ରି, ସମଗ୍ର ଦନ୍ତପୁର ନଗରୀ ସୁପ୍ତା—ଜାଗ୍ରତ କେବଳ ରାଜଜେମା ହେମମାଳା । ବୁଦ୍ଧ ସ୍ମାରକର ଭବିଷ୍ୟତ ଆଶଙ୍କା କରି ସେ ଉଦ୍‌ବିଗ୍ନା । ବୁଦ୍ଧଦନ୍ତକୁ କୌଣସିମତେ ରକ୍ଷା କରିବା ପାଇଁ ସେ ବର୍ତ୍ତମାନ ପ୍ରାସାଦରୁ ବହିର୍ଗତା । ସନ୍ତର୍ପଣରେ ସେ ସ୍ତୂପ ନିକଟକୁ ଆସିଲେ ଓ ପରିକ୍ରମଣ କଲେ । ସ୍ତୂପର ଏକ ଗୁପ୍ତପଥ ଯାହା ତାଙ୍କୁ ଜଣାଥିଲା ସେହି ପଥରେ ସେ ଜ୍ୟୋତିର୍ମୟ ବୁଦ୍ଧଦନ୍ତଟିକୁ ବାହାର କରି ଆଣି, ଜ୍ୟୋତିକୁ ଗୋପନ କରିବା ପାଇଁ ନିଜର ପୁଷ୍କଳମଞ୍ଜୁଳ ଖୋଷାରେ ତାହାକୁ ଭକ୍ତି ଓ ଯତ୍ନର ସହିତ ଲୁକ୍‌କାୟିତ ରଖି, ଉତ୍‌ଫୁଲ୍ଲ ଚିତ୍ତରେ ପୁଣି ଧୀରେ ଧୀରେ ପ୍ରାସାଦକୁ ଚାଲିଗଲେ ।

### ଗୀତ

(ଆବୃତ୍ତି ଛନ୍ଦ, ମାତ୍ରାବୃତ୍ତ)

ନୀରବ ନିଶୀଥ, ଜନହୀନ ପଥ,
　　　　ସୁପ୍ତ ନଗରୀ ସାରା,
ପଥେ ଚାଲେ ଖାଲି ରାଜଜେମା,—
　　　　ବାଟ ଦେଖାଏ ଆକାଶ ତାରା ।
ନିଦ ନାହିଁ ତାର କୁମୁଦ ନୟନେ,
　　　　ନିଶ୍ୱାସ ଘନ ଘନ,
ଅଭିସାରିଣୀ ସେ ପ୍ରଥମ ଜୀବନେ
　　　　ଚିତ୍ତ ତା' ଛନଛନ ।

ତା ହୃଦ-ଦେବତା ମାନସୋରମ
　　　　ପରମ ସତ୍ୟ ବୁଦ୍ଧ,

ପୂଜାର ସେ ଦୀପ ଜାଳି ରଖିବାକୁ
ରହିଛି ପୁଣ୍ୟ, ଶୁଦ୍ଧ । (ଘୋଷା)
ପୂର୍ବପୁରୁଷେ ଆଣିଥିଲେ ତାର
ବୁଦ୍ଧ ସ୍ମାରକ ମାଗି
କଳିଙ୍ଗ ଧରା, ଧନ-ଜନ-ଭରା
ତାହାରି ଆଲୋକ ଲାଗି ।
ତାମସ-ଜଡ଼ିତ ଅନ୍ଧ ଜନତା
ସେ ଦୀପ ଲିଭାଇ ଦେବେ
ରାଜବାଳା ଦେହେ ଜୀବନ ଥାଉକି
ସମ୍ଭବ ହେବ କେବେ ?
ଯେ ମହାପୁରୁଷ ଧରାର ଆଲୋକ,
ତାଙ୍କର ମାନ ପାଇଁ
ରାଜଜେମା ତାର ଛୋଟ ପ୍ରାଣ-ଦୀପ
ଦେଉଅଛି ନିଉଛାଇ । (ଘୋଷା)
କୋମଳ ଅଙ୍ଗ ଯଜ୍ଞ କରି ସେ
ରଖିବ ବୁଦ୍ଧ ମାନ
ଏଇ ଆସେ ଏଇ କଳିଙ୍ଗ ଜେମା
ରୂପେ ଗୁଣେ ସେ ଯେ ଲକ୍ଷ୍ମୀ ଉପମା,
ନୀରବ ନିଶୀଥେ,
ବିଭୀଷିକାମୟ
ପୁର ପଥେ ପଥେ
ଏଇ କରେ ତାର
ଜୀବନେ ଆଦ୍ୟ
ଅଭିସାର ଅଭିଯାନ । (ଘୋଷା)

## (ଚତୁର୍ଥ ଦୃଶ୍ୟ)

କଥା— ଦନ୍ତପୁରର ଶୃଙ୍ଗାଟକ ନିକଟରେ ବ୍ରାହ୍ମଣ ଓ ଶ୍ରମଣମାନଙ୍କର ସଂଗ୍ରାମ । ଅହିଂସ ଶ୍ରମଣମାନଙ୍କ ରକ୍ତରେ ଦନ୍ତପୁରର ପଥ ଲୋହିତ ଓ କର୍ଦ୍ଦମାକ୍ତ ହୋଇଉଠିଲା । ଅସ୍ତ୍ରାଘାତରେ ଶ୍ରମଣମାନେ କେବଳ 'ବୁଦ୍ଧଂ ଶରଣଂ ଗଚ୍ଛାମି' କହି ଘାତକକୁ ଆଶୀର୍ବାଦ କରନ୍ତି । ବ୍ରାହ୍ମଣମାନେ ସ୍ତୂପ ଭାଙ୍ଗି ଦେଖିଲେ ଯେ ବୁଦ୍ଧଦନ୍ତକୁ କିଏ କାଢ଼ି ନେଇଯାଇଛି । କ୍ରୋଧୋନ୍ମତ୍ତ ହୋଇ ସେମାନେ ପ୍ରାସାଦ ଆଡ଼କୁ ଧାଇଁଲେ ।

**ଗୀତ— (ଆବୃତ୍ତି ଛନ୍ଦ, ମାତ୍ରାବୃତ୍ତ)**

ଆଲୋକ, ଅନ୍ଧାର,
ପ୍ରଳୟ ହୁଙ୍କାର
ଗରଜି କରେ ରଣ ଦୁର୍ବାର
ସତ୍ୟେ-ପ୍ରେମେ ହାଣେ
ହିଂସା-ଖରଶାଣେ,
ଅନ୍ଧ-ଅଜ୍ଞତା ସର୍ଦ୍ଦାର ।
ଖଡ୍‌ଗ ପଡ଼େ ବେକେ,
ଯଷ୍ଟି ଛେକେ ଛେକେ,
ଶ୍ରମଣ ପୃଷ୍ଠରେ ପଲକେ
ବୁଦ୍ଧ ହେ ଶରଣ
କହି ବରେ ମରଣ
ଆଶିଷେ ଢାଳେ ଲହୁ ଝଲକେ ।
ହିଂସ୍ର, ଜାନ୍ତବ
ଦିଅଇ ପରାଭବ
ସତ୍ୟ, ସଭ୍ୟତା-ବର୍ତ୍ତୀରେ ।
ଧର୍ମ, ସଂଘରେ
ବୁଦ୍ଧ ଚରଣରେ
ଶରଣ କହି ଟଳେ କ୍ଷିତିରେ ।
ଆଲୋକ, ଅଂଧାର
ପ୍ରଳୟ ହୁଙ୍କାର
ଗରଜି କରେ ରଣ ଦୁର୍ବାର,
ଶ୍ରମଣ, ବ୍ରାହ୍ମଣ
ଘୋରତମ ଏ ରଣ
ଦନ୍ତପୁର ହୁଏ ଚୁର୍‌ମାର ।

## (ପଞ୍ଚମ ଦୃଶ୍ୟ)

**କଥା**—ରାଜବାଳା ହେମମାଳା, ବୁଦ୍ଧ-ସ୍ମାରକକୁ ଖୋଷାରେ ଲୁଚାଇ ପଳାୟନ-ମାନା । ...ଏ ନଦୀ, ବନ, ମରୁ, ପର୍ବତ ଡେଇଁ ଏକ ମୁଖରେ ଚାଲିଛି । ରାଜ୍ୟରୁ ରାଜ୍ୟାନ୍ତରେ ବୁଦ୍ଧ-ସ୍ମାରକର ଆଶ୍ରୟ ପାଇଁ ସେ ଭିକ୍ଷାକରିଛି । କିନ୍ତୁ ସେ ଆଶ୍ରୟ, ଦେବ-ବ୍ରାହ୍ମଣର-ଅଭିଶାପ ଭୟରେ, ସେ କାହାରିଠାରୁ ପାଇନାହିଁ । ସେ ନିରନ୍ତର ପଳାୟମାନା ।

## ଗୀତ (ଆବୃତ୍ତି ଛନ୍ଦ, ମାତ୍ରାବୃତ୍ତ)

ବିଳାସ ତିଆଗି ନୃପତି କୁମାରୀ
ଧାଇଁଛି, ଧାଇଁଛି,
ଧାଇଁଛି ଗହନ ପଥେ ।
ବାଧା ସେ ମାନେନା, ଅଳସ ଜାଣେନା,
ଶ୍ରମ ସେ ମଣେନା,
ଅବାରିତେ ଚାଲେ, ଏକମୁଖ ମନୋରଥେ ।
ସୁକୁମାରୀ ରାଜଦୁଲାଳୀ ସେ ଚାଲେ
ବନ, ମରୁ, ନଦୀ, ଗିରି କରି ଅତିକ୍ରମ
ଦେଶୁ ଦେଶ ଯାଏ, ପାଗଳିନୀ ପ୍ରାୟେ,
କୋମଳ ତା ପଦ ମାନେ ନାହିଁ ପଥଶ୍ରମ ।
ରାଇଜୁ ରାଇଜେ ଡାକି ଡାକି କହେ
ବୁଦ୍ଧ ସ୍ମାରକେ ଅଭୟ କିଏ ସେ ଦେବ ?
ଦେବତାର ଭୟେ, ବ୍ରାହ୍ମଣ ଶାପେ
ଡରି ଅଧର୍ମ ଘୋର ସେହି ପାପେ,
କେ କିପାଁ ଘାଣ୍ଟି ହେବ ?
ଚଳେ ହେମମାଳା ରାଇଜୁ ରାଇଜେ-
ଶେଷ ହୋଇଆସେ କରମଣ୍ଡଳ ବେଳା
ବୁଦ୍ଧ-ସ୍ମାରକ ଆଶ୍ରୟ କାହିଁ
ଜମ୍ବୁ ଦ୍ୱୀପରେ ମିଳିଲା ତ ନାହିଁ,
ସତେକି ବୁଡ଼ିବ ନିରାଶା ସାଗରେ
ତା'ର ସାଧନାର ଭେଳା ?
ଲଳିତ ତା କେଶେ ବୁଦ୍ଧଦନ୍ତ;
ଅନ୍ତର ତା'ର
ମହାସ୍ୱର୍ଣ୍ଣରେ ଭରା,
ସେ କିପାଁ ହୋଇବ ବ୍ୟର୍ଥ ନିରାଶ,
ବିଫଳ ହେବ କି ତା ମହା ପ୍ରୟାସ,
ଚିତ୍ତ ଯାହାର
ସତ୍ୟ, କରୁଣା, ଆନନ୍ଦ ଧାନେ ଗଢା ?
କୁମାରିକା କୂଳେ ସେ ତପ କୁମାରୀ

ଦେଖିଲା ଭୀଷଣ
ଜଳଧି ଉର୍ମିମାଳା
ସ୍ଥିରପ୍ରତିଜ୍ଞ, ଅକୁତୋଭୟ ସେ,
ବୁଦ୍ଧର ମାନ ରଖିବା ପାଇଁ କି
ଅନନ୍ତ ପଥେ ଟେକିଦେଲା ପାଲ
କଳିଙ୍ଗ ରାଜବାଳା ।

## (ଷଷ୍ଠଦୃଶ୍ୟ)

କଥା—ବାରିଧିବେଳାରେ ସିଂହଳର ରାଜବଂଶ ବୁଦ୍ଧସ୍ମାରକବାହିନୀ ତପସ୍ୱିନୀ କଳିଙ୍ଗ ରାଜକୁମାରୀ ହେମମାଳାର ଅଭିନନ୍ଦନ ପାଇଁ ମାଲ୍ୟ ଚନ୍ଦନ ହସ୍ତରେ ଦଣ୍ଡାୟମାନ । ଭ୍ରମଣଶୀର୍ଣ୍ଣା, ମଳିନବସନା ହେମମାଳାର ପ୍ରବେଶ । ବୁଦ୍ଧଦନ୍ତର ଆଶ୍ରୟ ତା'ର ମଞ୍ଜୁଳ ଜୁଡ଼ାଟି କିନ୍ତୁ ପୂର୍ବପରି ଯନ୍ନରକ୍ଷିତା । ହେମମାଳା ଖୋଷାରୁ ବୁଦ୍ଧ ସ୍ମାରକଟି ଭକ୍ତିର ସହିତ ବାହାରକରି ସିଂହଳ ରାଜରାଣୀଙ୍କୁ ଉପହାରଦେଲେ ।

[ ସିଂହଳ ପକ୍ଷରୁ ଅଭିନନ୍ଦନ ]

### ଗୀତ (ମାତ୍ରାବୃତ୍ତ)

ଆସ, ଭୂଲୋକ-ଆଲୋକ,
ଆସ, କରୁଣାମୟ
ଆସ ସତ୍ୟର ମହାଶିଖା,
ଶିକ୍ଷା ଏ ଧରଣୀର,
କର, ଅନ୍ଧାର କୋଟି ପ୍ରାଣେ ଜ୍ଞାନ ଉଦୟ ।
ସ୍ମାରକ ତବ ଧରି
ସିଂହଳ ରାଜ୍ୟ
ହେଉ, ପୁଣ୍ୟ, ଧନ୍ୟ, ଶିରୀ-ବର୍ଦ୍ଧିତ-ଭାଗ୍ୟ
ହେଉ, ଚିର ଆଲୋକିତ, ପୂତ, ପରଶେ ତବ
ନାଶ, ସଂସାର-ଅକୂପାର-ତରଣ-ଭୟ ।
ଆସ, କଳିଙ୍ଗ ଦେଶ ରାଜକୁମାରୀ ଶିରୀ,
ଲକ୍ଷ୍ମୀ ଆଗତା ସୁଧାକୁମ୍ଭ ଧରି,
ଘେନ, ସିଂହଳ ପ୍ରୀତି ଅଭିନନ୍ଦନ ଗୋ
ଲଭ, ପରମ ସାଧନା ତବ ମଧୁର ଜୟ ।

[କଳିଙ୍ଗ ରାଜକୁମାରୀଙ୍କର ଉତ୍ତର]

### ଗୀତ (ଓଡ଼ିଶୀ)

ଜୀବନ ମଣି ମୋର ଯାଉଛି ଦେଇ
ରଖିବଟିକି ରାଜ-ବଣିକ । (ଘୋଷା)
ବୁଦ୍ଧ ମହାମାନବ,
ନବ ଆଲୋକେ ଭବ
କଲେ ଯେ ସମୁଜ୍ଜ୍ୱଳ
ଜାଳି ଅଜ୍ଞତା-ଗର୍ବ,
ତାଙ୍କରି ସ୍ମୃତି ଏହି
କଳିଙ୍ଗଜନ ସର୍ବ,
ପରମତମନିଧି
ଧ୍ୟାନୋଦଧିସମ୍ଭବ,
ଦେଇଯାଉଛି କରେ
ନିଅ କରି ସମ୍ଭର୍ବ
ସିଂହଳରାଜ-ଗୁଣିକ ।
ସରିଲା ମୋ ସାଧନା,
ଧିଆନ ଉପାସନା,
ସନ୍ନ୍ୟାସୀବର ପାଇଁ
ପଥର ନିର୍ଯାତନା,
ତନୁରେ ମୋର ଆଉ
କି ଅଛି ପ୍ରୟୋଜନ ।
ଯାଉଛି ମୁହିଁ ମୁଦେ
ସାଇତି ରଖି ହୃଦେ
ସଦ୍ଧର୍ମ ଆଶା ମାଣିକ ।

(ନୃତ୍ୟ କରୁ କରୁ ଢଳିପଡ଼ିଲେ । ପ୍ରାଣବାୟୁ ଚାଲିଗଲା । ସିଂହଳ ରାଜା ଓ ରାଣୀ କଳିଙ୍ଗ ରାଜକୁମାରୀଙ୍କ ଦେହକୁ କୁଣ୍ଢାଇଧଇଲେ । ପଶ୍ଚାତ୍‌ବର୍ତ୍ତୀ ଜନତାରୁ ଧ୍ୱନିତ ହୋଇ ଉଠିଲା—

ବୁଦ୍ଧଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି । (ତିନିବାର)

(ଧୀରେ ଧୀରେ ପଟପତନ)

---

# ଶାସନ ଚକ୍ର

## (ଏକାଙ୍କିକା)

**ଚରିତ୍ରାବଳୀ–**

ନବକୋଟ ରାଜ୍ୟର ଗଭର୍ଣ୍ଣର
ହୋମ୍-ମିନିଷ୍ଟର– ମି. ମହାରଥୀ
ଶିକ୍ଷାମନ୍ତ୍ରୀ– ପଣ୍ଡିତ ଶଙ୍କର ଶର୍ମା
ଜୀବନବନ୍ଧୁ– ସେହି ଷ୍ଟେଟ୍‌ର ଶ୍ରେଷ୍ଠ କବି
ଶିଷ୍ୟାନନ୍ଦ– ସନ୍ନ୍ୟାସୀବେଶଧାରୀ ଏକ ଶିକ୍ଷକ
ସୁକାନ୍ତି– କବିଙ୍କ ପତ୍ନୀ
ସାତଟି ବାଳିକା, ସାତଟି ସ୍କୁଲ୍ ଛାତ୍ର,
ଜନୈକ ପୋଲିସ୍ ଅଫିସର, ଜନୈକ ଚପରାସୀ,
ଜନୈକ ଖବରକାଗଜ ହକର ଓ ଶବବାହୀ ଦଳ ।

(୧୯୫୧ରେ ଲିଖିତ)

### (ପ୍ରଥମ ଦୃଶ୍ୟ)

**[ରାଜଭବନରେ ଗଭର୍ଣ୍ଣର ମି. ଲିୟାକତ୍‌ଆଲୀ ଫାଇଲ ନେଇ ବ୍ୟସ୍ତ । ମି. ଆଲୀ ନିଜେ ଜଣେ କବି ଓ ବକ୍ତା । କେବଳ ଗାଦିରେ ବସି ସେ ସନ୍ତୁଷ୍ଟ ନୁହନ୍ତି । ଲୋକକଲ୍ୟାଣ ପ୍ରତି ତାଂକର ଦୃଷ୍ଟି ଅଛି । ପୂର୍ବାହ୍ନ । କିଛି ସମୟ ପରେ ୟୁନିଫର୍ମ ପରିହିତ ଏଡ଼ିକଙ୍ଗ୍ ଆସି କାଇଦାରେ ସାଲ୍ୟୁଟ୍ ଦେଲେ ।]**

**ଏଡ଼ିକଙ୍ଗ–** ଇଓର୍ ଏକ୍‌ସେଲେନ୍‌ସି, ଶିକ୍ଷାମନ୍ତ୍ରୀ ମି. ଶର୍ମା ।

**ଗଭର୍ଣ୍ଣର–** ଆସନ୍ତୁ ।

**(ଏଡ଼ିକଙ୍ଗ୍ ସାଲ୍ୟୁଟ୍ ଦେଇ ବିଦାୟନେଲେ ଓ ଶିକ୍ଷାମନ୍ତ୍ରୀ ମି. ଶର୍ମା ପ୍ରବେଶ କଲେ । ଗଭର୍ଣ୍ଣର ଆସନ ଛାଡ଼ି ଉଠିଆସିଲେ ଓ ମି. ଶର୍ମାଙ୍କ କରମର୍ଦ୍ଦନକଲେ । ତା'ପରେ ପାଇପ୍‌ରେ ମଝିରେ ମଝିରେ ଟାଣ୍ ଦେଇ ଦେଇ ଘର ଭିତରେ ଏଣେତେଣେ ବୁଲି ବୁଲି ଆଳାପକଲେ ।)**

ଗଭର୍ଣ୍ଣର— ଶର୍ମାଜୀ, ଏଇ ଜୀବନବଂଧୁ ପଟ୍ଟନାୟକ କିଏ ?

ଶର୍ମା— ଇଓର୍ ଏକ୍‌ସେଲେନ୍‌ସି, ସେ ଏଇ ନବକୋଟ ରାଜ୍ୟର ଆଧୁନିକ କାଳର ଶ୍ରେଷ୍ଠ କବି । ତାଂକ କଥା ଆପଣଙ୍କୁ ବର୍ଷକ ତଳେ କହିଥିଲି । କିଂତୁ ଇତିମଧ୍ୟରେ ତାଙ୍କର ମୃତ୍ୟୁ ହୋଇଯାଇଛି ।

ଗଭର୍ଣ୍ଣର— ସତେ ? ଅତ୍ୟନ୍ତ କରୁଣ ଓ ପରିତାପର କଥା ତେବେ । ରାଜ୍ୟର ସର୍ବାଞ୍ଚଳରୁ ତାଙ୍କ ସମ୍ବନ୍ଧରେ ମୁଁ ଆଜି ବହୁ ଟେଲିଗ୍ରାମ୍ ପାଇଛି । କ'ଣ ବର୍ତ୍ତମାନ କରାଯାଇପାରେ ?

(ଏଇ ସମୟରେ ଅଦୂରରେ ଛାତ୍ରମାନଙ୍କର ପ୍ରଶେସନ୍, 'ମନ୍ତ୍ରୀମଂଡ଼ଳ ଧ୍ୱଂସ ହେଉ', 'ଜୀବନବଂଧୁଙ୍କ ମୃତ୍ୟୁର ପ୍ରତିଶୋଧ ଚାହୁଁ', 'ତୁରନ୍ତ ତଦନ୍ତ ହେଉ' ଇତ୍ୟାଦି ସ୍ଲୋଗାନ୍‌ମାନ ଚିତ୍‌କାର କରି କରି ଦୂରକୁ ଚାଲିଗଲେ । ଗଭର୍ଣ୍ଣର ଓ ଶିକ୍ଷାମନ୍ତ୍ରୀ ବାତାୟନ ନିକଟକୁ ଯାଇ ପ୍ରଶେସନଆଡ଼କୁ ଚାହିଁରହିଲେ । ସ୍ଲୋଗାନ୍ ସବୁ ଦୂରରେ ମିଳେଇଗଲା ପରେ ଦୁହେଁ ସମ୍ମୁଖକୁ ଆସି ପରସ୍ପରକୁ ଚାହିଁଲେ ।)

ଗଭର୍ଣ୍ଣର— ଏ ପୁଣି କ'ଣ ?

ଶର୍ମା— ଶୁଣୁଛି, ସହରର ସମସ୍ତ ସ୍କୁଲ୍ କଲେଜର ଛାତ୍ର ଆଜି ଷ୍ଟ୍ରାଇକ୍ କରିଛନ୍ତି, ଜୀବନବଂଧୁଙ୍କ ମୃତ୍ୟୁରେ ସହାନୁଭୂତି ଦେଖାଇ ।

ଗଭର୍ଣ୍ଣର— ଅବସ୍ଥା ଏତେ ସଂଗୀନ୍, ଅଥଚ ମି. ମହାରଥୀ ବରାବର ମୋ'ଠୁ ପ୍ରକୃତ ଘଟଣା ଲୁଚାଇରଖିଛନ୍ତି । ଯା ପଛରେ କି ରହସ୍ୟ ଥାଇପାରେ ?

ଶର୍ମା— ରହସ୍ୟ ଅଛି ସାମାନ୍ୟ, ଇଓର ଏକ୍‌ସେଲେନ୍‌ସି ତାହା ଜାଣିବା ଉଚିତ । କାରଣ ଏଇ ଜନପ୍ରିୟ କବିଙ୍କର ମୃତ୍ୟୁ ସହିତ ଆମ ରାଜ୍ୟର ସମଗ୍ର ଶାସନଚକ୍ର ଜଡ଼ିତ । ଏଇ ରାଜ୍ୟର ସାମାନ୍ୟତମ ଅନ୍ୟାୟପାଇଁ ଆମ୍ଭେମାନେ ସମସ୍ତେ ସମୂହଭାବରେ ଦାୟୀ ନୋହୁଁ କି ? ଅନ୍ୟାୟ ବା ଅଜ୍ଞାନତା କିପରି ଓ କେଉଁଠି ପ୍ରବେଶ କରୁଛି, ରାଜ୍ୟପାଳ ଭାବରେ ତାହା ଆପଣଙ୍କର ଜାଣିରଖିବା ଉଚିତ । ଚାଲନ୍ତୁ, ଲାଉଞ୍ଜ ରୁମ୍‌କୁ ଚାଲନ୍ତୁ । ସେଇଠି ବସି ଏ କରୁଣ ଘଟଣାର ଯାହା ସ୍ମରଣୀୟ ତାହା ଆପଣଂକୁ ଶୁଣାଇଦିଏ ।

ଗଭର୍ଣ୍ଣର— ଆସନ୍ତୁ । ମୁଁ ଶୁଣିବାକୁ ନିତାନ୍ତ ବ୍ୟଗ୍ର । (ଦୁହିଁଙ୍କର ନିଷ୍କ୍ରାନ୍ତ)

## (ଦ୍ୱିତୀୟ ଦୃଶ୍ୟ)

[ଗଭର୍ଣ୍ଣମେଣ୍ଟ ହାଉସ୍‌ର ଲାଉଞ୍ଜ ରୁମ୍ । ଆଧୁନିକ ଧରଣର ଫର୍ଣ୍ଣିଚର ଓ କାର୍ପେଟ୍ ଦେଇ ସଜ୍ଜିତ । ପଟ ଉତ୍ତୋଳିତ ହେବାର କିଛିକ୍ଷଣ ପରେ ମୋଟର କାର୍ ପହଁଚିବାର ଶବ୍ଦ ଶୁଣାଗଲା ଓ ହୋମ୍-ମିନିଷ୍ଟର ମି. ମହାରଥୀ ଗୋଟିଏ ଛୋଟ ଚମଡ଼ାର ପୋର୍ଟ୍‌ମାଣ୍ଟୋ ହାତରେ ଧରି ପହଁଚିଲେ ଏବଂ କକ୍ଷଟି ଖାଲି ଦେଖି ପୋର୍ଟ୍‌ମାଣ୍ଟୋଟି ସାଇଡ୍ ଟେବୁଲ୍‌ରେ ଥୋଇଦେଇ ଗୋଟିଏ ସିଗାରେଟ୍ ଲଗାଇ ଚିନ୍ତାକୁଳ ଭାବରେ ଏପଟ ସେପଟ ପଦଚାରଣ

କଲେ । କିଛିକ୍ଷଣ ପରେ ପୁଣି ମୋଟର ଶବ୍ଦ । ପରେ ପରେ ଶିକ୍ଷାମନ୍ତ୍ରୀ ପଣ୍ଡିତ ଶର୍ମା ହସି ହସି ପ୍ରବେଶକଲେ ।]

ଶର୍ମା– ନମସ୍ତେ ମହାରଥୀଜୀ । କ'ଣ ଖବର ?

ମହାରଥୀ– (ସିଗାରେଟ୍‌ର ପୋଡ଼ା ଅଂଶ ଆଶ୍‌ଟ୍ରେରେ ଝାଡ଼ି ଝାଡ଼ି) ଦେଖନ୍ତୁ ଶର୍ମାଜୀ, ମୁଁ ଆଉ ସମ୍ଭାଳିପାରୁନି । ଏ ହୋମ୍-ପୋର୍ଟଫୋଲିଓ ନେଇ ମୁଁ ନିଜକୁ ଏକ 'ହୋମ୍'ରେ ପରିଣତ କଲିଣି । ସାରାଦିନ ମୁଁ ପୋଡ଼ିହୋଇ ମରୁଛି । ଆପଣଂକର ତ ଶିକ୍ଷାବିଭାଗ–

ଶର୍ମା– ହଁ, ଗରିବ ସ୍କୁଲ ଅବଧାନଂକ ଇଲାକାଟା ମୋ ଭାଗ୍ୟକୁ ଆପଣମାନେ ଆଉଜେଇ ଦେଇଛନ୍ତି; ସୁଖେ ଦୁଃଖେ ଚଳେଇନେଉଛି । ଆପଣଂକର ତ ହୋମ୍, ହୋମ୍, ସୁଇଟ୍ ହୋମ୍ । ଆମର ସିନା ଶିକ୍ଷା, ଭିକ୍ଷା ! ଆପଣଂକର ମନସ୍ତାପ କରିବାର–

ମହାରଥୀ– ମନସ୍ତାପ କରିବାର କୌଣସି କାରଣ ଆଦୌ ଦେଖିପାରୁନାହାନ୍ତି, ନାଁ ? (ସିଗାରେଟ୍ ଟାଣି) ଅର୍ଥାତ୍ ଆପଣ କ'ଣ ମନେକରୁଛନ୍ତି ଯେ ଏ ଡିପାର୍ଟମେଣ୍ଟରେ ଦକ୍ଷିଣା–ଅର୍ଥାତ୍ ଆପଣଙ୍କ ଆନୁପ୍ରାସିକ ଭାଷାରେ ହୋମ୍ ସଙ୍ଗେ ହେମ ଅର୍ଥାତ୍ ସୁନାର ଘନିଷ୍ଠ ସଂପର୍କ ? ନାଁ କ'ଣ ?

ଶର୍ମା– ନା, ନା, ନା । ହଠାତ୍ ଆପଣ ସେପରି ଭାବିଲେ କାହିଁକି ? ହୋମ୍ ବା ଗୃହ ଯେ ଶାନ୍ତିର ସ୍ଥଳ ଏ କଥା କିଏ ନ ଜାଣେ ? ମୁଁ ସେୟା କହୁଥିଲି ସିନା ।

ମହାରଥୀ– ନା, ଅନେକ ଅନ୍ୟଥା ଭାବୁଛନ୍ତି, ଶର୍ମାଜୀ । କିନ୍ତୁ କେହି ଦେଖୁନାହାନ୍ତି ଏ ଡିପାର୍ଟମେଣ୍ଟ ଚଳେଇବାର କଷ୍ଟ ଓ ଦାୟିତ୍ୱ । ମୁଁ ବୋଲି–

ଶର୍ମା– ତା ନିଶ୍ଚୟ, ତା ନିଶ୍ଚୟ । ଆପଣ ବୋଲି ଚଳାଇନେଉଛନ୍ତି । ନ ଜାଣି କି ନାମ ମହାରଥୀ ? ଅନ୍ୟ ଯେକୌଣସି ଲୋକ ଭୁଶୁଡ଼ି ପଡ଼ନ୍ତାଣି । ଚିଫ୍ ମିନିଷ୍ଟର ହେଲେ କ'ଣ ପାରନ୍ତେ ? ଆପଣ ନଥିଲେ ଚିଫ୍ ବି 'ସୀପ୍' ଅର୍ଥାତ୍ ମେଣ୍ଢା ବନିଯାନ୍ତେଣି । ଆପଣଙ୍କ ଅଶ୍ୱ ଓ ରଥହିଁ ଆମ ସମସ୍ତଙ୍କୁ ଗତି ଦାନ କରୁଛି ।

ମହାରଥୀ– କେତେ ଜଣ ଏହି ପରଶ୍ରୀକାତର ଦେଶରେ ବୁଝିଲେ ସେ କଥା ? ସମାଲୋଚନା କରିବାକୁ ସମସ୍ତେ ଶତଜିହ୍ୱ । (ନେପଥ୍ୟକୁ ଚାହିଁ) ଏଇ, ହିଜ୍ ଏକ୍‌ସେଲେନ୍‌ସି ଆସିଗଲେ । ପଁକ୍‌ଚୁଆଲ୍ (ରିଷ୍ଟୱାଚ୍‌କୁ ଚାହିଁ) ଟୁ ଦ' ମିନିଟ । ଏକ୍‌ଜାକ୍‌ଟଲି ଏଇଟ୍ ଫିଫ୍‌ଟିନ୍ । (ହିଜ୍ ଏକ୍‌ସେଲେନ୍ସିଂକର ପ୍ରବେଶ । ଦୁଇ ମନ୍ତ୍ରୀ ଦୁଇ ଦିଗରେ ରହି 'ନମସ୍ତେ' କଲେ ।)

ଗଭର୍ଣ୍ଣର– କି ମି. ମହାରଥୀ, ଆପଣଙ୍କର ରଥ ବର୍ତ୍ତମାନ କେଉଁଠି ?

ମହାରଥୀ– ଇଓର ଏକ୍‌ସେଲେନ୍‌ସି, ମୁଁ ଯେଉଁଠି ଥାଏ ନା କାହିଁକି, ମୋର ରଥ କିଂତୁ ଏ ରାଜ୍ୟର ସର୍ବତ୍ର ଘୂରୁଛି । କେବଳ ଏଇ ରାଜଧାନୀରେ ନୁହେଁ, ପ୍ରତ୍ୟେକ ଜିଲ୍ଲାରେ କିଲାରେ, ଗ୍ରାମେ ଗ୍ରାମେ, ବର୍ତ୍ତମାନ ପରିପୂର୍ଣ୍ଣ ଶାନ୍ତି । ଆଇ ହାଭ୍ ବ୍ରଟ୍ ଅର୍ଡ଼ର ଆଉଟ୍

ଅପ୍ କେୟଶ (I have brought order out of chaos) ସମସ୍ତ ପ୍ରକାର ବିରୋଧର ସ୍ୱର ଚିରକାଳପାଇଁ ନୀରବିତ ।

ଗଭର୍ଣ୍ଣର– କ'ଣ ! ଲୋକପ୍ରତିନିଧି ମନ୍ତ୍ରୀହୋଇ ଆପଣ ଏପରି କହୁଛନ୍ତି ! ଆମ୍ଭମାନଙ୍କର ଏଇ ଆସନ ପରା ଲୋକମତରେ ତିଆରି ? ଆପଣ ସେଇ ଲୋକମତକୁ ପୁଣି ଚୁରମାର୍ କରିବାକୁ ଯାଉଛନ୍ତି ? ଗଭର୍ଣ୍ଣର ଭାବରେ ମୁଁ ସର୍ବପ୍ରକାର ଲୋକମତ ଶୁଣିବାକୁ ଚାହେଁ । ଆମ୍ଭେମାନେ କ'ଣ ଆଗରେ ଆଇନାଟିଏ ଥୋଇ କେବଳ ନିଜ ମୁହଁ ଦେଖୁଥିବା ?

ମହାରଥୀ– ତା'ହେଲେ ଇଓର ଏକ୍ସେଲେନ୍ସି, ଆପଣ ଗୋଟାଏ ମତ କେବଳ ନୁହେଁ, ଏ ଷ୍ଟେଟ୍‌ରେ ଯେତେ ଲୋକ, ସେତିକିଟି ମତ ଶୁଣିବେ ଏବଂ ତା' ଯଦି କରିବାକୁ ଦିଅନ୍ତି, ତେବେ ଇଓର ଏକ୍ସେଲେନ୍ସି ବା ଅନ୍‌ରେବ୍‌ଲ ମିନିଷ୍ଟର୍‌ସ କାହାରି ଆସନ ଦିନକ ପାଇଁ ସୁଦ୍ଧା ସ୍ଥିର ରହିପାରିବ ନାହିଁ ଓ ଶାସନ ମଧ ହେବ ଅସ୍ଥିର ।

ଗଭର୍ଣ୍ଣର– କିଂତୁ ଶ୍ମଶାନର ଶାନ୍ତି ଦେଶରେ ପ୍ରତିଷ୍ଠିତ କରି, କୌଣସି ଲୋକପ୍ରତିନିଧି ସରକାର ଗୌରବ ଅନୁଭବ କରିନପାରେ ।

ମହାରଥୀ– ତା'ହେଲେ ଏ ପୋର୍ଟଫୋଲିଓ ମୋଠାରୁ ଛଡ଼ାଇ ନିଆଯାଉ ।

ଗଭର୍ଣ୍ଣର– ଆପଣ କ'ଣ ଡିକ୍‌ଟେଟର ନ ହୋଇ କାମ କରିପାରିବେ ନାହିଁ, ମି. ମହାରଥୀ ? ଏହା ଯେ ଆମର ସମଗ୍ର କନ୍‌ଷ୍ଟିଚ୍ୟୁସନ୍ ବିରୁଦ୍ଧରେ ! ଡିମୋକ୍ରାଶୀ ବା ଲୋକପ୍ରତିନିଧି ଶାସନର ପ୍ରକୃତ ମାପକାଠି ହେଉଛି, ସେକ୍ରେଟାରୀମାନଂକ ନୋଟ୍ ବା ରିପୋର୍ଟ୍ ନୁହେଁ, ମାପକାଠି ବିରୋଧୀ ଦଳର ପ୍ରତିବାଦ । ସେଇ ହେଉଛି ଆମ ଶାସନର ସକଳ ବ୍ୟାଧିର ପ୍ରକୃଷ୍ଟ ଔଷଧ । ଷ୍ଟେଟ୍‌ର ବାର୍ଷିକ ଉତ୍ସବ କାଲିଠାରୁ ଆରମ୍ଭ ହେବ । ବର୍ତ୍ତମାନ ପୋର୍ଟଫୋଲିଓ ଚେଞ୍ଜ କଥା ଉଠାନ୍ତୁନି । ଉତ୍ସବଟି ଯେପରି ବିନା ବାଧାବିଘ୍ନରେ ସମାହିତ ହୁଏ ତା'ର ସର୍ବପ୍ରକାର ବ୍ୟବସ୍ଥା ଯେପରି କରନ୍ତି, ସେଇଥିପାଇଁ ଆପଣଙ୍କୁ ଡକାଇଥିଲି । ଆଉ ଶର୍ମାଜୀ ଆପଣଂକ ଖବର କ'ଣ ?

ଶର୍ମା– ମୁଁ ଦୁଇଟି ପ୍ରସ୍ତାବ ଆଣିଛି । ଗୋଟିଏ ହେଉଛି ଏଇ ଆଗାମୀ ଜାତୀୟ ଉତ୍ସବରେ ଏ ଷ୍ଟେଟ୍‌ର ଶ୍ରେଷ୍ଠ କବିଂକି ସମ୍ମାନିତ କରିବା, ଆଉ ଦରିଦ୍ର, ଅଳ୍ପ-ବେତନ-ପ୍ରାପ୍ତ ପ୍ରାଇମେରୀ ଶିକ୍ଷକମାନଙ୍କପାଇଁ ଏକ ନୂତନ ସ୍କେଲ୍-ଅପ୍-ପେ ଘୋଷଣା କରିବା ।

ଗଭର୍ଣ୍ଣର– ଅତି ଉତ୍ତମ ପ୍ରସ୍ତାବ । ଖର୍ଚ୍ଚର ଦିଗଟା ହିସାବ କରିଛନ୍ତି ତ ?

ଶର୍ମା– ପ୍ରଥମ ପ୍ରସ୍ତାବ ଉପରେ ଖର୍ଚ୍ଚ କିଛି ନୁହେଁ କହିଲେ ଚଳେ । କେବଳ ଦ୍ୱିତୀୟ ପ୍ରସ୍ତାବ ଉପରେ ମୋ ବିଭାଗର ବଜେଟ୍ ଆଉ ପନ୍ଦର ଲକ୍ଷ ବଢ଼ିଯିବ ।

ଗଭର୍ଣ୍ଣର– ମୁଁ ଚିଫ୍ ମିନିଷ୍ଟରଂକୁ କନ୍‌ସଲଟ୍ କରେଁ । କିଂତୁ ଏ ଖର୍ଚ୍ଚ ନ୍ୟାଯ୍ୟ । ଏଥିରେ ଆପତ୍ତି କରିବାର କୌଣସି କାରଣ ଦେଖୁନି । ଟଂକା ନ ଥିଲେ ଟଂକା ଏଥିପାଇଁ କୌଣସି ନା କୌଣସି ଉପାୟରେ କାଢ଼ିବାକୁ ହେବ । ବୁଭୁକ୍ଷୁ, ଅଭାବଗ୍ରସ୍ତ ଓ

ଜଂଜାଳଗ୍ରସ୍ତ ଲୋକଂକ ହାତରେ କି ଜାତିର ଭବିଷ୍ୟତ ବଂଶଧର ସୁଗଠିତ ଓ ସୁପାଠିତ ହେବାର ଆଶା କରାଯାଇପାରେ ?

ମହାରଥୀ— ଇଓର ଏକ୍‌ସେଲେନ୍‌ସି, ମୋର କିଂତୁ କିଛି ଆପତ୍ତି ଅଛି । ଏଥିରେ ମୁଁ ମୋର ପବ୍‌ଲିସିଟିପାଇଁ ଆଉ ମାତ୍ର ଦୁଇଲକ୍ଷ ଟଂକା ଓ ଗୋଇନ୍ଦା ପୋଲିସ୍‌ପାଇଁ ଅଧିକା ପାଂଚ ଲକ୍ଷ ମାଗିଲି । କାବିନେଟ୍ ନାହିଁ କରିଦେଲେ । ବର୍ତ୍ତମାନ ସାମାନ୍ୟ ପ୍ରାଇମେରୀ ଶିକ୍ଷକମାନଙ୍କପାଇଁ ଆପଣ ପନ୍ଦର ଲକ୍ଷ ଖର୍ଚ୍ଚ କରିବାକୁ ଯାଉଛନ୍ତି ? ଦେଶରେ ପ୍ରାଇମେରୀ ଶିକ୍ଷକର ଅଭାବ ଅଛି ନା କ'ଣ ? ଆଜି ଯଦି ଷ୍ଟେଟ୍‌ର ସବୁ ଶିକ୍ଷକ ରିଜାଇନ୍ କରନ୍ତି, ରାତି ନ ପାହୁଣୁ ଦୁଇଗୁଣ ଦରଖାସ୍ତ ପଡ଼ିଥିବ ଖାଲିସ୍ଥାନ ପୂରଣ କରିବାପାଇଁ । ଏପରି ଅପଦାର୍ଥ ଓ ସୁପ୍ରାପ୍ୟ ଲୋକଂକପାଇଁ ଏ ପ୍ରକାର ଅନର୍ଥକ ଅପବ୍ୟୟର ମୁଁ ପ୍ରତିବାଦ କରୁଛି । ତା'ଛଡ଼ା ଇଓର ଏକ୍‌ସେଲେନ୍‌ସି ଜାଣିରଖନ୍ତୁ ଯେ, ଏ ରାଜ୍ୟରେ ସମସ୍ତ ଗ୍ରାମ୍ୟ କନ୍ଦଳର ମୂଳରେ ବରାବର ରହୁଛନ୍ତି ଏହି ଭିଲେଜ୍ ସ୍କୁଲ-ମାଷ୍ଟରମାନେ । ଦି ଭିଲେଜ୍ ସ୍କୁଲମାଷ୍ଟର ଇଜ୍ ନଟ୍ ଓନ୍‌ଲି ୟୁସ୍‌ଲେସ୍ ବଟ୍ ଅଲ୍‌ଶୋ ହାଇଲୀ ଡେନ୍‌ଜରସ୍ (The village school master is not only useless, but also highly dangerous) । ଆଉ ଶର୍ମାଜୀ, କେଉଁ କବିକି ସମ୍ମାନିତ କରିବାକୁ ଚାହାନ୍ତି ମୁଁ ଜାଣିପାରେ କି ?

ଶର୍ମା— ଲୋକପ୍ରିୟ କବି ଜୀବନବଂଧୁ । ସେ ବର୍ତ୍ତମାନ ଏକପ୍ରକାର ଇନ୍‌ଭାଲିଡ୍ ହୋଇଗଲେଣି । ମୁଁ ତାଂକପାଇଁ ଏକ ପେନ୍‌ସନର ବ୍ୟବସ୍ଥା କରିବାକୁ ଚାହେଁ ।

ମହାରଥୀ— ଅଧଡଜନେ କବି ବର୍ତ୍ତମାନ ଆମ ପବ୍‌ଲିଶିଟିରେ ମାସିକ ପଂଚସ୍ତରୀ ଟଙ୍କା ଛଅଣା ଦି ପଇସାକୁ ଦିବା ରାତ୍ର ଖଟୁଛନ୍ତି ଓ ଅଜସ୍ର ଭାବରେ ଲେଖିଚାଲିଛନ୍ତି ଗୀତ, କବିତା, ଡ୍ରାମା, ଗପ, ପ୍ରବଂଧ,— ଯାହା ଯେତେବେଳେ ଯେପରି ଆପଣ ବରାଦ ଦେବେ । ଯଦି ଜୀବନବଂଧୁ ସମ୍ମାନିତ ହୁଅନ୍ତି ତେବେ ଏମାନେ ସମ୍ମାନିତ ନ ହେବେ କିଆଁ ? ଏମାନେ ଜୀବନବଂଧୁଠାରୁ କେଉଁ ଗୁଣରେ ହୀନ ? ବରଂ ଥରେ କାହାରି କାହାରି ଅନୁରୋଧରେ ଜୀବନବଂଧୁଙ୍କୁ ଗଭର୍ଣ୍ଣରଙ୍କଦ୍ୱାରା ଷ୍ଟେଟ୍ ପୁଲିସ୍ କ୍ଲବ୍ ଉଦ୍‌ଘାଟନ ଉତ୍ସବ ଉପଲକ୍ଷରେ ଗୋଟିଏ ଗୀତ ଲେଖିବାକୁ ଅନୁରୋଧ କରାଯାଇଥିଲା— ସେ ନାହିଁକରି ପଠାଇଲେ । କହିଲେ, ସେ ବରାଦ ଅନୁସାରେ ଗୀତ ଲେଖିପାରିବେ ନାହିଁ । ହି ଥିଙ୍କ୍‌ସ୍ ଟୁ ମଚ୍ ଅଫ୍ ହିମ୍‌ସେଲ୍‌ଫ୍, ଅର୍, ହି ଇଜ୍ ନଟ୍ ଏ.ପୋଏଟ୍ ଆଟ୍ ଅଲ୍ । (He thinks too much of himself or he is not a poet at all.)

ଗଭର୍ଣ୍ଣର— ଦେଖନ୍ତୁ ଶର୍ମାଜୀ, ତା'ହେଲେ ପୂରା କାବିନେଟ୍‌ରେ ଏ ସମସ୍ତ କଥା ଆଲୋଚିତ ହେଉ । ମୁଁ ଆଜି ଓପରଓଲି କାବିନେଟ୍ ଡାକୁଛି । ଆପଣମାନେ ନିଜନିଜର ସ୍କିମ୍ ରେଡ଼ି କରି ଆଣନ୍ତୁ ।

(ହିଜ୍ ଏକ୍‌ସେଲେନ୍‌ସିଙ୍କର ପ୍ରସ୍ଥାନ । ଉଭୟ ମନ୍ତ୍ରୀ ଯାଉଁ ଯାଉଁ—)

ମହାରଥୀ– ଶର୍ମାଜୀ, ଆପଣଙ୍କଠାରୁ ଇସ୍କୁଲିୟା ଗନ୍ଧଟା ଏପର୍ଯ୍ୟନ୍ତ ଯାହା ଗଲାନି ! ଆଇ ରିଏଲି ପିଟି ୟୁ (I really pity you) । ଇଉ ବାକ୍ ରଙ୍ଗ୍ ହର୍ଶେସ୍– ଦି ୟୁସ୍‌ଲେସ୍ ପୋଏଟ୍‌ସ ଏଣ୍ଡ ପ୍ରାଇମେରୀ ସ୍କୁଲ ମାଷ୍ଟର୍‌ସ୍ ! (You back wrong horses,– the useless poets and primary school masters !) ।

ଶର୍ମା– ମୁଁ ମୋର କର୍ତ୍ତବ୍ୟ କରୁଛି ମାତ୍ର, ମି. ମହାରଥୀ ! କିଏ ରଙ୍ଗ୍ ହର୍ସ, କିଏ ରାଇଟ୍ ହର୍ସ ମୁଁ ଜାଣେନା । (ଉଭୟଙ୍କ ର ପ୍ରସ୍ଥାନ)

(ପଟପତନ)

## (ଦ୍ୱିତୀୟ ଦୃଶ୍ୟ)

[ଗୋଟିଏ କୁଟୀରର ଅଭ୍ୟନ୍ତର । ବାରଣ୍ଡାରେ ଗୋଟିଏ ଖଟରେ ଶୋଇଛନ୍ତି ଦରିଦ୍ର କବି ଜୀବନବନ୍ଧୁ । ଖଟ ପାଖରେ ଖଣ୍ଡିଏ ଯଷ୍ଟି । ଆଉ କେହି ନାହାନ୍ତି । କିଛିକ୍ଷଣର ନୀରବତା ପରେ କବି କଷ୍ଟରେ ଉଠିବାକୁ ଚେଷ୍ଟାକଲେ ଓ ଯଷ୍ଟି ଉପରେ ଭରାଦେଇ ଠିଆହେଲେ । ତାଙ୍କର ବସ୍ତ୍ର ଖଣ୍ଡିଏ ଲୋଚାକୋଚା ମଇଳା ଧୋତି ଉପରେ ଖଣ୍ଡିଏ ଜରିଦିଆ ମୂଲ୍ୟବାନ୍ ଚାଦର, ପୂର୍ବର ସ୍ୱଚ୍ଛଳ ଅବସ୍ଥାର ସାକ୍ଷୀ । ମୁଖମଣ୍ଡଳରେ ସାମାନ୍ୟ ଦାଢ଼ି ଉଠି ଯାଇଛି । ମସ୍ତକରେ ପ୍ରଚୁର କେଶ, ଧଳା କଳା ମିଶାମିଶି, ଆଲୁଳାୟିତ । ସମସ୍ତ ଦୈନ୍ୟ ସତ୍ତ୍ୱେ ମୁଖରେ ପ୍ରତିଭାର ଜ୍ୟୋତି ଏପର୍ଯ୍ୟନ୍ତ ଫୁଟିଉଠୁଛି ।]

କବି– ସୁକାନ୍ତି ! ସୁକାନ୍ତି ମ !

(ଭିତରୁ– ଯାଉଚି ।)

(ସାମାନ୍ୟ ପରେ କବିପତ୍ନୀ ସୁକାନ୍ତିଙ୍କର ପ୍ରବେଶ । ସେ ଯେ ଦିନେ ସୁନ୍ଦରୀ ଥିଲେ ତା'ର ଭଗ୍ନାବଶେଷ ଏବେ ବି ପ୍ରମାଣକରେ । ତାଙ୍କର କେଶ ମଧ୍ୟ ଅଲୁଳାୟିତ । ପରିଧାନ ସାମାନ୍ୟ ଶାଢ଼ି । ଦେହ ଆଭରଣହୀନ ।)

କବି– କ'ଣ କରୁଛ, କୁଆଡ଼େ ବସି ବସି ! ମୁଁ ଏଇଠି ଏକୁଟିଆ ପଡ଼ିରହିଛି, ଡାକି ଡାକି ଶୁଣୁନା !

ସୁକାନ୍ତି– ଏକା ଏକା ତ ସବୁ କାମ କରିବି; ଠାଆକରେ ବସିରହିବି କିପରି ? ଉଠିଲ ଫେର୍ କାହିଁକି ?

କବି– ଟିକିଏ ପାଣି ଦିଅ ତ । ଭାରି ଶୋଷଲାଗୁଛି । କେତେ ବା ଖଟଟାରେ ଶୋଇରହିବି ? ଦିଗ୍‌ଦାର ଲାଗିଲାଣି ମଣିଷକୁ ।

ସୁକାନ୍ତି– ହଉ, ପାଣି ଆଣୁଚି, ବସ ତ ତମେ ।

(ପ୍ରସ୍ଥାନୋଦ୍ୟତା)

କବି– ହଇଓ, ମୋ କଲମଟା ଆଉ ସେ ଖାତାଟା ଟିକିଏ ଆଣିଲ ।

ସୁକାନ୍ତି– (ଲେଉଟି) କାହିଁକି ? ପୁଣି ସେଇ ପୋଡ଼ା ଲେଖା ? ନାଇଁ, ଆଉ ସେ ଲେଖାଲେଖିର ନାଁ ନ ଧର ଯେପରି ଏ ଘରେ । ବେଶି ବିରକ୍ତ କରିବ ତ ବାକୀ ଯାହା କାଗଜପତ୍ର ଅଛି ସବୁ ନେଇ ଚୁଲୀଜାଳ କରିଦେବି ।

କବି– (ସୁକାନ୍ତିଆଡ଼କୁ ଯାଇ ଓ ତା'ର ହାତ ଧରି) କାହିଁକି ଏତେ ରାଗୁଛ, ସୁକାନ୍ତି ? ଲେଖାର ବା ଦୋଷ କ'ଣ ହେଲା ?

ସୁକାନ୍ତି– ନାଁ, ରାଗିବାର କିଛି କାରଣ ନାହିଁ ? ତମ ସାଂଗମାନେ କିଏ ସେକ୍ରେଟାରୀ, କିଏ ମାଜିଷ୍ଟ୍ରେଟ୍, କିଏ ଜେନେରାଲ୍, କିଏ ମନ୍ତ୍ରୀ ହୋଇ ବସିଲେ; ଆଉ ତମେ କବିତା ଲେଖି ଲେଖି ମତେ ଓ ଦେଶ ଉଭୟକୁ ଉଦ୍ଧାର କରି ପକେଇଲନା, ସେଥିପାଇଁ ମୋର କେବଳ ଖୁସି ହେବାର କଥା ।

(ହଠାତ୍ ଶିଷ୍ୟାନନ୍ଦଙ୍କର ପ୍ରବେଶ । ତାଂକର ବେଶ ଗୈରିକ ଧୋତି ଓ ଚାଦର ।)

ଶିଷ୍ୟାନନ୍ଦ– ଖୁସୀ ହେବାର କଥା ନିଶ୍ଚୟ ସୁକାନ୍ତି ! ମାଜିଷ୍ଟ୍ରେଟ୍, ଜେନେରାଲ୍,ସେକ୍ରେଟାରୀ ଆଜି ମଲେ କାଲି ଧୂଳି ମାତ୍ର ହୋଇ ଉଡ଼ିଯିବେ । କିନ୍ତୁ ଜୀବନବଂଧୁ ଓ ସୁକାନ୍ତି ରହିବେ ଜାତିର ଇତିହାସରେ ଅମର– ଜନତାର ହୃଦୟରେ ଚିର ଜୀବନ୍ତ ହୋଇ ।

ସୁକାନ୍ତି– (କୋପନ ଭାବରେ) ସେଇ ଅମରତ୍ୱକୁ ତମେ ଦୁଇ ସାଂଗ ଚାଟି ପିଉଥା । ଆମର ସେ ଅମରତ୍ୱ ଦରକାର ନାହିଁ କି ଏ ଦୁଃଖ ଦୁର୍ଦ୍ଦଶା ଦରକାର ନାହିଁ । ମଣିଷ କ'ଣ ଏମିତି ବଂଚେ ? କୁଲୀ ମଜୁରିଆ ବି ମୋଠୁ ଯେ ଭଲରେ ଅଛନ୍ତି, କ'ଣ ଆଖି ନାହିଁ ତମର ଦେଖିବାକୁ ? (କ୍ରନ୍ଦନାରମ୍ଭ) ଗୋଟିଏ ବୋଲି ଜୀବନ ବିଧାତା କୋଳରେ ଦେଇଥିଲା ଯେ କେତେ ଆଦରରେ ବଢ଼େଇଥିଲି, ସେ ଚାଲିଗଲା । ତା' ପାଟିରେ ଓଷଦ ଟିକିଏ, ତା' ପେଟରେ ଭଲ ପଥି ଟିକିଏ ବି ଦେଇପାରିଲିନି । (ରୋରୁଦ୍ୟମାନା । କିଛିକ୍ଷଣ ପାଇଁ ସ୍ତବ୍ଧତା । କିଂଚିତ୍ ପରେ, ଭାବାବେଗର ଶେଷ ହେଲେ ମଧ ଅଶ୍ରୁକରୁଣ ଭାଷାରେ) ସ୍ୱାମିଜୀ, ସେ ଭାବଭୋଳା ଲୋକ । ତାଂକୁ ଏଇମିତି ଗୁଡ଼ାଏ ବାହାପିଆ କଥା ଶୁଣେଇ ଶୁଣେଇ ତମେଇ ତାଂକୁ ଅବାଟରେ ନେଲ– ନ ହେଲେ ସେ ସେକ୍ରେଟେରିଏଟ୍ ଚାକିରି କାହିଁକି ଛାଡ଼ିଥାଆନ୍ତେ ? ତାଂକର ସେଇ କାଳର ସାଂଗ-କିରାନିମାନେ ମଧ ଏବେ ମୋଟର ଗାଡ଼ି ଛଡ଼ା ଯାଆସ କରୁନାହାନ୍ତି । ତାଂକ ମାଇପେ ମତେ ଦେଖିଲେ ମୁହଁ ଆଡ଼େଇଦଉଛନ୍ତି । କି ଲଜ୍ଜା, କି ଅପମାନ ! ତମର ତ ଜମିବାଡ଼ି ଅଛି, ତମେ ତ ବିଭାହେଲନି, ତେଣୁ ଚିନ୍ତା ନାହିଁ । ଯାଙ୍କୁ କାଇଁକି ଅବାଟରେ ପୂରେଇଲ କହିଲ ?

କବି– ଶିଷ୍ୟାନନ୍ଦଙ୍କର କୌଣସି ଦୋଷ ନାହିଁ, ସୁକାନ୍ତି ! ଆମର ସକଳ ଦୁଃଖରେ ସେଇ ହେଇଛନ୍ତି ଏକମାତ୍ର ସହାୟ । ତାଂକ ଉପରେ ପୁଣି ରାଗୁଛ ?

ସୁକାନ୍ତି– ପରାନୁଗୃହୀତ ହୋଇ ଜୀବନ କାଟିବା କବିଂକୁ ହୁଏତ ସାଜେ, କିଂତୁ ତା'ର ସ୍ତ୍ରୀକୁ ନୁହେଁ ।

ଶିଷ୍ୟାନନ୍ଦ— ସୁକାନ୍ତି, ମୁଁ ମାନୁଛି । ମୁଁ ଜୀବନବଂଧୁଙ୍କୁ ଚାକିରି ଛାଡ଼ିବାକୁ ପ୍ରବର୍ତ୍ତେଇଥିଲି । କିଂତୁ ମୁଁ ଭାବିଥିଲି ଯେ ଏତେ ବଡ଼ ପ୍ରତିଭା ଏ ଦେଶରେ ଉପାସ ରହିବ ନାହିଁ । ସେକ୍ରେଟେରିଏଟ୍ ଫାଇଲରୁ ମୁକ୍ତି ପାଇ ସେ ପ୍ରତିଭା କିପରି ସ୍ୱାଧୀନ, ସ୍ୱଚ୍ଛନ୍ଦ ଭାବରେ ବିକଶିତ ହେବ, ତାହାହିଁ ମୋର ଥିଲା ଭାବନା । ମୁଁ କି କୌଣସି ଦୁରଭିସନ୍ଧିରେ କବିଂକି ଅବାଟରେ ନେଇଥା'ନ୍ତି, ସୁକାନ୍ତି ?

କବି— ସୁକାନ୍ତି ରାଗିବାର, ଅଭିମାନ କରିବାର ଯଥେଷ୍ଟ କାରଣ ନାହିଁକି ଶିଷ୍ୟାନନ୍ଦ ? ମୋର ଏ ଅଭିଶପ୍ତ ଜୀବନର ସକଳ ଦୁଃଖ, ସକଳ ଲାଞ୍ଛନା ସେହିହିଁ ଭୋଗକରି ଆସିଛି । ଚାହଁ ତା ଆଡ଼କୁ, ଶିଷ୍ୟାନନ୍ଦ । ପଚିଶ ବର୍ଷ ତଳର ସେ ସୁକାନ୍ତି ଆଉ କାହିଁ ? ଏ ସୁକାନ୍ତି ସେ ସୁକାନ୍ତିର ଛାୟା ମାତ୍ର । ରୋଗ, ଦାରିଦ୍ର୍ୟ, ଦୁଃଶ୍ଚିନ୍ତା, ଅଶ୍ରୁପାତରେ ହିଁ ସୁକାନ୍ତିର କଟିଲା ପରିପୂର୍ଣ୍ଣ ଯୌବନ । ଧିକ୍ କବି ହେବାର ସେ ବାସନା । ଯାଅ ସୁକାନ୍ତି, ଯାଅ, ସବୁ କାଗଜ ଜାଳିଦିଅ । ସେଇତକ ଯଦି ତମକୁ କିଂଚିତ ସୁଖ ଦେଇପାରେ, ମୁଁ ଆନନ୍ଦରେ ତାହା କରିବାକୁ ଦେବି ।

ସୁକାନ୍ତି— (ଆଖି ପୋଛି ପୋଛି ଓ ମୃଦୁ ହସି) ଏତେ ଦୁଃଖ କଷ୍ଟ ସହି ସହି ଯାହା ଗଢ଼ିବାକୁ ଦେଇଛି, ତାକୁ ନଷ୍ଟ ପୁଣି କରିଦେବି ? ଭଗବାନ୍ ତ ଅନ୍ୟଆଡୁ କାଟିଦେଇଛନ୍ତି, ସେତେକ ହେଲେ ଥାଉ, ଅନ୍ତତଃ ଆମ ଦୁଃଖର ସାକ୍ଷୀ ହୋଇ ! ମୁଁ ରାଗରେ ସିନା କହିଥିଲି— ତମେ ଏମିତି ସତ ଭାବିଲ ?

କବି— ଦେଖୁଛ ଶିଷ୍ୟାନନ୍ଦ, ଏଇ ପ୍ରକୃତ ସୁକାନ୍ତି । ଏଇ ପ୍ରକୃତ ନାରୀ । ଏହାରି ନିକଟରେ ମୋର ପୁରୁଷତ୍ୱ ଗୌରବମୟ ପରାଜୟ ସ୍ୱୀକାରକରିଆସିଛି ।

ସୁକାନ୍ତି— ଥାଉ, ଥାଉ, ସେ ବଡ଼ ବଡ଼ କଥା । ମୁଁ ଯାଏ, ତମପାଇଁ ପାଣି ଆଣେ ।

(ପ୍ରସ୍ଥାନ)

ଶିଷ୍ୟାନନ୍ଦ— ସୁକାନ୍ତି ଆମର ଚାକିରିଆ ବା ତଥାକଥିତ ବଡ଼ଲୋକିଆ ସାଂଗମାନଂକୁ ବାହାରୁ ଦେଖି ହିଂସାକରୁଛି, ଜୀବନବଂଧୁ । କିଂତୁ ସେମାନଂକର ପ୍ରତ୍ୟେକଂକର ଜୀବନ ଯେ କି ହା-ହୁତାଶମୟ ତା'ତ ସେ ଜାଣେ ନାହିଁ । କିନ୍ତୁ ମୁଁ ଜାଣେ ତମକୁ ସୁକାନ୍ତି, ତମର ଏ କୁଡ଼ିଆଘରେ ଯେ ମଧୁମୟ ପ୍ରେମ ଓ ପାତିବ୍ରତ୍ୟ ଭିତର ଦେଇ ସୁଖରେ ରଖିଛି, ତାହା ଆମର କୌଣସି ହେଲେ ବଡ଼ଲୋକିଆ ସାଂଗ ପାଉନାହିଁ । ସୁକାନ୍ତି—

(ସୁକାନ୍ତିର ପାଣି ଗ୍ଲାସ ହାତରେ ପ୍ରବେଶ)

ସୁକାନ୍ତି— କ'ଣ ମୋ କଥା ଫେର୍ ପକେଇଛ— ମୋ ପଛରେ ?

କବି— ସେ ତମର ଭାରି ନିନ୍ଦାକରୁଛନ୍ତି । କହୁଛନ୍ତି କି—

ସୁକାନ୍ତି— କହୁଛନ୍ତି ଯେ ଏ ସ୍ତ୍ରୀଟା କବିଂକର ଉପଯୁକ୍ତ ହେଲାନି, ଏୟା ତ ? ହଉ, ମୁଁ ଚାଲିଯାଉଛି ।

ଶିଷ୍ୟାନନ୍ଦ— ତମେ ତ ଚାଲିଯିବ, ଆଉ ତୁଳନା ହେବ କିପରି ? ଦୁଇଜଣ ଏକାଠି ରହିଲେ ସିନା ଭଲ-ମନ୍ଦ କଷଟ ହେବ ।

ସୁକାନ୍ତି— କଷଟ ତ ହେଇଯାଇଛି । ଆମେ ଜାଣି ମନ୍ଦ । ଭଲପାଇଁ ଜାଗା ଖାଲିକରିବାହିଁ ଆମର କର୍ତ୍ତବ୍ୟ ।

ଶିଷ୍ୟାନନ୍ଦ— ହଁ, କିଂତୁ ଯିବା ପୂର୍ବରୁ ତମର ଯାହା ପ୍ରାପ୍ୟ ତାହା ନେଇଯିବା ଉଚିତ । ମୁଁ କହିବାକୁ ଆସିଥିଲି ଯେ ଶିକ୍ଷାମନ୍ତ୍ରୀ, ଆମ ଦିହିଂକର କ୍ଲାସଫ୍ରେଣ୍ଡ, ପଣ୍ଡିତ ଶଂକର ଶର୍ମା, କବିଂକପାଇଁ ଗୋଟିଏ ପେନ୍‌ସନ୍‌ର ବ୍ୟବସ୍ଥା କରୁଛନ୍ତି । ଆଉ 'ଉତ୍କଳ ଛାତ୍ରସମାଜ' ମୋ ଜରିଆରେ କବିଂକ ସାଂପ୍ରତିକ ଖର୍ଚ୍ଚପାଇଁ ପାଂଚଶତ ଟଂକା ପଠାଇ ଦେଇଛନ୍ତି । ଏଇ ନିଅ ।

ସୁକାନ୍ତି— ତାଂକୁଇ ଦିଅ । କବିର ପ୍ରାପ୍ୟ କବି ନିଅନ୍ତୁ । କବିର ସ୍ତ୍ରୀର ପ୍ରାପ୍ୟ କେବଳ ଦୁଃଖ, ଜଂଜାଳ ଓ ଅଶ୍ରୁ ।

ଶିଷ୍ୟାନନ୍ଦ— ମୁଁ ଜାଣେ, ତମେ ଦିହେଁ କେହି ଏହା ନେବନି । ମୁଁ ଏଇଠି ରଖିଦେଇଗଲି । (ତଳେ ଟଂକାଥଳି ଥୋଇଦେଲା) ମୁଁ ଯାଉଛି । ଫେର୍ ଆସିବି ।

(ଦ୍ରୁତ ପ୍ରସ୍ଥାନ)

କବି— ଉତ୍କଳ ଛାତ୍ର ସମାଜ ! ମୋ ଦେଶ ଓ ଜାତିର ସ୍ଫୁଟନୋନ୍ମୁଖ ଆଶାକଳିକାଗୁଡ଼ିକ ! ସେଇମାନଂକର ଦାନ ! ଏହା କ'ଣ ସତ !

ସୁକାନ୍ତି— ସତରେ ଏ ଯେ ମୋ ପୁଅମାନଂକର ଦାନ ! ଏ ଯେ ପବିତ୍ର ପ୍ରସାଦ ! ଯାକୁ କିପରି ଗ୍ରହଣ ନ କରିବା ? ନିଅ (ପାଣି ଗ୍ଲାସ୍ ବଢ଼ାଇଦେଲେ ଓ ଅନ୍ୟ ହସ୍ତରେ ଟଂକାଥଳି ଟେକି ହୃଦୟରେ ଜାକିଧରିଲେ)

(ପଟପତନ)

## (ଚତୁର୍ଥ ଦୃଶ୍ୟ)

[ଏକ ରାଜପଥ । ପ୍ରଥମେ ଆସିବେ ବାଳକଦଳ ଗୀତ ଗାଇ ଗାଇ ଓ ତାଙ୍କ ପଛରେ ଥିବେ ଶିଷ୍ୟାନନ୍ଦ । ବାଳକମାନେ ଅପସୃତ ହେଲା ପରେ ପରେ ଗାଇ ଗାଇ ଆସିବେ ବାଳିକାମାନେ । ଶିଷ୍ୟାନନ୍ଦ ଏଇ ଦୁଇ ଦଳର ଯୋଗସୂତ୍ରରୂପେ ରଙ୍ଗମଞ୍ଚରେ ଦେଖାଦେବେ । ବାଳକମାନଙ୍କର ପରିଧାନ ଧଳା ହାଫ୍-ପ୍ୟାଣ୍ଟ ଓ ଧଳା ହାଫ୍-ସାର୍ଟ, ବାଳିକାମାନେ ପିନ୍ଧିଥିବେ ଗୈରିକ ବର୍ଣ୍ଣର ଶାଢ଼ି । ରଙ୍ଗମଞ୍ଚର ଏକ କୋଣରେ ଅଲକ୍ଷିତ ଭାବରେ ଜଣେ ପୁଲିସ୍ ଅଫିସର୍ ଏମାନଙ୍କର ଗତି, ଗାନ ଓ କର୍ମକୁ ଲକ୍ଷ୍ୟ କରି ଠିଆହୋଇଥିବେ ।]

ବାଳକ ଦଳ— (ଗୀତ)

ଜୟ ଜୀବନର ଜୟ,
ଜୟ ମୁକ୍ତିର ଜୟ,
ଜୟ ସତ୍ୟର ଜୟ,
ଜୟ ହେ ।

ନିର୍ମଳ, ଅକଳୁଷ ସତ୍ୟ ସରଳ ଯାହା,
ଧରାରେ କିଛି ତା' ନାହିଁ ଭୟ ହେ । (ଘୋଷା) ।
କିଶୋର ତରୁଣ ଆମେ ମୁକ୍ତ ଜୀବନ ମାଗୁ,
କଳ୍ପନା ନଭେ ଆମେ ବିହଗ,
ନିଷେଧ- କାରାର ଶତ ଅର୍ଗଳ ଖୋଲିଦେଇ
ଖୋଜିବୁ ଆପଣା-ଗଢ଼ା ସ୍ୱରଗ ।
ସୁନ୍ଦର ଧରା ଚାହୁଁ, ମୁକ୍ତ ପବନ ମାଗୁ,
ଚାହୁ ପ୍ରାଣ-ଖୋଲା ମଧୁ-ବଚନ ।
ନାହିଁ ଚାହୁଁ ଅନ୍ୟାୟ, ଅବିଚାର, ଭଣ୍ଡତା,
ବରିବୁ କେବଳ ଯାହା ଶୋଭନ ।
ଅନ୍ୟାୟ, କଳୁଷିତ, କୁତ୍ସିତ ନିନ୍ଦ୍ୟ ଯା,
ଦଳିବୁ ଆମର ଛୋଟ ପଦରେ ।
ସୁନ୍ଦର, ନବତନ ଗଢ଼ିବୁ ଏ ଧରଣୀକୁ,
ସୁନ୍ଦର ଯଥା ଧରା ଭାଦରେ ।

ବାଳିକା ଦଳ— (ଗାନ)

କୋକିଳ-କୂଜିତ,
କୁସୁମ-ଖଚିତ
ଏ ମଧୁ ଚଇତ
ଡାକେ ଇସାରେ

ଆସ ଛାଡ଼ି ଘର
ମୁକ୍ତ ବିହର
ବର୍ଣ୍ଣ-ବିହ୍ୱଳ
ଏହି ଧରାରେ ।୧ ।

ମଳୟର ପରି
ସୁରଭି ବିତରି
ସୁଷମାରେ ଭରି
ଧରାର ପଥ,
କିଶୋରୀର ଦଳ
କରିବୁ କୋମଳ,
ସୁଖ-ଟଳମଳ,
ପ୍ରତିଟି ଜନର
ଜୀବନ ରଥ ।୨ ।

(ବାଳିକାମାନଙ୍କର ଗୀତ ଶେଷଆଡ଼କୁ ଶିଷ୍ୟାନନ୍ଦ ଦଳର ପଛକୁ ରହିଯିବେ ଓ ଦଳକୁ ଆଗେ ଆଗେ ଚାଲିଯିବାକୁ ଦେବେ । ତା'ପରେ ସେ ମଧ୍ୟ ରଙ୍ଗମଞ୍ଚରୁ ଅପସୃତ ହେବାକୁ ଗଲାବେଳେ ପୁଲିସ୍ ଅଫିସର୍ ଲୁକ୍‌କାୟିତ ସ୍ଥାନରୁ ପ୍ରକାଶ୍ୟକୁ ଆସି ସ୍ୱାମିଜୀଙ୍କୁ ପଛରୁ ଡାକିବେ ।)

ପୋଲିସ ଅ.– ଶୁଣନ୍ତୁ ସ୍ୱାମିଜୀ ! ଟିକିଏ ଶୁଣିଯାଆନ୍ତୁ ତ ।

ଶିଷ୍ୟାନନ୍ଦ– (ଲେଉଟି) ମତେ ଡାକୁଛନ୍ତି ?

ପୋ.ଅ.– ହଁ, ଆପଣଙ୍କୁ । (ଶିଷ୍ୟାନନ୍ଦ ସମ୍ମୁଖକୁ ଆସିଲା ପରେ) ଆପଣ କ'ଣ ଜଣେ ସନ୍ନ୍ୟାସୀ ?

ଶିଷ୍ୟାନନ୍ଦ– ନା, ମୁଁ ଜଣେ ସ୍କୁଲ ଶିକ୍ଷକ ।

ପୋ.ଅ.– କେଉଁ ସ୍କୁଲର ଶିକ୍ଷକ ?

ଶିଷ୍ୟାନନ୍ଦ– ପି. ଏମ. ଏକାଡେମୀ ।

ପୋ.ଅ.– ଥାଆନ୍ତି କେଉଁଠି ?

ଶିଷ୍ୟାନନ୍ଦ– ରାମକୃଷ୍ଣ ପରମହଂସ ମେସ୍‌ରେ ।

ପୋ.ଅ.– ନାମ କ'ଣ ଆପଣଙ୍କର ?

ଶିଷ୍ୟାନନ୍ଦ– ଶିଷ୍ୟାନନ୍ଦ ।

ପୋ.ଅ.– ଆପଣ, ମୁଁ ଦେଖୁଛି, ଏକ ଭଣ୍ଡତାର ଅବତାର । ସ୍କୁଲ ଶିକ୍ଷକ ଥାଇ, ସନ୍ନ୍ୟାସୀର ନାମ ଓ ପରିଧେୟର ଛଦ୍ମତା ତଳେ ଆପଣ ଏ ବାଳିକା-ବାଳକଙ୍କୁ ନେଇ ଏ ସହରରେ ଏକ ରାସଲୀଳା ଲଗେଇଛନ୍ତି ନା କ'ଣ ?

ଶିଷ୍ୟାନନ୍ଦ– ଆଜ୍ଞା, ମୋର ଛଦ୍ମତା କିଛିହିଁ ନାହିଁ । ମୋର ଏହି ସନ୍ନ୍ୟାସୀ ବେଶ ଓ ନାମରୁ କହୁଛନ୍ତି କି ? ମୋର ନାମ ଅଛି ଅଲଗା । କିନ୍ତୁ ଛାତ୍ରମହଲରେ ମୋର ଆଦର ଦେଖି ମୋର ବନ୍ଧୁମାନେ ଏଇ ନାମରେ ଡାକନ୍ତି ଏବଂ ମୋର ପିତୃଦତ୍ତ ନାମ ଅପେକ୍ଷା ମୁଁ ଏ ନାମରେ ଅଧିକ ଗୌରବ ଅନୁଭବ କରେ । କୌଣସି ଶିକ୍ଷକ ପକ୍ଷରେ ଶିଷ୍ୟାନନ୍ଦ ଉପାଧି ତା'ର ଶ୍ରେଷ୍ଠ ପୁରସ୍କାର ନୁହେଁ କି ? ତା'ପରେ ମୁଁ ଅବିବାହିତ । ରାମକୃଷ୍ଣ, ବିବେକାନନ୍ଦଙ୍କ ଭକ୍ତ ହେଲେହେଁ, ସେଥିପାଇଁ ମୁଁ ଗୈରିକ ବସନ ଗ୍ରହଣ କରିନାହିଁ । ଭାରତର ଦରିଦ୍ର ଲୋକଙ୍କ ପକ୍ଷରେ ଏହାହିଁ ପ୍ରକୃଷ୍ଟ ପରିଧେୟ ବୋଲି ମନେକରିହିଁ, ମୁଁ ଅନ୍ୟମାନଙ୍କୁ ଆଦର୍ଶ ଦେଖାଇବାପାଇଁ ଯାକୁ ଗ୍ରହଣ କରିଛି; କାରଣ ଏ ବସ୍ତ୍ରରେ ଧୋବା ଖର୍ଚ୍ଚ ବା ଧୋବାର ଦୌରାତ୍ମ୍ୟ ନାହିଁ । ଆଉ ଏ ଯେଉଁ ବାଳକ-ବାଳିକାର ଦଳ ଦେଖୁଛ, ଏମାନେ ସମସ୍ତେ ଏ ସହରର ବଡ଼ଲୋକଙ୍କ ପୁତ୍ର କନ୍ୟା । ମତେ ବିଶ୍ୱାସକରି ସେମାନଙ୍କ ବାପମା' ସେମାନଙ୍କୁ ମୋ ପାଖରେ ଛାଡ଼ି ଦେଇଛନ୍ତି ।

ପୋ. ଅ.– ସେଇ ବିଶ୍ୱାସର ପୁରସ୍କାର ଦେଉଛ ବୋଧହୁଏ ପିଲାଙ୍କୁ ପବ୍ଲିକ୍ ରାସ୍ତାରେ ସରକାର ବିରୁଦ୍ଧରେ ସ୍ଲୋଗାନ୍ ଗାଇବାକୁ ଶିଖାଇ ? ଏଇ ବୋଧହୁଏ ତମର

ପାଠପଢ଼ା ? ତମେ ଯେ ପିଲାଙ୍କ ମହଲରେ 'ପପୁଲାର' ତା'ର କାରଣ ମୁଁ ବର୍ତ୍ତମାନ ଦେଖିପାରୁଛି । ତମପରି ଯେଉଁ ମାଷ୍ଟର ପିଲାଙ୍କୁ ପାଠ ନ ପଢ଼େଇ ନଚେଇବ, ଖେଳେଇବ, ସେ ପପୁଲାର ନ ହେବ କିଆଁ ?

ଶିଷ୍ୟାନନ୍ଦ— ସ୍ଲୋଗାନ୍ ! କି ସ୍ଲୋଗାନ୍ ମୁଁ ଶିଖଉଛି ପିଲାଙ୍କୁ ? ଆପଣ କେଉଁଠି ଶୁଣିଲେ ? ଆଜି ରବିବାର, ପିଲାଙ୍କ ବିନୋଦନର ସମୟ । କୌଣସି କୌଣସି ରବିବାର ପିଲାଙ୍କୁ ମୁଁ ଏଇମିତି ଗୀତ ବୋଲାଇ ଚାନ୍ଦା ଆଦାୟ କରେ । ଆଉ ସେହି ଚାନ୍ଦା ଦରିଦ୍ର ପିଲାଙ୍କ ପଛରେ ଖର୍ଚ୍ଚ କରେ ।

ପୋ.ଅ.– ସମସ୍ତ କେବଳ ଭଣ୍ଡାମି ! ୟୁ ଆର୍ ଏ ଡେଞ୍ଜରସ୍ କମ୍ୟୁନିଷ୍ଟ (You are a dangerous communist) ଏ ସମସ୍ତ ଆବରଣ ଯୋଗାଡ଼ କରିଛ କେବଳ ଦଳେ ଲୋକଙ୍କୁ ସରକାର ବିରୁଦ୍ଧରେ ମତେଇବାରେ ।

ଶିଷ୍ୟାନନ୍ଦ— (ଉତ୍ତେଜିତ ହୋଇ) ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି ଆପଣଙ୍କ କଥାରେ । ଆପଣ କେଉଁ ପ୍ରମାଣ ବଳରେ ଧରିନେଉଛନ୍ତି ଯେ ମୁଁ ସରକାରଙ୍କ ବିରୁଦ୍ଧରେ ଲୋକଙ୍କୁ ମତଉଛି ? ଆଇ ଡୋଣ୍ଟ ଡାବ୍ଲ ଇନ୍ ପଲ୍‌ଟିକ୍‌ସ ! (I donot dabble in politics.) ଆଇ ୟାମ୍ ଓନ୍‌ଲି ଏ ସୋସାଲ ୱାର୍କର୍ । (I am only a social worker.)

ପୋ.ଅ.– ସୋସାଲ ୱାର୍କର ବୋଲି ତ କହୁଛନ୍ତି, କିନ୍ତୁ ଏଇ ଯେ ତମ ପିଲେ ଗାଇ ଗାଇ ଯାଉଛନ୍ତି— 'ନାହିଁ ଚାହୁ ଅନ୍ୟାୟ, ଅବିଚାର, ଭଣ୍ଡତା'— ଏସବୁ କାହା ଉଦ୍ଦେଶ୍ୟରେ ? ପୋଲିସ୍ ଅଫିସର୍ ଆଖିରେ ଆପଣ ଧୂଳି ଦେବାକୁ ଯାଉଛନ୍ତି ନା ? ଏ କା'ର ଗୀତ— ଆପଣ ନିଜେ ରଚନା କରିଛନ୍ତି ନା ଆଉ କିଏ ?

ଶିଷ୍ୟାନନ୍ଦ— ଏ ଯେ ଆମର ଜନପ୍ରିୟ କବି ଜୀବନବନ୍ଧୁଙ୍କ ରଚନା । ଏ ଯେ ଏକ ମାନବିକ, ସାମାଜିକ ଗାନ । ଆପଣଙ୍କ କ୍ଲେମ ଉପରେ ଆଉ ଜଣେ ଅଫିସର ପ୍ରମୋଶନ ପାଇଗଲେ, ଆପଣ ତାକୁ କ'ଣ ଅନ୍ୟାୟ କହିବେନି, ବା ସେ ଅନ୍ୟାୟ ବିରୁଦ୍ଧରେ ଆପଣ ଲଢ଼ିବେନି ? ପିଲାମାନଙ୍କୁ ମୂଳରୁ ଯାହା ଅନ୍ୟାୟ, ଯାହା ଅସୁନ୍ଦର, ଯାହା ଅଶୋଭନୀୟ, ଯାହା ଅମଙ୍ଗଳକର, ତା' ବିରୁଦ୍ଧରେ ଲଢ଼ିବାରେ ଅଭ୍ୟସ୍ତ କରେଇବାଟା କ'ଣ ହେଲା ସରକାର ବିରୁଦ୍ଧରେ ମତେଇବା ? ଆପଣ ନିଜ ପିଲାଙ୍କୁ କିପରି ଧରଣରେ ବଢ଼େଇବାକୁ ଚାହାଁନ୍ତି, କୁହନ୍ତୁ ତ ? ଆପଣ ତ ପ୍ରଥମେ ଜଣେ ମନୁଷ୍ୟ, ତା'ପରେ ପିତା ଓ ତା'ପରେ ଯାଇ ପୋଲିସ୍ ଅଫିସର୍ ! କେବଳ ନିଜର ପ୍ରମୋଶନ୍ ପାଇବା ପାଇଁ ମତେ ଯଦି ଆପଣ ଆରେଷ୍ଟ କରି ଜେଲ୍ ନେବାକୁ ଚାହାନ୍ତି ତ ମୁଁ ପ୍ରସ୍ତୁତ ସେଥିପାଇଁ । ମୁଁ ତ ମୋର ଠିକଣା ଦେଇଦେଲି— ୱାରଣ୍ଟ ପଠାଇଦେବେ । ମୋ ପିଲେ ମତେ ଅପେକ୍ଷା କରିଥିବେ— ମୁଁ ଆଉ ରହିପାରୁନି ।

(ଦ୍ରୁତ ପ୍ରସ୍ଥାନ)

ପୋ.ଅ.– ବାସ୍ତବିକ ମୁଁ ଭୁଲବୁଝିଥିଲି । ଯିଏ ଭଣ୍ଡ ସେ ଦାମ୍ଭିକ । ଭଣ୍ଡ କିନ୍ତୁ ଏପରି ଦମ୍ଭୀ ହୋଇପାରେନା । ଏ ମାଷ୍ଟରଟା ଗୋଟାଏ ଖାଣ୍ଟିଲୋକ ବୋଲି ଜଣାପଡୁଛି । ସତେ

ଏ ଲୋକଟା କିପରି ସ୍ୱାଧୀନ, କିପରି ନିଶ୍ଚିନ୍ତ, କିପରି ସୁଖୀ ! ଯେତେ ପ୍ରକାର ସନ୍ଦେହ, ଯେତେ ପ୍ରକାର ଅପ୍ରୀତିକର କାମ କରିବାକୁ ପଡୁଛି ଏଇ ପୋଲିସ୍ ଲାଇନ୍‌ରେ । କିନ୍ତୁ ଦେଖ, କି ସୁନ୍ଦର ନିର୍ମଳ ଜୀବନ ଏଇ ଇସ୍କୁଲ ମାଷ୍ଟରର । ଭାବିଥିଲି ଦେଶ ସ୍ୱାଧୀନ ହେଲେ ଆମ କାରବାର ସବୁ ବଦଳିଯିବ । କିନ୍ତୁ ଘଟଣା ଦେଖୁଛୁ ଓଲଟା । ବଡ଼ ବଡ଼ ଦାଗୀଯାକ ତ ଗାଦି ଉପରେ ବସି ହୁକୁମ ଦେଉଛନ୍ତି । ଛୋଟ ଛୋଟ ଦାଗୀ ବା ନିରପରାଧ ଲୋକଙ୍କୁ କେତେ ହଇରାଣ କରିବୁ ? କାହିଁକି ବା ହଇରାଣ କରିବୁ ? ଏ ମାଷ୍ଟର ବରଂ ପିଲାଙ୍କୁ ଦି'ପଦ ଭଲ କଥା ଶିଖାଉଛି... ।

(କହୁ କହୁ ପ୍ରସ୍ଥାନ ଓ ପଟପତନ)

## (ପଞ୍ଚମ ଦୃଶ୍ୟ)

[କବି-କୁଟୀର । ପଟ ଉତ୍ତୋଳିତ ହେଲାବେଳକୁ ବାରଣ୍ଡାରେ ସୁକାନ୍ତି ଗାଲରେ ହାତ ଦେଇ ଚିନ୍ତାକୁଳ ଭାବରେ ବସିଥିବାର ଦେଖାଯିବ । କିଛି ସମୟ ପରେ ଶିଷ୍ୟାନନ୍ଦ ଧୀରେ ପ୍ରବେଶକରିବେ ।]

ଶିଷ୍ୟାନନ୍ଦ— (ଧୀରେ) ସୁକାନ୍ତି !

ସୁକାନ୍ତି— (ଚମକି ଚାହିଁବ ମାତ୍ର)

ଶିଷ୍ୟାନନ୍ଦ— କ'ଣ ଖବର ଭଉଣୀ ?

ସୁକାନ୍ତି— (ରୋରୁଦ୍ୟମାନାହୋଇ) ଆଉ ଆଶା ନାହିଁ ସ୍ୱାମିଜୀ ।

ଶିଷ୍ୟାନନ୍ଦ— ସକାଳେ କବିରାଜ ଆସିଥିଲେ ତ— କ'ଣ କହିଲେ ?

ସୁକାନ୍ତି— ଫିଟାଇ କହିଲେନି, କିନ୍ତୁ ମୁଁ ଜାଣିଲିଣି । ସେ ମଧ୍ୟ ଜାଣିଲେଣି । ପାଗଳ ପରି ହେଉଛନ୍ତି । ଶେଷ ମୁହୂର୍ତ୍ତରେ ହେଲେ ମଧ୍ୟ ଯଦି କିଛି ଆଶାର ବାଣୀ ତମେ ଶୁଣାଇ ପାରନ୍ତ, ତା'ହେଲେ ତାଙ୍କ ଆତ୍ମା ଶାନ୍ତିରେ ହେଲେ ଯା'ନ୍ତା । ଚାକିରି ଛାଡ଼ିବା ପରଠାରୁ ତାଙ୍କ ସ୍ୱାସ୍ଥ୍ୟତ ଭଲ ନ ଥିଲା; ଧରାଶ୍ରୀ ଚାଲିଯିବା ପରେ ତାଙ୍କ ଦେହ ଓ ମନ ଉଭୟ ଭାଙ୍ଗିପଡ଼ିଲା । ତା' ସାଥିରେ ଆସି ମିଶିଲା ଆମ ସ୍ୱାଧୀନ ସରକାରର ଏଇ ପ୍ରତାରଣା । ପାଇବି ପାଇବି ବୋଲି ଆଶା, ଆଉ ମାସ ମାସ ଧରି ନ ପାଇବାର ନିରାଶା ଭିତରେ ତାଙ୍କର ରୋଗ କ୍ରମାଗତ ବଢ଼ି ବଢ଼ି ଚାଲିଲା । ତମେ ସରକାରୀ-ପେନ୍‌ସନ୍ କଥା ତାଙ୍କୁ ଶୁଣାଇଲ କାହିଁକି ? ଏତେ ଆଗରୁ ଗୋଟିଏ କଥା ଶୁଣାଇଲ ବା କାହିଁକି ଯାହାର ଅଗ ନାହିଁ କି ମୂଳ ନାହିଁ ?

ଶିଷ୍ୟାନନ୍ଦ— କ'ଣ କରିବି, ସୁକାନ୍ତି ! ହତଭାଗ୍ୟ ଏ ଜାତି ଓ ହତଭାଗ୍ୟ ଆମର ଲୋକପ୍ରତିନିଧି ଶାସକଦଳ । ଦେଶର ସର୍ବଶ୍ରେଷ୍ଠ କବିଙ୍କି ପେନ୍‌ସନ୍‌ଟିଏ ଦେବାପାଇଁ ପୁଣି ଦେଖାଦେଲା ପ୍ରତିରୋଧ ଏ ଦେଶରେ । ହୋମ୍ ମିନିଷ୍ଟରଙ୍କ ପ୍ରତିବାଦ ଫଳରେ ଶିକ୍ଷାମନ୍ତ୍ରୀଙ୍କ ପ୍ରସ୍ତାବ ଅନେକ କାଳ ପର୍ଯ୍ୟନ୍ତ ପଡ଼ିରହିଲା । ତା'ପରେ ଯଦି ବା

ଗୃହୀତ ହେଲା, ଚାଲିଲା ଫାଇଲ୍‌ରୁ ଫାଇଲକୁ ଧୀର ମନ୍ଥର ଗତି । କବିଶିଳ୍ପୀ ମଲେ ବା ନଷ୍ଟହେଲେ ଏ ଦେଶରେ କାହାର ମୁଣ୍ଡ ବଥାଉଛି ? ସ୍ୱାଧୀନତା ପରେ, ଆମ ଦେଶରେ ବର୍ଗୀମାନଙ୍କର ପୁନରାର୍ବିଭାବ ଯେପରି ହୋଇଛି । ପୁଣି ଫେରିଆସିଛି ଯେପରି କେବଳ ମରାମରି, ବେକକଟାକଟି ଓ ଲୁଣ୍ଠନର ଅଶାନ୍ତ ଯୁଗ । ଆମ ବେଳକୁ ସିନା ଫାଇଲ୍‌ର ଶମ୍ବୁକ-ଗମନ, ଯଦି କୌଣସି ମନ୍ତ୍ରୀର ନିଜର ବା ତାଙ୍କ ଶାଳକର-ଭାଉଜର ପୁତୁରାର ହୋଇଥା'ନ୍ତା, ତେବେ ଫାଇଲ୍ ଗତି କରନ୍ତା ଉଲ୍‌କାପରି । ଭାଗ୍ୟ ତ— କାହାକୁ କହିବା ?

ସୁକାନ୍ତି— ଆଉଦିନେ— (ଭିତରୁ ଜୀବନବନ୍ଧୁଙ୍କର ହଠାତ୍ ପ୍ରବେଶ । ସେ ବର୍ତ୍ତମାନ କଙ୍କାଳସାର । ଅନବରତ କାଶ । ଜୀବନପଥର ଶେଷ ପାଦରେ । ହାତରେ ଯଷ୍ଟି ।)

କବି— ଶିଷ୍ୟାନନ୍ଦ, ତମର ପାଟି ଶୁଣି ଆସିଲି । କେତେବେଳୁ ଆସିଲଣି ଭାଇ.....

ସୁକାନ୍ତି— (ଦୌଡ଼ିଯାଇ ଧରି) ତମେ କାହିଁକି ଉଠିଲ, କହିଲ ? ତମକୁ କବିରାଜ ପରା ଧୀର ହୋଇ ଶୋଇବାକୁ କହିଗଲେ ? ଚାଲ.... ଚାଲ.....

କବି— ବୁଝିଲ, ସୁକାନ୍ତି— (କାଶ) ବୁଝିଲ ଶିଷ୍ୟାନନ୍ଦ, ନାଡ଼ିଟିପା କବିରାଜ ଅପେକ୍ଷା କବି କ'ଣ ତା'ର ଅନ୍ତରର କଥା ବେଶି ଜାଣେନା ? ଠିକ୍ ବେଳକୁ ଆସିଛ, ବନ୍ଧୁ ! ମୁଁ ଜାଣୁଛି, ମୋର ବର୍ତ୍ତମାନ ଶେଷ ମୁହୂର୍ତ୍ତ ଉପସ୍ଥିତ । (କାଶ) ଭାଇ, ଉତ୍କଳ ଛାତ୍ରସମାଜକୁ ମୋର ଅନ୍ତରର କୃତଜ୍ଞତା ଜଣାଇଦେବ । ତାଙ୍କରି ଦାନରେ ମୁଁ ଏ ଛ'ମାସ ଚଳିଚି । (କାଶ) ଯାହାହେଉ ଉତ୍କଳର କିଶୋର କିଶୋରୀମାନଙ୍କ ଦରଦୀ ହୃଦୟରେ ଦେଶର ଏକ ଅଧମ କବିଟିଏପାଇଁ ଅନୁକମ୍ପା ତ ହେଲା, ସେଇ ମୋର ପରମ ଆଶା— ଭାଇ; ଏ ଦେଶର ସରକାର ନ କରନ୍ତୁ ପଛେ କିଛି । ହୁଏତ ସରକାର ଠିକ୍ ଭାବିଛନ୍ତି ଯେ ମୁଁ ତାଙ୍କ ଦାନର ଉପଯୁକ୍ତ ନୁହେଁ..... (କାଶ) କେବଳ ଗୋଟିଏ ଦୁଃଖ ହେଉଛି, ପରମତମ ଦୁଃଖ ମୋର । .... ଜାଣ, ସ୍ୱାମିଜୀ, ଏଇ ଦରିଦ୍ର ପ୍ରଣୟୀ କବିର କି ସ୍ୱପ୍ନ ଥିଲା ? (କାଶ) ସ୍ୱପ୍ନ ଥିଲା ଯେ ଏଇ ପ୍ରାଣପ୍ରତିମାଟି ମୋରି କୋଳରେ ଶେଷ ଶୟନ ଶୋଇଥାନ୍ତା, ଆଉ ସେ ଚାଲିଗଲା ପରେ ବିରହ-ବିନୋଦନପାଇଁ ମୁଁ ରଖିଯାଇଥା'ନ୍ତି କବିତାର ଏକ ନୂତନ ତାଜମହଲ ! (ଜୀବନବନ୍ଧୁଙ୍କର ଘୋର କାଶ ଓ ସୁକାନ୍ତି କାନ୍ଦି ମୁହଁ ଘୋଡ଼ାଇଲେ ।) ଦରିଦ୍ର, ହତଭାଗ୍ୟ କବି ପକ୍ଷରେ ଏ ବଡ଼ ଅପ୍ରାକୃତ ବାସନା, ନାହିଁ ଭାଇ ? ତେବେ ସେଇହିଁ ଥିଲା ମୋର ସ୍ୱପ୍ନ ଭାଇ । ଯାକୁ ଏଠି ଏକା ଛାଡ଼ି ଯାଉଛି ! ବଡ଼ ଦୁଃଖ ! ଯାଃ... (ପୁଣି କାଶ) (ଉପରକୁ ଅନାଇ) ଏଇ, ଏଇ, ମୋର ଜୀବନର ଅପହୃତ ମଣି, ଧରାଶ୍ରୀ...... ଆଃ, ମୁଁ ଯେ ସ୍ପଷ୍ଟ ଦେଖିପାରୁଛି ମୋ ମା'କୁ ..... ଠିକ୍ ସେଇପରି... ପିତାକୁ ତା'ର ଭୁଲିନି ମୋ ମା... ଅପେକ୍ଷା. କରିଛି... ଯାଏଁ .. ଯାଏଁ । ଗଲି ସୁକାନ୍ତି, ଗଲି ଭାଇ.... ପ୍ରିୟ ଦେଶ ମୋର... ପ୍ରିୟ ଭାଷା ମୋର.. ପ୍ରିୟ ଜାତି ମୋର... (ଘୋର କାଶ ଓ ପତନ । ଧରାଶ୍ରୀର କଥା ପଡ଼ିଲାକ୍ଷଣି,

ସୁକାନ୍ତି ସମ୍ଭାଳି ନ ପାରି ଜାନୁପାତ ଓ କରଯୋଡ଼ କରି ପ୍ରାର୍ଥନା କରିବା ଆରମ୍ଭକରିଦେଲେ । କବି ପଡ଼ିଗଲା ପରେ ସୁକାନ୍ତି ଓ ଶିଷ୍ୟାନନ୍ଦ ଉଭୟେ ତାଙ୍କ ଉପରେ ନଇଁ ପଡ଼ିବେ । )

(ପଟପତନ)

## (ଷଷ୍ଠ ଦୃଶ୍ୟ)

[ରାଜପଥ । ନୀରବତା । କିଛିକ୍ଷଣ ପରେ 'ରାମ ନାମ ସତ୍ୟ ହେ' ଶବ୍ଦ ଦୂରରୁ ଆସି କ୍ରମେ କ୍ରମେ ନିକଟତର ହେବ । କ୍ରମେ ଜୀବନବନ୍ଧୁଙ୍କ ଶବ ବହନକରି ଶବବାହୀମାନେ 'ରାମ ନାମ ସତ୍ୟ ହେ' କହି କହି ଚାଲିଯିବେ ।

ପୁଣି ନୀରବତା । କିଛି ସମୟ ପରେ କାନ୍ଦି କାନ୍ଦି ଆଖି ପୋଛି ପୋଛି ନବ-ବୈଧବ୍ୟ-ବିଧୁରା ସୁକାନ୍ତିର ପ୍ରବେଶ । ସେ କେବଳ ଧୀରେ ଧୀରେ ଚାଲିଯିବେ । ସେ ଅପସୃତ ହେବାର ଠିକ୍ ପୂର୍ବରୁ ଜଣେ ସେକ୍ରେଟାରିଏଟ୍ ଚପରାସୀ ସରକାରୀ ଲଫାପାଟିଏ ହାତରେ ଧରି ସୁକାନ୍ତିଙ୍କୁ ପଛରୁ ଡାକିବା ।]

ଚପରାସୀ— ଆଜ୍ଞା, ଆପଣଙ୍କର ଖଣ୍ଡେ ଡାକ; ନେଇଯାଆନ୍ତୁ । (ସୁକାନ୍ତି ଲେଉଟିବେ । ଡାକଟି ଧରିବେ । ଲଫାପା ଚିରି ପଢ଼ିବେ । ପଢ଼ିସାରି ଚିଠିଟି ଟିକି ଟିକି କରି ଛିଣ୍ଡାଇ ପଦରେ ଦଳିଦେବେ ଓ ନୀରବରେ ଚାଲିଯିବେ ।)

ଚପରାସୀ— ଆଚ୍ଛା କଥା ହେଲା ! ମାଇକିନାଟା ସରକାରୀ ଚିଠିଟାକୁ ଚିରି ଗୋଡ଼ରେ ଦଳିଦେଲା । ମୁଁ ବକ୍‌ସିସ୍ ଆଶାରେ ଧାଇଁଥିଲି, ଆଚ୍ଛାତ ପାଇଲି । ପୁଣି, ଦଶକତ ନ ଦେଇ ଚାଲିଗଲା । ମତେ ତ ଗୋଟାଏ ଦଶକତ ଦେଖେଇବାକୁ ପଡ଼ିବ ? ଯାଏ ଫେର୍ ଦଉଡ଼ି । (ସେଇ ଦିଗରେ ଚପରାସୀର ପ୍ରସ୍ଥାନ । କିଛି ସମୟ ପରେ ଦ୍ରୁତ ଧାବମାନ ଏକ ନିଉଜ୍‌ପେପର୍ ହକରର ପ୍ରବେଶ ।)

ହକର— ତାଜା ଖବର ! 'ସମାଜ', 'ପ୍ରଜାତନ୍ତ୍ର', 'ଇଷ୍ଟର୍ଣ୍ଣ ଟାଇମ୍‌ସ୍'— ତାଜା ଖବର ! ଜନପ୍ରିୟ କବିଙ୍କର କରୁଣ ମୃତ୍ୟୁ । ତାଙ୍କ ସ୍ତ୍ରୀ ସରକାରୀ ଚିଠିକୁ ପାଦରେ ଦଳିଦେଲେ । ତାଜା ଖବର । ପଣ୍ଡିତ ନେହେରୁ ରାଜ୍ୟଗୋଷ୍ଠୀ ସଭାରେ ଯୋଗଦେବାପାଇଁ ଲଣ୍ଡନ୍ ଗଲେ । କଟକରେ ବିଷ୍ଣୁବମିଳନର ଜନ୍ତାଲରେ ଗୋଳମାଳ । ତାଜା ଖବର— 'ସମାଜ', 'ପ୍ରଜାତନ୍ତ୍ର', 'ଇଷ୍ଟର୍ଣ୍ଣ ଟାଇମ୍‌ସ୍' । (ପ୍ରସ୍ଥାନ)

(କିଛି ସମୟ ପରେ ପୂର୍ବ ବାଳକ ଦଳର ପ୍ରବେଶ । ସେମାନଙ୍କ ଭିତରୁ କେତେକଙ୍କ ହାତରେ ଖବରକାଗଜ । ରଙ୍ଗମଞ୍ଚରେ କାଗଜଗୁଡ଼ିକୁ ଆଲୁଅକୁ ଟେକି ସମସ୍ତେ ଏକତ୍ର ଖବର ପଢ଼ିବାରେ କିଛିକ୍ଷଣ ବ୍ୟସ୍ତ । ପଢ଼ିସାରି ସମସ୍ତେ ନୀରବରେ ସ୍ତବ୍ଧ ହୋଇ ଠିଆହେଲେ । ତା'ପରେ— )

ଜଣେ ବାଳକ— କି ଭୀଷଣ ସମ୍ବାଦ ! ଦେଶର ଜନପ୍ରିୟ ପ୍ରତିଭାବାନ୍ କବିଙ୍କର ଏଇ କରୁଣ ମୃତ୍ୟୁ ! ଅନ୍ନବସ୍ତ୍ରର ଅନଟନ ବା ବ୍ୟବହାର୍ଯ୍ୟ ଦ୍ରବ୍ୟର ଦୁର୍ମୂଲ୍ୟତା ବରଂ ସହନୀୟ । କିନ୍ତୁ ଯେଉଁ ସରକାରର ଶାସନ ତଳେ ଦେଶର ପ୍ରତିଭା ଏପରି ଅପମାନିତ ହୁଏ ବା ଅବହେଳାରେ ମରେ, ସେପରି ସରକାର ମୁହୂର୍ତ୍ତକପାଇଁ ଶାସନାସନରେ ବସିବା ଉଚିତ ନୁହେଁ । ଭାଇମାନେ, ଏଇ ମୁହୂର୍ତ୍ତରେ ଚାଲ । ଡାକ, ସହରର ଯେତେ କଲେଜ ଓ ସ୍କୁଲର ଛାତ୍ରଛାତ୍ରୀଙ୍କୁ । ଯିବା ଚାଲ ସିଧା ଗଭର୍ଣ୍ଣମେଣ୍ଟ ହାଉସ୍‌କୁ ।

ସମସ୍ତେ— ଇନ୍‌କିଲାବ୍, ଜିନ୍ଦାବାଦ୍ ! ଡାଉନ୍ ଉଇଥ ଦି ମିନିଷ୍ଟ୍ରି । ଜୀବନବନ୍ଧୁ କି ଜୟ !

(ସ୍ଲୋଗାନ୍ ଗାଇ ଗାଇ ବାଳକମାନଙ୍କର ପ୍ରସ୍ଥାନ)

## (ସପ୍ତମ ଦୃଶ୍ୟ)

[ପଟ ଉତ୍ତୋଳିତ ହେଲାବେଳକୁ ଗଭର୍ଣ୍ଣମେଣ୍ଟ ହାଉସର ଲାଉଞ୍ଜ ରୁମ୍‌ରେ ଗଭର୍ଣ୍ଣର ଓ ତାଙ୍କର ଦୁଇ ପାଖରେ ହୋମ୍ ଓ ଶିକ୍ଷାମନ୍ତ୍ରୀ ଠିଆହୋଇଥିବାର ଦେଖାଯିବ ।]

ହୋମ୍ ମି.— ଦିଶ୍ ଇଜ୍ ନଥିଂ, ଇଓର ଏକ୍‌ସେଲେନ୍‌ସି ! (This is nothing Your Excellency) ଇସ୍କୁଲ ପିଲାଙ୍କ ସ୍ଲୋଗାନରେ କାହା ଦେହରେ କଣ୍ଟା ବାଜେନା ଏବଂ ମୋର ଗୋଇନ୍ଦା ବିଭାଗ ଖବର ଆଣିଛି ଯେ, ଏ ସମସ୍ତ ଆନ୍ଦୋଳନର ମୂଳରେ ଅଛି ପି. ଏମ୍. ଏକାଡେମୀର ଜଣେ ଶିକ୍ଷକ । ହି ଇଜ୍ ଏ କମ୍ୟୁନିଷ୍ଟ ଏଣ୍ଡ୍ ଏ ଡେଞ୍ଜରସ୍ ଇମୋରାଲ ଫେଲୋ (He is a Communist and a dangerous immoral fellow.) ସେ ଛଦ୍ମ ସନ୍ନ୍ୟାସୀର ବେଶ ଧରି ବୁଲୁଛି ।

ଶି. ମନ୍ତ୍ରୀ.— ମି. ମହାରଥୀ, ଆପଣ ଯାହା କଥା କହୁଛନ୍ତି ମୁଁ ତାକୁ ପିଲାଦିନୁ ଜାଣେ । ସେ ମୋର ସହପାଠୀ ଏବଂ ଏକାଡେମୀର ହେଡ୍‌ମାଷ୍ଟର ଓ ମାନେଜିଂ କମିଟିର ସର୍ବସମ୍ମତ ମତ ଏହି ଯେ— He is an asset to their school. ଆମ ଦେଶ ଆଜି ଏଇପରି ଶିକ୍ଷକହିଁ ଚାହେଁ । ଆପଣଙ୍କ ଗୋଇନ୍ଦାବିଭାଗ ଏଥର ଧୋବାଙ୍କୁ ଲୁଗାଚୋର କହିବା ବିଚିତ୍ର ନୁହେଁ ।

ଗଭର୍ଣ୍ଣର— ମି. ମହାରଥୀ, କେବଳ ଏ ସହରର ପିଲାଙ୍କ ସ୍ଲୋଗାନ୍‌ରେ ମୁଁ ବିବ୍ରତ ନୁହେଁ । ଦେଶର ସର୍ବପ୍ରାନ୍ତରୁ ମୁଁ ଚିଠି ଓ ତାର ପାଇଛି । ଏଇ ଲୋକପ୍ରିୟ କବିଙ୍କର ଏ ପ୍ରକାର କରୁଣ ମୃତ୍ୟୁରେ ସମଗ୍ର ଜାତି କ୍ଷୁବ୍‌ଧ । ମୋ ସରକାରର ସମ୍ମାନ ଏହାଦ୍ୱାରା ବହୁତ କ୍ଷୁଣ୍ଣ ହୋଇଛି । ମତେ ଆଉ ଅଧିକ କହନ୍ତୁ ନାହିଁ । ଆପଣ ବରାବର ମତେ ମିସ୍‌ଲୀଡ୍ କରାଇଆସିଛନ୍ତି । ମୁଁ ବର୍ତ୍ତମାନ ହୋମ୍-ପୋର୍ଟଫୋଲିଓକୁ ବଦଳାଇବାକୁ ଗଭୀର ଭାବରେ ଚିନ୍ତାକରୁଛି । ମତେ କିନ୍ତୁ ଏହା ବେଶ୍ ଆନନ୍ଦ ଦେଉଛି ଯେ ଏ ଦେଶରେ ଜଣେ କବିପାଇଁ ଏ ପ୍ରକାର ଦେଶବ୍ୟାପୀ ସମବେଦନା ଜାଗ୍ରତ ହୋଇପାରେ ।

ଶିକ୍ଷାମନ୍ତ୍ରୀ– Your Excellency, କେବଳ ଉତ୍କଳର ନୁହେଁ, ସମଗ୍ର ଭାରତୀୟ ସଂସ୍କୃତିର ଏହାହିଁ ବୈଶିଷ୍ଟ୍ୟ । ଯେକୌଣସି କାଳେ ହେଲେ ଗାଦିରେ ବସିବା ଲୋକେ ଏ ଦେଶର ପ୍ରକୃତ ଶାସକ ନ ଥିଲେ । ପ୍ରକୃତ ଶାସକ ବରାବର ଥିଲେ କବି ବା ସନ୍ନ୍ୟାସୀ ବା ଉଭୟେ । ସବୁକାଳେ ଏ ଜାତିର ଦୈନନ୍ଦିନ ଜୀବନ ଓ ଶିକ୍ଷା, କଳା, ବିଜ୍ଞାନ, ଆମୋଦପ୍ରମୋଦ ଆଦି ସବୁହିଁ ବରାବର ଥିଲା ବେସରକାରୀ ଏବଂ ଜୀବନର ସକଳ ବିଭାବକୁ ପରିଚାଳିତ କରୁଥିଲା । ଏକ ପକ୍ଷରେ ରାମାୟଣ, ମହାଭାରତ ଓ ଭାଗବତର ଲିପିବଦ୍ଧ ଆଦର୍ଶ ଓ ଅନ୍ୟପକ୍ଷରେ ସନ୍ନ୍ୟାସୀ ଓ ପୁରୋହିତମାନଙ୍କର ଜୀବନ୍ତ ଆଦର୍ଶ । କାଳେ କାଳେ ଏଇ ଦରିଦ୍ର ବୁଦ୍ଧିଜୀବୀଙ୍କ ପାଦତଳକୁ ଯାଉଥିଲା ଏ ଦେଶର ମୁକୁଟମଣ୍ଡିତ ଶିର । ସେଇମାନଙ୍କ ପରାମର୍ଶରେ ରାଷ୍ଟ୍ର ପରିଚାଳିତ ହେଉଥିଲା । କେବଳ ବିଦେଶୀ ଇଂରେଜ ଶାସକହିଁ ଏ ଦେଶର ଶାସନ ଓ ସମାଜର ସବୁ ବିଭାଗକୁ ନିଜ ଅକ୍ତିଆରକୁ ଆଣିବାର ଚେଷ୍ଟାକଲେ । ଫଳରେ କବି ଓ ସନ୍ନ୍ୟାସୀର କଲ୍ୟାଣମୟ ସ୍ପର୍ଶ ଲୋକଜୀବନରୁ ଓ ଶାସନଯନ୍ତ୍ରରୁ ଉଭେଇଗଲା । ଶାସନଚକ୍ର ରହିଲା କୌଣସି ପ୍ରକାର ଉଚ୍ଚାଦର୍ଶହୀନ, ଧନଲୋଭୀ, ସ୍ୱାର୍ଥପର, ବଡ଼-ସାନ ଚାକିରିଆ-ଗୋଷ୍ଠୀଙ୍କ ହାତରେ । ଏ ରାଜ୍ୟରେ ସାମ୍ପ୍ରତିକ ଯେତେ ଗୋଳମାଳ, ଯେତେ ଅସାଧୁତା, ଯେତେ ଲୁଆଚୋରି, ସେ ସବୁର ମୂଳରେ ରହିଛି ଆମ ଜାତିର ଏଇ ଘୋର ସାଂସ୍କୃତିକ ବିପର୍ଯ୍ୟୟ । ଏ ଦେଶର ଜନତାର ହୃଦୟରେ ଏ ପର୍ଯ୍ୟନ୍ତ ମଧ ରହିଛି କବି ଓ ସନ୍ନ୍ୟାସୀର ଗଭୀର ପ୍ରଭାବ । କବି ଜୀବନବଂଧୁଙ୍କ ମୃତ୍ୟୁରେ ଏ ଦେଶର ବ୍ୟାପକ ପ୍ରତିକ୍ରିୟା ଏହାହିଁ ପ୍ରମାଣକରେ । ବାପୁଜୀଙ୍କର ଏ ଜାତି ଉପରେ ପ୍ରଭାବର ମୂଳ କାରଣ ମଧ ଥିଲା ଏହିଠାରେ । ଆମ୍ଭମାନଙ୍କର ଶାସନଚକ୍ରଗୁଡ଼ିକୁ କେବଳ ସେକ୍ରେଟେରୀମାନଙ୍କର ନୋଟ୍‌ର ଚିକ୍‌କଣୀ ଦେଇ ଚଳେଇହେବନି, Your Excellency । ଜାତିର ମର୍ମ ସ୍ପର୍ଶ କରିବାପାଇଁ ଆମକୁ ପୂର୍ବ ପନ୍ଥା ଗ୍ରହଣ କରିବାକୁହିଁ ପଡ଼ିବ ।

ଗଭର୍ଣ୍ଣର– ଆପଣ ଯାହା କହୁଛନ୍ତି ଶର୍ମାଜୀ, ମୁଁ ତାହାର ସତ୍ୟତା ବେଶ୍ ଅନୁଭବ କରୁଛି । କୌଣସି ଦେଶର ସରକାର ସେ ଦେଶର ସଂସ୍କୃତିକୁ ବେଖାତିର କରି ସୁଶାସନ ଦେଇ ନ ପାରେ । ଦେଶର ପ୍ରକୃତ ଜ୍ଞାନୀ ଓ ପ୍ରତିଭାବାନ୍ ଲୋକଙ୍କୁ ଅପାଂକ୍ତେୟ ଭାବରେ ଦୂରରେ ରଖି ଲୋକପ୍ରତିନିଧି ଶାସନ ଠିଆ କରାଯାଇ ନ ପାରେ । ପ୍ରତିଭାହିଁ ପ୍ରତ୍ୟେକ ଜାତିର ଦୃଶ୍ୟମାନ ଆତ୍ମା । ଗୋଟାଏ ପ୍ରତିଭା ସହିତ ସହସ୍ର ମନ୍ତ୍ରିମଣ୍ଡଳ ସମାନ ହୋଇ ନ ପାରନ୍ତି । ହଜାର ହଜାର ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଯିବେ ଓ ଆସିବେ; କିନ୍ତୁ ଗୋଟାଏ ହେଲେ ଉପେନ୍ଦ୍ରଭଂଜ ସେମାନେ ଠିଆ କରାଇ ପାରିବେ କି ? ସେପରି ଅମୂଲ୍ୟ ସମ୍ପଦ ତ ଏ ଦେଶରେ ଅପମାନିତ ଓ ଅବହେଳିତ ହୋଇ ନଷ୍ଟହେବେ, ମନ୍ତ୍ରୀ, ଉପମନ୍ତ୍ରୀ ବା ସେକ୍ରେଟେରୀର ଦଳ ମୋଟର ଚଢ଼ି ବୁଲିବାର

ଅର୍ଥ କ'ଣ ? ସମଗ୍ର ଜାତି ପ୍ରତି ଏହା ଏକ ଅପମାନ ନୁହେଁ କି ? ଆଚ୍ଛା ଶର୍ମାଜୀ, ବର୍ତ୍ତମାନ ଆପଣ କବିଙ୍କର ବିଧବା ପତ୍ନୀଙ୍କୁ ବ୍ୟକ୍ତିଗତ ଭାବରେ ମୋ ପକ୍ଷରୁ ଓ ଆପଣଙ୍କ ପକ୍ଷରୁ ଦୁଃଖ ପ୍ରକାଶ ଓ କ୍ଷମାଭିକ୍ଷା କରି ଆସନ୍ତୁ ଏବଂ ତାଙ୍କର ସମସ୍ତ ବନ୍ଦୋବସ୍ତ ତୁରନ୍ତ କରିଦିଅନ୍ତୁ । ପୁଣି ସେଇ ସନ୍ନ୍ୟାସୀ ଶିକ୍ଷକଙ୍କୁ ମୋ ନିକଟକୁ ଆସିବାକୁ ଦିଅନ୍ତୁ । ମୁଁ ତାଙ୍କ ସଙ୍ଗେ ପରିଚିତ ହେବାକୁ ଚାହେଁ । ଆପଣମାନେ ବର୍ତ୍ତମାନ ଆସନ୍ତୁ ।
(ଭିନ୍ନ ଭିନ୍ନ ଦିଗରେ ସମସ୍ତଙ୍କର ପ୍ରସ୍ଥାନ)

## (ଅଷ୍ଟମ ଦୃଶ୍ୟ)

[ସ୍ଥାନ— ରାଜପଥ । ଦୂରରୁ ଇନ୍‌କିଲାବ୍ ଜିନ୍ଦାବାଦ୍ ପ୍ରଭୃତି ଧ୍ୱନି ଶୁଣାଯିବ ଓ ଉତ୍ତେଜିତ ଛାତ୍ରବର୍ଗ ରଙ୍ଗମଞ୍ଚରେ ପ୍ରବେଶ କରିବେ । ଠିକ୍ ସେଇ ସମୟରେ ବିପରୀତ ଦିଗରୁ ପହଞ୍ଚିବେ ଶିଷ୍ୟାନନ୍ଦ । ଛାତ୍ରମାନେ ରଙ୍ଗମଞ୍ଚକୁ ଆସି ମଧ ସ୍ଲୋଗାନ୍ ଗାଉଥିବେ । ଶିଷ୍ୟାନନ୍ଦ ଉପସ୍ଥିତ ହୋଇ ହାତଉଠାଇ ସଙ୍କେତ ଦେଲା ମାତ୍ରେ ସମସ୍ତେ ଚୁପ୍‌ଚାପ୍ ଭାବରେ ଗୋଟିଏ କଣରେ ଠିଆହୋଇଯିବେ ।]

ଶିଷ୍ୟାନନ୍ଦ— ହଯୋ, ରମାନାଥ, ତ୍ରିଲୋଚନ, ନାରାୟଣ, ମୁରଲୀ— ଏ କାଣ୍ଡ କରିବା ପୂର୍ବରୁ ମୋତେ ଖାଲି ଟିକିଏ ପଚାରି ଦେଇ ନ ଥା'ନ୍ତ ? କବି ଜୀବନବନ୍ଧୁଙ୍କ ପାଇଁ ତମେ କ'ଣ ମୋ ଅପେକ୍ଷା ବେଶି ଭାବିଛ, ବେଶି କାମ କରିଛ ?

ଛାତ୍ରନେତା— ସାର୍, ଖବରକାଗଜରେ ଆଖିବୁଲେଇଲା ମାତ୍ରେ ସମ୍ଭାଳି ହୋଇ ରହିପାରିଲୁ ନାହିଁ । ଆପଣଙ୍କୁ ପଚାରିବାକୁ ସତରେ ଭୁଲିଗଲୁ, କ୍ଷମାକରନ୍ତୁ ।

ଶିଷ୍ୟାନନ୍ଦ— ହଉ, ବର୍ତ୍ତମାନ ଧୀରେ ଧୀରେ ଘରକୁ ଫେର । ସମସ୍ତ ପ୍ରକାର ଆନ୍ଦୋଳନ ବନ୍ଦକର । ସ୍ଲୋଗାନ ଚିତ୍କାର କରି ବା ଷ୍ଟ୍ରାଇକ୍ କରି କବିର ପୂଜା ହୁଏନା । ମନ୍ତ୍ରୀଙ୍କ ପୂଜା ହୁଏ ଭଡ଼ାଲଗା ଜନତାଦ୍ୱାରା, କିନ୍ତୁ କବିର ପୂଜା ହୁଏ ଜାତିର ଅନ୍ତରରେ । ଜନନୀର ସ୍ତନ୍ୟ ଯେପରି ସନ୍ତାନର, କବିର କବିତା ସେହିପରି ସମଗ୍ର ଜାତିର ଅନ୍ତରକୁ ଗଢ଼େ ଓ ଜୀବନ୍ତ କରି ରଖେ । ପ୍ରକୃତ କବି ମରେନି । ସେ କବି ଜାତିର ଉଭୟ, ଅନ୍ତରରେ ଓ ଅଧରରେ ବଞ୍ଚି ରହନ୍ତି ମୃତ୍ୟୁହୀନ ହୋଇ । ଆମର ପ୍ରିୟ କବି ଜୀବନବନ୍ଧୁ ସେହିପରି ବଞ୍ଚିରହିଛନ୍ତି । ପ୍ରାଣଭରି ଗାଅ ତ ତାଙ୍କର ସେହି ଗୀତଟି । ଆମେ ସେଇ ଗୀତଟିରେହିଁ ତାଙ୍କୁ ପୁଣି ଅଧିକ ଜୀବନ୍ତ ଭାବରେ ଫେରିପାଇବା । ଗାଅ ପିଲେ—

(ବାଳକମାନେ 'ଜୟ ଜୀବନର ଜୟ' ଗୀତଟି ଗାଇ ଗାଇ ପ୍ରସ୍ଥାନ କରିବେ ।)

---

## ପୁଷ୍ପାଭିନୟ

ସୂତ୍ରଧାର—

ଡାଳଟି ଭାଂଗିଲେ ଗନ୍ଧ ବାହାରେ କି ?
ଲତା ବଂଚେ ହୀନ ମାଟିର ରସେ,
ସେଇ ଡାଳେ ପୁଣି ସେ ରସୁ ବିଧାତା
ଫୁଟାଏ କୁସୁମ ସରସ ହସେ ।
ବିରୂପରୁ ଦେଖ ରୂପ ଚହଟଇ
ମାଟିରୁ ମାଣିକ ଉଠଇ ଫୁଟି,
ତପନ, ପବନ ଧରଣୀର ଜନ—
ସକଳର ଚିତ୍ତ ନିଅଇ ଲୁଟି ।
ଫୁଟିଲେ ସୁମନ ନବ ସୁଶୋଭନ
ଆସେ ରବିକର, ଆସେ ଭ୍ରମର,
ଆସେ ପ୍ରଜାପତି, ବାୟୁ ବାସବତୀ,
ଆସଂତି କିଶୋର କିଶୋରୀ ଦଳ ।
ଛୋଟ ଉପବନେ ପ୍ରକୃତି ସଦନେ
ଛୋଟ କୁସୁମର ସ୍ନେହ ବନ୍ଦନା
ଦେଖିଛ କି କେହି ? ଦେଖ ମନଦେଇ
ଛୋଟଙ୍କର ଅଭିନୟ-ରଚନା ।

କଳିକା— (ଗୀତ ଓ ନୃତ୍ୟ)

ମୁଁ ଯେ, ଫୁଲ କଢ଼ିଟି,
ଦେବି, ସୁରଭି ବିଂଚି,
ଦେଇଯିବି ଧରଣୀରେ
ଆନନ୍ଦ କିଛି ।
ମୋର, ଛୋଟ ଜୀବନ
ଅତି ସାନ ସପନ,
ଧରାରେ ଯିବି ମୁଁ କରି
ସୁଖ ବପନ ।

ମୋର, ଲତା ଜନନୀ
ତପି, ଦିନ ରଜନୀ
କଲେ ଜାତ ମତେ ଡାଳେ
ସୁକନ୍ୟା ମଣି ।
ହସି, ହସାଇ ଜନେ
ଦୋଳି, ମୃଦୁ ପବନେ
ଝଡ଼ି ମୁଁ ପଡ଼ିବି ସେଇ
ମାଆ ଚରଣେ ।
ଏଇ, ମୋର ଜୀବନ
ଏଇ ସାନ ସପନ
ମୋ ଦେଇ କି, ହେବ କହ
ବଡ଼ ସାଧନ ?

ରବିକର– (ଗୀତ ଓ ନୃତ୍ୟ)

ପଠାଇଲେ ନିଜେ
ତପନ-ରାଜନ
ତୁମରି ପାଇଁକି,
ସୁନ୍ଦରି ଗୋ ନବ-
କୁସୁମ-କୁମାରୀ,
ସଂକୋଚ କାହିଁକି !
ଖୋଲି ଆସ ତବ
ଉଭରୀ ତୁରିତେ
ଦେଖୁ ଭୁବନ,
ଦେଖିବେ ଆକାଶ
ଦେଖିବେ ଜନତା
ଦେଖିବେ ତପନ ।
ନିଖିଳ ଜଗତ
ରହିଛି-ଅନାଇ
ତବ ଆଗମନେ,
ତବ ରୂପେ, ହସେ
ସାଉଁଟି ନେବେ ଗୋ
ଗଗନେ, ପବନେ ।

ଆକାଶର ରାଜା
ରବି ପଠାଇଲେ,
ହେ ପୁଷ୍ପ-କୁମାରୀ,
ପାଶେ ଥିବି ଦାସ,
ଯେବେ ସେ ଦଳରୁ
ଆସିବ ବାହାରି । (ପ୍ରସ୍ଥାନ)

ସୂତ୍ରଧାର—

ରବିରାଜା ଡାକେ କଳିକା ସେ ଆସେ
ଫୁଲରାଣୀ ସାଜି ଧରା ଦୁଆରେ,
ନିଖିଳ ଭୁବନେ ଚକିତ ନୟନେ
ଚାହେଁ ତା ପୂତ ବିମଳ ଶୋଭାରେ ।
ତନୁ ତା କୋମଳ ବରଣ ଉଜ୍ଜ୍ୱଳ
ସଉରଭ ନିଏ ହୃଦୟ ହରି,
ତା ରୂପ ଗୁଣରେ ପୂଜା କରିବାରେ
ଆସିଲେ ଏଇ ଯେ ତା ପାଶେ ଚଳି ।

ବାୟୁ— (ଗୀତ ଓ ନୃତ୍ୟ)

ଆଗୋ ସୁକୁମାରୀ
କୁସୁମକୁମାରୀ
ଆଣିଛି ତୋ ଲାଗି ମୋତିର-
ହାର ଏଇ କରେ,
ଦିଏଁ ପ୍ରୀତିଭରେ
ସଜାଇ ଶୋଭା ତୋ ଛାତିର ।
ଗଗନେ ଗଗନେ
ଧରା କଣେ କଣେ
ପ୍ରଚାରିବି ତୋର କୀରତି,
ତୋହର ଡଗର
ବୋଲି ଯେ ଆଦର,—
ସେହି ଦେବ ମତେ ପୁରତି ।
ହେ ରୂପକୁମାରୀ
ଧରା ମନୋହାରୀ,
ବନ୍ଦଇ ତୁମରି ଚରଣେ,

ପବନ ମୁଁ, ତବ
ଆଶିଷେ କେବଳ
ଗନ୍ଧବହ ହୁଏ ଭୁବନେ । (ପ୍ରସ୍ଥାନ)

ପ୍ରଜାପତି— (ଗୀତ ଓ ନୃତ୍ୟ)

କୁସୁମରାଣୀକି ଭେଟିବା ପାଇଁକି
ଏ ବେଶ ସିନା,
ମୁହିଁ ପ୍ରଜାପତି ଡେଣା ଗଢ଼ାଇଛି
ସୁନାରେ ମିନା ।
ରୂପକୁମାରୀକି ଭେଟିବା ପାଇଁକି
ଏ ସୁନା ଦେହେ
ଅଗଣିତ ମଣି- ମୁକୁତା ଛାଏଣି
କରିଛି ସ୍ନେହେ ।
ଧାଏଁ ଡାଳେ ଡାଳେ ପତରୁ ପତରେ
ଗଛରୁ ଗଛେ
କୁସୁମରାଣୀକି ଭେଟିବା ପାଇଁକି
ଜୀବନ ପଥେ ।
ଆଗୋ ବନଜେମା କି ବାସନା ଜମା
ତୁମର ମନେ
କହ ଖୋଲି ଥରେ ଦେବି ଚରଣରେ
ଏଇ ଯେ କ୍ଷଣେ । (ପ୍ରସ୍ଥାନ)

ଭ୍ରମର— (ଗୀତ ଓ ନୃତ୍ୟ)

ମୁଁ ଯେ ଭ୍ରମର,
କଳା ଭଅଁର,
ସେହି ପ୍ରିୟ ସିନା ମୋର
ଯିଏ ସୁନ୍ଦର ।
ମୁଁ ଯେ ଭ୍ରମର,
କଳା ଭଅଁର,
ଗୁଣ ଯାର ମୁହିଁ ତାର
କରେ ଆଦର ।
ମୁଁ ଯେ ଭ୍ରମର,
କଳା ଭଅଁର,

ଫୁଲ ଦଳ ଶେଯ ମୋର
ରାତି ଘୁମର ।
ମୁଁ ଯେ ଭ୍ରମର,
କଳା ଭଅଁର,
ଭୋଜନ ମୋ ଫୁଲ-ମଧୁ
ସୁଧା-ବହଳ ।
ମୁଁ ଯେ ଭ୍ରମର,
କଳା ଭଅଁର,
ମୋର ମାନ, କରେଁ ମୁଁ ଯେ
ଗୁଣୀ ଆଦର ।
ମୁଁ ଯେ ଭ୍ରମର,
କଳା ଭଅଁର,
ଆସିଲି ଢାଳିବି ଏଥି
କଳା ଚଅଁର । (ପ୍ରସ୍ଥାନ)

ସୂତ୍ରଧାର—

ନୂତନ ଫୁଲକୁମାରୀ ଦେଖିବା ପାଇଁ ବାହାରି
ଆସିଲେଣି କୁମାରୀଏ ଜଣକୁ ଜଣ,
ନରଫୁଲ, ଲତାଫୁଲ ଅଭିନ୍ନ, ଅତି ଅମୂଲ୍ୟ
ଏ ଧରା ମଧୁରପାଇଁ ଦୁହେଁ ସୃଜନ ।
ପରସ୍ପରେ ତେଣୁ ଆଦର
ଏକ ପରଶରେ ଆନ ହୁଏ ସୁନ୍ଦର ।

କୁମାରୀଗଣ— (ଗୀତ ଓ ନୃତ୍ୟ)

ମଧୁର ଏ ସକାଳେ
ସଖୀ କୁସୁମାକୁ ଚାଲ, ଦେଇ ସ୍ତୁତି ପ୍ରୀତିମାଳ
ବରି ବରଣୀୟା ଆଣିବା ଏ କପାଳେ,
ଲଗାଇଥିଲେ ଲତିକା ଜଳେ ଦେଇ ସ୍ନେହସିଂଚା
ମଣି ପାଲଟିଛି ମାଟି, ତା ଡାଳେ ଡାଳେ ।
ଦେଖ କି ବର୍ଣ୍ଣର ଛଟା ମଣ୍ଡି ସେ ଗୁଗୁଣା ଲଟା
ବିଂଚିହୋଇ ପଡୁଅଛି ସହସ୍ର ଧାରେ,
ମନୋହର ସଉରଭେ ଟାଣିହୋଇ ମଞ୍ଜୁ ରବେ
ଅଳିକୁଳ ଆସନ୍ତି ତା ମଧୁ ବିସ୍ତାରେ,

ନୀଳ ନଭୁ ଚାହିଁ ଚାହିଁ  ରବି ଯାଏ ସୁଖ ପାଇ,
ପୁଷ୍ପ ଉଭା ତପସ୍ୱିନୀ ପରି ଧରାରେ ।
ନ ଡୋଳ ନ ଡୋଳ ମିତ  ନିଜ ବୃନ୍ତେ ନିଜେ ସ୍ଥିତ
ତପ ତା'ର ହେଉ ଶେଷ, ତା' ନିଜ ଡାଳେ ।

ଫୁଲ– (ଗୀତ ଓ ନୃତ୍ୟ)

ନା, ନା, ନା, ନା, ନିଅ ମତେ–
ଆସିଲି କିପାଁ ଏ ପଥେ ?
ଖାଲିକି ମଉଳିବାକୁ ଜନ୍ମିଲି ଯହିଁ ?
ସାର୍ଥକ ମୋର ଜୀବନ
ସିନା କରି ବିତରଣ
ରୂପ, ବାସ– ମଧୁରିତ କରି ଏ ମହୀ ?
ମୀତ, ମିତଣୀଏ ତୁମେ
ନର-ବୃକ୍ଷର କୁସୁମେ,
ନେଇ ମତେ ଦିଅ ତମ ସ୍ନେହ ଆଦର
ସଭିଙ୍କ ଜୀବନ ପୁଷ୍ପ
ହେଉ ଏହିପରି ଧୂପ,
ବିଧାତା ଚରଣେ ଭରି ପ୍ରତିଟି ଘର ।

କୁମାରୀଗଣ– (ନୃତ୍ୟ ଓ ଗୀତ)

ତେବେ ଆସ ଗୋ,
ମିତ ଆସ ଗୋ,
ଆହରିବା  ଲତାରୁ ସୁ–
ବର୍ଣ୍ଣ ବାସ ଗୋ ।
ନୀରେ ଧୋଇବା,
ଶିରେ ଥୋଇବା,
ଦେବତାର  ବଂଧୁଜନେ
ଦେଇ ମୋହିବା ।
ସଖୀ ଶିଖିବା,
ମନେ ରଖିବା

ଫୁଲପରି ଧରାରେ ଜୀ-
ବନ ଯାପିବା ।
ସ୍ନେହ, ସୁଷମା
ସେବା, କରୁଣା-
ଆଦି ଫୁଲ ଚଲା ପଥେ
ହୋଇବ ଜମା !
ଫୁଲଟି ପରି
ଆମ ଜୀବନ ଭରି
ଯିବା ବିଂଚି ରୂପ, ଗୁଣ
ଦିବା ଶର୍ବରୀ ।
(ସମସ୍ତଙ୍କର ପ୍ରସ୍ଥାନ)

---

## ପରିଶିଷ୍ଟ-ଏକ

୧। (କ) **ରାଜକବି ଉପେନ୍ଦ୍ର** (୧୯୨୮) (ରଚନା ୧୯୨୫)

କଟକ ସତ୍ୟବାଦୀ ପ୍ରେସ୍‌ରେ ମୁଦ୍ରିତ ଓ ପ୍ରଗତି ସଂଘ ଦ୍ୱାରା ପ୍ରକାଶିତ ।

(ଖ) 'ଜୀବନ ସ୍ପନ୍ଦନ' (କବିତା) ଉତ୍କଳ ସାହିତ୍ୟ ୩୧/୧୦ ମାଘ, ୧୩୩୫ (ଜାନୁୟାରୀ-୧୯୨୭)ପୃ. ୪୨୭ରେ ପ୍ରକାଶିତ । ପରେ ଏହି କବିତା 'ରାଜକବି' ନାଟିକାର ଶେଷଗୀତ 'କାନନେ ଆଜି ମୋର ଚିତ୍ତଚୋର...' ଭାବରେ ସଂଯୋଗ କରାଯାଇଛି । —ମାନସିଂହ ଗ୍ରନ୍ଥାବଳୀ (୧୯୬୪) ୨ୟ ଭାଗ, ପୃ. ୪୨୫-୨୬

(ଗ) 'ରାଜକବି' ସଂପର୍କରେ ଉତ୍କଳ ସାହିତ୍ୟ ୩୨ ଭାଗ ୯ମ ସଂଖ୍ୟା ପୌଷ ୧୩୩୬, ୧୯୨୯ରେ ଏକ ବିଜ୍ଞାପନ ପ୍ରକାଶପାଇଥିଲା । ବିଜ୍ଞାପନଟି ଏହିପରି—

ଶ୍ରୀ ମାୟାଧର ମାନସିଂହଙ୍କ ପ୍ରଣିତ ଗୀତିନାଟ୍ୟ

**ରାଜକବି**

ଓଡ଼ିଆ ଭାଷାରେ ସଂପୂର୍ଣ୍ଣ ନୂତନ, ମୂଲ୍ୟ— ଚାରିଅଣା ମାତ୍ର

ସୁପରିଚିତ ସୁକବି ପଦ୍ମଚରଣ ପଟ୍ଟନାୟକ କହନ୍ତି :— ତୁମ ବହିର କଳ୍ପନା ଓଡ଼ିଶାରେ ଗୋଟିଏ ନୂଆ କଥା । ଏ ଧରଣର ସୃଷ୍ଟି କେବଳ ଦୃଶ୍ୟ-କାବ୍ୟରେ କାହିଁକି, ଆମ ଦେଶର ଆଧୁନିକ ସାହିତ୍ୟର କୌଣସି ବିଭାଗରେ ଏତେ ସୁସ୍ପଷ୍ଟ ଓ କବିତ୍ୱପୂର୍ଣ୍ଣ ଭାବରେ ପଡ଼ିଥିବାର ମୁଁ ଦେଖିନାହିଁ । ରଙ୍ଗମଞ୍ଚର ଏହା କେତେଦୂର ଉପଯୋଗୀ କହିପାରୁନାହିଁ; କିନ୍ତୁ କବିତାର 'ଯେଉଁ ସନାତନ ସୁଧା ସ୍ରୋତ ସୃଜିଅଛି' ତାହା ବହୁ ପ୍ରାଣରେ ଆନନ୍ଦ ଦେବ । ତୁମେ ପ୍ରଥମ ଦୁଇଟି ଦୃଶ୍ୟରେ ଗ୍ରାମ ଓ ନଗର ଜୀବନର ଯେଉଁ ଚିତ୍ର ଦେଇଅଛ ତାହାତ ଜୀବନର ଛାୟାଚିତ୍ର ।'

'ଆଶା' କହେ— '...ନବୀନ ଯୁଗର ନବୀନ ନାଟକ । ଭାଷା ବଡ଼ ମଧୁର, ବଡ଼ ଲଳିତ । ଉଦୀୟମାନ ସାହିତ୍ୟିକ ଶ୍ରୀମାନ୍ ମାୟାଧର ମାନସିଂହ ରାଜକବିଙ୍କ ଚିତ୍ରଣରେ ସିଦ୍ଧହସ୍ତତାର ପରିଚୟ ଦେଇଅଛନ୍ତି ।'

ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା କହନ୍ତି:— ...ପ୍ରକୃତି ବର୍ଣ୍ଣନାରେ ବାହାଦୁରି ଅଛି । ଏ ପ୍ରଥମ ଉଦ୍ୟମ । ଏ ଦୃଷ୍ଟିରେ ରାଜକବି ପ୍ରଶଂସାର୍ହ ।

୨। (କ) **ପୁଷ୍ପିତା** (ନାଟିକା) ସହକାର ୧୧/୪, ଶ୍ରାବଣ ୧୩୩୭ (ଜୁଲାଇ ୧୯୩୦) ପୃ. ୧୨୮-୧୭୩।

(ଖ) ଏହି ନାଟିକାଟି 'ସହକାର'ରେ ପ୍ରକାଶପାଇବାର ପର ମାସରେ ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ ଏହାର ଦୀର୍ଘ ସମାଲୋଚନା ଲେଖିଛନ୍ତି ।

(ଗ) ପୁଷ୍ପିତା ଲେଖକର କୈଫିୟତ- ସହକାର, ୧୧ଭାଗ ଷଷ୍ଠ ସଂଖ୍ୟା ପୃ.୨୬୦-୨୬୬ ଆଶ୍ୱିନ, ୧୩୩୮ (ସେପ୍ଟେମ୍ବର-୧୯୩୦)ରେ ଶ୍ରୀ ମାୟାଧର ମାନସିଂହ ଲେଖିଥିଲେ—

ଲେଖକକୁ ଯଦି ତା ନିଜ ଲେଖାର ମହତ୍ତ୍ୱ ପ୍ରମାଣ କରିବାକୁ ପଡ଼େ, ତେବେ ସେ ନିତାନ୍ତ ହଟହଟାରେ ପଡ଼େ । ଗତ ସଂଖ୍ୟା 'ସହକାର'ରେ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଳ B. Sc.ଙ୍କର 'ପୁଷ୍ପିତା' ସଂବନ୍ଧରେ ଦୀର୍ଘ ସମାଲୋଚନାଟା ପଢ଼ି ମତେ ଠିକ୍ ଏହିପରି ଏକ ଅବସ୍ଥାରେ ପହଞ୍ଚିବାକୁ ହୋଇଛି । କିନ୍ତୁ ସମାଲୋଚକଙ୍କ ଲେଖାର ଗୁଣରୁ ମୋର ନିଜକୁ ବିଜ୍ଞାପିତ କରିବାର ଯେ ସରମ, ତା ଅନେକ ପରିମାଣରେ କଟିଯାଇଛି । ତାଙ୍କ ଲେଖାରେ ମୋ ନାଟିକାର ସାହିତ୍ୟିକ ମୂଲ୍ୟ (ଥାଉ ବା ନଥାଉ) ସଂବନ୍ଧରେ ସେ ବିଶେଷ କିଛି କହିନାହାନ୍ତି ବା କହିବାକୁ କୁଣ୍ଠା ବୋଧ କରିଅଛନ୍ତି; କିନ୍ତୁ ତାଙ୍କର ଏହି ଅବହେଳା ମତେ ଭେଳା ସ୍ୱରୂପ ହୋଇଛି । ତା କରିଥିଲେ ମୋର ବିଶେଷ କିଛି କହିବାର ନ ଥିଲା; କିନ୍ତୁ ସେ 'ନୀତି' ଉପରେ ତାଙ୍କର 'ଭିତ୍ତି' ସ୍ଥାପନ କରି, ସମସ୍ତ ତରୁଣ ଜଗତକୁ 'ଅତି-ପ୍ରୀତି'ର ଭୀତି ଦେଖାଇଛନ୍ତି । ସମାଲୋଚନାର ଏ ଅଂଶଟାରେ ଅପର ସାଧାରଣଙ୍କର କହିବାର ଯେ ଅଧିକାର ଅଛି ଲେଖକର ମଧ ସେହି ଅଧିକାର, ବରଂ ଲେଖକର ବେଶୀ ଅଧିକାର, କାରଣ ଲେଖକ ତାର ନିଜର ସୃଷ୍ଟିର ନୀତିକୁ ଅପର ସାଧାରଣଙ୍କଠାରୁ ଅଧିକ ଗଭୀରଭାବରେ ବୁଝିଥିବାର ଆଶାକରାଯାଏ । ପାଠକ ସାଧାରଣଙ୍କର ସେହି ଆଶାକୁ ମେଣ୍ଟନ କରିବାପାଇଁ ମୁଁ ଏହି କୈଫିୟତ୍ ଲେଖିବାକୁ ବସିଲି ।

ସମାଲୋଚକ ତାଙ୍କ ସମାଲୋଚନାର ନାଁ ଦେଇଛନ୍ତି 'ପୁଷ୍ପିତା ନାଟିକାର ସାର୍ଥକତା', ମାତ୍ର ପ୍ରମାଣ କରିବାକୁ ଯାଇଛନ୍ତି ତାର ବ୍ୟର୍ଥତା । ତାଙ୍କର ପ୍ରଥମେ ଜାଣିବା ଉଚିତ ଥିଲା ଯେ, କବି କାବ୍ୟ-କବିତା ଲେଖିଲା ବେଳେ କୌଣସି 'ସାର୍ଥକତା'କୁ ଲକ୍ଷ୍ୟ କରି ଲେଖନ୍ତି ନାହିଁ; 'ପୁଷ୍ପିତା' ମଧ୍ୟ ସେ ଉଦ୍ଦେଶ୍ୟରେ ଲେଖା ହୋଇ ନଥିଲା । କାବ୍ୟ କବିତାର ଏକମାତ୍ର ସାର୍ଥକତା ଆନନ୍ଦଦାନ ଏବଂ କାବ୍ୟ-କବିତାର ବିଚାର ସେହି ଆଦର୍ଶରେ ହୁଏ । କାବ୍ୟ ଜଗତରେ ନୈତିକତାର ପ୍ରାଣହୀନ ସଂଯମ ନାହିଁ । କଳ୍ପନାର ଯାଦୁସ୍ପର୍ଶରେ ଯେ କବି ଆମ୍ଭମାନଙ୍କୁ, ଆମ୍ଭମାନଙ୍କର ଏହି କଠିନ, କୁତ୍ସିତ, ଜଞ୍ଜାଳମୟ ସଂସାରର ରୁଦ୍ଧ ପରିସର ମଧ୍ୟରେ ଯେତେଦୂର ସ୍ୱପ୍ନାବିଷ୍ଟ ରଖିପାରନ୍ତି, ତାଙ୍କର ଲେଖା ସେତିକି ମଧୁର । କବି ଯେ ସୁନ୍ଦର ଅନୁଭବ ସବୁ ଆମ୍ଭମାନଙ୍କର ମନଶ୍ଚକ୍ଷୁ ଆଗରେ ଥୋଇ ଦେଇ ଯାଆନ୍ତି, ସେ ତ ନୀତିନିଷ୍ଠୁର କୃପଣ ଜୀବନରେ ସମ୍ଭବ ନୁହେ । ସେଥିପାଇଁ କବିକୁ ଏ ସଂସାର କ୍ଷେତ୍ରରେ, ତାର ପ୍ରାଣର ଶତଦ୍ୱାର ଦେଇ ଆହରଣ କରିବାକୁ ହୁଏ— ମାନବ ଜୀବନର ସକଳ ଅନୁଭୂତିକୁ ମହୁମାଛିର ମଧୁବିନ୍ଦୁ ସମ ତାର ପ୍ରାଣଚକ୍ରରେ ସାଇତିବାକୁ ପଡ଼େ ଏବଂ ପାଠକ ଯଦି କବିର ଲେଖା ଦେଇ ତାର ଅନୁଭୂତିସମୂହକୁ ନିଜ ପ୍ରାଣରେ ସଂକ୍ରମିତ କରିବାକୁ ଚେଷ୍ଟାକରେ, ସେତେବେଳେ ତାକୁ ମଧ୍ୟ ତାର ଅନୁଭବର ଶତ ବାତାୟନ ଖୋଲିଦେବାକୁ ହେବ; ତା ନହେଲେ ପ୍ରକୃତ ରସ ଗ୍ରହଣ ହୁଏ ନାହିଁ । କବି ଓ

## ପରିଶିଷ୍ଟ

ପାଠକ ମଧ୍ୟରେ ଏହି ଦାନ ଓ ଗ୍ରହଣ ସମସ୍ୟାରେ ଏକମାତ୍ର ସର୍ତ୍ତ ଏହି ଯେ, କବି ଯା ଦେଉଛନ୍ତି ତା 'ସୁନ୍ଦର' କି ନା । ତାର ଉତ୍ତର ଯଦି ଅସ୍ତିସୂଚକ, ତେବେ ନୀତି ଭିତ୍ତିରେ ତା ଫେରାଇଦେବା ମୂର୍ଖତା ଓ ତାର ଉତ୍ତର ଯଦି ଅସ୍ତିସୂଚକ ହୁଏ, ତେବେ କେବଳ 'ସାର୍ଥକତା' ଭିତ୍ତିରେ ଗ୍ରହଣ କଲେ ପାଠକ ସଦ୍ୟ-ମଥିତ ଇକ୍ଷୁରସ ନ ପାଇ ପାଏ ବୈଦ୍ୟ-କଥିତ ମିଶ୍ରି ।

ରୂପର ପୂଜାରେ ମନୁଷ୍ୟ ସଂଯମ ମାନେନାହିଁ; ତେଣୁହିଁ ତ ମଣି ଆଣିବାକୁ ସେ ପାତାଳ ଫୁଟାଏ ଓ ମୁକ୍ତା ଆଣିବାକୁ ସମୁଦ୍ରକୁ ଡ଼େଇଁପଡ଼େ ଏବଂ ଗୋଟିଏ ଗୋଟିଏ ସୁନ୍ଦର ମୁଖର ପ୍ରସନ୍ନତା ଆଣିବା ପାଇଁ ସେ ଯୁଗେ ଯୁଗେ ଏହି ଧରିତ୍ରୀକି ରକ୍ତାକ୍ତ କରି ଆସିଛି । ସୌନ୍ଦର୍ଯ୍ୟର ଆକର୍ଷଣ ମନୁଷ୍ୟର ଗୋଟିଏ instinct ଏବଂ instinct ତ ଅହରହ ସକଳ ନିୟମର ଅର୍ଗଳ ଭାଙ୍ଗି ତାର ନିଜ ବାଟରେ ଚାଲେ । ଦାର୍ଶନିକ କହିବ, ଏ ଜଗତ୍‌ଟା ମାୟା— ମନୁଷ୍ୟ ତା ସ୍ୱୀକାର କରେ; କିନ୍ତୁ ତା ସତ୍ତ୍ୱେ ମନୁଷ୍ୟ ମନୁଷ୍ୟ ଭିତରେ ଯେ ପ୍ରାଣପୂର୍ଣ୍ଣ ସଂବନ୍ଧ ତାର କାର୍ଯ୍ୟ ତ ଅବାଧରେ ଚାଲିଛି । ରୂପର ଆକର୍ଷଣ ନୀତି-ନିଷ୍ଠର ଅସହ୍ୟ ହୋଇପାରେ; କିନ୍ତୁ ସେ ଅସହିଷ୍ଣୁତା ମୂର୍ଖତା; କାରଣ କ୍ଷୁଧା, ତୃଷା ପରି ଏହି ଆକର୍ଷଣ ମଧ୍ୟ ମାନବଚିତ୍ତର ଏକ ଗୁଣ । ଏ ଆକର୍ଷଣ ପ୍ରତ୍ୟେକ ମନୁଷ୍ୟର ଅନୁଭବରେ ଆସେ ଏବଂ ସେ ଅନୁଭବ ବେଳେ ନୀତିର ଅର୍ଗଳ ମନୁଷ୍ୟର ଆଖିରେ ପଡ଼େନାହିଁ । ଆମ୍ଭମାନଙ୍କର ପ୍ରିୟ ଓ ପ୍ରିୟା ମଧ୍ୟରେ ଯଦି କେହି ରୂପବାନ୍ ବା ରୂପବତୀ ଥାଆନ୍ତି ଓ ଆମ୍ଭେମାନେ ଯଦି ନିଜକୁ ପଚାରୁଁ ଯେ, ସେହି ପ୍ରିୟ ବା ପ୍ରିୟାଙ୍କର ରୂପର 'ସାର୍ଥକତା' କ'ଣ, ତେବେ ଆମ୍ଭେମାନେ କି ଉତ୍ତର ଦେବା ? ହୁଏତ ଆମ୍ଭେମାନେ ଉତ୍ତର ପାଇ ପାରିବା ନାହିଁ, ଅଥବା ଏହି ଉତ୍ତର ପାଇବା ଯେ, ତାଙ୍କ ରୂପର ଯାଦୁ-ସଙ୍ଗଦ୍ୱାରା ଆମ୍ଭମାନଙ୍କୁ ମୁଗ୍ଧ କରି ରଖିବା ଛଡ଼ା, ସେହି ପ୍ରିୟ ବା ପ୍ରିୟାଙ୍କର ରୂପର ଅନ୍ୟ ସାର୍ଥକତା କିଛି ନାହିଁ । ସୁନ୍ଦର ହେବାରେ ଅନ୍ୟ କିଛି ସାର୍ଥକତା ପାଠକ ପାଇଛନ୍ତି ?

କାବ୍ୟ-କବିତା ସମ୍ବନ୍ଧରେ ମଧ୍ୟ ଠିକ୍ ଏହି କଥା ଖାଟେ । କବିର ଅନୁଭୂତି ଯଦି ଛନ୍ଦ ଓ ଭାଷା ଦେଇ, ଆମ୍ଭମାନଙ୍କର କାନ, ମନ ଓ ଜ୍ଞାନର ତର୍ପଣ କରିପାରିଲା, ତେବେ କାବ୍ୟ-କବିତାରେ ଆଉ କି ଅଧିକ 'ସାର୍ଥକତା' ଆମ୍ଭେମାନେ ଦରକାରକରୁ ? ଯେଉଁ ଲେଖାରେ ତିନୋଟିଯାକ ଗୁଣ ରହିଛି, ସେ ତ ଶ୍ରେଷ୍ଠ ସାହିତ୍ୟ— ଯେପରି ବାଇବେଲ୍, ଉପନିଷଦ୍, ଜଗନ୍ନାଥ ଦାସଙ୍କ ଭାଗବତ, ମିଲ୍‌ଟନ୍‌ଙ୍କ Paradise Lost, ରବୀନ୍ଦ୍ରଙ୍କ ଗୀତାଞ୍ଜଳି । କିନ୍ତୁ ଶ୍ରେୟ ଓ ପ୍ରେୟ ବୋଲି ଦୁଇଟା କଥା ଅଛି । ମନୁଷ୍ୟର ଅନୁଭୂତି ଦୁଇଟିଯାକୁ ଭିନ୍ନ କରି ରଖିଛି; ତେଣୁ ଶ୍ରେଷ୍ଠ ସାହିତ୍ୟ ସବୁବେଳେ ପ୍ରିୟ ସାହିତ୍ୟ ନୁହେ । କେତେକ ଗ୍ରାହକ, ପ୍ରିୟସାହିତ୍ୟକୁହିଁ ପ୍ରକୃତ ସାହିତ୍ୟ ବୋଲି କହନ୍ତି । ଏହି ପ୍ରିୟ ସାହିତ୍ୟ କ'ଣ ? ପ୍ରିୟ ସାହିତ୍ୟ ସେହି, ଯାହା ପାଠକର ବୁଦ୍ଧିକୁ ଜୀବନର ଜଟିଳ ସମସ୍ୟା ଦେଇ କ୍ଷୁବ୍‌ଧ କରିଦିଏ ନାହିଁ, ଅଥଚ ଭାଷା ଓ ଭାବର ଯାଦୁ-ବିଦ୍ୟାରେ କଳ୍ପନାକୁ ଉଦ୍‌ବୁଦ୍ଧ ଓ ଚିତ୍ତକୁ ଉନ୍ମାଦିତ କରି ରଖେ । ଏ ଶ୍ରେଣୀର ଲେଖା— କାଳିଦାସଙ୍କ ମେଘଦୂତ, ସେକ୍‌ସପିୟରଙ୍କ Romeo and Juliet, ଜୟଦେବଙ୍କ ଗୀତଗୋବିନ୍ଦ, ରାଧାନାଥଙ୍କ ଚିଲିକା । ଆମ୍ଭମାନଙ୍କର ରୂପବାନ୍ ବନ୍ଧୁଙ୍କର ରୂପର ଯେପରି, ଏହି ଶ୍ରେଣୀର କାବ୍ୟ-କବିତାର ମଧ୍ୟ ସେହିପରି ଆନନ୍ଦଦାନହିଁ ଏକମାତ୍ର ସାର୍ଥକତା ।

ସମାଲୋଚକ 'ପୁଷ୍ପିତା'ର 'ସାର୍ଥକତା' ଖୋଜି ଯେପରି ହତାଶ ଓ କ୍ରୁଦ୍ଧ ହୋଇଉଠିଛନ୍ତି, ଏହି ଶ୍ରେଣୀୟ ପ୍ରତ୍ୟେକ ଲେଖାରେ ତାଙ୍କୁ ସେହିପରି ହେବାକୁ ପଡ଼ିବ । ଧରନ୍ତୁ କାଳିଦାସଙ୍କ 'ମେଘଦୂତ' । 'ମେଘଦୂତ' ଲେଖି କାଳିଦାସ ମାନବର ଜ୍ଞାନର ପରିଧି ଏକ ବିନ୍ଦୁମାତ୍ର ବଢ଼ାଇ ଯାଇ ନାହାନ୍ତି । ସେଥିରେ ମାନବ ଜୀବନର ଶତ ଶତ ସମସ୍ୟାରୁ ଗୋଟିଏ ହେଲେ ସମସ୍ୟାର ସମାଧାନ ହୋଇନାହିଁ । ଗୋଟାଏ ବିଷୟ ନେଇ ଏଡ଼େବଡ଼ ବହି ଲେଖାହୋଇଛି, ଯାର ନାମ ଶୁଣିଲେ ସମାଲୋଚକ ଆତଙ୍କରେ ଥରିଉଠୁଛନ୍ତି । [ କାରଣ କାଳିଦାସ ତାଙ୍କ ବିରହୀ ଯକ୍ଷ ଦେଇ କ'ଣ ଏଇଆ ଦେଖେଇ ଦେଇ ଯାଇନାହାନ୍ତି ଯେ, ବିରହଟା ବଡ଼ କଷ୍ଟ, ଏଣୁ ପ୍ରତ୍ୟେକ ପୁରୁଷ ପ୍ରେୟସୀର ପଣତ ଧରି ମରିଯିବେ ପଛେ, ଘରୁ ବାହାରିବେ ନାହିଁ । 'ପୁଷ୍ପିତା'ରୁ ଯଦି ଅର୍ଥ ବାହାରିଲା ଯେ, ଲେଖକ ଏ ଦେଶର— ଏ ପବିତ୍ର ଉତ୍କଳ ଦେଶର ପବିତ୍ରତା ଓ ସରଳତାର ବିଗ୍ରହରୂପା ବାଳିକାମାନଙ୍କୁ ଅଭିସାର କରିବାକୁ ବାଟ ଦେଖାଇଦେଉଛି, ତେବେ 'ମେଘଦୂତ'ରୁ ସେପରି ଅର୍ଥ ନ ବାହାରିବ କାହିଁକି ? ] ଏପରି ସ୍ଥଳରେ 'ମେଘଦୂତ'ର ସାର୍ଥକତା କାହିଁ ? କିନ୍ତୁ କାଳିଦାସଙ୍କ ସୌଭାଗ୍ୟରୁ ବା ବିଶ୍ୱ-ସାହିତ୍ୟର ସୌଭାଗ୍ୟରୁ ସମାଲୋଚକଙ୍କ ପରି ଖୁବ୍ କ୍ୱଚିତ୍ ପାଠକ କାବ୍ୟ-କବିତାର 'ସାର୍ଥକତା' ଖୋଜିବୁଲନ୍ତି ଏବଂ ସେହି କାରଣରୁ 'ମେଘଦୂତ' ସମସ୍ତଙ୍କ ନିକଟରେ ଏତେ ଲୋଭନୀୟ ।

ପୂର୍ବରେ କହିଛି, ସମାଲୋଚକ ନୀତି ଉପରେ ଭିତ୍ତି ସ୍ଥାପନକରି ତାଙ୍କର ସମାଲୋଚନା-ଦୁର୍ଗକୁ ଠିଆକରାଇଛନ୍ତି । ବର୍ତ୍ତମାନ ଦେଖାଯାଉ ଜଗତର ସାହିତ୍ୟରେ ନୀତିର କି ପରିମାଣରେ ଅଧିକାର ଅଛି ।

ମୋର ମନେହୁଏ, ସମାଲୋଚକ କେତେକ ମାସ ପୂର୍ବେ 'ଉତ୍କଳ-ସାହିତ୍ୟ' ପତ୍ରିକାରେ 'ଗୀତଗୋବିନ୍ଦ' ନାମରେ ଗୋଟିଏ କବିତା ଲେଖିଥିଲେ । ବାଲ୍ମୀକି ବ୍ୟାଧଶରାହତ କ୍ରୌଞ୍ଚକୁ ଦେଖି ଯେପରି ଅନୁଷ୍ଟୁପ ଛନ୍ଦରେ ଅଭିଶାପ ଦେବାକୁ ବସିଥିଲେ, ସମାଲୋଚକ ସେଥର ସେହିପରି 'ଗୀତଗୋବିନ୍ଦ' ପଢ଼ୁ ପଢ଼ୁ ହଠାତ୍ ତାଙ୍କ ଉଚ୍ଛ୍ୱାସଗୁଡ଼ାକୁ କବିତାଆକାରରେ ବାହାର କରି ପକାଇଥିଲେ । ମୁଁ ବର୍ତ୍ତମାନ ପଚାରେ ଯେଉଁ କବିଙ୍କ ଲେଖା ପଢ଼ି ସମାଲୋଚକଙ୍କର ଏପରି କବିତା ଫୁଟିଉଠିଲା, ସେ କବି ନୀତିର କିଛି ଧାର ଧାରନ୍ତି କି ? ଜୟଦେବ କବି କାହାର ବରଣୀୟ ନୁହନ୍ତି ? କିନ୍ତୁ ଯା ବୋଲି ସାହିତ୍ୟିକ ଆଦର୍ଶତ ଭିନ୍ନ ଭିନ୍ନ ଲୋକଠାରେ ଭିନ୍ନ ଭିନ୍ନ ହେବ ନାହିଁ ? ଜୟଦେବଙ୍କ ସଙ୍ଗୀତର ତୁଳନା ନାହିଁ ଏବଂ ତାଙ୍କ ଭାଷାର ପାଠକର ଇନ୍ଦ୍ରିୟ-ଚେତନା ଉପରେ ଯେ ଉନ୍ମାଦନା ତାର ମଧ୍ୟ ତୁଳନା ନାହିଁ । ରସଗ୍ରାହକମାନେ ଶେଷର ଅପରିହାର୍ଯ୍ୟ ଓ ନଗଣ୍ୟ 'ଦୋଷ'କୁ ପରିହାରକରି ପ୍ରଥମୋକ୍ତ 'ରସ'ଟିକିହିଁ ଗ୍ରହଣକରିଥାନ୍ତି; କିନ୍ତୁ ସମାଲୋଚକ ଯେପରି 'ସାର୍ଥକତା' ଖୋଜିବୁଲିଛନ୍ତି, ତା ଖୋଜିଲେ 'ଗୀତଗୋବିନ୍ଦ'ର ସ୍ଥାନ କାହିଁ ? ଜୟଦେବ କବି ସଂସ୍କୃତ ସାହିତ୍ୟରେ ବିପରୀତ ରତିର ବହୁଳ ପ୍ରଚାରପାଇଁ ବିଶେଷ ଭାବରେ ଦାୟୀ । ତାପରେ ସେ ତାଙ୍କ ନାୟକ-ନାୟିକାଙ୍କର ଯେ ପ୍ରେମବର୍ଣ୍ଣନା କରିଛନ୍ତି, ତାହା ଏକାବେଳକେ ଇନ୍ଦ୍ରିୟପରତନ୍ତ୍ର, ଆତ୍ମାର ତ କିଛି ହେଲେ ସଂବନ୍ଧ ନାହିଁ । ସେ ତ କାବ୍ୟଆରମ୍ଭ କରିଛନ୍ତି ଏହା କହି— 'ଶ୍ରୀ ବାସୁଦେବରତି କେଳିକଥା ସମେତମେତଂ କରୋତି ଜୟଦେବ କବିଃ ପ୍ରବନ୍ଧ' ଏବଂ ସମସ୍ତ କାବ୍ୟ ମଧ୍ୟରେ 'ବାସୁଦେବରତିକେଳିକଥା'ଟା ଏପରି ଭାବରେ

ବର୍ଣ୍ଣିତ ହୋଇଛି ଯେ ଭାଇଭଉଣୀ, ପିତାପୁତ୍ର ଏକାଠି ବସି ପଢ଼ିବା ଅସମ୍ଭବ ହୋଇଉଠିଛି । ତାଙ୍କର ନାୟକ ଶ୍ରୀକୃଷ୍ଣ 'ବିପୁଳପୁଳକଭୁଜପଲ୍ଲବବଳୟିତ-ବଲ୍ଲବଯୁବତିସହସ୍ରମ୍ ଓ ତାଙ୍କର ନାୟିକା 'ସ୍ମରସମରୋଚିତ ବିରଚିତ ବେଶା' । ତାଙ୍କର ରାଧା ଭାବୁଛନ୍ତି, ଏହିପରି ଭାବରେ ହେଲେ ମୋର ପ୍ରିୟ ସଙ୍ଗରେ ମିଳନ ହୁଅନ୍ତା—

'ପ୍ରଥମ ସମାଗମ ଲଜ୍ଜିତୟା ପଟୁଚାଟୁ ଶତୈରନୁକୂଳଂ
ମୃଦୁ ମଧୁରସ୍ମିତ ଭାଷିତୟା ଶିଥିଳୀକୃତ ଜଘନଦୁକୂଳଂ ।
ଚରଣରଣିତମଣି ନୂପୁରୟା ପରିପୂରିତ ସୁରତ ବିତାନଂ
ମୁଖର ବିଶୃଙ୍ଖଳ ମେଖଳୟା ସକଚଗ୍ରହ ଚୁମ୍ବନ ଦାନଂ ।
ରତିସୁଖସମୟରସାଳ ସୟା ଦରମୁକୁଳିତ ନୟନ ସରୋଜଂ
ନିଃସହ ନିପତିତ ତନୁଲତୟା ମଧୁସୂଦନ ମୁଦିତମନୋଜଂ ।'

ପୁଣି ତାଙ୍କ ନାୟିକାଙ୍କ ସଖୀ ପ୍ରିୟସହୀଙ୍କୁ ଅଭିସାର କରିବା ପାଇଁ ଉଚ୍ଛନ୍ନ କରି ଉପଦେଶ ଛଳରେ କହୁଛନ୍ତି—

'ମୁଖର ମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିଷୁ ଲୋଳମ୍
ଚଳ ସଖି କୁଞ୍ଜଂ ସତିମିତପୁଞ୍ଜଂ ଶୀଳୟ ନୀଳ ନିଚୋଳମ୍ ।
ଉରସି ମୁରାରେ ରୁପହିତହାରେ ଘନ ଇବ ତରଳ ବଳାକେ
ତଡ଼ିଦିବ ପୀତେ ରତି ବିପରୀତେ ରାଜସି ସୁକୃତବିପାକେ ।
ବିଗଳିତ ବସନଂ ପରିହୃତ ରସନଂ ଘଟୟ ଜଘନ ମପିଧାନମ୍
କିଶଳୟ ଶୟନେ ପଙ୍କଜ ନୟନେ ନିଧିମିବ ହର୍ଷ ନିଧାନମ୍ ।'

ସମାଲୋଚକ କାହିଁ ଜୟଦେବଙ୍କୁ ତ ଦୋଷ ଦେଲେ ନାହିଁ ଯେ, ତାଙ୍କ ଲେଖା ଦ୍ୱାରା କୁଳବଧୂଙ୍କୁ ଅଭିସାରିକା ହେବାକୁ ଉପଦେଶ ଦିଆ ହୋଇଛି ବୋଲି ? 'ପୁଷ୍ପିତା' ନାଟିକାର ଲେଖକ ବିଚରା କି ଅପରାଧ କଲା କେଜାଣି, ନା ତାର ଏଇ ଅପରାଧ ହେଲା ଯେ, ସବୁ ଅଳିଆଯାକ 'ରାଧାଗୋବିନ୍ଦ'ଙ୍କ ମୁଣ୍ଡରେ ଲଦି ନ ଦେଇ, ବେହିଆ ଭାବରେ ଯୋଡ଼ିଏ ସାଧାରଣ ଯୁବକ ଯୁବତୀଙ୍କୁ ପ୍ରେମିକ-ପ୍ରେମିକା କରିବାକୁ ଚେଷ୍ଟା କରିଛି ? ଦେବତାଙ୍କ ନାଁରେ ମାତୃହରଣ ମଧ୍ୟ ସହାଯାଉଛି, ଅଥଚ ମନୁଷ୍ୟ ନାଁରେ ପ୍ରେମ ପରି ପ୍ରାକୃତିକ ସଂବନ୍ଧଟା ଚକ୍ଷୁଃଶୂଳ ହୋଇଉଠୁଛି— ଏହି କେବଳ ଏ ଜାତିର ବିଶେଷତ୍ୱ !

ମୁଁ ଗୀତଗୋବିନ୍ଦକୁ ଏ ଗୋଳମାଳ ଭିତରକୁ ଟାଣିଆଣିଲି, ତାର କାରଣ ଏହି ଯେ, ସମାଲୋଚକଙ୍କୁ ସାକ୍ଷାତ୍ କରିବାପାଇଁ ସେଥିରେ ମତେ ସାଧାରଣ କ୍ଷେତ୍ର ମିଳିଲା । ସମସ୍ତ କାବ୍ୟରେ 'ପୀନପୟୋଧର ପରିସର-ମର୍ଦ୍ଦନ-ଚଞ୍ଚଳ-କରଯୁଗଶାଳୀ' ନାୟକ ଏକାବେଳକେ କାମୁକ ଭାବରେ ବର୍ଣ୍ଣିତ ହୋଇଛନ୍ତି ଓ ରାଧା ମଧ୍ୟ ଦୈହିକ ସମ୍ଭୋଗ ଛଡ଼ା ଆଉ କିଛି ଇଚ୍ଛା କରି ନାହାନ୍ତି । ଏ ଲେଖାର ନାନା 'ଦର୍ଶନ-ତତ୍ତ୍ୱ' ବାହାରି ପାରେ, କିନ୍ତୁ ସାହିତ୍ୟ-କ୍ଷେତ୍ରରେ ସେ ସବୁ ଶୁଣେ କିଏ ?

ଜୟଦେବଙ୍କୁ ବିଦାୟ ଦେଇ ବର୍ତ୍ତମାନ ବିଶ୍ୱସାହିତ୍ୟର ଅନ୍ୟାନ୍ୟ ନାମଜାଦା କବିମାନଙ୍କୁ ଟିକିଏଟିକିଏ ଦେଖି ନିଆ ହେଉ— ଦେଖିବା ସେମାନଙ୍କ ଲେଖାରେ ନୀତିର ସ୍ଥାନ କେତେ ଦୂର । ଏଠାରେ ବିସ୍ତୃତ ବିବରଣ ସମ୍ଭବ ନୁହେଁ— ମୁଁ ଖାଲି ସୂଚନା ଦେଇଯିବି ।

ହୋମର୍ ପାଶ୍ଚାତ୍ୟ ଜଗତର ବାଲ୍ମୀକି । ତାଙ୍କର ମହାକବ୍ୟ Iliadର ନାୟିକା 'ହେଲେନା' ବେଶ୍ ଅସତୀ । କାଳିଦାସଙ୍କ ନାୟିକା ଶକୁନ୍ତଳା ସ୍ୱୈରିଣୀ ଓ ଦୁଷ୍ମନ୍ତ ବହୁପତ୍ନୀକ କାମୁକ ନାୟକ । ରୁଷିଆର ଋଷି ଟଲ୍‌ଷ୍ଟୟଙ୍କ ଶ୍ରେଷ୍ଠ ସୃଷ୍ଟି 'ଆନା କାରେନିନା'ରେ ନାୟିକା 'ଆନା' ନିଜର ସ୍ୱାମୀ ଓ ପୁତ୍ରକୁ ପରିତ୍ୟାଗକରି ପରପୁରୁଷର ଅନୁଗାମିନୀ ହୋଇଛି । ଏ ଯୁଗର ମହାମନୀଷୀ ରମ୍ୟା ରଲାଁଙ୍କ ଅମର ଗ୍ରନ୍ଥ 'ଜନ୍ କ୍ରିଷ୍ଟଫର୍'ରେ ନାୟକ କ୍ରିଷ୍ଟଫର୍‌ଙ୍କ ପ୍ରେମିକାମାନଙ୍କର ଅନ୍ତ ନାହିଁ ଓ ତାଙ୍କ ପ୍ରେମପ୍ରବାହର ଶେଷ ପରିଣତି ହୋଇଛି ତାଙ୍କର ଜଣେ ବନ୍ଧୁଙ୍କ ସ୍ତ୍ରୀଠାରେ ।

ଆଉ ଦୃଷ୍ଟାନ୍ତର ଆବଶ୍ୟକତା ଅଛି ? ଉପରେ ଯେଉଁ କବିମାନଙ୍କ ନାମ ଦିଆଗଲା, ସେମାନେ ସମାଲୋଚକଙ୍କ ବାଣର ବହୁ ଉପରେ । ସେମାନେ ବିରାଟ ପୁରୁଷ ଓ ତାଙ୍କ ସୃଷ୍ଟି ମାନବଜାତିର ଶ୍ରେଷ୍ଠ ସମ୍ପଦ । ଆଚ୍ଛା, କହ ଦେଖି, ଏମାନେ ଏମାନଙ୍କର ଲେଖା ଦେଇ ଯେ ସବୁ ଭୀଷଣ ଅନାଚାରର ଚିତ୍ର ଦେଖାଇଦେଇଗଲେ, ତା ପାଇଁ ବିଶ୍ୱ-ସାହିତ୍ୟରେ କେହି କେତେବେଳେ ଅନୁଶୋଚନା ଶୁଣିଛି ? ଆଉ 'ପୁଷ୍ପିତା ନାଟିକା'ର କି ବା ଦୁର୍ଭାଗ୍ୟ ଯେ, ସମାଲୋଚକ ଖଣ୍ଡା ଧରି ଡେଇଁପଡ଼ିଲେ ?

ଏ ଦେଶରେ ସତୀତ୍ୱ ଓ ଯତିତ୍ୱ ନାମରେ ନାନା ପ୍ରବଞ୍ଚନା ଓ ଭଣ୍ଡତାର ପ୍ରସାର ବଢ଼ିଛି । ଲୋକେ ବୁଝୁନାହାନ୍ତି ଯେ, ସତୀତ୍ୱ କହିଲେ ସବୁଠାରେ ପ୍ରେମ ବୁଝାଏ ନାହିଁ ଓ ଯତିତ୍ୱ କହିଲେ ସବୁଠାରେ ସଂଯମ ବୁଝାଏ ନାହିଁ ଏବଂ ଏହା ମଧ୍ୟ ବୁଝିବା ଉଚିତ ଯେ, ଶୁଷ୍କ-ପ୍ରାଣା ସତୀଠାରୁ ପୂର୍ଣ୍ଣ-ପ୍ରାଣା କୁଳଟା ଭଲ ଓ ଭଣ୍ଡ ସନ୍ନ୍ୟାସୀଠାରୁ ରସିକ ସଂସାରୀ ଭଲ । କେବଳ ପରମ୍ପରା ପ୍ରତି ସମ୍ମାନ ଦେଖାଇବାକୁ ବସିଲେ ଆମ୍ଭମାନଙ୍କୁ ଅନେକ ସ୍ଥଳରେ ମିଥ୍ୟାକୁ ପ୍ରଶ୍ରୟ ଦେବାକୁ ପଡ଼ିବ ଏବଂ ଏହି ମିଥ୍ୟାର ଆବରଣକୁ ଯତ୍ନ କରୁ କରୁ ତେଣେ ସମାଜର ମଜ୍ଜାକୁ କୀଟ କାଟିଯିବ । ସମାଲୋଚକ ଯୌବନ କଥା ପ୍ରସଙ୍ଗରେ ଏ ଦେଶ ଓ ପାଶ୍ଚାତ୍ୟ ଦେଶ ଭିତରେ ବ୍ୟବଧାନର ରେଖାପାତ କରିଛନ୍ତି । ସେ ଏ ଦେଶର ଆଦର୍ଶକୁ ପ୍ରଶଂସା କରିବାକୁ ଶତଜିହ୍ୱ ହୋଇ କହିଛନ୍ତି ଯେ, ଏଭଳି ଆଦର୍ଶ ଯେଉଁ ଦେଶରେ, ସେ ଦେଶରେ 'ପୁଷ୍ପିତା' ପରି ଲେଖା ଆଦୌ ଲେଖାହେବା ଉଚିତ ନୁହେ; କିନ୍ତୁ ସମାଲୋଚକଙ୍କର ମନେରଖିବା ଉଚିତ, ମନୁଷ୍ୟର ପ୍ରବୃତ୍ତି ସବୁଠାରେ ସମାନ, ମନୁଷ୍ୟର ନୈତିକ ଆଦର୍ଶ ମଧ୍ୟ ସବୁଠି ସମାନ । ଏ ଦେଶରେ କେବଳ ଯେ ସୀତା-ସାବିତ୍ରୀ ଜନ୍ମହୋଇଛନ୍ତି ତା ନୁହେଁ, ସେ ଦେଶରେ ମଧ୍ୟ ସତୀରାଣୀମାନଙ୍କର ଅପ୍ରାଚୁର୍ଯ୍ୟ ନାହିଁ । ଆଉ ସେ ଦେଶରେ ଯଦି ବ୍ୟଭିଚାରିଣୀ ଅଛନ୍ତି, ଏ ଦେଶରେ ମଧ୍ୟ ସେମାନଙ୍କ ସଂଖ୍ୟା ଅଳ୍ପ ନୁହେ । କେବଳ ପ୍ରଭେଦ ଏତିକି ଯେ, ସେ ଦେଶର ଲୋକେ ମାନବଚରିତ୍ରର ବୈଚିତ୍ର୍ୟକୁ ସ୍ୱୀକାର କରି ତାର ଅପରାଧକୁ ମଧ୍ୟ ସାହିତ୍ୟରେ ଆଦରଣୀୟ କରିନେଇଛନ୍ତି, ଆଉ ଏ ଦେଶର ଲୋକେ ସତ୍-ସାହସର ଅଭାବରୁ କୁଳଟା ରାଧାଙ୍କୁ ଦେବୀ ବୋଲି ଗ୍ରହଣକରିବେ, ଅଥଚ ଏଣେ କିଶୋରୀମାନଙ୍କୁ ବିଧବା ରଖି, ସମାଜର କଠୋର

ଆଘାତରେ ହୃଦୟର କୋମଳତମ ବୃତ୍ତିକୁ ବିନଷ୍ଟ କରି, ସତୀତ୍ୱର ପ୍ରେତାତ୍ମା ଗଢ଼ିବାକୁ ଚେଷ୍ଟା କରିବେ । ସମାଲୋଚକ କ'ଣ ଏ ଦେଶର କିଶୋରୀମାନଙ୍କୁ ଏହିପରି ସତୀ ହୋଇ 'କଲ୍ୟାଣୀ' ହେବାକୁ ଅଭିଳାଷ କରନ୍ତି ? ଲେଖକ ମଧ୍ୟ ମାନେ ଯେ, ନାରୀର ପୂର୍ଣ୍ଣତମ ବିକାଶ ଗୃହଲକ୍ଷ୍ମୀତ୍ୱରେ; କିନ୍ତୁ ଗୃହଲକ୍ଷ୍ମୀ କ'ଣ ସମାଜର କଳରେ ଗଢ଼ା ହେବେ ନା ନାରୀତ୍ୱର ପୂର୍ଣ୍ଣତମ ବିକାଶ ଦେଇ ସେମାନଙ୍କର 'କଲ୍ୟାଣୀତ୍ୱ' ଫୁଟାଇବାକୁ ଚେଷ୍ଟା କରାଯିବ ? ସମାଲୋଚକ କ'ଣ ଭାବନ୍ତି ଯେ, ପ୍ରେମକୁ ବାଦ୍ ଦେଇ ମଧ୍ୟ ନାରୀତ୍ୱର ପୂର୍ଣ୍ଣ ବିକାଶ ସମ୍ଭବ ହେବ ? ସେ ଯଦି ତା ଭାବିଥାନ୍ତି, ତାହେଲେ ସେ ଭୁଲ୍ ବୁଝିଛନ୍ତି । ୟୁରୋପରେ ମାଷ୍ଟ୍ରାଣୀମାନେ ଅବିବାହିତା ରହନ୍ତି— ପ୍ରାୟ । ଏବେ ସେ ଦେଶରେ ଏକ ଭାବ-ଧାରା ଉଠୁଛି ଯେ, ଅବିବାହିତା ସ୍ତ୍ରୀ ଛୋଟ ଶିଶୁଙ୍କୁ ପଢ଼ାଇବା ପାଇଁ ଉପଯୁକ୍ତ ନୁହନ୍ତି— କାରଣ ଦାମ୍ପତ୍ୟ ଜୀବନର ଅନୁଭୂତି ଯାର ନାହିଁ ତାର ବାତ୍ସଲ୍ୟ ସ୍ନେହ ସହଜରେ ଆସିପାରେ ନାହିଁ । ତେଣୁ ବିବାହିତା ସ୍ତ୍ରୀହିଁ ଛୋଟ ଶିଶୁଙ୍କୁ ପଢ଼ାଇବା ପାଇଁ ସବୁଠାରୁ ବେଶୀ ଉପଯୁକ୍ତ । ଏଥିରୁ ବୁଝାଯିବ, ନାରୀଜୀବନରେ ପ୍ରେମ କି ପରିମାଣରେ ସ୍ୱାଭାବିକ ଓ ଆବଶ୍ୟକ । ଆମ୍ଭମାନଙ୍କ ସମାଜରେ ଅନେକ ସ୍ଥଳରେ ଦେଖାଯାଏ, କେତେକ ବିଧବା ନିତାନ୍ତ ରୁକ୍ଷା ଓ କଠୋରସ୍ୱଭାବା । ତାର ପ୍ରଧାନ କାରଣ ଏହି ଯେ, ପ୍ରେମର ଅମୃତ-ସଂପର୍କରୁ ଚିରକାଳ ଲାଗି ବଞ୍ଚିତ କରି ସମାଜ ସେମାନଙ୍କ ହୃଦୟର ସମସ୍ତ କୋମଳ ବୃତ୍ତିଗୁଡ଼ିକର ମସ୍ତକ ଚର୍ବଣ କରିଅଛି । ମୁଁ ପୁଷ୍ପିତା ନାଟିକାରେ ଏହାହିଁ ଦେଖାଇବାକୁ ଚେଷ୍ଟା କରିଛି ଯେ, ନାରୀ ଜୀବନରେ ଯୌବନର ବିକାଶ ସଙ୍ଗେ ପ୍ରେମର ବିକାଶ ନିତାନ୍ତ ସ୍ୱାଭାବିକ । ହୃଦୟର ଏହି ସ୍ୱାଭାବିକ କ୍ରିୟାକୁ ଅବରୋଧ କଲେ ଜୀବନରେ tragedy ଘଟେ; ସମାଜର ତା କରିବା ଉଚିତ ନୁହେଁ । ପୁଷ୍ପିତାର ନାୟିକା କିଶୋରୀ ଯୌବନ ପାଇବା ପରେ ନିଜ ଗ୍ରାମରେ ତ ବହୁତ ଯୁବକଙ୍କୁ ଦେଖିଥିବ; କିନ୍ତୁ ଆଉ ଏକ ଗ୍ରାମର 'ଅପରିଚିତ' ଯୁବକ ପ୍ରତି ମନ ଢାଳିଲା କାହିଁକି ? ସମାଲୋଚକଙ୍କର ବୁଝିବା ଉଚିତ, ଏଇଟା ବ୍ୟଭିଚାରର ଚିହ୍ନ ନୁହେ— ପ୍ରେମର ଚିହ୍ନ । ବ୍ୟଭିଚାର କରିବାକୁ ବସିଲେ ତ ବାଛ-ବିଚାରର ପ୍ରୟୋଜନ ହୁଏ ନାହିଁ; କିନ୍ତୁ ପ୍ରେମ ପାଇଁ ବହୁ ମଧ୍ୟରୁ ଏକକୁ ବାଛିବାକୁ ହୁଏ ଓ ତା ପାଇଁ ଆଖିରୁ ଲୁହ ଗଡ଼ାଇବାକୁ ହୁଏ; କିଶୋରୀ ସେଇୟା କରିଛି । ସମାଲୋଚକ ତେବେ ତା ଉପରେ ରକ୍ତ-ଚକ୍ଷୁ ଦେଖାଇଛନ୍ତି କାହିଁକି, ମୁଁ ବୁଝି ପାରିଲି ନାହିଁ । ଯେ ହୃଦୟ ଅଧିକାର କରି ବସିଲା, ତା ପାଇଁ ତ ନାରୀ ଯୁଗେ ଯୁଗେ 'ଅଭିସାର' କରିଛି— କିଶୋରୀର ଦୋଷ କ'ଣ ? ରାଧା ତ ନିଜ ସ୍ୱାମୀଙ୍କି ପରିତ୍ୟାଗ କରି ଧାଇଁଥିଲେ; ଏ ତ ଅବିବାହିତା । ସମାଲୋଚକଙ୍କର ରାଧା କାହିଁକି ପ୍ରିୟ ହେଲେ, ଆଉ କିଶୋରୀ କାହିଁକି ବିରାଗଭାଜନ ହେଲା, ମୁଁ ବୁଝିପାରିଲି ନାହିଁ ।

ସମାଲୋଚକ ତାଙ୍କ ଲେଖାରେ ଏପରି ଏକ ସ୍ୱର ଧରିଛନ୍ତି, ଯେଉଁଥିରୁ ଏତକ ବୁଝିବାକୁ ହେବ, ଯେପରି ପୁଷ୍ପିତାର ଲେଖକହିଁ ପ୍ରଥମେ କିଶୋରୀମାନଙ୍କୁ 'ଅଭିସାର' କରିବାକୁ ଶିଖାଉଛନ୍ତି । ଏ ଅନ୍ଧତାର ମୁଁ କି ଉତ୍ତର ଦେବି ? ଆଶାକରେ, ଏପର୍ଯ୍ୟନ୍ତ ମତେ ଯେଉଁ ପାଠକମାନେ ଧୈର୍ଯ୍ୟ ଧରି ଶୁଣିଆସିଥିବେ, ସେମାନେ ବୁଝିବେ ଯେ, ଏ କଥା ସାହିତ୍ୟ-ରାଜ୍ୟରେ ନୂଆକଥା ନୁହେ । 'ଶକୁନ୍ତଳା'ରେ ପ୍ରେମିକ ଦୁଷ୍ମନ୍ତ ଶକୁନ୍ତଳାଙ୍କ ଆଖିରୁ ପୁଷ୍ପରାଗ

କାଢ଼ି ଆଣିବା ବାହାନାରେ ଚୁମ୍ବନ-ଚେଷ୍ଟା କରିଛନ୍ତି । ସମାଲୋଚକ କହିବେ ଯେ, କାଳିଦାସ ତ ଏଇମିତି ଭାବରେ ଚୁମ୍ବନ-ଚେଷ୍ଟା କରିବାକୁ ଲୋକଙ୍କୁ ବତେଇଦେଇଗଲେ ! ଏମିତି ସାହିତ୍ୟ-ରସିକ ତ ଆଉ କେଉଁଠି ଦେଖାନଥିଲା । ତାଙ୍କର ଦେଖିବା ଉଚିତ, କିଏ କାହାକୁ ଶିଖାଏ । କାବ୍ୟ କବିତାରେ ସମାଜରହିଁ ପ୍ରତିବିମ୍ବ ପଡ଼େ । ସମାଜରେ ପ୍ରେମର କାରବାର ନଥିଲେ କବି ପ୍ରେମର କଳ୍ପନା ମଧ୍ୟ କରିପାରନ୍ତେ ନାହିଁ । କବିର ବ୍ୟବସାୟ, ମାନବର କର୍ମକୁ ଭାଷାରେ ଜୀବନ ଦାନ କରିବା । ଦୁଷ୍ମନ୍ତ ଶକୁନ୍ତଳାଙ୍କଠାରେ ଯେପରିଭାବରେ ଚୁମ୍ବନ-ଚେଷ୍ଟା କଲେ, ତା ପ୍ରତ୍ୟେକ ପ୍ରେମିକ ପ୍ରେମିକା ଆପେ ଆପେ ଶିଖିଥାନ୍ତି । 'ଶକୁନ୍ତଳା'ଯେ ନପଢ଼ିଛି, ସେ କ'ଣ ଚୁମ୍ବନ ସମ୍ବନ୍ଧରେ ଏକାନ୍ତ ଅନଭିଜ୍ଞ ? ସମାଲୋଚକଙ୍କର ଏପରି ଭାବିବା ଭୁଲ । ଭୂମିଷ୍ଠ ଶିଶୁ ଯେପରି ମାତୃସ୍ତନରେ ମୁଖ ଦେଲେ ଆପେ ଆପେ ଦୁଗ୍ଧପାନ କରିଯାଏ, ସେହିପରି ଯୌବନ ଆସିଲେ ଯୁବକ ଓ ଯୁବତୀ ପରସ୍ପର ସଙ୍ଗେ କିପରି ମିଶିଯିବାକୁ ହୁଏ, ସେ କଳା ଆପେ ଆପେ ଜାଣିଥାନ୍ତି । ଏ ତ ହେଲା ସୃଷ୍ଟିର ଧର୍ମ— ଏଥିରେ ଘୃଣାର କଥା ବା କ'ଣ ? ସୃଷ୍ଟି-ରକ୍ଷା ପାଇଁ ଆମର ସ୍ରଷ୍ଟା ଆମମାନଙ୍କ ମଧ୍ୟରେ କ୍ଷୁଧା ତୃଷା ପରି ଏ ଆକର୍ଷଣଟା ମଧ୍ୟ ରୋପଣ କରିଦେଇଛନ୍ତି । ତାକୁ ଏକାବେଳକେ ଅବହେଳା କରିବା ମୂର୍ଖତା । ସାଧାରଣ ମନୁଷ୍ୟ କିନ୍ତୁ ପ୍ରକୃତିର ପ୍ରେରଣା ଘେନି ଚଳେ ଏବଂ ପ୍ରାଣ-ହୀନ ସତୀ ଓ ଯତି ହେବାକୁ ଚେଷ୍ଟା ନକରି, ତାର 'ଅଭିସାର' ଓ ରସିକତାରେ ଜୀବନକୁ ବୈଚିତ୍ର୍ୟମୟ କରିରଖେ । କବି ବୈଚିତ୍ର୍ୟରେ ମୁଗ୍ଧ ହୋଇ କୁଳଟାକୁ ନମସ୍କାରକରେ ଓ ତାର ଯଶ ଗାନକରେ ଏବଂ ପ୍ରାଣଶୂନ୍ୟା ସତୀ-ଶିରୋମଣିମାନଙ୍କ ସଂବନ୍ଧରେ ନୀରବ ରହେ । ଏଥିଯୋଗୁଁ ଜଗତ-ସାହିତ୍ୟର କ୍ଷତି ହୋଇଛି କି ଲାଭ ହୋଇଛି, 'କ୍ରିଷ୍ଟୋଫର୍', 'ଆନା କାରେନିନା' ଓ 'ଗୀତଗୋବିନ୍ଦ' ପାଠକଲେ ପାଠକ ବୁଝିପାରିବେ ।

ତା ପରେ 'ପୁଷ୍ପିତା'ରେ ଲେଖକ ଏପରି କିଛି- ଅସଂଯତ ହୋଇ ପଡ଼ିନାହିଁ, ଯା କି ସମାଲୋଚକଙ୍କୁ ଅପ୍ରକୃତିସ୍ଥ କରି ପକାଇଲା ? ଯୌନ-କ୍ରିୟାର ଉଦ୍‌ବୋଧନ ପାଇଁ ସେଥିରେ ସେପରି ବା କ'ଣ ଅଛି ? 'ଗୀତଗୋବିନ୍ଦ' ଓ ଭଞ୍ଜ କବିତା ସଙ୍ଗେ ଏ ବିଷୟରେ କ'ଣ ତାର ତୁଳନା ହୋଇପାରେ ? କିଶୋରୀ ଦେହରେ ଯୌବନର ସମାଗମ ହେବାରୁ ଭଞ୍ଜ ଗାଇଲେ—

ଏ ସମୟେ ଆସି ବାଳାପ୍ରିୟଦାସୀ
ହସି ଭାଷିଲା କୁମରକୁ
ଅତନୁ ଆଜ ଅନୁକୂଳ ଥୋଇଲା
ତରୁଣ କୁଳ ଆକୁଳକୁ;
ରଙ୍ଗକେତନ, ନିକେତନେ କଲା ବନ୍ଧନ... ଇତ୍ୟାଦି

ଏପ୍ରକାର ଗ୍ରାମ୍ୟ ବର୍ଣ୍ଣନା କ'ଣ ପୁଷ୍ପିତାରେ ଅଛି ? ନା ଜୟଦେବଙ୍କର ବିପରୀତରତିର ମନୋମୁଗ୍ଧକର ଚିତ୍ରଣ ସେଥିରେ ଅଛି ? ତେବେ ସମାଲୋଚକଙ୍କର ଏ ଲେଖକ ବିଚରା ଉପରେ ଏତେ ରାଗ କାହିଁକି ? କେଉଁ ଦୋଷରେ ବା ଲେଖାଟା ନୈତିକ ସଂସାରରେ ଏକ ଭୌତିକ ବ୍ୟାଧି ଭଳି ଲେଖକଙ୍କୁ ଦେଖାଗଲା ?

ମୁଁ ମୋର ଯା କହିବାର ତା କହିଛି । ସମାଲୋଚକ ନାନା ଛୋଟ ଛୋଟ କଥା ନେଇ ମତେ ବାଣ ମାରିବାକୁ ଚେଷ୍ଟାକରିଛନ୍ତି– ମୁଁ ସେଥିପ୍ରତି ଦୃଷ୍ଟି ଦେବି ନାହିଁ । ମୁଁ ପୁଷ୍ପିତାର ନୀତି ଓ ରୀତି ବିଷୟରେ କହିବାକୁ ବାହାରିଥିଲି, ତା କହିଲି । 'ପୁଷ୍ପିତା'ର ସାହିତ୍ୟିକ ମୂଲ୍ୟ ସଂବନ୍ଧରେ ସେ ଏକ ପ୍ରକାର ନୀରବ । ସେ 'ସାର୍ଥକତା' ଖୋଜି ବିଫଳମନୋରଥ ହୋଇଛନ୍ତି; ତେଣୁ ତାଙ୍କ ମତରେ ଏହାର ମୂଲ୍ୟ ନଥାଇପାରେ । ସେ ସଂବନ୍ଧରେ ଅନୁକୂଳ ବା ପ୍ରତିକୂଳ ମନ୍ତବ୍ୟ ଯାହା ଦେଇଥାନ୍ତେ, ସେଥିରେ ମୋର କିଛି ହେଲେ କହିବାର ନ ଥିଲା; କିନ୍ତୁ ସେ ସେଥିରେ 'ସାର୍ଥକତା' ଖୋଜିବାବେଳେ ମୋର ଅନ୍ତତଃ ଏତିକି କହିଦେବା ଉଚିତ ଯେ, 'ପୁଷ୍ପିତା'ରେ ତ କୌଣସି 'ସାର୍ଥକତା' ନାହିଁ, ସେ ଖୋଜୁଛନ୍ତି କାହିଁକି ? ଆଶାକରେ, ମୁଁ ସେତକ କହିପାରିଛି ।

କିଶୋରୀର ବୟସ, 'ଅପରିଚିତ ଯୁବକ'ର University ମାର୍କା ଓ Service, ନାସିକାରେ ବୀଣା ବାଜିବା ପ୍ରଭୃତି କଥାକୁ ସମାଲୋଚକ ଖୁବ୍ ବଡ଼ କରି ଥୋଇଛନ୍ତି । ସେସବୁ ଅତି ସାମାନ୍ୟ କଥା । ବାରବର୍ଷରେ ପ୍ରେମର ଉଦ୍ରେକ ସମାଲୋଚକଙ୍କୁ ହାସ୍ୟକର ବୋଧହୋଇଛି; କିନ୍ତୁ ଏ ଦେଶରେ ୧୨ ବର୍ଷରେ ମା ହୋଇଯାଉଛନ୍ତି, ତା ସେ ଜାଣନ୍ତି ? କିଶୋରୀର ପ୍ରେମିକ 'ଅପରିଚିତ' ରହିବାରେ କି କ୍ଷତି ହୋଇଛି ? ତାର ପରିଚୟ ଦେଇ ଲାଭ ବା କ'ଣ ହୋଇଥାନ୍ତା ? ସେ ରଙ୍ଗସ୍ଥଳକୁ ନ ଆସିଲେ ମଧ୍ୟ କ'ଣ ରସ-ଗ୍ରହଣରେ ବାଧାପଡୁଛି ? ତା ପରେ ଏ ତ 'ନାଟକ' ନୁହେ ଯେ ସବୁ ଚରିତ୍ରର ପୂର୍ଣ୍ଣ ରେଖାପାତ ପାଇଁ ଲେଖକ ଚେଷ୍ଟାକରିବ, ଏଟା 'ନାଟିକା'– ଫଟୋ ନୁହେଁ snapshot ।

ଶେଷରେ ଗୋଟିଏ କଥା କହି ମୋର ବକ୍ତବ୍ୟ ଶେଷକରିବି । ଏ ଲେଖାରେ ମୁଁ ମୋ ଆତ୍ମରକ୍ଷା ପାଇଁ ବିଶ୍ୱସାହିତ୍ୟର ବିରାଟପୁରୁଷମାନଙ୍କୁ ଟାଣି ଆଣିଛି । କେହି ପାଠକ ଯେପରି ନ ଭାବନ୍ତି ଯେ, ମୁଁ ଏହି ମହାରଥୀମାନଙ୍କ ସଙ୍ଗେ ଆସନ ପକାଇବାକୁ ସ୍ପର୍ଦ୍ଧା କରୁଛି– ସେ କଳ୍ପନା ମଧ୍ୟ ମୋର ନାହିଁ । ମୁଁ ତ ପଥର ଧୂଳି– ନଗଣ୍ୟମାନଙ୍କ ମଧ୍ୟରେ ନଗଣ୍ୟ; କିନ୍ତୁ ପାଠକମାନେ ଜାଣନ୍ତି ଯେ, ଗୀତାରେ ଗୋଟିଏ ବାକ୍ୟ ଅଛି– "ଯଦ୍ ଯଦାଚରତି ଶ୍ରେଷ୍ଠା, ସ୍ତଦ୍ ତଦୈବେତରେ ଜନାଃ ।" ମହାଜନମାନେ ଯାହା କରନ୍ତି, ଇତର ଲୋକମାନେ ତାହାହିଁ ଅନୁକରଣ କରନ୍ତି । 'ପୁଷ୍ପିତା' ଲେଖି ମୁଁ ଅବଶ୍ୟ କାହାର ଅନୁକରଣ କରିନାହିଁ; ତେବେ ମୁଁ କହିବାକୁ ଚାହେଁ ଯେ, ମୁଁ ଏପରି କିଛି କରିନାହିଁ ଯାହା ମହାଜନମାନେ କରିବାକୁ କୁଣ୍ଠା ବୋଧ କରିଛନ୍ତି ।

(ଘ) ହରିଶ୍ଚନ୍ଦ୍ର ବଡ଼ାଳଙ୍କ ସମାଲୋଚନା ପରେ ମାନସିଂହ ନାଟିକାରେ ବିଭିନ୍ନ ସମୟରେ ପରିବର୍ତ୍ତନ କରିଛନ୍ତି ।

'ଘରଛାଡ଼ି କୁଳ ଝିଅ ବନପଥେ ଘୂରିବ, ଗୁରୁକ୍ଷତେ ଫୁଲ-ଲଘୁ ପଦଦ୍ୱଇ ପୂରିବ ।'

ପଦଟି ପାଇଁ ସେତେବେଳେ ମାନସିଂହ ସମାଲୋଚିତ ହୋଇଥିଲେ ।

(ଙ) ପୁଷ୍ପିତା ସଚିତ୍ର ତୃତୀୟ ମୁଦ୍ରଣ (୧୯୬୩)ରେ ମଧ୍ୟ ଅନେକ ପରିବର୍ତ୍ତନ ହୋଇଛି ।

୩- **ପୂଜାରିଣୀ** (ନାଟିକା)

(କ) ପ୍ରଥମ ପ୍ରକାଶ ୧୯୩୨, ସବୁଜ ସାହିତ୍ୟ ସମିତିର ଏହାହିଁ ଚତୁର୍ଥ ଗ୍ରନ୍ଥ । ପ୍ରକାଶକ-ସବୁଜ ସାହିତ୍ୟ ସମିତି, କଟକ, ମୂଲ୍ୟ-ପାଞ୍ଚଅଣା ମାତ୍ର ।

(ଖ) ଯୁବବାଣୀ ୭. ୨. ୧୯୩୩ ସଂଖ୍ୟାର ଶେଷ ପୃଷ୍ଠାର ଏକ ବିଜ୍ଞାପନରେ ଥିଲା– ଶ୍ରୀଯୁକ୍ତ ମାୟାଧର ମାନସିଂହଙ୍କ **ପୂଜାରିଣୀ**– ଦେବତା ଓ ମାନବୀର ପ୍ରାକୃତ ପ୍ରେମଲୀଳାର ମନୋମୁଗ୍ଧକର ଚିତ୍ର ଚକ୍ଷୁରେ ଲୋତକ ଆଣେ– ମୂଲ୍ୟ ପାଞ୍ଚଅଣା ସଂପାଦକ– ସବୁଜ ସାହିତ୍ୟ ସମିତି, ଫିରିଙ୍ଗିବଜାର, କଟକ,

(ଘ) ପୂଜାରିଣୀ ୪ର୍ଥ ମୁଦ୍ରଣ (୧୯୫୩), (ଙ) ପରିବର୍ଦ୍ଧିତ ସଂସ୍କରଣ (୧୯୬୦)

୪। **ନଷ୍ଟନୀଡ଼** (ନାଟକ)

(କ) ପ୍ରଥମ ପ୍ରକାଶ, ୧୯୩୭ । ଏହାର ପ୍ରଥମ ଅଙ୍କର କେତେକାଂଶ 'ବିଚ୍ଛିନ୍ନା' ୧/୨ କାର୍ତ୍ତିକ ୧୩୪୫ (ଅକ୍ଟୋବର ୧୯୩୭)ରେ ପ୍ରକାଶିତ ହୋଇଥିଲା ।

(ଖ) 'ନଷ୍ଟନୀଡ଼' ପୁସ୍ତକ ଭାବରେ ପ୍ରଥମ ମୁଦ୍ରଣ । ୧୯୩୯– ପ୍ରକାଶକ- ଚିନ୍ତାମଣି ମିଶ୍ର, ନବଭାରତ ଗ୍ରନ୍ଥାଳୟ, ଚାନ୍ଦିନୀଚୌକ୍, କଟକ ।

୫। **ବାରବାଟୀ** (ନାଟକ) ୧. ୧. ୧୯୫୧

ଦ୍ୱିତୀୟ ସଂସ୍କରଣ, ୨ୟ ମୁଦ୍ରଣ (୧୯୫୫), ପ୍ରକାଶକ, ନିଉଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରା:ଲିଃ ।

୬। **ବୁଦ୍ଧ** (ନାଟକ) ପ୍ରଥମ ସଂସ୍କରଣ ୧୯୫୧, ପ୍ରକାଶକ, ନିଉ ଷ୍ଟୁଡେଣ୍ଟସ ଷ୍ଟୋର ପ୍ରା:ଲିଃ, ମୁଦ୍ରାକର ବନମାଳୀ ମିଶ୍ର ବି.ଏ., ନବଭାରତ ପ୍ରେସ, କଟକ ।

ଏ ପୁସ୍ତକର ପ୍ରଚ୍ଛଦପଟରେ ଦିଆଯାଇଥିବା ଚିତ୍ରଶିଳ୍ପୀ ଉପେନ୍ଦ୍ର ମହାରଥୀଙ୍କର ଏକ ବୃହତ୍ତର ଚିତ୍ରର ଅଂଶ । ଅନ୍ୟ ଚିତ୍ର ଦୁଇଟି କଲିକତା ମହାବୋଧି ସୋସାଇଟି ସୌଜନ୍ୟରୁ ପ୍ରାପ୍ତ । ଏମାନଙ୍କୁ ଲେଖକ କୃତଜ୍ଞତା ଜ୍ଞାପନ କରୁଅଛି ।

(କ) ପ୍ରସ୍ତାବନା, ପ୍ରଥମ ଅଂଶ, ପ୍ରଥମ ଦୃଶ୍ୟ, ଝଙ୍କାର ୧/୧୨ ପୃ. ୧୦୯୩

(ଖ) ପ୍ରଥମ ଅଙ୍କ, ପ୍ରଥମ ଦୃଶ୍ୟ, ଝଙ୍କାର ୨/୨ ପୃ. ୧୧୩-୧୧୬, ମେ' ୧୯୫୦

(ଗ) ପ୍ରଥମ ଅଙ୍କ, ଦ୍ୱିତୀୟ ଦୃଶ୍ୟ, ଝଙ୍କାର ୨/୩ ପୃ. ୧୯୭-୨୦୦, ଜୁନ ୧୯୫୦

(ଘ) ଝଙ୍କାର ୨ୟ/୬ଷ୍ଠ ସଂଖ୍ୟା

(ଙ) ୨ୟ ଅଙ୍କ, ପ୍ରଥମ ଦୃଶ୍ୟ, ଝଙ୍କାର ୨/୯ ପୃ. ୭୭୫ ଡିସେମ୍ବର -୧୯୫୦

(ଚ) ୨ୟ ଅଙ୍କ, ୨ୟ ଦୃଶ୍ୟ, ଝଙ୍କାର ୨/୧୧ ପୃ. ୯୯୯ ଫେବୃୟାରୀ ୧୯୫୧

(ଛ) ଏକମାତ୍ର ମନୁଷ୍ୟଧର୍ମ ବୌଦ୍ଧଧର୍ମ-ଝଙ୍କାର ୨ୟ ବର୍ଷ ୧୨ଶ ସଂଖ୍ୟାରେ ଏ ପ୍ରବନ୍ଧର ପ୍ରଥମ ଅଂଶ ପ୍ରକାଶିତ ।

(ଜ) ୩ୟ ଅଙ୍କ ୪ର୍ଥ ଦୃଶ୍ୟ, ଝଙ୍କାର ୩/୧ ପୃ. ୯ ଅପ୍ରେଲ - ୧୯୫୧ ।

(ଝ) ଏକମାତ୍ର ମନୁଷ୍ୟଧର୍ମ ବୌଦ୍ଧଧର୍ମ-ଝଙ୍କାର ୩ୟ ବର୍ଷ ୬ଷ୍ଠ ସଂଖ୍ୟା । ଏ ପ୍ରବନ୍ଧର ଶେଷରେ ଲେଖାଅଛି– ଲେଖକଙ୍କର ଆସନ୍ନ ପ୍ରକାଶ ବୁଦ୍ଧ ନାଟକର ଭୂମିକାରୂପେ ଲିଖିତ ।

(ଞ) ବୁଦ୍ଧ ଓ ବୁଦ୍ଧବାଣୀ (ପ୍ରବନ୍ଧ) 'ସମାଜ' ୨୪. ୫. ୫୬ ।

(ଟ) ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଭାବ (ପ୍ରବନ୍ଧ) 'ସମାଜ', ୨୩. ୫. ୧୯୬୭

(ଠ) ବୁଦ୍ଧ ଓ ମାନବିକ ଐକ୍ୟ (ପ୍ରବନ୍ଧ) 'ସମାଜ', ୨୫. ୫. ୧୯୭୦

୭। **ଦୁର୍ଭିକ୍ଷ** (ନାଟିକା)

ପ୍ରଥମ ମୁଦ୍ରଣ (୧୯୫୫), ପ୍ରକାଶକ : ନିଉ ଷ୍ଟୁଡେଣ୍ଟସ ଷ୍ଟୋର ପ୍ରା. ଲିଃ, ମୂଲ୍ୟ- ଦେଢ଼ଟଙ୍କା ।

୮। **ବୁଦ୍ଧ-ଦୂତୀ** (ନୃତ୍ୟନାଟିକା) ଝଙ୍କାର, ୧୦/୧ ଏପ୍ରିଲ, ୧୯୫୮ ପୃ. ୮୩

୯। **ଶାସନଚକ୍ର** (ଏକାଙ୍କିକା) ୧୯୫୧ ।

## ପରିଶିଷ୍ଟ-୨

୧- ପୁଷ୍ପିତା ନାଟିକାର ସାର୍ଥକତା (ସମାଲୋଚନା)-ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ, ସହକାର, ୧୧/୫, ଭାଦ୍ରବ ୧୩୩୭ ସାଲ, ୧୯୩୦ ମସିହା, ପୃ.୨୩୩-୪୨ ।

୨- ରସଚକ୍ର, ପ୍ରଥମ ବର୍ଷ, ଦ୍ୱିତୀୟ ସଂଖ୍ୟା, ଚୈତ୍ର ୧୩୪୦ର ପୁସ୍ତକ ସମୀକ୍ଷାରେ ପୂଜାରିଣୀ-ଲେ-ମାୟାଧର ମାନସିଂହ ବି.ଏ., ପ୍ରକାଶକ: ସବୁଜ ସାହିତ୍ୟ ସମିତି, କଟକ

ଅଧୁନା ଓଡ଼ିଆ ସାହିତ୍ୟରେ ଯେତେ ପ୍ରତିଭାଶାଳୀ ଲେଖକ ଆବିର୍ଭୂତ ହୋଇଅଛନ୍ତି, ଶ୍ରୀଯୁକ୍ତ ମାୟାଧର ମାନସିଂହ ତନ୍ମଧ୍ୟରୁ ଅନ୍ୟତମ । ତାଙ୍କର ବିଶିଷ୍ଟ ଲିଖନ ଭଙ୍ଗୀ ଓ ମାଧୁର୍ଯ୍ୟ ଓଡ଼ିଆ କାବ୍ୟରେ ଏକ ନୂତନ ଧାରା ଆଣିଛି । ତାଙ୍କର ପ୍ରତିଭା ଆଜି ସର୍ବଜନସମ୍ମତ । 'ପୂଜାରିଣୀ' ମାୟାଧରବାବୁଙ୍କର ଗୋଟିଏ କାବ୍ୟ-ନାଟିକା ବିଶେଷ । ଏହାର ପ୍ଲଟ ସତ୍ୟବାଦୀର ସାକ୍ଷୀଗୋପାଳଙ୍କ ପ୍ରଣୟ କାହାଣୀ ସମ୍ବଳିତ କିମ୍ବଦନ୍ତୀରୁ ଗୃହୀତ ବୋଲି ତାଙ୍କର ଆଦ୍ୟଭାଷରୁ ପ୍ରକାଶ । କୌଣସି ପୌରାଣିକ କିମ୍ବଦନ୍ତୀ ଅବଲମ୍ବନରେ ଏଭଳି ସୁନ୍ଦର ରଚନା ଆଜିକାଲି ବିରଳ । ତଥାପି ରଚନାର ଭଙ୍ଗୀରେ ପାଠକ ଶେଷଯାଏ ନ ପଢ଼ି ପତ୍ରମାଡ଼ି ରଖିପାରିବେନାହିଁ ।

ଦେବତା ଓ ଲକ୍ଷ୍ମୀର ପ୍ରଣୟ-କଥୋପକଥନ ଅତି ମନୋରମ ହୋଇଅଛି । ଦେବତା ସହିତ ମାନବୀର ଏପରି ପ୍ରଣୟ ଟିକିଏ କଷ୍ଟ-କଳ୍ପିତ ହେଲେ ହେଁ ଅସମ୍ଭବ ନୁହେଁ । କାବ୍ୟର ଯଥାର୍ଥ ରସ ଉପଭୋଗ କରିବାକୁ ହେଲେ ଆଧ୍ୟାତ୍ମିକତା ସ୍ତରକୁ ଉଠିବାକୁ ହେବ । ସ୍ତର ବିଭିନ୍ନତା ଯୋଗୁଁ କାବ୍ୟରସ ଉପଭୋଗ କରିବା ପାଇଁ ଅନେକ ସମୟରେ ଅସୁବିଧା ହୁଏ । ନାଟକେଟିର ଶେଷଭାଗ ଟ୍ରାଜେଡ଼ି ଓ କାରୁଣ୍ୟରେ ମନ୍ଥର ହୋଇଉଠିଅଛି ।

ପୁସ୍ତକଟି ଆଦ୍ୟୋପ୍ରାନ୍ତ ମଧୁର ପୟାର ଛନ୍ଦରେ ଲିଖିତ । ଭାଷା ଉପରେ ପ୍ରତିବେଶୀ ଭାଷାର କିଞ୍ଚିତ ପ୍ରଭାବ ପରିଲକ୍ଷିତ ହେଲେହେଁ, ତାହା ଭାଷାକୁ ବିକୃତ କରିନାହିଁ ଏବଂ ଯେଉଁ ରବୀନ୍ଦ୍ର ପ୍ରତିଭା ଦ୍ୱାରା ସାମୟିକ ଅନ୍ୟାନ୍ୟ ଲେଖକମାନେ ଆକ୍ରାନ୍ତ ସେ ମଧ୍ୟ ତହିଁରୁ ମୁକ୍ତ ନୁହନ୍ତି ।

ଛପା ଓ ପରିକଳ୍ପନା ହୃଦୟଗ୍ରାହୀ ହୋଇଅଛି । ମୋଟ ଉପରେ ବହିଖଣ୍ଡିକ ସମସ୍ତଙ୍କ ଦ୍ୱାରା ସମାଦୃତ ହେବ ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

୩- ରାଜକବି (ନାଟିକା) ସମୀକ୍ଷା, ଓଡ଼ିଆ ନାଟ୍ୟକଳା, ଲେ-ଶ୍ରୀ ଗିରିଜାଶଙ୍କର ରାୟ, ପ୍ରଥମ ମୁଦ୍ରଣ (୧୯୩୯), ଦ୍ୱିତୀୟ ମୁଦ୍ରଣ (୧୯୬୭), ଷଷ୍ଠ ପରିଚ୍ଛେଦ ପୃ-୮୮ 'ରାଜକବି' ।

୪- ପୂଜାରିଣୀ (ନାଟିକା) ସମୀକ୍ଷା, ଓଡ଼ିଆ ନାଟ୍ୟକଳା, ଲେ-ଶ୍ରୀ ଗିରିଜାଶଙ୍କର ରାୟ, ଓଡ଼ିଆ ନାଟକରେ ନାଟକୀୟ ଛଟା 'ପୂଜାରିଣୀ'

୫- ନଷ୍ଟନୀଡ଼ (ନାଟକ) ସମୀକ୍ଷା-ଡଗର ୧.୧୧.୧୯୩୯

ନଷ୍ଟନୀଡ଼ ମାୟାଧର' ମାନସିଂହଙ୍କ ନାଟକ ବହି । ପ୍ରଥମରୁ ମନେହେଲା ଲେଖକ ବାସ୍ତବତାକୁ ଆଶ୍ରୟକରି ନୂଆ ଭାବଧାରା ଦେବାପାଇଁ ଲେଖିଛନ୍ତି । ପରବର୍ତ୍ତୀ ପୃଷ୍ଠାରେ କିନ୍ତୁ ରୋମାଞ୍ଚକର ଉପନ୍ୟାସ ଆକାର ଧାରଣକଲା– ମନେହେଲା ଯେପରି ଅଶ୍ୱିନୀଙ୍କ ହିନ୍ଦୁରମଣୀ କି ମାଷ୍ଟରବାବୁ ।

୬- ନଷ୍ଟନୀଡ଼ (ନାଟକ) ସମୀକ୍ଷା, ଡଗର, ୧୩ବର୍ଷ/୧୨ଶ ସଂଖ୍ୟା, (୧୯୪୯)

୭- ବୌଦ୍ଧଧର୍ମ କି ମଣିଷର ଏକମାତ୍ର ଧର୍ମ ? (ଆଲୋଚନା) ଲେ-ଶ୍ରୀ ବୃନ୍ଦାବନ ନାଥ ଶର୍ମା, ଝଙ୍କାର ୩/୨, ମଇ, ୧୯୫୧, ପୃ-୧୨୭

୮- ବୁଦ୍ଧ (ନାଟକ) ପୁସ୍ତକ ସମୀକ୍ଷା, ଝଙ୍କାର ୩/୧୧ ଫେବୃୟାରୀ-୧୯୫୨, ପୃ.୯୬୧

୯- ଓଡ଼ିଆ ନାଟକେ ଓ ଉପନ୍ୟାସରେ ବୁଦ୍ଧ ଓ ବୌଦ୍ଧଧର୍ମର ପ୍ରଭାବ-ଲେ-ଶ୍ରୀ ପ୍ରାଣବନ୍ଧୁ କର, ଉତ୍କଳ ସାହିତ୍ୟ (ନୂଆ ପ୍ରସ୍ଥ) ୩/୭ ସଂଖ୍ୟା, ୧୯୫୬, ପୃ. ୩୧୫-୩୧୯

୧୦- ଦୁର୍ଭିକ୍ଷ(ନାଟିକା) ସମୀକ୍ଷା, ଉତ୍କଳ ସାହିତ୍ୟ ନୂତନପ୍ରସ୍ଥ, ୨/୧୦, ୧୧ ଶେଷ ପୃଷ୍ଠା ।

୧୧- ଗୀତିନାଟ୍ୟର କେତୋଟି ଚରିତ୍ର (ସମାଲୋଚନା), ଡ. ନିତ୍ୟାନନ୍ଦ ଶତପଥୀ

(କ) ଝଙ୍କାର, ୨୦/୬ (୧୯୬୮) ପୃ-୯୪୪-୯୪୯ ।

(ଖ) ଆଧୁନିକ ଓଡ଼ିଆ ସାହିତ୍ୟ (ସେପ୍ଟେମ୍ବର-୧୯୭୭), ବିଦ୍ୟାପୁରୀ, ପୃ. ୩୯-୪୦ ।

(ଗ) ସମାଲୋଚନାର ଧାରା (ଏହି ଲେଖା ସଂପର୍କରେ ମାନସିଂହଙ୍କ ପତ୍ର ମିଳିତ ଭାବେ ପ୍ରକାଶିତ) ବନଫୁଲ ୨/୫ ପୃ. ୪-୮ ।

---